# ଜଗତୀକରଣ ଓ ସଂଗ୍ରାମରତ ମଣିଷ

## ଅଚ୍ୟୁତ ଦାସ




ବହୁ ଚର୍ଚ୍ଚିତ ପୁସ୍ତକ-**କାଶୀପୁର ଏକ ସଂଘର୍ଷର କାହାଣୀ** ଲେଖକଙ୍କ ଦ୍ୱାରା ଲିଖିତ

( ଏ ପୁସ୍ତକର ) ଲେଖାଗୁଡ଼ିକରେ
ବୈଶିଷ୍ଟ୍ୟ ହେଲା ଜଣେ ଜନବାଦୀ
ବୁଦ୍ଧିଜୀବୀର ଲେଖନୀ ଚାଳନା ।
ଓଡ଼ିଶାରେ ଚାଲିଥିବା ଜନ ଆନ୍ଦୋଳନର
ମୁଖ୍ୟ ଦାବୀଗୁଡ଼ିକୁ ବୁଝିବାକୁ ହେଲେ
ଗଲା ଦୁଇଦଶକରେ ଜଗତୀକରଣର
ପ୍ରଭାବକୁ ବୁଝିବାକୁ ହେବ ।
ଜଗତୀକରଣ ଫଳରେ ସମାଜରେ
ଅସାମ୍ୟ ବୃଦ୍ଧି ପାଇଛି, ପରିବେଶ
ଧ୍ୱଂସ ହୋଇଚାଲିଛି, ଆଦିବାସୀ, ଦଳିତ
ଓ ପଛୁଆ ଅଞ୍ଚଳର ଅଧିବାସୀଙ୍କ
ଜୀବନ ଧାରଣ ପରିସ୍ଥିତି କଠିନତର
ହେଉଛି ଏବଂ ସ୍ଥାନୀୟ ଜନତାଙ୍କର
ସଂସ୍କୃତି ବିପନ୍ନ ହୋଇଛି । ଏସବୁର
ପ୍ରାଞ୍ଜଳ ବ୍ୟାଖ୍ୟା ମିଳିବ ଏ ବହିରେ ।

# ଜଗତୀକରଣ ଓ ସଂଗ୍ରାମରତ ମଣିଷ

ଲେଖକ : ଅଚ୍ୟୁତ ଦାସ

ପ୍ରଥମ ପ୍ରକାଶନ : ଭୁବନେଶ୍ୱର ପୁସ୍ତକ ମେଳା, ୨୦୦୭

ପ୍ରକାଶକ : **ଶିକ୍ଷାସନ୍ଧାନ**
ଏ-୧୨, ହାଉସିଂ ବୋର୍ଡ଼ କଲୋନୀ
ବରମୁଣ୍ଡା, ଭୁବନେଶ୍ୱର - ୭୫୧ ୦୦୩
ଦୂରଭାଷ : ୦୬୭୪-୨୫୫୬୧୦୯

ମୁଦ୍ରଣ : **ଶିକ୍ଷା ପ୍ରକାଶନୀ**
୨୬୬, ରୋଡ୍-୧, ଜଗନ୍ନାଥ ବିହାର
ବରମୁଣ୍ଡା, ଭୁବନେଶ୍ୱର - ୭୫୧ ୦୦୩
ଦୂରଭାଷ : ୦୬୭୪-୨୫୫୨୦୨୪

ଆଇ.ଏସ୍.ବି.ଏନ୍ - ୧୦ : ୮୧-୮୭୯୮୨-୩୩-୦
ଆଇ.ଏସ୍.ବି.ଏନ୍ - ୧୩ : ୯୭୮-୮୧-୮୭୯୮୨-୩୩-୩

ମୂଲ୍ୟ : ଟ.୧୫୦/-

# Jagatikarana O' Sangramrata Manisa

*Author* : **Achyut Das**

*First Published* : **Bhubaneswar Book Fair, 2007**

*Published by*
**Sikshasandhan**
A-12, H.B. Colony, Baramunda
Bhubaneswar - 751 003
Phone/Fax : 0674 2556109

*Printed at*
**Siksha Prakashani**
266, Road-1, Jagannath Vihar
Baramunda, Bhubaneswar - 751 003
Phone : 0674 - 2552024

**ISBN** - 10 : 81-87982-33-0
**ISBN** - 13 :978-81-87982-33-3

**Price : Rs. 150/-**

# ଉତ୍ସର୍ଗ



ଜଗତୀକରଣ ପ୍ରକ୍ରିୟାରେ ଶୀକାର ହୋଇଥିବା ଓ ହେବାକୁ ଯାଉଥିବା ଅଗଣିତ ଜନସାଧାରଣଙ୍କ ବିଚାର ଉଦ୍ଦେଶ୍ୟରେ ।



# କୃତଜ୍ଞତା

ଜଗତୀକରଣ ଓ ସଂଗ୍ରାମରତ ମଣିଷ ପୁସ୍ତକଟି ପ୍ରକାଶ ପାଇବା ପଛରେ ବିଭିନ୍ନ ଲୋକଙ୍କର ସହିଚ୍ଛା, ପ୍ରେରଣା ଓ ସହଭାଗୀତା ରହିଛି । ଯଦିଓ ମୁଁ ଏକାକୀ କେତେଗୁଡିଏ କଥା ଲେଖିପାରିଛି, କିନ୍ତୁ ଏହା ପଛରେ ଅନେକ ସତୀର୍ଥ ବନ୍ଧୁ ଓ ସମାଲୋକମାନଙ୍କର ସାମୁହିକ ମାନସିକତା ରହିଛି । ମୁଁ ସର୍ବପ୍ରଥମେ ଧନ୍ୟବାଦ ଦେବି ଅଗ୍ରଗାମୀର ସଭାପତି ପ୍ରଫେସର ଚିତ୍ତରଞ୍ଜନ ଦାସଙ୍କୁ ଆମ ଆଦରର ଚିତ୍ତଭାଇଙ୍କୁ । ଗତ ଦୁଇ ଦଶକ ଧରି କରି ଲେଖାଲେଖି କରିବାକୁ ସେ ମୋତେ ବାରମ୍ବାର ତାଗିଦ୍ କରିଛନ୍ତି । ଏପରିକି ଥରେ ଗୋଟାଏ ଡାଏରୀ ଦେଇଥିଲେ ଏବଂ କହିଥିଲେ ପ୍ରତ୍ୟେକ ଦିନ କିଛି ନିଶ୍ଚିତ ଲେଖିବାକୁ । ତାଙ୍କର କଥା ଯଦିଓ ମୁଁ ମାନି ନଥିଲି, ଏ ବହିଟି ଲେଖିବାକୁ ତାଙ୍କ ଅବଦାନ କିଛି କମ୍ ନୁହେଁ । ଚିତ୍ତଭାଇଙ୍କ ଛଡ଼ା ଲଣ୍ଡନର ଜନ୍ କ୍ରାଇକ୍, ଜର୍ମାନୀର ଡକ୍ଟର ବିଆତେ ସେରର୍ ଓ ଡକ୍ଟର ବର୍ଣ୍ଣାର୍ଡ ହୁପର ଓ ଆମେରିକାର ଶୁଚିରା ଭଟ୍ଟମିଶ୍ର ବିଭିନ୍ନ ସମୟରେ ଉପାଦେୟ ପୁସ୍ତକ ଓ ପ୍ରବନ୍ଧ ଯୋଗାଡ କରି ପଠାଇଥିବାରୁ ଏ ବହିଟିରେ ସେଗୁଡିକର ସୂଚନା ଦେବା ଓ ବିଭିନ୍ନ ଉକ୍ତି ଉଦ୍ଧାର କରିବା ସମ୍ଭବ ହୋଇ ପାରିଛି । ଓଡ଼ିଶାରୁ ପ୍ରଫେସର ଭାଗବତ ପ୍ରସାଦ ରଥ, ଶିକ୍ଷା ସନ୍ଧାନର ଅନୀଲ ପ୍ରଧାନ, ଦିଲ୍ଲୀର ପ୍ରଫେସର ଅମିତ୍ ଭାଦୁଡୀ ମଧ୍ୟ ବିଭିନ୍ନ ଉପାୟରେ ପୁସ୍ତକ ଓ ଦଲିଲ୍ ମୋ ପାଇଁ ଯୋଗାଡ କରିଛନ୍ତି । ସେସବୁର ସାହାଯ୍ୟ ନେଇ ମୁଁ ମୋର ଲେଖାର ମାନ ବଢେଇବାକୁ ଚେଷ୍ଟା କରିଛି ।

ବନ୍ଧୁ ଓ ସମାଲୋଚକ ହିସାବରେ ପ୍ରଫୁଲ୍ଲ ବେହେରା, ଅରବିନ୍ଦ ବେହେରା, ସଂଗ୍ରାମ ଜେନା, ସୁଧୀର ପଟ୍ଟନାୟକ, ଯତୀନ୍ ନାୟକ, ବୀରେଶ୍ୱର ନାୟକ, ପ୍ରମୋଦ ପ୍ରଧାନ, ପୂର୍ଣ୍ଣାନନ୍ଦ ଦାସ, ସାଗରିକା ମହାନ୍ତି, ବିପିନ ବାରିକ ବିଭିନ୍ନ ସମୟରେ ତଥ୍ୟ ଓ ସୂଚନା ଅକୁଣ୍ଠିତ ଭାବେ ପ୍ରଦାନ କରିଛନ୍ତି ।

ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପୂର୍ବତନ ରାଜନୀତି ବିଜ୍ଞାନ ପ୍ରଫେସର ମନୋରଞ୍ଜନ ମହାନ୍ତିଙ୍କୁ ମୁଖବନ୍ଧ ଲେଖିବାକୁ ମୁଁ ଅନୁରୋଧ କରିଥିଲି । ସେ ଏକ ମନଲାଖି ମୁଖବନ୍ଧ ଲେଖିଛନ୍ତି । ଏହାଦ୍ୱାରା ବହିର ମାନ ଅଭିବୃଦ୍ଧି ହୋଇଛି, ତାଙ୍କୁ ମଧ୍ୟ କୃତଜ୍ଞତା ଜଣାଉଛି ।

ବହିର ଏଇ ଲେଖାଗୁଡ଼ିକ ଦିନର ଆଲୋକ ଦେଖି ନଥାନ୍ତେ ଯଦି ଦୈନିକ ସମ୍ବାଦପତ୍ର 'ଓଡ଼ିଶା ଭାସ୍କର'ରେ ଏହା ସପ୍ତାହକୁ ସପ୍ତାହ ବାହାରି ନଥାନ୍ତା । 'ଓଡ଼ିଶା ଭାସ୍କର'ର ସମ୍ପାଦକ ଓ ବନ୍ଧୁ ଶ୍ରୀ ଭାସ୍କର ପରିଚ୍ଛା ମୋ ଭଳି ଜଣେ ବ୍ୟକ୍ତିର ଲେଖାଗୁଡ଼ିକୁ ପ୍ରକାଶ କରିବାରେ ସାହସିକତା ଓ ଉଦାର ମନୋଭାବ ପ୍ରଦର୍ଶନ କରିଛନ୍ତି । ନିରବଚ୍ଛିନ୍ନ ଭାବେ ଗୋଟିଏ ଲେଖା ବାହାରିଲେ ଆଉ ଗୋଟିଏ ଲେଖା ଲେଖିବାକୁ ପ୍ରେରଣା ମିଳିଥାଏ । ଶ୍ରୀଯୁକ୍ତ ଭାସ୍କର ପରିଚ୍ଛା ନିଶ୍ଚିତ ଏ ପ୍ରେରଣା ସୃଷ୍ଟି କରିଛନ୍ତି । "ଓଡ଼ିଶା ଭାସ୍କର"ର ପାଠକଙ୍କ ଭିତରୁ କେତେକ ମୋ ପାଖକୁ ଚିଠି ପଠାଇ ବିଭିନ୍ନ ମତାମତ ଓ ମାର୍ଗଦର୍ଶନ ଦେଇଛନ୍ତି । ସେମାନଙ୍କୁ ଧନ୍ୟବାଦ ନଦେଇ ରହି ହେବନାହିଁ ।

ସୁନୀତା ଏହାର ଲିପି ସଂଯୋଜନା କରିଛନ୍ତି । ବୀରବର ନାୟକ ଏଇ ବହିଟିର ପରିକଳ୍ପନାକୁ ବାସ୍ତବତାରେ ପରିଣତ କରିବା ପାଇଁ ଅବିରତ ଉଦ୍ୟମ କରିଛନ୍ତି ଓ ତାଙ୍କର ଅବଦାନ ପାଇଁ ଏ ଲେଖକ ସବୁଦିନ ଋଣି ରହିବ । ପ୍ରବନ୍ଧଗୁଡ଼ିକ ବେଳେବେଳେ ଶବ୍ଦର ସୀମା ଟପିଥାଏ । ଖବରକାଗଜରେ ବାହାରିବା ଭଳି ଆକାର ପ୍ରକାରରେ ପରିଣତ କରିବା କିଛି କମ୍ କଥା ନୁହେଁ । ବିନା ଦ୍ୱିଧାରେ ବୀରବର ଏହି କାର୍ଯ୍ୟ ସଂପାଦନ କରି ବିଶେଷ କୃତଜ୍ଞତାର ଅଧିକାରୀ ହୋଇଛନ୍ତି ।

ପୁସ୍ତକ ପ୍ରକାଶନ ପାଇଁ 'ଶିକ୍ଷା ପ୍ରକାଶନୀ' ଓ ଡିଜାଇନ୍ ପାଇଁ 'ଥାର୍ଡ ଆଇ' ଅତି ଗୁରୁତ୍ୱର ସହ କାର୍ଯ୍ୟ ସମ୍ପାଦନା କରିଛନ୍ତି । ଏଇ ଦୁଇଟି ଅନୁଷ୍ଠାନ ସପ୍ରେମ ସାହାଯ୍ୟ କରି ଧନ୍ୟବାଦର ପାତ୍ର ହୋଇଛନ୍ତି ।

ସର୍ବଶେଷରେ ମୋ ସହଧର୍ମିଣୀ ବିଦ୍ୟା ଓ ଝିଅ ଅନୁ ବହି ଲେଖିବାରେ ଉଭୟ ମାନସିକ ଓ ବୌଦ୍ଧିକ ସମର୍ଥନ ଯୋଗାଇବାରେ ବଳିଷ୍ଠ ଭୂମିକା ଗ୍ରହଣ କରିଛନ୍ତି । କେବେ କେମିତି ଲେଖାଗୁଡ଼ିକର ଗତି ଓ ତାତ୍ପର୍ଯ୍ୟ ସେମାନଙ୍କୁ ବୁଝାଇଛି ଓ ସକାରାତ୍ମକ ସମାଲୋଚନା ମଧ୍ୟ ପାଇଛି । ସମ୍ଭବତଃ ଏଥିପାଇଁ ଲେଖାଗୁଡ଼ିକ ଉନ୍ନତରୁ ଉନ୍ନତତର ହେବାରେ ସଫଳ ହୋଇଛି । ସେମାନଙ୍କର ଭୂମିକା ପାଇଁ ଯଥେଷ୍ଟ ଧନ୍ୟବାଦ ଜଣାଉଛି ।

ଅଚ୍ୟୁତ ଦାସ

# ମୁଖବନ୍ଧ

**"ମୋର ଅନେକ ଅପୂରଣୀୟ ଅଭିଳାଷ ଭିତରେ ରହିଛି । ମେକ୍ସିକୋ ଯାଇ ଜାପାଟିଷ୍ଟା ଆନ୍ଦୋଳନ ସହ ସାମିଲ ହେବା ଏବଂ ଏହାର ନେତା ସବ୍ କମାଣ୍ଡାଣ୍ଟ ମାର୍କସଙ୍କଠାରୁ ଜଗତୀକରଣ ବିରୋଧରେ ଲଢ଼େଇର ରଣନୀତି ଶିଖିବା ।"**

ଅଚ୍ୟୁତ ଦାସଙ୍କର ଏହି ଉକ୍ତିଟି ହେଲା ଏ ବହିର ପରିଚୟ । ଜଗତୀକରଣ ଉପରେ ଓଡ଼ିଶାରେ ଚାଲିଥିବା ଚର୍ଚ୍ଚା ପାଇଁ ଏ ପ୍ରବନ୍ଧ ଗୁଡିକ ଏକ ଖୁବ ମହତ୍ତ୍ୱପୂର୍ଣ୍ଣ ଅବଦାନ । କାଶୀପୁରରୁ କଳିଙ୍ଗନଗର ଯାଏ ଜଗତୀକରଣ ପ୍ରକ୍ରିୟାର ପ୍ରଭାବରେ ଓଡ଼ିଶାର ଶିଳ୍ପବିକାଶ ନାଆଁରେ ସାଧାରଣ ଲୋକଙ୍କ ଜୀବିକା ଉପରେ ଯେଉଁଭଳି ଆକ୍ରମଣ ଚାଲିଛି ତାହାକୁ ଦେଶରେ ଓ ପୃଥିବୀସାରା ଚାଲିଥିବା ଜଗତୀକରଣ ବିରୋଧୀ ଜନଆନ୍ଦୋଳନ ପରିପ୍ରେକ୍ଷୀରେ ସେ ବିଶ୍ଳେଷଣ କରିଛନ୍ତି ।

ଏ ଲେଖା ଗୁଡିକରେ ବୈଶିଷ୍ଟ୍ୟ ହେଲା ଜଣେ ଜନବାଦୀ ବୁଦ୍ଧିଜୀବୀର ଲେଖନୀ ଚାଳନା । ଓଡ଼ିଶାରେ ଚାଲିଥିବା ଜନ ଆନ୍ଦୋଳନର ମୁଖ୍ୟ ଦାବୀଗୁଡ଼ିକୁ ବୁଝିବାକୁ ହେଲେ ଗଲା ଦୁଇଦଶକରେ ଜଗତୀକରଣର ପ୍ରଭାବକୁ ବୁଝିବାକୁ ହେବ । ଜଗତୀକରଣ ଫଳରେ ସମାଜରେ ଅସାମ୍ୟ ବୃଦ୍ଧି ପାଇଛି, ପରିବେଶ ଧ୍ୱଂସ ହୋଇଚାଲିଛି, ଆଦିବାସୀ, ଦଳିତ ଓ ପଛୁଆ ଅଞ୍ଚଳର ଅଧିବାସୀଙ୍କ ଜୀବନ ଧାରଣ ପରିସ୍ଥିତି କଠିନତର ହେଉଛି ଏବଂ ସ୍ଥାନୀୟ ଜନତାଙ୍କର ସଂସ୍କୃତି ବିପନ୍ନ ହୋଇଛି । ଏସବୁର ପ୍ରାଞ୍ଜଳ ବ୍ୟାଖ୍ୟା ମିଳିବ ଏ ବହିରେ । ବହୁ ଉପାଦେୟ ତଥ୍ୟ ପରିବେଷଣ କରାଯାଇଛି ।

ଓଡ଼ିଶାର ପାଠକ ପୃଥିବୀର କେତେକ ରୋମାଞ୍ଚକାରୀ ସଫଳ ଜନ ଆନ୍ଦୋଳନ ବିଷୟରେ ଏ ବହିରୁ ସମ୍ବାଦ ପାଇବେ । ବ୍ରାଜିଲର ଜମି ମୁକ୍ତି ଆନ୍ଦୋଳନ ବା ଏମ.ଏ୍.ଟି ଏକ ଐତିହାସିକ କାର୍ଯ୍ୟକ୍ରମ ବିଶ୍ୱର ଭୂମିହୀନ ଜନତା ଆଗରେ ରଖିଛି । ଭୂମିହୀନମାନଙ୍କୁ ଏକାଠି କରି ଆଗ ଗୋଟିଏ କ୍ୟାମ୍ପରେ ରଖି ତା'ପରେ ସରକାରୀ ଜମି ହେଉ ବା ବେଆଇନ ଭାବେ କାହା କବଳରେ ଥିବା ଜମି ହେଉ ତାହାକୁ ଅଧିକାର କରି ଭୂମିହୀନଙ୍କ ଭିତରେ ବଣ୍ଟା ଯାଇଛି ।

**ଜଗତୀକରଣ ଓ ସଂଗ୍ରାମରତ ମଣିଷ**

ଜଗତୀକରଣକୁ ଖାଲି ପୃଥିବୀ ଯୋଗାଯୋଗ ଫଳରେ ଛୋଟ ହୋଇଗଲା କହିଲେ ତାର ଅସଲ ଅର୍ଥ ସ୍ପଷ୍ଟ ହେବ ନାହିଁ । ଗଲା ଦୁଇ ଦଶକର ଜଗତୀକରଣ ପ୍ରକ୍ରିୟା ବିଶ୍ୱସ୍ତରରେ ପୁଞ୍ଜିବାଦର ଏକ ନୂତନ ପର୍ଯ୍ୟାୟ । ସୋଭିଏତ ସଂଘର ବିଲୟପରେ ଏବଂ ତୃତୀୟ ବିଶ୍ୱର ଦେଶମାନଙ୍କରେ ନାନା ପ୍ରକାର ସଂକଟ ଦେଖା ଦେଇଥିବାରୁ ଯୁକ୍ତରାଷ୍ଟ୍ର ଆମେରିକା, ବ୍ରିଟେନ ଇତ୍ୟାଦି ରାଷ୍ଟ୍ରର ପୁଞ୍ଜିବାଦୀ ବ୍ୟବସ୍ଥା ଏକ ନୂଆ ଶକ୍ତିପାଇ ଦୁନିଆସାରା ନିଜର କର୍ତ୍ତୃତ୍ୱ ବିସ୍ତାର କରିବାରେ ଲାଗିଲା । ବିଭିନ୍ନ ଦେଶର ସୀମାକୁ ଅନାୟାସରେ ପାରିହୋଇ ନିଜର ପୁଞ୍ଜି, ବୈଷୟିକ ଶୈଳୀ ଓ ରାଜନୈତିକ ପ୍ରଭାବ ବିସ୍ତୃତ କଲା । ଅର୍ଥନୈତିକ ପ୍ରକ୍ରିୟା ସାଙ୍ଗେ ସାଙ୍ଗେ ସାଂସ୍କୃତିକ ପ୍ରଭାବ ବିଶେଷକରି ସଂଚାର ଓ ସମ୍ବାଦ ପ୍ରସାର ଏବଂ ସାମରିକ ଶକ୍ତି ସବୁଆଡେ ବିସ୍ତାର କଲା । ଏହି ଜଗତୀକରଣ ପ୍ରକ୍ରିୟା ଏକ ନୂତନ ସାମ୍ରାଜ୍ୟବାଦର ଢାଞ୍ଚା ହୋଇଛି । ତା ବିରୁଦ୍ଧରେ ସାରା ବିଶ୍ୱର ସ୍ୱରାଜର ସ୍ୱର ମୁଖରିତ ହୋଇଛି ଏବଂ ଜନ ଆନ୍ଦୋଳନମାନ ସକ୍ରୀୟ ହୋଇଛନ୍ତି । ଏହି ପ୍ରକ୍ରିୟାର ବିଭିନ୍ନ ଦିଗ ଲେଖକ ବିଶଦ ଭାବେ ଆଲୋଚନା କରିଛନ୍ତି ଏହି ବହିରେ ।

ସେ ଆନ୍ଦୋଳନ ଫଳରେ ଭୂସଂସ୍କାର ବ୍ରାଜିଲର ରାଜନୀତିରେ ଏକ ପ୍ରଧାନ କାର୍ଯ୍ୟକ୍ରମ ହୋଇଛି । ସେହିପରି ପେରୁର 'କୋନାକାମୀ' ଆନ୍ଦୋଳନ ଆଦିବାସୀ ଶ୍ରମିକ ଓ ଭୂମିହୀନଙ୍କ ମିଳିତ ସଂଘର୍ଷ ଫଳରେ ଖଣିଜ ଶିଳ୍ପ ବିରୁଦ୍ଧରେ ଏକ ବଳୀୟାନ ଶକ୍ତିରୂପେ ଆବିର୍ଭୂତ ହୋଇଛି । ମେକ୍ସିକୋର ଜାପାଟିଷ୍ଟା ଆନ୍ଦୋଳନ ୨୦୦୬ ମସିହାରେ ଯେପରି ଭାବେ ବିଭିନ୍ନ ପ୍ରଦେଶରେ ପଦଯାତ୍ରା କରି ବହୁବର୍ଷର ସଶସ୍ତ୍ର ଆନ୍ଦୋଳନକୁ ଲୋକଙ୍କର ଏକ ଗଣତାନ୍ତ୍ରିକ ରାଜନୀତିକ ଧାରାରେ ପରିଣତ କଲା ଏବଂ ନିର୍ବାଚନରେ ଭାଗ ନ ନେଇ ଏକ ଲୋକଶକ୍ତିର ପ୍ରବାହ ଭାବେ ଆଗେଇଲା ତାର ସମ୍ୟକ ସୂଚନା ଏଠାରେ ରହିଛି ।

ଜଗତୀକରଣର ଏକ ବିଖ୍ୟାତ ସମୀକ୍ଷକ ୱାଲଡେନ୍ ବେଲୋଙ୍କ ପରିଚୟ ସାଙ୍ଗେ ସାଙ୍ଗେ ବିଶ୍ୱ ସାମାଜିକ ସମାରୋହ ଯୋଉଠି ଜଗତୀକରଣର ସମାଲୋଚକ ସଂଗଠନମାନେ ଏକାଠି ହୁଅନ୍ତି ତା ବିଷୟରେ ବହୁ ତଥ୍ୟ ରହିଛି ।

ଭାରତର ବିକାଶ ପ୍ରକ୍ରିୟାର ଜନବିରୋଧୀ ଚରିତ୍ର ଉପରେ ମୌଳିକ ପ୍ରଶ୍ନ ଉଠାଇଥିବା ନର୍ମଦା ବଚାଓ ଆନ୍ଦୋଳନ ଏବଂ କେରଳର ପ୍ଲାଚିମାଡା ଆନ୍ଦୋଳନ

ଯାହା କୋକାକୋଲା କାରଖାନାକୁ ବନ୍ଦ କରିବା ପାଇଁ ଉଦ୍ୟମରତ ରହିଛି ତାର ନେତାମାନଙ୍କ ବିଷୟରେ ଆଲୋଚନା ରହିଛି ।

ଓଡ଼ିଶାରେ ଖଣିଭିତ୍ତିକ ଶିଳ୍ପ ପ୍ରତିଷ୍ଠା ବିରୋଧରେ କେତେଗୁଡ଼ିଏ ଉପାଦେୟ ଲେଖା ରହିଛି । ବର୍ତ୍ତମାନ ଓଡ଼ିଶା ସରକାର ଗୋଟିଏ ପରେ ଗୋଟିଏ ଇସ୍ପାତ କାରଖାନା ବସାଇବା ପାଇଁ ନିଷ୍ପତ୍ତି ନେଇଛନ୍ତି । କଳିଙ୍ଗନଗରଠାରେ ଜାନୁଆରୀ ୨୦୦୬ରେ ଯୋଉ ଗଣହତ୍ୟା ହେଲା ତାର ତୀବ୍ର ପ୍ରତିବାଦ ସାରା ଭାରତରେ ପ୍ରକାଶ ପାଇଛି । ଲେଖକ ଦେଖାଇଛନ୍ତି ଯେ ଭୂସଂସ୍କାର ଉପରେ ସରକାରଙ୍କର ଧ୍ୟାନ ନାହିଁ । ସ୍ୱାସ୍ଥ୍ୟ ସମସ୍ୟା ସାଧାରଣ ଲୋକଙ୍କ ପାଇଁ ଦିନକୁ ଦିନ ଅଧିକ ଦୁରୂହ ହୋଇ ପଡିଛି ।

ଏ ପ୍ରବନ୍ଧ ଗୁଡିକ ଓଡ଼ିଶାରେ ବିକଳ୍ପ ବିକାଶ ଚର୍ଚ୍ଚା ପାଇଁ ଖୁବ ଉପାଦେୟ ହେବ ଏଥିରେ ମୋର ସନ୍ଦେହ ନାହିଁ । ଲେଖକଙ୍କର ଯୋଉ ସବୁ ମତାମତ ଏଥିରେ ପ୍ରକାଶ ପାଇଛି ସେଥିରେ ମୁଁ ସମ୍ପୂର୍ଣ୍ଣଭାବେ ଏକମତ ହେବା ସମ୍ଭବ ନୁହେଁ । ଉଦାହରଣ ସ୍ୱରୂପ ବର୍ତ୍ତମାନର କାଶୀପୁର ଆନ୍ଦୋଳନ ଯାହାର ନେତୃତ୍ୱ ପ୍ରାକୃତିକ ସମ୍ପଦ ସୁରକ୍ଷା ପରିଷଦ ନେଇଛି ଏବଂ ଓଡ଼ିଶାର ସର୍ବୋଦୟ ଏବଂ ସମାଜବାଦୀ ଆନ୍ଦୋଳନର ସମର୍ଥନ ତା ସହିତ ସକ୍ରୀୟ ଭାବେ ରହିଛି ତାହା ଉପରେ ଲେଖକ ଅରାଜକତାର ଆକ୍ଷେପ କରିଥିବା ଦୁର୍ଭାଗ୍ୟଜନକ । ଏମିତି କେତେକ ଯାଗାରେ ଆମର ମତ ପାର୍ଥକ୍ୟ ରହିବା ଅସ୍ୱାଭାବିକ ନୁହେଁ । କିନ୍ତୁ ଅଚ୍ୟୁତ ଦାସଙ୍କୁ ମୁଁ ଓଡ଼ିଶାର ତଥା ଭାରତବର୍ଷର ଏକ ପ୍ରଗତିଶୀଳ ଜନବାଦୀ ସ୍ୱେଚ୍ଛାସେବୀ ବୋଲି ମାନେ । ଅଗ୍ରଗାମୀ କାଶୀପୁର ଆଦିବାସୀଙ୍କ ଜମି ଅଧିକାର ପାଇଁ ଯୋଉସବୁ ଉଦ୍ୟମ କରିଛି ଏବଂ ଆଦିବାସୀ ମହିଳାଙ୍କ ସଶକ୍ତିକରଣ ପାଇଁ ଯୋଉସବୁ ପଦକ୍ଷେପ ନେଇଛି ବିଶେଷକରି 'ଶିକ୍ଷା ସନ୍ଧାନ' ସଂସ୍ଥା ଜରିଆରେ ଓଡ଼ିଶାରେ ପ୍ରାଥମିକ ଶିକ୍ଷା ଉପରେ ଯେଉଁ ଚର୍ଚ୍ଚାକୁ ଆଗେଇ ନେଇଛି ମୁଁ ସେଥିପାଇଁ ଅଗ୍ରଗାମୀ ପରିବାରକୁ ବଧାଇ ଦେଉଛି । ଓଡ଼ିଶାର ଲୋକ ଚେତନାର ବିକାଶକୁ ଏନଜିଓ ଗୋଷ୍ଠୀ ଅପଭ୍ରଷ୍ଟ କରିଛନ୍ତି କିନ୍ତୁ ଅଗ୍ରଗାମୀ ମୋଟାମୋଟି ଏକ ଅଲଗା ପ୍ରକାର ସଂଗଠନ ଯାହା ଅନେକଥର ରାଜସତ୍ତାର ଆକ୍ରୋଶର ସମ୍ମୁଖୀନ ହୋଇଛି ।

*ଜଗତୀକରଣ ଓ ସଂଗ୍ରାମରତ ମଣିଷ*

ଏ ବହି ଜରିଆରେ ଅଚ୍ୟୁତ ଦାସ ଓଡ଼ିଶାର ଲୋକ ଚେତନାକୁ ବିଶ୍ୱବ୍ୟାପୀ ଚାଲିଥିବା ପୁଞ୍ଜିବାଦୀ ଜଗତୀକରଣ ବିରୋଧୀ ଆନ୍ଦୋଳନ ସହିତ ଯୋଡିବା ପାଇଁ ଏକ ଆୟୁଧ ଯୋଗାଇଛନ୍ତି । ସେଥିପାଇଁ ତାଙ୍କୁ ସାଧୁବାଦ ଜଣାଉଛି ।

୭ ଫେବ୍ରୁଆରୀ ୨୦୦୭

ମନୋରଞ୍ଜନ ମହାନ୍ତି
ପ୍ରାକ୍ତନ ଅଧ୍ୟାପକ, ଦିଲ୍ଲୀ ବିଶ୍ୱବିଦ୍ୟାଳୟ
ସଭାପତି, ଓଡ଼ିଶା ଗବେଷଣାଚକ୍ର, ୩୪ଲକ୍ଷ୍ମୀ ବିହାର
ଭୁବନେଶ୍ୱର-୭୫୧୦୦୫

# ବିଷୟ ସୂଚୀ



## ପ୍ରଥମ ପରିଚ୍ଛେଦ (ଜଗତୀକରଣ ଓ ସାଧାରଣ ମଣିଷ)



## ଦ୍ୱିତୀୟ ପରିଚ୍ଛେଦ (ଜଗତୀକରଣ ଓ ସଂଗ୍ରାମରତ ମଣିଷ)

## ତୃତୀୟ ପରିଚ୍ଛେଦ (ଜଗତୀକରଣ ଓ ବିକଳ୍ପର ସନ୍ଧାନେ)

# ଜଗତୀକରଣ ବିରୋଧରେ ସଂଗ୍ରାମରତ ମଣିଷ

## (୧)

୨୦୦୩ ମସିହା ଜାନୁୟାରୀ ମାସରେ ବ୍ରାଜିଲ୍‌ର ପୋର୍ଟୋ ଆଲଗ୍ରେଠାରେ ହେଉଥିବା ବିଶ୍ୱ ସାମାଜିକ ସମ୍ମିଳନୀରେ ଭାଗ ନେବାକୁ ମୋତେ ସୁଯୋଗ ମିଳିଥିଲା ଓ ଜଗତୀକରଣ ବିରୋଧରେ ସାରା ଦୁନିଆର ବିଭିନ୍ନ କୋଣରୁ ଆସିଥିବା ଆଗ୍ରହୀ ବ୍ୟକ୍ତିବିଶେଷଙ୍କୁ ଦେଖିବାକୁ ଓ ଶୁଣିବାକୁ ମିଳିଥିଲା । ବୌଦ୍ଧିକ ସ୍ତରରେ ହେଉଥିବା ଆଲୋଚନାକୁ ଆମେରିକାର ପ୍ରଖ୍ୟାତ ବୁଦ୍ଧିଜୀବୀ ଅଧ୍ୟାପକ ନୋଆମ୍ ଚମ୍‌ସ୍କି ଓ ଭାରତର ପ୍ରସିଦ୍ଧ ଲେଖିକା ଅରୁନ୍ଧତୀ ରାୟ ନେତୃତ୍ୱ ଦେଇଥିଲେ । ସେମାନଙ୍କର ଓଜସ୍ୱିନୀ ଭାଷଣ, ବିଷୟବସ୍ତୁ ଉପରେ ସ୍ପଷ୍ଟତା ଓ ତୀକ୍ଷ୍ଣ ସମାଲୋଚନା ହଜାର ହଜାର ଶ୍ରୋତାଙ୍କୁ ପ୍ରଭାବିତ କରିଥିଲା । ନୋଆମ୍ ଚମ୍‌ସ୍କି କଥା ଛଳରେ ସେଦିନ କହିଥିଲେ ଯେ ଜଗତୀକରଣ ବିରୋଧରେ ଯେଉଁ ସଂଗ୍ରାମ ଚାଲିଛି ସେଥିରେ ସଫଳତା ପ୍ରଦର୍ଶନ କରିଛି ବ୍ରାଜିଲ୍‌ର ଭୂମିହୀନମାନଙ୍କ ସଂଘର୍ଷ ଯାହା ଏମ୍.ଏସ୍.ଟି. ନାମରେ ସବୁଆଡେ ପରିଚିତ । ଏମ୍.ଏସ୍.ଟି. କଥା ମୁଁ ଅନେକଙ୍କଠାରୁ ହଜାର ହଜାର ଏକର ଜମି ମୁକ୍ତି କରି ବାଣ୍ଟିଥିବା ଏ ସଂଗଠନ କୁଆଡେ ବିଖ୍ୟାତ ଶିକ୍ଷାବିତ୍ ପାଉଲୋ ଫ୍ରେୟାରୀଙ୍କ ଚିନ୍ତାଧାରାକୁ ନେଇ ଗଢି ଉଠିଛି ଓ ଶିକ୍ଷାର ବିପ୍ଳବାତ୍ମକ ପରିବର୍ତ୍ତନ କରିପାରିଛି । ମୁଁ ଖୁବ୍ ଉତ୍ତେଜିତ ହୋଇଥିଲି ଏ ସଂଗଠନର ଇତିହାସ ପଢ଼ିଲା ପରେ ।

ତା ପରିଦିନ କେତେ ଜଣ ବ୍ରାଜିଲ୍‌ର ତରୁଣ ବନ୍ଧୁଙ୍କ ସହ ଏମ୍.ଏସ୍.ଟି. ଦେଖିବାକୁ ଯାଇଥିଲି । ମନରେ ଆଶା ଥିଲା ସେମାନଙ୍କର ଜମି ପାଇଁ ଯେଉଁ ସଫଳ ଆନ୍ଦୋଳନ ଚାଲିଛି ଓ ସେମାନଙ୍କର ପ୍ରାକୃତିକ ସମ୍ବଳ ଉପରେ ଅଧିକାର ପ୍ରାପ୍ତି ଦ୍ୱାରା ଯେଉଁ ରାଜନୈତିକ ଅଭିଜ୍ଞତା ହାସଲ ହୋଇଛି ତାହାକୁ ଅଧ୍ୟୟନ କରିବା । ଏମ୍.ଏସ୍.ଟି. ଗୋଟିଏ ସ୍ୱେଚ୍ଛାସେବୀ ସଂଗଠନ ନୁହେଁ ବା ଗୋଟିଏ ରାଜନୈତିକ ଦଳ ନୁହେଁ । ଏହା ଏକ ସକ୍ରିୟ ଓ ବଳିଷ୍ଠ ଆନ୍ଦୋଳନ ଯାହା ଗତ ୧୯୮୫ ମସିହାଠାରୁ ବ୍ରାଜିଲ୍‌ର

ଇତିହାସ ସୃଷ୍ଟି କରିଛି । ସେଦିନ ଏକ ଅପୂର୍ବ ମୁହୂର୍ତ୍ତ ଥିଲା । ସାରା ପୃଥିବୀର ସବୁ ଦେଶରୁ ଛୋଟ ଛୋଟ ଚାଷୀ ଏବଂ ସେମାନଙ୍କର ମୁଖିଆମାନେ ଆସିଥିଲେ, ଏକତ୍ରିତ ହୋଇଥିଲେ ଓ ପ୍ରତ୍ୟେକ ଦେଶର କୃଷକ ଆନ୍ଦୋଳନର ଅନୁଭୂତିକୁ ବର୍ଣ୍ଣନା କରିଥିଲେ ଗୀତ, ନାଟକ ଓ କାହାଣୀ ମାଧ୍ୟମରେ । ସମସ୍ତଙ୍କର ଅପେକ୍ଷା ଥିଲା ନୋଆମ୍ ଚମ୍‌ସ୍କିଙ୍କର ଭାଷଣ ଶୁଣିବା ପାଇଁ । ଅପରାହ୍ନରେ ଚମ୍‌ସ୍କି ଆସିଥିଲେ ଓ ତାଙ୍କର ଅଦ୍ୱିତୀୟ ଶୈଳୀରେ ଭାଷଣ ଦେଇ କୃଷକ ସଂଗଠନମାନଙ୍କୁ ପୁରସ୍କୃତ କରିଥିଲେ । ଏମ୍.ଏସ୍.ଟି. କୁ ଆସିଥିବା ଦେଶ ବିଦେଶର ହଜାର ହଜାର ଚାଷୀଙ୍କୁ ବ୍ରାଜିଲ୍‌ର ସେ ଅଞ୍ଚଳ ବିହନର ଏକ ଥଳୀ ଉପହାର ଦେଇଥିଲେ ଯାହା ଜୈବ ବିବିଧତାର ପ୍ରତୀକ । ମନ୍‌ସାଣ୍ଟୋ, କାର୍‌ଗିଲ୍ ବା ଡୁପଣ୍ଟ ଭଳି ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଦାଉରୁ ରକ୍ଷା ପାଇବା ତଥା ଏ ସ୍ଥାନୀୟ ବିହନର ଯଥାର୍ଥତା ଉପଲବ୍ଧି କରିବା ପାଇଁ ଏ କୃଷକ ସମ୍ମିଳନୀର ଆୟୋଜନ ହୋଇଥିଲା । ବହୁରାଷ୍ଟ୍ରୀୟ କମ୍ପାନୀମାନେ ବିହନ ଉପରେ ନିୟନ୍ତ୍ରଣ ରଖି ସାରା ବିଶ୍ୱର କୃଷି ଓ କୃଷକଙ୍କୁ ଦୁର୍ବଳ କରିବାର ଯେଉଁ ଅପଚେଷ୍ଟା ଚଳାଇଛନ୍ତି ତାହା ବିରୋଧରେ ଏହା ଥିଲା ଏକ ବଳିଷ୍ଠ ପ୍ରଦର୍ଶନ ।

ଏମ୍.ଏସ୍.ଟି.ରେ ମୋତେ ଆଉ ଦୁଇଦିନ ରହିବାକୁ ଅନୁମତି ମିଳିଥିଲା । ସେଠାରେ ବାହାରର ପରିଦର୍ଶକମାନଙ୍କର ଆଗମନ ଉପରେ ଅନେକ କଟକଣା । ମୋର ବନ୍ଧୁ ମୁଁ ଆସିବାର କିଛି ଦିନ ପୂର୍ବରୁ ମୋର ପରିଚୟ ସେମାନଙ୍କୁ ଦେଇ କଥାବର୍ତ୍ତା କରିଥିଲେ । ଅଗ୍ରଗାମୀର ୱେବ୍‌ସାଇଟ୍ ଦେଖିବାକୁ ମଧ୍ୟ ସେମାନଙ୍କୁ ଅନୁରୋଧ କରାଯାଇଥିଲା । ମୁଁ ଯେ ପୁଞ୍ଜିପତିମାନଙ୍କ ଦଲାଲ୍ ନୁହେଁ ଏହା ପ୍ରମାଣିତ କରିବାକୁ ପଡିଥିଲା ମୋର ବନ୍ଧୁଙ୍କୁ । ଅଗ୍ରଗାମୀ ଗରିବ ଆଦିବାସୀଙ୍କ ପାଇଁ ଯେଉଁଭଳି କାମ କରି ଆସିଛି ଓ ବହୁରାଷ୍ଟ୍ରୀୟ କମ୍ପାନୀଙ୍କର ଆକ୍ରମଣର ଶିକାର ହୋଇଛି ତାହା ଜାଣିବା ପରେ ମୋତେ ଏମ୍.ଏସ୍.ଟି.ରେ ଅକ୍ଳେଶରେ ଗ୍ରହଣ କରାଯାଇଥିଲା ।

ବ୍ରାଜିଲ୍‌ର ଭାଷା ପର୍ତ୍ତୁଗୀଜ୍ । ଗାଁ ଗହଳିରେ ଇଂରାଜୀ ପ୍ରାୟ କେହି ବୁଝନ୍ତି ନାହିଁ । ମୁଁ କେମିତି ଏମ୍.ଏସ୍.ଟି.ର କର୍ମୀ ଓ ନେତୃତ୍ୱ ସହ ଯୋଗାଯୋଗ କରିବି, ସେ ନେଇ ବଡ ସମସ୍ୟା ଉପୁଜିଥିଲା । ଫ୍ରାନ୍‌ସରୁ ଜଣେ ସଂଗ୍ରାମୀ ଏମ୍.ଏସ୍.ଟି.କୁ ମୋ ଆଗରୁ ଅତିଥି ଭାବେ ଆସିଥିଲେ ଓ ମୋତେ ଇଂରାଜୀରେ ସବୁକଥା ବୁଝାଇବାକୁ ଆଗ୍ରହ ପ୍ରକାଶ କରିଥିଲେ । ଆମେସବୁ ଏକାଠି ରହୁଥିଲୁ ହଷ୍ଟେଲ୍‌ରେ । ଖାଇବାକୁ

ମିଳିଥିଲା ବ୍ରାଜିଲ୍‌ର ଉପନିବେଶ ଶାସନ ବେଳେ ଜମିଦାରମନାଙ୍କ ଦ୍ୱାରା ମୂଲିଆମାନଙ୍କୁ ଦିଆଯାଉଥିବା ପାଉଁରୁଟି, କଳା ବିନ୍‌ସ ଓ ଘୁଷୁରୀର ଅନ୍ତଃନାଳୀର ସୁପ୍ । କାରଣ ସେତେବେଳେ ଘୁଷୁରୀ ଭଲ ଅଂଶ ଜମି ମାଲିକମାନେ ଉପଭୋଗ କରୁଥିଲେ ଏବଂ ବଳି ପଡୁଥିବା ଓ ଖାଇବା ଅନୁପଯୁକ୍ତ ଅଂଶକୁ ମୂଲିଆମାନଙ୍କୁ ଦେଉଥିଲେ । ପରିଦର୍ଶକମାନେ ମୂଲିଆ ଓ ଜମିଦାରମାନଙ୍କ ଭିତରେ ଯେଉଁ ବୈଷମ୍ୟ ଥିଲା ତାହା ଅନୁଭବ କରିବାକୁ ଏମ୍.ଏସ୍.ଟି. ଏହା ଆୟୋଜନ କରିଥାଏ ବେଳେବେଳେ । ଖାଇବାବେଳେ ଅନ୍ୟ ବନ୍ଧୁମାନଙ୍କ ସହ ଏଇକଥା ବହୁ ସମୟ ଧରି ଆଲୋଚନା ଚାଲିଥିଲା ।

ଭୂସଂସ୍କାର ଓ ଏମ୍.ଏସ୍.ଟି.ର ଆନ୍ଦୋଳନାତ୍ମକ ପନ୍ଥା କଥା ଆଲୋଚନା ହେଲା । ବ୍ରାଜିଲ୍‌ରେ କତିପୟ ଜମି ମାଲିକ ଅଛନ୍ତି ଯେଉଁମାନେ ବେଲ୍‌ଜିୟମ୍ ବା ଡେନ୍‌ମାର୍କ ଭଳି ଦେଶର ଆୟତନ ସମକକ୍ଷ ଜମିକୁ ଅକ୍ତିଆର କରି ରଖିଛନ୍ତି । ସେମାନଙ୍କ ଅଧୀନରେ ଶହ ଶହ ମୂଲିଆ କାମ କରନ୍ତି । ଜମିଦାରମାନେ ଆଧୁନିକ ଜ୍ଞାନକୌଶଳ ଦ୍ୱାରା ବ୍ୟାବସାୟିକ କୃଷି କରିଥାଆନ୍ତି । ଟ୍ରାକ୍ଟର ଚାଷ କରେ, ବିମାନ ବା ହେଲିକେପ୍ଟରରୁ ମଞ୍ଜି ବୁଣାଯାଏ ଅଥବା କୀଟନାଶକ ଔଷଧ ସିଞ୍ଚନ କରାଯାଏ । ଆବଶ୍ୟକ ପଡିଲେ ମୂଲିଆମାନଙ୍କୁ ଫସଲ ଅମଳ ଏବଂ ଶସ୍ୟକୁ ବସ୍ତାରେ ଭର୍ତ୍ତି କରିବା ଆଦି କାର୍ଯ୍ୟ କରିବାକୁ ପଡିଥାଏ । ସେମାନଙ୍କୁ ଖୁବ୍ କମ୍ ମଜୁରୀ ମିଳେ । ସେମାନଙ୍କ ପାଇଁ କଲୋନୀ ତିଆରି ହୋଇଥାଏ । ମୂଲିଆର ପୁଅଝିଅ ପଢିବାକୁ ଯାଏ ନାହିଁ, ମୂଲିଆ ହୁଏ । ପୁରୁଷ ପୁରୁଷ ଧରି ଏକଥା ଚାଲି ଆସିଥାଏ । ମୂଲିଆଟି କଳା ହେଉ କି ଗୋରା ହେଉ ଫରକ୍ ପଡେ ନାହିଁ । ଅନ୍ୟାୟ ଅତ୍ୟାଚାର କାହାଣୀ ଶୁଣିଲେ ଲୋମ ଟାଙ୍କୁରି ଉଠେ ।

ବ୍ରାଜିଲ୍‌ରେ ଜମିଦାର/ବଡ଼ ଚାଷୀକୁ 'ଫାର୍ମର୍' କୁହାଯାଏ । ଜମିହୀନ କୃଷିଜୀବୀ ବା ଛୋଟ ଚାଷୀକୁ 'ପିଜାଣ୍ଟ୍' କୁହାଯାଏ । ଏସବୁ ଏ ଅଞ୍ଚଳର ସାମାଜିକ, ଆର୍ଥିକ ଓ ରାଜନୈତିକ ପୃଷ୍ଠଭୂମିକୁ ନେଇ ଶ୍ରେଣୀ ବିଭାଗ କରାଯାଇଥାଏ । ଯେଉଁ ଛୋଟ ଚାଷୀମାନେ ଜମିଦାର କବଳରୁ ଜମି ଛଡାଇ ଆଣନ୍ତି ଓ ମାଲିକାନା ଜାହିର କରନ୍ତି ସେମାନେ ଏହାକୁ ଏକ ନିର୍ଦ୍ଦିଷ୍ଟ ପଦ୍ଧତିରେ ହିଁ କରିଥାଆନ୍ତି, ଏକ ବଳିଷ୍ଠ ଆଦର୍ଶବାଦ ଦ୍ୱାରା ଅନୁପ୍ରାଣିତ ହୋଇଥାଆନ୍ତି । ବ୍ରାଜିଲ୍‌ର ବିଶିଷ୍ଟ ଶିକ୍ଷାବିତ୍ ଶ୍ରୀଯୁକ୍ତ

ପାଉଲୋ ଫ୍ରେୟାରୀଙ୍କ ଶିକ୍ଷା ଓ କର୍ମ ଚିନ୍ତନ ପଦ୍ଧତିକୁ ହିଁ ଅନୁସରଣ କରିଥାଆନ୍ତି ଓ ଢାଞ୍ଚାଗତ ପରିବର୍ତ୍ତନରେ ବିଶ୍ୱାସ କରନ୍ତି । ଗତ କୋଡ଼ିଏ ବର୍ଷ ଧରି ସେମାନେ ସଂଗଠନକୁ ଶକ୍ତିଶାଳୀ କରିପାରିଛନ୍ତି । ଏବେ ଏହାର ସଭ୍ୟ ସଂଖ୍ୟା ତିନି ଲକ୍ଷ୍ୟରୁ ଊର୍ଦ୍ଧ୍ୱ । ମୁକୁଳିଥିବା ଜମି ତିନି କୋଟି ହେକ୍ଟରରୁ ଅନେକ ବେଶି । ଲଗାତର ସଂଗ୍ରାମ ଏଠି ଚାଲିଛି । ବ୍ରାଜିଲ୍‌ରେ ଏକଛତ୍ରବାଦୀ ଶାସନ ଚାଲିଥିଲା ବହୁଦିନ ଧରି । ଏମ୍.ଏସ୍.ଟି.କୁ ଏଥିପାଇଁ ବହୁତ କିଛି ଲଢ଼ିବାକୁ ପଡିଥିଲା । ପ୍ରଶାସନ ଓ ସାମରିକ ବାହିନୀଙ୍କ ଅତ୍ୟାଚାରରେ ଅନେକ ସଂଗ୍ରାମୀ ପ୍ରାଣ ଦେଇଛନ୍ତି । ଅବଶ୍ୟ ଏବେ ବ୍ରାଜିଲ୍‌ର ରାଷ୍ଟ୍ରପତି ଅଛନ୍ତି ଶ୍ରୀଯୁକ୍ତ ଲୁଲା ଯେ କି ବାମପନ୍ଥୀ ଆନ୍ଦୋଳନରୁ ଅଭିଜ୍ଞତା ହାସଲ କରିଛନ୍ତି । ଏମ୍.ଏସ୍.ଟି. ଶ୍ରୀଯୁକ୍ତ ଲୁଲାଙ୍କ ପ୍ରତ୍ୟକ୍ଷ ସାହାଯ୍ୟ ଓ ସହାନୁଭୂତି ପାଇଁ ଆହୁରି ଜମି ମୁକୁଳେଇବାର ଯୋଜନା ରଖିଛନ୍ତି । ଶ୍ରୀଯୁକ୍ତ ଲୁଲାଙ୍କୁ ରାଷ୍ଟ୍ରପତି ନିର୍ବାଚିତ କରିବାରେ ଏମ୍.ଏସ୍.ଟି.ର ଯଥେଷ୍ଟ ଅବଦାନ ମଧ୍ୟ ରହିଛି । ଏବେକାର ପ୍ରଶାସନ ଏମ୍.ଏସ୍.ଟି.କୁ ପ୍ରକାରାନ୍ତରେ ସାହାଯ୍ୟ ମଧ୍ୟ କରୁଛି ।

ଏମ୍.ଏସ୍.ଟି.ରେ ସଂଗ୍ରାମୀମାନେ ପ୍ରଥମେ ଏକତ୍ରିତ ହୁଅନ୍ତି ଏକ କ୍ୟାମ୍ପରେ ଓ ସ୍ଥାନ ନିର୍ଦ୍ଧାରିତ ହେଲେ ତାକୁ ଦଖଲ କରି ସେଠାକୁ ଉଠିଯାଆନ୍ତି । ବେଳେବେଳେ ପୋଲିସ୍ ବା ସାମରିକ ବାହିନୀ ସହିତ ଲଢ଼େଇ ହୁଏ । ଜମି ମାଲିକଙ୍କ ଗୁଣ୍ଡାମାନଙ୍କୁ ମଧ୍ୟ ମୁକାବିଲା କରିବାକୁ ପଡେ । ରକ୍ତପାତ ହେଲେ ବି କେହି ପଛଘୁଞ୍ଚା ଦିଅନ୍ତି ନାହିଁ । ଅବଶେଷରେ ଏମ୍.ଏସ୍.ଟି.ର ବିଜୟ ହୁଏ । ସେଠାରେ ଜମି ବଣ୍ଟା ହୁଏ ଓ ନୂଆ କରି ଆରମ୍ଭ ହୁଏ ବସବାସ । ତାହାକୁ 'ସେଟଲ୍‌ମେଣ୍ଟ୍' କହନ୍ତି । ଗୋଟିଏ କ୍ୟାମ୍ପରୁ ସେଟଲ୍‌ମେଣ୍ଟ୍‌ରେ ରହି ସ୍ଥିରତା ଆସିବା ପର୍ଯ୍ୟନ୍ତ କେତେ ମାସ ବା ବର୍ଷ ଲାଗିଯାଏ । ବସବାସ ଆରମ୍ଭ ହେଲା ମାତ୍ରେ କୃଷିଜୀବୀମାନେ ଆରମ୍ଭ କରି ଦିଅନ୍ତି କ୍ଷେତବାଡି ଓ ପଶୁପାଳନ ଆଦି । ସ୍ଥାନୀୟ ବଜାରକୁ ମଧ୍ୟ ଆଖି ଆଗରେ ରଖିଥାଅନ୍ତି । ବଡ଼ ବଡ଼ ଜମି ମାଲିକମାନେ ଲାଭଜନକ ଏବଂ ବ୍ୟବସାୟଭିତ୍ତିକ ଚାଷ କରୁଥିବା ବେଳେ ଏମାନେ ଖାଇବା ପାଇଁ ଚାଷ କରନ୍ତି ଓ ଜୈବିକ କୃଷି ଉପରେ ପ୍ରାଧାନ୍ୟ ଦେଇଥାନ୍ତି । ପରସ୍ପରକୁ ସାହାଯ୍ୟ କରିବା ନିୟମ ହୋଇଥାଏ ସେଟଲ୍‌ମେଣ୍ଟ୍‌ରେ ଏହାକୁ କେହି ଭାଙ୍ଗିପାରିବେ ନାହିଁ । ମାଟି ମେସାନଙ୍କର ମାଆ ଓ ବିହନ ସେମାନଙ୍କର ବାପା- ଏକଥା ପ୍ରମାଣିତ କରିଥାଆନ୍ତି । ଯେଉଁ ଜମି ଅନାବାଦୀ ରହିଥାଏ ତାକୁ ଶସ୍ୟ ଶ୍ୟାମଳା

କରିଦିଅନ୍ତି । ଟ୍ରାକ୍ଟର୍ ବଦଳରେ ହଳ ବଳଦରେ ଚାଷ କରାଯାଏ । ନୂଆ କରି ଜମିର ମାଲିକ ହୋଇଥିବା ପରିବାରଟି ପରିବର୍ତ୍ତନ ଓ ବିକାଶର ମୂଳଦୁଆ ପକାଏ । ମୋର ବନ୍ଧୁମାନେ ମୋତେ କେତୋଟି 'କ୍ୟାମ୍ପ' ଓ 'ସେଟଲ୍‌ମେଣ୍ଟ୍' ଦେଖିବାକୁ ପ୍ରସ୍ତାବ ଦେଇଥିଲେ ଏବଂ ସମୟର ସ୍ୱଳ୍ପତା ହେତୁ ମୁଁ ଗୋଟିଏ କ୍ୟାମ୍ପ ଓ ଦୁଇଟି ସେଟଲ୍‌ମେଣ୍ଟ୍ ଦେଖିଥିଲି ।

ଏମ୍.ଏସ୍.ଟି.ର କାର୍ଯ୍ୟାଳୟ, କ୍ୟାମ୍ପ ବା ସେଟଲ୍‌ମେଣ୍ଟ୍‌କୁ ଗଲେ ପ୍ରଥମେ ଆଖିରେ ପଡେ ଏକ ସ୍ଲୋଗାନ୍ 'ଜମି ଦଖଲ କର, ପ୍ରତିରୋଧ କର, ଉତ୍ପାଦନ କର' । ବଡ ବଡ ଅକ୍ଷରରେ ବ୍ୟାନର୍, ପୋଷ୍ଟର୍‌ମାନ ଲେଖାଯାଇଥାଏ । କାନ୍ଥବାଡରେ ମଧ୍ୟ ଲାଲ୍ ଅକ୍ଷରରେ ଏ ଉଦ୍ଧୃତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥାଏ ।

(୨)

ଏମ୍.ଏସ୍.ଟି.କୁ ବୁଝିବାକୁ ହେଲେ ତାହାର ଇତିହାସ ଓ ଗଢ଼ି ଉଠିଥିବା ଆନ୍ଦୋଳନର ନେତୃତ୍ୱ ତଥା ବଳିଷ୍ଠ ଆଦର୍ଶବାଦକୁ ଜାଣିବାକୁ ପଡିବ ଏବଂ ଅଧ୍ୟୟନ କରିବାକୁ ହେବ । ଆହୁରି ମଧ୍ୟ 'କ୍ୟାମ୍ପ' ଓ 'ସେଟଲ୍‌ମେଣ୍ଟ୍'ରେ କିଛି ଦିନ ରହିବାକୁ ହେବ । ପୃଥିବୀର ବିଭିନ୍ନ ଦେଶରେ ଚାଲିଥିବା କୃଷକ ଆନ୍ଦୋଳନରୁ ଆସୁଥିବା ବନ୍ଧୁମାନଙ୍କୁ ବିଭିନ୍ନ ପର୍ଯ୍ୟାୟରେ ଏହା କରିବାକୁ ପଡିଥାଏ । ମୋତେ ମଧ୍ୟ ଏହା କରିବାକୁ ପଡିଥିଲା । ପୋର୍ଟୋ ଆଲେଗ୍ରେଠାରେ ସେମାନଙ୍କ କାର୍ଯ୍ୟାଳୟରେ ମୋତେ କିଛି ସମୟ ପ୍ରଥମେ କାଟିବାକୁ ପଡିଥିଲା ଓ ସେଠାକାର ନେତୃବର୍ଗଙ୍କ ସହ ମୋତେ ଭାବର ଆଦାନ ପ୍ରଦାନ କରିବାକୁ ପଡିଥିଲା । ସେମାନଙ୍କ କାର୍ଯ୍ୟକ୍ରମ ସମ୍ବନ୍ଧରେ ଇଂରାଜୀ ଭାଷାରେ ବିଶେଷ କିଛି ପ୍ରକାଶନ ନାହିଁ । 'ଲ୍ୟାଣ୍ଡଲେସ୍ ପିପୁଲ୍ ବିଲ୍‌ଡିଙ୍ଗ୍ ଏ ସୋସିଆଲ୍ ମୁଭ୍‌ମେଣ୍ଟ୍' ନାମରେ ବହିଟିଏ କେବଳ ମୋତେ ପଢିବାକୁ ମିଳିଥିଲା । ମୁଖ୍ୟ କାର୍ଯ୍ୟାଳୟରେ ଥିବା ନେତୃବୃନ୍ଦଙ୍କ ସହ କଥାବାର୍ତ୍ତା କରିବାକୁ କମ୍ ସମୟ ମଧ୍ୟ ମିଳିଥିଲା ସେମାନଙ୍କ କାର୍ଯ୍ୟବ୍ୟସ୍ତତା ହେତୁ । ଭାରତର କୃଷକ ଆନ୍ଦୋଳନ/ଭୂମି ଆନ୍ଦୋଳନ ସହ ସେମାନଙ୍କର ସମ୍ପର୍କ ଯଥେଷ୍ଟ ନୁହେଁ ବୋଲି ସେମାନେ ମତାମତ ଦେଇଥିଲେ । ମୁଁ କେଉଁ ଭୂମି ଆନ୍ଦୋଳନ ସହ ସଂପୃକ୍ତ ବୋଲି ସେମାନେ ମୋତେ ପଚାରିଥିଲେ ।

ମୋର କିଛି ଆଦର୍ଶବାଦ ଅଛି କି ନାହିଁ ସେମାନେ ସ୍ୱଚ୍ଛ ସମୟରେ ମଧ୍ୟ ପରୀକ୍ଷା କରିଥିଲେ । ସେଠାରେ ନିଷ୍ପତ୍ତି ହୋଇଥିଲା ଯେ ମୁଁ ସେଟଲମେଣ୍ଟ୍‌କୁ ନିଜେ ଯିବି କିନ୍ତୁ କ୍ୟାମ୍ପ୍‌କୁ ମୋତେ ଜଣେ କେହି ସାଙ୍ଗରେ ନେଇ ବୁଲେଇ ଆଣିବେ ।

କ୍ୟାମ୍ପ୍‌ରୁ ଆରମ୍ଭ ହୁଏ ସବୁକଥା:- ପ୍ରଥମେ ସେଟଲ୍‌ମେଣ୍ଟ କଥା ନ ଲେଖି ମୁଁ କ୍ୟାମ୍ପ କଥା ଲେଖିବି । କାରଣ ଭୂ-ଆନ୍ଦୋଳନ ମୂଳଦୁଆ ସେଇଠି ପଡିଥାଏ । କୃଷିଜୀବୀ ଓ ଜମିହୀନମାନେ ଶହ ଶହ ସଂଖ୍ୟାରେ ଗୋଟିଏ ଜାଗାରେ ଏକତ୍ରିତ ହୋଇ ଅସ୍ଥାୟୀ କ୍ୟାମ୍ପ୍ ତିଆରି କରନ୍ତି । ଏମ୍.ଏସ୍.ଟି. କର୍ମକର୍ତ୍ତାମାନେ ଏମାନଙ୍କୁ କିଛି ଦିନ ଧରି ଯୋଗାଯୋଗ କରିଥାଆନ୍ତି ବିଭିନ୍ନ ସ୍ଥାନରେ ଏବଂ ଆଦର୍ଶବାଦରେ ଅନୁପ୍ରାଣିତ କରିଥାଆନ୍ତି । ଏହି କର୍ମୀମାନେ ଏକ ଯାଗା ଠିକ୍ କରନ୍ତି । ସେଠାକାର ଜମି, ପାଣି ଓ ବାତାବରଣକୁ ଅନୁଧ୍ୟାନ କରନ୍ତି । ଯାଗାଟି ସବୁଦିନ ପାଇଁ ଦଖଲ କରିବାକୁ ହେବ ବା କିଛିଦିନ ସେଠାରେ ରହି ଅନ୍ୟତ୍ର ଯିବାକୁ ପଡିବ। ତାହା ମଧ୍ୟ ଅଟକଳ କରିବାକୁ ପଡିଥାଏ । ଜମି ସମସ୍ତଙ୍କ ପାଇଁ ଯଥେଷ୍ଟ କି ନାହିଁ ତାହା ମଧ୍ୟ ହିସାବ କରିବାକୁ ପଡେ । ଏସବୁ ନିଷ୍ପତ୍ତି ହେଲେ ଜମିହୀନମାନେ ପୂର୍ବ ନିର୍ଦ୍ଧାରିତ ଯୋଜନା ଅନୁସାରେ ଏକାଠି ଠୁଳ ହୋଇ ଓ ଅସ୍ତ୍ରଶସ୍ତ୍ର ଧରି ଜମି ଦଖଲ କରିବାକୁ ଆସିଥାଆନ୍ତି । ଏହା ଖୁବ୍ ଗୋପନୀୟ ରଖାଯାଇଥାଏ, ଯେପରି ସରକାର ବା ଜମି ମାଲିକମାନେ ଜାଣିପାରିବେ ନାହିଁ । ଏହା ବେଳେବେଳେ ନାଟକୀୟ ଢଙ୍ଗରେ ମଧ୍ୟ ହୋଇଥାଏ । ସରକାରଙ୍କ ମିଲିଟାରୀ ତଥା ଜମି ମାଲିକଙ୍କ ଘରୋଇ ସେନାଙ୍କ ସହ ଲଢିବାକୁ ପଡିଥାଏ । ରକ୍ତାକ୍ତ ସଂଗ୍ରାମ ମଧ୍ୟ ହୁଏ । କ୍ୟାମ୍ପ୍‌କୁ ଆସୁଥିବା ଲୋକଙ୍କ ସଂଖ୍ୟା କେତେ ହଜାର ହୋଇଥିବାରୁ ପ୍ରତିରୋଧ କରିବା ସମ୍ଭବପର ହୋଇଥାଏ । ଜମିଟି ଯଦି ଅନାବାଦୀ ଥାଏ ବା ଉତ୍ପାଦନକ୍ଷମ ନ ହୋଇଥାଏ, ତେବେ ଅପର ପକ୍ଷରେ ପ୍ରତିରୋଧ କମ୍ ହୁଏ । କିନ୍ତୁ ଯଦି ଜମିଟି ଉତ୍ପାଦକ୍ଷମ ହୋଇଥାଏ, ତେବେ ସରକାର ବା ଜମି ମାଲିକମାନେ ତୀବ୍ର ପ୍ରତିରୋଧ କରିଥାନ୍ତି । ସରକାର ଜମିହୀନମାନଙ୍କୁ ବିକଳ୍ପ ଜମି ଯୋଗାଇବାକୁ ଚାପ ପକାଇ ଭଲ ଜମି ଦଖଲ କରିନେବାକୁ ଏମ୍.ଏସ୍.ଟି. ଅଗ୍ରାଧିକାର ଦେଇଥାଏ ।

ଏଠାରେ ଏହା ଉଲ୍ଲେଖନୀୟ ଯେ ଜମି ଦଖଲ ବେଳେ ପୁରୁଷ, ମହିଳା ଓ ସାରା ପରିବାର ଭାଗ ନେଇ ସମସ୍ତଙ୍କର ସାହସ ଓ ଏକତା ପ୍ରଦର୍ଶନ କରିଥାଆନ୍ତି । ସଂଖ୍ୟା ପ୍ରଦର୍ଶନ ଏକ ଗୁରୁତ୍ୱପୂର୍ଣ୍ଣ ରଣନୀତି । କ୍ୟାମ୍ପ୍‌କୁ ଆସୁଥିବା ବ୍ୟକ୍ତିମାନଙ୍କର

ସଂଖ୍ୟା ଯେତିକି ଅଧିକ ହେବ, ସେମାନଙ୍କ ଶକ୍ତି ସେତିକି ବଢିବ ଏବଂ ଜମିମାଲିକଙ୍କୁ ପ୍ରତିରୋଧ ଓ ମୁକାବିଲା କରାଯାଇପାରିବ । ଯେଉଁମାନେ ବିଶ୍ୱାସଭାଜନ ନୁହନ୍ତି ବା ଏ ଲଢେଇରେ ସକ୍ରିୟ ଭୂମିକା ଗ୍ରହଣ କରି ପାରିବେ ନାହିଁ ସେମାନଙ୍କୁ ପ୍ରାଥମିକ ସ୍ତରରେ ସାମିଲ କରାଯାଏ ନାହିଁ । କ୍ୟାମ୍ପକୁ ଆସୁଥିବା ବ୍ୟକ୍ତିମାନେ ପ୍ରଥମ କେତେ ଦିନ ଯେମିତି ସ୍ୱାବଲମ୍ବୀ ହୋଇ ରହିବେ ସେଥିପାଇଁ ସାଙ୍ଗରେ ଆଣିଥାଆନ୍ତି ରହିବା ପାଇଁ ତମ୍ବୁ, ଖାଦ୍ୟ ଓ ଯାନବାହନ । ଏକ ସମୟରେ ଏକାଠି ମାର୍ଚ୍ଚ କରି ଜମି ଦଖଲ କରିବାକୁ ଆସିଥାନ୍ତି । ବେଳେବେଳେ ସେମାନଙ୍କର ସଂଖ୍ୟା ଦଶ ହଜାର ପର୍ଯ୍ୟନ୍ତ ବଢିଥାଏ । କ୍ୟାମ୍ପଟି ଦୃଢ଼ ହୋଇ ସ୍ଥାପିତ ହେଲା ପରେ ସେମାନେ ସରକାରୀ କର୍ମକର୍ତ୍ତାଙ୍କ ସହ କଥାବର୍ତ୍ତା ଆରମ୍ଭ କରନ୍ତି ଓ ଦୀର୍ଘ ସମୟ ଧରି ବୁଝାମଣା ପରେ ସେମାନେ ଜମି ଦଖଲକୁ ଆଇନ୍‌ଗତ ଅଧିକାରରେ ପରିଣତ କରିଥାଆନ୍ତି । ସରକାରୀ କର୍ମଚାରୀ ବା ରାଜନୈତିକ କର୍ମକର୍ତ୍ତାଙ୍କ ମିଛ ପ୍ରତିଶ୍ରୁତିରେ ସେମାନେ ପ୍ରଭାବିତ ହୁଅନ୍ତି ନାହିଁ । ସରକାର ବା ଜମି ମାଲିକଙ୍କଠାରୁ ଜମି କେମିତି ନିଜ ଅକ୍ତିଆରକୁ ଅଣାଯାଇପାରିବ ଏମ.ଏସ.ଟି. ପାଖରେ ଏବେ ଅନେକ ଉଦାହରଣ ଅଛି । ଏପରି ଏକ କ୍ୟାମ୍ପରେ ମୋତେ ଗୋଟାଏ ଦିନ କାଟିବାକୁ ପଡିଥିଲା । ସେଠାରେ ପ୍ରାୟ ଦୁଇ ବର୍ଷ ଧରି ପାଞ୍ଚ ହଜାରରୁ ଉର୍ଦ୍ଧ୍ୱ ଲୋକ ରହିଛନ୍ତି । ସେମାନେ ସ୍ଥାୟୀ ଭାବରେ ଉଠିବାକୁ ଏପର୍ଯ୍ୟନ୍ତ ସ୍ଥାନ ନିର୍ଦ୍ଧାରଣ ହୋଇପାରିନାହିଁ । ଲୁଲା ସରକାରଙ୍କ ତରଫରୁ ପିଇବା ପାଣି ଓ ପିଲାଙ୍କ ପାଇଁ ଦୁଗ୍ଧ ଆଦି ଦିଆଯାଉଛି । ଏମ୍.ଏସ୍.ଟି. ତରଫରୁ ଶିକ୍ଷା ଓ ସ୍ୱାସ୍ଥ୍ୟ ପାଇଁ ବ୍ୟବସ୍ଥା କରାଯାଇଛି । ବୟସ୍କ ବ୍ୟକ୍ତିମାନେ ପାଖ ସହରକୁ କାମ ପାଇଁ ଯାଉଛନ୍ତି ବା ଜାତୀୟ ରାଜପଥ ଓ ପେଟ୍ରୋଲ୍ ପମ୍ପ କଡେ କଡେ ଛୋଟ ଛୋଟ ଦୋକାନ କରିଛନ୍ତି । ଅସ୍ଥାୟୀ କ୍ୟାମ୍ପ ଖୁବ୍ କର୍ମଚଞ୍ଚଳ ହୋଇପାରିଛି । ପିଲାଙ୍କ ପାଇଁ ଶିକ୍ଷାକେନ୍ଦ୍ର, ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ କେନ୍ଦ୍ର, ଗୀର୍ଜା ଓ ପାର୍କ ମଧ୍ୟ ଅସ୍ଥାୟୀ ଭାବେ ଗଢାଯାଇଛି । ଗୋଟିଏ ଗୋଟିଏ ଅସ୍ଥାୟୀ ଘରେ ଆଠ ଦଶ ଜଣଙ୍କୁ ଶୋଇବାକୁ ପଡୁଥିବାରୁ ଓ ମଦ୍ୟପମାନଙ୍କ ସଂଖ୍ୟା ବଢୁଥିବାରୁ ବେଳେ ବେଳେ ବିଭିନ୍ନ ପାରିବାରିକ ଓ ମାନସିକ ସମସ୍ୟା ମଧ୍ୟ ଦେଖାଦେଉଛି । ପାରିବାରିକ ହିଂସାର ଉଦାହରଣ ମଧ୍ୟ ସେଠାରେ ଅଛି । କିନ୍ତୁ, କ୍ୟାମ୍ପଟି ଏକ ବୃହତ୍ତ ପରିବାର ଓ ବଳିଷ୍ଠ ନେତୃତ୍ୱର ଝଲକ ଦେଖାଇଛି । ଏମ୍.ଏସ୍.ଟି.ର କର୍ମୀମାନେ ଲଗାତର ସେଠାକୁ ଆସୁଛନ୍ତି ଓ ଆବଶ୍ୟକ ପରାମର୍ଶ ମଧ୍ୟ ଦେଇଛନ୍ତି । କ୍ୟାମ୍ପର ପୁରୁଣା ଓ ପ୍ରଭାବଶାଳୀ ନେତୃବର୍ଗ ମୋତେ

ଆଦରର ସହ ପାଛୋଟି ନେଇଥିଲେ । ଜଣେ ସ୍ୱଚ୍ଛଳ ପରିବାର ମୋର ତଥା ମୋ ସହ ଯାଇଥିବା ବନ୍ଧୁମାନଙ୍କ ପାଇଁ ମଧ୍ୟାହ୍ନ ଭୋଜନ ମଧ୍ୟ ଆୟୋଜନ କରିଥିଲେ । ମୁଁ ସେମାନଙ୍କର ଇତିହାସ ଓ ଭବିଷ୍ୟତର ଯୋଜନା ବିଷୟରେ ଅନେକ ପ୍ରଶ୍ନ କରିଥିଲେ । ସେମାନେ ଶ୍ରମିକ ହୋଇଥିବାରୁ ସେମାନଙ୍କ ସଂଘର୍ଷର ଉଦାହରଣ ଶୁଣିଥିଲି । ବ୍ରାଜିଲ୍‌ର ପ୍ରେସିଡେଣ୍ଟ ଲୁଲାଙ୍କର ବ୍ୟକ୍ତିତ୍ୱ ଓ ନୀତି ବିଷୟରେ ମଧ୍ୟ ଅନେକ ଆଲୋଚନା ହୋଇଥିଲା । ପିଲାମାନଙ୍କ ପୋଷାହାର ଓ ଶିକ୍ଷା ଉପରେ କିପରି ପ୍ରାଧାନ୍ୟ ଦିଆଯାଉଛି ଓ କ୍ୟାମ୍ପର ପ୍ରତ୍ୟେକ ଶିଶୁ କିପରି ସର୍ବନିମ୍ନ ସୁବିଧା ପାଉଛନ୍ତି ତାହା ମଧ୍ୟ ବର୍ଣ୍ଣନା କରାଯାଇଥିଲା । ପାଖରେ ଜାତୀୟ ରାଜପଥ ଥିବାରୁ କ୍ୟାମ୍ପ ପ୍ରତି କେତେକ ବିପଦ ରହିଆସିଛି ଓ ତାହାର ମୁକାବିଲା ସେମାନେ କିପରି କରୁଛନ୍ତି ମୁଁ ଜାଣି ପାରିଥିଲି । କ୍ୟାମ୍ପ ଜୀବନ ଅସ୍ଥାୟୀ ସତ, କିନ୍ତୁ ବିଭିନ୍ନ ଇଲାକାରୁ ଆସିଥିବା ଶ୍ରମଜୀବୀ ଓ କୃଷିଜୀବୀମାନେ ନୂଆ ଜୀବନ ଆରମ୍ଭ କରିବାର ବାସ୍ତବ ରୂପାୟନ କରିଛନ୍ତି ବୋଲି ମୋର ହୃଦ୍‌ବୋଧ ହୋଇଥିଲା । ସେଦିନ ଏମ୍.ଏସ୍.ଟି.ର ବନ୍ଧୁମାନଙ୍କୁ କ୍ୟାମ୍ପର ସଫଳତା ନେଇ ମୁଁ ଅନେକ ପ୍ରଶ୍ନ କରିଥିଲି । ଅହିଂସା ନୀତି ଓ ବାର୍ତ୍ତାଳାପ ଜରିଆରେ ସରକାର ବା ଜମି ମାଲିକମାନଙ୍କଠାରୁ ଜମି କିପରି ଅଣାଯାଇପାରିବ ତାହା ସେମାନଙ୍କର ଲକ୍ଷ୍ୟ । ଏଥିପାଇଁ କଠୋର ପରିଶ୍ରମ, ଧୈର୍ଯ୍ୟ ଓ ସାହସ ଲୋଡା ବୋଲି ସେମାନେ କହୁଥିଲେ । କ୍ୟାମ୍ପ ସ୍ଥାପିତ ହେଲା ଦିନଠାରୁ ଏମ୍.ଏସ୍.ଟି. ଆରମ୍ଭ କରି ଦିଏ ସାଙ୍ଗଠନିକ କାର୍ଯ୍ୟକ୍ରମ । ବିଭିନ୍ନ ଅଞ୍ଚଳରୁ ଓ ବିଭିନ୍ନ ସ୍ରୋତରୁ ଆସିଥିବା ପରିବାର ସବୁ କ୍ୟାମ୍ପରେ ସଂହତି ସ୍ଥାପନ କରନ୍ତି । ମନ ମିଳୁଥିଲେ କେତୋଟି ପରିବାର ଛୋଟ ଛୋଟ ଦଳ ଗଠନ କରନ୍ତି । ଯେତେବେଳେ କ୍ୟାମ୍ପ ଭାଙ୍ଗେ ସମସ୍ତେ ସେଟଲ୍‌ମେଣ୍ଟ୍‌କୁ ଉଠିଯାଆନ୍ତି । ତଥାପି ଏହି ଦଳ ନିଜର କର୍ତ୍ତବ୍ୟ ଓ ଭାବ ଅକ୍ଷୁର୍ଣ୍ଣ ରଖିଥାନ୍ତି । ଏହି ଛୋଟ ଛୋଟ ଦଳ ଏମ୍.ଏସ୍.ଟି.ର ଏକକ ଭାବରେ ଭବିଷ୍ୟତରେ ଗଣାଯାଆନ୍ତି ଓ ସଙ୍ଗଠନର ଦୃଢ଼ତା ପ୍ରତିପାଦିତ କରିଥାଆନ୍ତି । ପାଉଲୋ ଫ୍ରେୟାରୀଙ୍କ ଶିକ୍ଷା ପଦ୍ଧତି ମାଧ୍ୟମରେ ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ସାମୂହିକ କାର୍ଯ୍ୟ ପାଇଁ ଆଗଭର ହୁଅନ୍ତି । କ୍ୟାମ୍ପ ପାଇଁ ଆବଶ୍ୟକ ହେଉଥିବା ଖାଦ୍ୟ, ସ୍ୱାସ୍ଥ୍ୟ ସୁବିଧା, ଶିକ୍ଷା, ଧର୍ମ, ଅର୍ଥ ବ୍ୟବସ୍ଥା, ଖେଳକୁଦ ଆଦି ଏହି ସାମୂହିକ ଉଦ୍ୟମରେ ଯୋଗାଡ ହୁଏ । କ୍ୟାମ୍ପର ହିତ ପାଇଁ ସମସ୍ତଙ୍କୁ କିଛି ନା କିଛି ଦାୟିତ୍ୱ ନେବାକୁ ପଡେ । ମହିଳା ସ୍ୱେଚ୍ଛାସେବୀମାନେ ବେଶି ଦାୟିତ୍ୱ ସମ୍ପନ୍ନ

ବୋଲି ପ୍ରମାଣିତ କରନ୍ତି । କ୍ୟାମ୍ପରେ ଶିକ୍ଷା ଓ ବହିର୍ଚ୍ଚେତନାକୁ ଗୁରୁତ୍ୱ ଦିଆଯାଏ ଓ ଦେଶ ବିଦେଶରେ ପରିସ୍ଥିତିକୁ ପର୍ଯ୍ୟାଲୋଚନାର ପରିସରକୁ ନେଇ ଗୁରୁତ୍ୱ ଦିଆଯାଏ । କ୍ୟାମ୍ପରେ ଗଣତାନ୍ତ୍ରିକ ମୂଲ୍ୟବୋଧ ଓ ସହଭାଗିତା ଉପରେ ପ୍ରାଧାନ୍ୟ ଦିଆଯାଏ । କ୍ୟାମ୍ପରେ ସମସ୍ତଙ୍କର ଅଧିକାର ସମାନ ଥିବାରୁ ପ୍ରତ୍ୟେକ ବାସିନ୍ଦାଙ୍କୁ ଅନ୍ୟଠାରୁ ଶୁଣିବା, ଶିଖିବା ଓ ସମ୍ମାନ ଦେବା ତଥା ନିଜର ସ୍ତ୍ରୀ, ପୁଅ ଆଦିଙ୍କ ମତକୁ ଉଚିତ ସ୍ଥାନ ଦେବା ଆଦି ଗୁଣ ଅର୍ଜନ କରିବାକୁ ପଡେ । କ୍ୟାମ୍ପକୁ ଅନେକ ସମବେଦନାପନ୍ନ ବ୍ୟକ୍ତି ଓ ଅନୁଷ୍ଠାନ ସହ ପୁରୁଣା ସେଟଲ୍‌ମେଣ୍ଟରୁ ଆର୍ଥିକ ସାହାଯ୍ୟ ମିଳେ । କ୍ୟାମ୍ପର ବାସିନ୍ଦାମାନେ ନିର୍ଦ୍ଧାରଣ କରନ୍ତି । ସେଟଲ୍‌ମେଣ୍ଟକୁ ଉଠିଯିବା ପର୍ଯ୍ୟନ୍ତ କ୍ୟାମ୍ପର ବାସିନ୍ଦାଙ୍କୁ ମଧ୍ୟ ବେଳେବେଳେ ବିକ୍ଷୋଭ ପ୍ରଦର୍ଶନ କରିବାକୁ ପଡେ । ଅଧିକ ଗଣ ଅନଶନରେ ଭାଗ ନେବାକୁ ପଡେ । ବେଳେବେଳେ ସହର ବା ରାଜଧାନୀ ମଧ୍ୟ ଭାଗକୁ ଯାଇ ଶକ୍ତି ପ୍ରଦର୍ଶନ କରିବାକୁ ପଡିଥାଏ ।

(୩)

କ୍ୟାମ୍ପର ବାସିନ୍ଦାମାନେ ଉଠିଯାଆନ୍ତି ସେଟଲ୍‌ମେଣ୍ଟକୁ ଯେତେବେଳେ ଜମି ସମ୍ପୂର୍ଣ୍ଣ ଦଖଲ ହୁଏ ଓ ଆଇନଗତ ମାଲିକାନା ହାତକୁ ଆସିଯାଏ । କୃଷିଜୀବୀ ଓ ଜମିହୀନମାନେ ଏକଥା ହାସଲ କରିସାରିଲାପରେ ସେଟଲ୍‌ମେଣ୍ଟର ପରିଚାଳନା ଭାର ହାତକୁ ନିଅନ୍ତି ଓ ବିକାଶ ପରିବର୍ତ୍ତନର ମୂଳଦୁଆ ପକାନ୍ତି । ସେଟଲମେଣ୍ଟର ରୂପରେଖ ସେଠାରେ ରହୁଥିବା ବାସିନ୍ଦାମାନଙ୍କୁ ନେଇ ତିଆରି ହୁଏ । କେଉଁଠି ୨୦-୩୦ ପରିବାର ଥାଆନ୍ତି ତ କେଉଁଠି ୬୦୦-୭୦୦ ପରିବାର ବସତି ସ୍ଥାପନ କରିଥାଆନ୍ତି । ଏସବୁ ନିର୍ଭର କରେ ଜମିର ଉର୍ବରତା ଉପରେ । ନିକଟସ୍ଥ ବଜାର ବିପଣୀର ଚାହିଦା ଉପରେ ଅଥବା ଜୀବନ ଜୀବିକାର ମାର୍ଗ ଉପରେ ।

ପ୍ରଥମେ ଯେଉଁ ସେଟଲ୍‌ମେଣ୍ଟକୁ ଯାଇଥିଲି ସେଠାରେ କୋଡିଏଟି ପରିବାର ବସତି ସ୍ଥାପନ କରିଥିଲେ । ଜଣେ ପୌଢ଼ ମୁଖ୍ୟତଃ ନେତୃତ୍ୱ ନେଇ ଏହାକୁ ପ୍ରଥମେ ଆରମ୍ଭ କରିଥିଲେ । ଏମ୍. ଏସ୍. ଟିରେ ଯୋଗଦାନ ପୂର୍ବରୁ ସେ ଏକ ଧନୀ ପରିବାରରେ ଥିଲେ ଚାକରାଣୀ । ସେ ମୁକ୍ତ ହୋଇଛନ୍ତି । ଅନୁର୍ବର ଇଲାକା ଓ ବାଲୁକାମୟ ମାଟି ।

ପ୍ରଥମ ଥର ପାଇଁ ମହିଳା ଚାଷ କରିଛନ୍ତି । ଶସ୍ୟ ଠାଏ ଠାଏ ଉଠିଛି । ଫଳଗଛ କେତୋଟି ଲଗାଇଛନ୍ତି ବାଡିରେ । ଏବେ ହଳ ବଳଦ ନାହିଁ । ସ୍ୱାମୀ ଅନେକ ଦିନରୁ ମରିଯାଇଛନ୍ତି । ତିନୋଟି ପିଲାରୁ ଜଣେ ଚାଷ ବାସରେ ସାହାଯ୍ୟ କରୁଛନ୍ତି । ଅନ୍ୟ ଦୁଇଟି ପିଲା ସ୍କୁଲକୁ ଯାଉଛନ୍ତି । ଘୋଡାଗାଡିଟିଏ ଅଛି । ନିଜ ହାତରେ ଚାଷ କାମ କରିବାକୁ ପଡେ । ମହିଳା ଜଣକ କହି ବସିଲେ ତାଙ୍କ ସଂଘର୍ଷର କାହାଣୀ । କେତେ ନିର୍ଯ୍ୟାତନା ସହିବାକୁ ପଡିଛି ତାଙ୍କୁ । ମିଲିଟାରି ଓ ପୋଲିସଙ୍କୁ ମୁକାବିଲା କରିବାକୁ ପଡ଼ିଛି । ପୁରୁଷ ଲୋକଙ୍କର ନିନ୍ଦା ସହିବାକୁ ପଡ଼ିଛି । କିନ୍ତୁ ତାଙ୍କର ବିପ୍ଳବୀମନ ଓ ସଂଘର୍ଷ କରିବାର ସଂକଳ୍ପ ତାକୁ ଆଗେଇ ନେଇଛି ଏମ୍.ଏସ୍.ଟି ଆଡକୁ । ଏବେ ତାଙ୍କରି ନେତୃତ୍ୱରେ ଚାଲିଛି ସେଟଲମେଣ୍ଟଟି । ସ୍କୁଲଟିଏ ପ୍ରତିଷ୍ଠା କରିଛନ୍ତି ଓ ସବୁ ପିଲାପଢ଼ିବାକୁ ଯାଉଛନ୍ତି । ସ୍ନେହ ଓ ସଦିଚ୍ଛା ସମସ୍ତଙ୍କ ଭିତରେ ଭରି ରହିଛି । ବାହାରର ଆକ୍ରମଣ ଓ ଅପବାଦକୁ ପ୍ରତିହତ କରିବାକୁ ହୁଏ ସବୁ ସମୟରେ । ପ୍ରତି ସପ୍ତାହରେ ଥରଟିଏ ସମସ୍ତେ ଏକାଠି ହୁଅନ୍ତି ଓ ପରସ୍ପରର ସୁଖ ଦୁଃଖ ବର୍ଣ୍ଣନା କରନ୍ତି । ପାରସ୍ପରିକ ସହଯୋଗୀତା ବଢିଥାଏ ଏହାଦ୍ୱାରା । ନୂତନ ଚାଷ ଦ୍ୱାରା ସବୁଜମା ସବୁଆଡେ ଭରିଯାଉଛି । ମୁକ୍ତ ବାତାବରଣ ଭିତରେ ବଞ୍ଚି ରହିଛନ୍ତି ଏହି କୃଷିଜୀବୀମାନେ ।

ଦ୍ୱିତୀୟ ସେଟଲ୍‌ମେଣ୍ଟରେ ପ୍ରାୟ ଦୁଇଶହ ପରିବାର । ଜମି ଗୋଟାଏ ଜଳମଗ୍ନ ଅଞ୍ଚଳ । ତାହାକୁ ସେମାନେ ଚାଷ ଉପଯୋଗୀ କରିଛନ୍ତି । ବିଭିନ୍ନ ପରିବାର ବିଭିନ୍ନ ଧନ୍ଦାରେ ବ୍ୟସ୍ତ ଅଛନ୍ତି । କିଏ ଚାଷ କରୁଛି ଓ କିଏ ଗୋପାଳନ କରୁଛି । ପାଖରେ ବଜାର ଅଛି । ଘରେ ତିଆରି ଜିନିଷ ସବୁ ସୁପର ମାର୍କେଟରେ ମିଳୁଥିବା ଜିନିଷଠାରୁ ବେଶି ସହଜରେ ଓ ସୁଲଭରେ ବିକ୍ରି ହୋଇଯାଉଛି । ସେମାନେ ଏପର୍ଯ୍ୟନ୍ତ ହତୋତ୍ସାହ ହୋଇନାହାଁନ୍ତି । ସେଟଲମେଣ୍ଟରେ ଡାକ୍ତର, ପଶୁ ଡାକ୍ତର, ଶିକ୍ଷକ ନିଯୁକ୍ତି ହୋଇଛନ୍ତି । ସ୍କୁଲ ଘର ତିଆରି ହୋଇଛି । ରାସ୍ତା ତିଆରି ହୋଇଛି । ପାନୀୟ ଜଳର ବ୍ୟବସ୍ଥା କରାଯାଇଛି ଓ ପାଇପ ସମସ୍ତଙ୍କ ଘରକୁ ଯାଇଛି । ବିଜୁଳି ଘରକୁ ଆସି ନାହିଁ । କେତେଜଣ ସୌର ଶକ୍ତିକୁ ଲାଇଟ୍ ଓ ରେଫ୍ରିଜରେଟର ବ୍ୟବସ୍ଥା କରିଛନ୍ତି । ଅବଶ୍ୟ ସରକାରଙ୍କ ଅନୁଦାନ ମିଳିଛି ଏଥିପାଇଁ । ସ୍ୱଚ୍ଛଳତା କ୍ରମଶଃ ବଢୁଛି ବୋଲି ସ୍ପଷ୍ଟ ବୁଝି ହେଉଛି ।

ଆମେ ଅତିଥି ହିସାବରେ ଆସିଥିବାରୁ ସେଟଲ୍‌ମେଣ୍ଟରେ ଏକ ସମାବେଶରେ ଆୟୋଜନ କରାଯାଇଥିଲା । ମୁଁ ତାଙ୍କୁ ସେମାନଙ୍କର ଭବିଷ୍ୟତ ଯୋଜନା ବିଷୟରେ ଅନେକ ପ୍ରଶ୍ନ କରିଥିଲି । ସେମାନେ ପ୍ରେସିଡେଣ୍ଟ ଲୁଲାଙ୍କ ଆଡକୁ ଆଶାୟୀ ହୋଇ ରହିଥିବା କଥା ଜଣା ପଡିଥିଲା । ଆଗରୁ ଥିବା ଏକଛତ୍ରବାଦୀ ଶାସନ ସେମାନଙ୍କୁ ବହୁ ସମୟରେ ଅଡୁଆରେ ପକାଉ ଥିଲା । ଏବେ ତାହାର ପରିସମାପ୍ତି ଘଟିଛି । ସେମାନେ ନିର୍ଭରଶୀଳ ହୋଇପାରିଛନ୍ତି । ଏବେ ବଜାରର ଅର୍ଥନୀତି ସେମାନଙ୍କୁ ପ୍ରଭାବିତ କରିନାହିଁ । ପରସ୍ପର ଭିତର ବିକାକିଣା ଲାଗି ରହିଛି । ଯିଏ ଦୁଗ୍ଧ ଉତ୍ପାଦନ କରୁଛି ସେ ଅନ୍ୟଠାରୁ କୁକୁଡା ଅଣ୍ଡା ବା ମାଂସ କିଣୁଛି ଦୁଗ୍ଧ ବଦଳରେ । ଶ୍ରମୟ ବିନିମୟ ମଧ ଲଗାତାର ଚାଲିଛି । ନୂଆ ନୂଆ ଘର ତିଆରି ହୋଇଛି ପରସ୍ପରର ସହଯୋଗରେ । ମଧ୍ୟାହ୍ନ ଭୋଜନ ସମୟରେ କୃଷିଜୀବୀମାନଙ୍କର ସ୍ୱପ୍ନକୁ ନେଇ ଅନେକ ଆଲୋଚନା ହେଲା ।

ଜଗତୀକରଣ ପ୍ରଭାବ ବ୍ରାଜିଲର କୃଷି ଏବଂ କୃଷିଜାତ ଦ୍ରବ୍ୟ ଉପରେ କେମିତି ପଡୁଛି ତାହା ଆଲୋଚନା ହୋଇଥିଲା । ଦୁଗ୍ଧ ଲିଟରକୁ ଚାରି ଗୁଣା ଦାମ୍ ଦେଇ କିଣିବାକୁ ପଡୁଛି ବ୍ରାଜିଲ୍‌ବାସୀଙ୍କୁ । କାରଣ ନେସ୍‌ଲେ ନାମକ ବହୁରାଷ୍ଟ୍ରୀୟ କମ୍ପାନୀ ଏବେ ସବୁ ଦୁଗ୍ଧ କିଣୁଛି ଓ ପ୍ରକ୍ରିୟାକରଣ ପରେ ଚାରିଗୁଣା ଦାମ୍‌ରେ ବିକୁଛି ସୁପର ମାର୍କେଟ୍‌ରେ । ବିହନ କଥା ପଡିଥିଲା ମଧ । ଆମର ବନ୍ଧୁମାନେ କୋଡିଏ ପ୍ରକାରର ବିହନ ସେ ଅଞ୍ଚଳରୁ ସଂଗ୍ରହ କରି ବିତରଣ କରୁଥିବା କଥା ମୋ ନିକଟରେ ପ୍ରକାଶ କରିଥିଲେ । ସ୍ଥାନୀୟ ବିହନର ଉପାଦେୟତା ଉପରେ ଅନେକ ଆଲୋଚନା ମତେ ଖୁବ୍ ପ୍ରଭାବିତ କରିଥିଲା ଓ ଏମ୍.ଏସ୍.ଟି. ସାରା ପୃଥିବୀର କୃଷକମାନଙ୍କୁ ଏହି ବିହନର ଥଳି କାହିଁକି ଉପହାର ଦେଇଥିଲା ତାହା ବର୍ତ୍ତମାନ ସ୍ପଷ୍ଟ ବୁଝି ହେଲା । ଗୋଟାଏ ପଟେ ମନ୍‌ସାଣ୍ଟୋ ନାମକୁ କମ୍ପାନୀର ବିହନ ଏବଂ ଅନ୍ୟ ପକ୍ଷରେ ସ୍ଥାନୀୟ ବିହନ । କାହାକୁ ବ୍ୟବହାର କରାଯିବ ସେଥିପାଇଁ ନିଷତ୍ତି ନେବାର ବେଳ ଆସିଛି ।

ସେଟଲ୍‌ମେଣ୍ଟରେ ମୁଖ୍ୟ ଚିନ୍ତାଧାରା ହେଉଛି ସମବାୟ ଓ ସହଯୋଗ ଭାବନା । ଶ୍ରମ କୁହନ୍ତୁ ବା ଉତ୍ପାଦନ କୁହନ୍ତୁ ଏ ସହଯୋଗର ସଙ୍କେତ ସବୁଆଡେ ଲକ୍ଷ୍ୟ କରି ହେଉଛି । ସାମ୍ପ୍ରତିକ ବଜାରର ବିକଳ୍ପ ହେଉଛି ଏହି ସହଭାଗୀତା । ବ୍ୟବସାୟିକ କୃଷିର ବିକଳ୍ପ ହେଉଛି ଜୈବିକ ଚାଷ । କୁଟୀରଶିଳ୍ପ ଗଢ଼ି ଉଠିଛି ବୃହତ

ଶିଳ୍ପର ବିକଳ୍ପ ହିସାବରେ । ସମସ୍ତ ସକ୍ଷମ ପୁରୁଷ ଓ ସ୍ତ୍ରୀ ଏଇ ବିକଳ୍ପ କର୍ମ ଚିନ୍ତାରେ ଭାଗ ନେଉଛନ୍ତି । ଏମ୍.ଏସ୍.ଟି. ଦ୍ୱାରା ଉପସ୍ଥାପିତ ସବୁ ସେଟଲ୍‌ମେଣ୍ଟରେ ଏହା ପ୍ରମାଣିତ ହୋଇସାରିଛି ।

ସେଟଲମେଣ୍ଟ ଗୁଡିକରେ ନିର୍ଦ୍ଦିଷ୍ଟ ବିକାଶଧାରା ରହିଛି ଏବଂ ସାଂଗଠନିକ ଧାରା ସହ ସଂହତି ଓ ସଙ୍ଗମ ରକ୍ଷା କରାଯାଇ ପାରିଛି । ସେଟଲ୍‌ମେଣ୍ଟ ଭିତରେ ଶିକ୍ଷା, ସ୍ୱସ୍ଥ୍ୟ, ବିଭିନ୍ନ ସାମାଜିକ ଓ ଆର୍ଥିକ ସେବା, କୃଷି ସେବା ଆଦି କିପରି ଉପଲବ୍ଧି ହୋଇପାରିବ ସେଥିପାଇଁ ବିଶେଷ ଯତ୍ନ ନିଆଯାଏ । କୃଷି ଉତ୍ପାଦନ ଓ ଶିକ୍ଷା ବ୍ୟବସ୍ଥା ବିଷୟରେ ବିଶେଷ ଆଲୋଚନା କରିବାର ଆବଶ୍ୟକତା ରହିଛି ।

**ସେଟଲ୍‌ମେଣ୍ଟ ଓ କୃଷି ଉତ୍ପାଦନ:** ସେଟଲମେଣ୍ଟକୁ ପ୍ରଥମେ କୃଷି ଉତ୍ପାଦନରେ ସକ୍ଷମ ଓ ଦକ୍ଷ ହେବାକୁ ପଡିଥାଏ । କିପରି ଏହା ସମ୍ଭବ ହୋଇପାରିବ ତାହା ସାମୁହିକ ଯୋଜନା କରାଯାଏ । ଜଳବାୟୁ ନିରୀକ୍ଷଣ କରାଯାଏ । ପାଣି ଯଥେଷ୍ଟ ଭାବେ ମିଳୁଛି କି ନାହିଁ ତାହା ନିଶ୍ଚିତ କରିବାକୁ ପଡେ । ଅନ୍ୟପକ୍ଷରେ କେଉଁ ପରିବାରର କେତେକ ଖାଦ୍ୟ ଆବଶ୍ୟକତା ରହିଛି ତାହା ହିସାବ କରିବାକୁ ହୁଏ । ମୁଖ୍ୟତଃ 'ଖାଦ୍ୟ ଶସ୍ୟ, ଦୁଗ୍ଧ, ମାଂସ, ଅଣ୍ଡା, ଛେନା, ଫଳ ଓ ପନିପରିବା ଆବଶ୍ୟକତାକୁ ତାଲିକା କରାଯାଏ । ବଳିପଡୁଥିବା ଏ ଦ୍ରବ୍ୟଗୁଡିକ ବଜାରରେ କପରି ଠିକ୍ ସେ ବିକ୍ରୟ ହୋଇପାରିବ ଓ ଆୟ ବଢ଼ିଲେ ଅନ୍ୟାନ୍ୟ ଆବଶ୍ୟକୀୟ ଜିନିଷ କିପରି ସହଜରେ କିଣାଯାଇ ପାରିବ ତାହା ମଧ୍ୟ ସଦାସର୍ବଦା ଯୋଜନାର ଅନ୍ତର୍ଭୁକ୍ତ ହୋଇଥାଏ । ସାମୁହିକ ଯୋଜନା ସମବାୟ ସମିତି ଗଠନ ଦ୍ୱାରା କାର୍ଯ୍ୟକାରୀ ହୋଇଥାଏ । କିଏ ଯନ୍ତପାତି ସାହାଯ୍ୟ କରେତ କିଏ ଜିନିଷ ବଜାରକୁ ନେବା ପାଇଁ ସାହାଯ୍ୟ କରେ । ଉଭୟ ପୁରୁଷ ଓ ମହିଳାମାନେ କୃଷି ଉତ୍ପାଦନ ପ୍ରକ୍ରିୟାରେ ବିଭିନ୍ନ ଭୂମିକା ଗ୍ରହଣ କରନ୍ତି । କେହି କେହି ପାଉଁରୁଟି ଆଦି ଖାଦ୍ୟ ପ୍ରକ୍ରିୟାକରଣର ଦାୟିତ୍ୱ ନିଅନ୍ତି । ବିଭିନ୍ନ ବୈଷୟିକ ଜ୍ଞାନ ବ୍ୟକ୍ତିଙ୍କୁ ସେଟଲ୍‌ମେଣ୍ଟରେ ରହିବାକୁ ଉତ୍ସାହିତ କରାଯାଏ । ଏହା ଫଳରେ ବୈଷୟିକ ଜ୍ଞାନ କୌଶଳ ଚାହିଁଲା ମାତ୍ରକେ ସେଟଲ୍‌ମେଣ୍ଟରେ ମିଳିଥାଏ । ଋଣର ଆବଶ୍ୟକତା ସମବାୟ ବ୍ୟାଙ୍କ ଜରିଆରେ ମେଣ୍ଟାଯାଏ । ବିକଳ୍ପ ବୈଷୟିକ ଜ୍ଞାନ ଅପେକ୍ଷାରେ ସମସ୍ତେ ଥାଆନ୍ତି କାରଣ ବହୁରାଷ୍ଟ୍ରିୟ କମ୍ପାନୀମାନଙ୍କ ଦ୍ୱାରା ପ୍ରସାରିତ ବିହନ, ସାର କୀଟନାଶକ ଦ୍ରବ୍ୟ ଓ ଯନ୍ତପାତିର ବ୍ୟାବହାର ପ୍ରାୟତଃ ନିଷେଧ କରାଯାଇଥାଏ । ବିଷ ସଞ୍ଚାର କରୁଥିବା

ତଥାକଥିତ କୃଷିପ୍ରଣାଳୀକୁ ସର୍ବତ୍ର ବିରୋଧ କରାଯାଏ । ପରିବେଶ ଓ ସଂସ୍କୃତିକୁ ଆଧାର କରି ସ୍ଥାନୀୟ ବିହନ ସଂଗ୍ରହ କରାଯାଏ ଓ ତାହା ବ୍ୟାପକ ବ୍ୟବହାର ପାଇଁ ବିଶେଷ ଉଦ୍ୟମ ହୁଏ । ପ୍ରକୃତିଦତ୍ତ ବସ୍ତୁମାନଙ୍କୁ ବ୍ୟବହାର କଲେ ରାସାୟନିକ ଦ୍ରବ୍ୟର ବ୍ୟବହାର କମିଯାଇଥାଏ ।

ସେଟଲ୍‌ମେଣ୍ଟରେ ନିମ୍ନଲିଖିତ ବିଷୟ ପ୍ରତି ଯଥେଷ୍ଟ ଆଗ୍ରହ ସୃଷ୍ଟି କରାଯାଏ । (କ) ଜମି ଓ ପ୍ରକୃତି ପ୍ରତି ପ୍ରେମ ସମ୍ପର୍କ (ଖ) ଉନ୍ନତ କୃଷି ଓ ଜୈବିକ ପଦ୍ଧତି ପ୍ରତି ଅବାରିତ ଆଗ୍ରହ (ଗ) ଆବଶ୍ୟକ ହେଉଥିବା ଖାଦ୍ୟସଶ୍ୟ ଉତ୍ପାଦନ ଓ ଗୋଟିଏ ପ୍ରକାରର କୃଷିର ପରିତ୍ୟାଗ (ଘ) ସ୍ଥାନୀୟ ବୃକ୍ଷ ଓ ଗୁଳ୍ମଲତା ପ୍ରତି ପ୍ରାଧାନ୍ୟ (ଙ) ନଦୀ ଓ ଜଳସ୍ରୋତର ସୁରକ୍ଷା ଓ ଜଳର ଘରୋଇକରଣକୁ ବିରୋଧ । (ଚ) ପ୍ରତି ସେଟ୍‌ଲ୍‌ମେଣ୍ଟରେ ଜୈବିବିବିଧତା ପ୍ରତି ଆଗ୍ରହ ସୃଷ୍ଟି (ଛ) ପ୍ରଦୂଷଣ ନିଯୁକ୍ତ ପରିବେଶ ପାଇଁ ଆବର୍ଜନା ଓ ମଇଳା ନିଷ୍କାସନ (ଜ) ଅନ୍ୟାୟ ଓ ଶୋଷଣ ବିରୋଧରେ ଲଢ଼େଇ (ଝ) ସେଟଲ୍‌ମେଣ୍ଟ ପ୍ରତ୍ୟେକ ପରିବାର ପାଇଁ ଆବଶ୍ୟକୀୟ ଜମି, ଖାଦ୍ୟ, ଶିକ୍ଷା ଓ ସ୍ୱାଧୀନତା ଉପଲବ୍‌ଧି ପାଇଁ ଶୋଷକ ଗୋଷ୍ଠୀ ସହ ସଂଗ୍ରାମ (ଞ) ଅକ୍ତିଆର କରିଥିବା ଜମିର ସୁରକ୍ଷା ଯାହା ଉପରେ କିଣାବିକା ନିଷେଧ । ସମସ୍ତଙ୍କର ସହଭାଗୀତାର ଏ ବିଷୟଗୁଡିକ ସମୟକ୍ରମେ କେତେ ସୁଦୃଢ଼ ହେବାର ଲାଗିଛି ।

ସେଟଲ୍‌ମେଣ୍ଟ ଓ ଶିକ୍ଷା କୃଷି ଉତ୍ପାଦନ ସଙ୍ଗେ ସଙ୍ଗେ ଶିକ୍ଷାକୁ ସେଟଲ୍‌ମେଣ୍ଟରେ ଗୁରୁତ୍ୱ ଦିଆଯାଏ । ଆଗରୁ କୁହାଯାଉଛି ଯେ ପାଉଲେ ଫ୍ରାୟାରୀଙ୍କ ଶିକ୍ଷା ପଦ୍ଧତି ପ୍ରତି ସେଟଲ୍‌ମେଣ୍ଟରେ ପ୍ରୟୋଗ କରାଯାଏ । ଏଥିପାଇଁ ଶିକ୍ଷକମାନଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ଶିକ୍ଷିତ ଓ ଚେତନାଶୀଳ ଶିକ୍ଷକମାନେ ସେଟଲମେଣ୍ଟର ମୂଳସ୍ତମ୍ଭ । ସେମାନେ ଛୋଟ ଛୋଟ ପିଲାମାନଙ୍କୁ ଆଦର୍ଶବାଦରେ ଅନୁପ୍ରାଣିତ କରନ୍ତି । ସ୍କୁଲ ଓ ସେଟଲ୍‌ମେଣ୍ଟ ଜୀବନ ଓତଃପ୍ରୋତ ଭାବେ ଜଡିତ । ପିଲାମାନଙ୍କୁ ଏମ୍.ଏସ୍.ଟି. ଛଡା ନୂତନ ଓ ପୁରାତନ ବିଷୟବସ୍ତୁଗୁଡିକ ଶିକ୍ଷା ଦେବାର ବ୍ୟବସ୍ଥା କରାଯାଏ । ଦୁନିଆରେ ଜ୍ଞାନ ବିଜ୍ଞାନକୁ ଜାଣିଲେ ଯେ ସଚେତନତା ତୀକ୍ଷ୍ଣ ହୁଏ ଏହା ଛାତ୍ରମାନଙ୍କୁ ବୁଝିବାକୁ ହୋଇଥାଏ । ଶିକ୍ଷକମାନଙ୍କୁ ଏଥିପାଇଁ ଯଥେଷ୍ଟ ପ୍ରସ୍ତୁତ ହେବାକୁ ପଡିଥାଏ । ଶିକ୍ଷକମାନଙ୍କୁ ତଥାକଥିତ ଭୂମିକା ପରିହାର କରିବାକୁ ଥିବା କୁହାଯାଇଥାଏ । ଶିକ୍ଷକ ଛାତ୍ର ସମ୍ପର୍କର ପାରମ୍ପରିକ ସଜ୍ଞାକୁ ଭଙ୍ଗ କରାଯାଏ । ନୂତନ ଢ଼ାଞ୍ଚାରେ ଶିକ୍ଷକ ସଚେତକ

ଓ ପ୍ରବର୍ତ୍ତକର ଭୂମିକା ଗ୍ରହଣ କରେ । ଛାତ୍ରଙ୍କୁ ନୂତନ ସମାଜର ନୂତନ ମଣିଷ ଭାବେ ଗଢ଼ିବାରେ ଯେଉଁ ଆହ୍ୱାନ ଅଛି ତାହା ସମ୍ଭବ କରିବା ପାଇଁ କଠୋର ପରିଶ୍ରମ କରିବାକୁ ହୁଏ । ଏମ୍.ଏସ୍.ଟିର ଶିକ୍ଷା ଜ୍ଞାନ ମଧ୍ୟ ଅଦ୍ୱିତୀୟ । ଏହା କେବଳ ସାମାଜିକ ପରିବର୍ତ୍ତନ ପାଇଁ ଉଦ୍ଦିଷ୍ଟ । ଶିକ୍ଷଣ ପଦ୍ଧତିରେ ବୈପ୍ଳବିକ ଚିନ୍ତାଧାରା ଛାତ୍ର ଓ ଶିକ୍ଷକଙ୍କୁ ନୂଆ ସମାଜ ଗଢ଼ିବାକୁ ଅଭିପ୍ରେତ କରା ଶିକ୍ଷାର ବିଭିନ୍ନ ଦିଗ ହେଲା-

• ବାସ୍ତବବାଦ • ଶିକ୍ଷକ ଓ ଛାତ୍ର ସମାଜ ପରିବର୍ତ୍ତନର ସ୍ତମ୍ଭସ୍ତମ୍ଭ • ବୌଦ୍ଧିକ ବିକାଶ • ସଂହତି, ଏକତା, ସାମୂହିକ ପ୍ରଚେଷ୍ଟା ଦାୟିତ୍ୱ ଏସବୁ ଗୁଣର ବିକାଶ • ନୂତନ ମଣିଷ ନିର୍ମାଣ • ଢ଼ାଞ୍ଚା ପରିବର୍ତ୍ତନ ପାଇଁ ସ୍କୁଲ ଏକ ସାମଗ୍ରିକ ସତ୍ତା ଓ ଭିତ୍ତିଭୂମି ।

ସମାଜରେ ସଂଘର୍ଷ କିପରି ଚିରନ୍ତନ ହୋଇପାରିବ ଏଥିପାଇଁ ଏମ୍.ଏସ୍.ଟି.ରେ ଶିକ୍ଷାକୁ ନୂତନ ଭାବେ ପରିକଳ୍ପନା କରାଯାଇଛି । ୧୯୮୫ ମସିହାଠାରୁ ନୂତନ ଶିକ୍ଷା ସେମାନଙ୍କ ସଂଗ୍ରାମର ମେରୁଦଣ୍ଡ ବୋଲି ସାବ୍ୟସ୍ତ ହୋଇଛି ।

## (୪)

ଜଗତୀକରଣକୁ ବିରୋଧ କରି ଏମ୍.ଏସ୍.ଟି. କାହିଁକି ସାରା ଦୁନିଆରେ ପ୍ରସିଦ୍ଧି ଲାଭ କରିଛି ଏହା ବୁଝିବା ଆମ ସମସ୍ତଙ୍କ ପାଇଁ ନିତାନ୍ତ ଆବଶ୍ୟକ । ଜଗତୀକରଣର ସଜ୍ଞା କ'ଣ ? ଅନେକ ବିଶେଷଜ୍ଞ, ଅର୍ଥନୀତି ବିଶାରଦ, ରାଜନୈତିକ ନେତା, ବୁଦ୍ଧିଜୀବୀ, ସ୍ୱେଚ୍ଛାସେବୀ ସଂଗଠନର କର୍ମକର୍ତ୍ତା ଆଦି ବିଭିନ୍ନ କଥା କହିଛନ୍ତି । ଭିନ୍ନ ଅର୍ଥରେ ବ୍ୟାଖ୍ୟା ମଧ୍ୟ କରିଛନ୍ତି । ଐତିହାସିକ ତଥା ସାମ୍ପ୍ରତିକ ଦୃଷ୍ଟିକୋଣରୁ ଏ ଶବ୍ଦର ଅର୍ଥ ବୁଝିବାକୁ ପ୍ରୟାସ ମଧ୍ୟ କରିଛନ୍ତି ।

ଜଗତୀକରଣର ଅସଲ ଅର୍ଥ କ'ଣ ? ଏହା ଏପରି ଏକ ପ୍ରକ୍ରିୟା ଯାହା ଆନ୍ତର୍ଜାତିକ ବାଣିଜ୍ୟ, ପୁଞ୍ଜି, ବୈଷୟିକ ଜ୍ଞାନ ଓ ସୂଚନା ଆଦି ବଳରେ ବଳୀୟାନ ହୋଇ ପୃଥିବୀର ସାମଗ୍ରିକ ବଜାରକୁ ନିୟନ୍ତ୍ରଣ କରିଥାଏ । ଜଗତୀକରଣ ସ୍ଥାନୀୟ ସ୍ଥାନ, କାଳ, ପାତ୍ର, ଦେଶ ପ୍ରଦେଶର ସୀମା ମାନିନଥାଏ । ବାଣିଜ୍ୟ ବେପାର ଦ୍ୱାରା ସାରା ବିଶ୍ୱବାସୀଙ୍କ ଜୀବନ ଜୀବିକାକୁ ନିଜର ନିୟନ୍ତ୍ରଣ ପରିସରଭୁକ୍ତ କରିଥାଏ । ଚାହିଁଲେ ରଖେ, ଚାହିଁଲେ ଭାଙ୍ଗେ । ଅଚାନକ ଏହା ଯେପରି ଏକ ଘୂର୍ଣ୍ଣିବାତ୍ୟା ଭଳି ପ୍ରବାହିତ ହୋଇଛି ଓ ସମସ୍ତଙ୍କୁ ପ୍ରଭାବିତ କରିଛି । ଏହାକୁ ସ୍ୱାଗତ

କରିବା ପାଇଁ ଅନେକ ଲୋକ ବାହାରି ପଡିଛନ୍ତି । କହୁଛନ୍ତି ଯେ ଧରନ୍ତୁ ଆପଣ ଷ୍ଟେସନ୍‌ରେ ଛିଡ଼ା ହୋଇଛନ୍ତି ଓ ଟ୍ରେନ୍ ଛାଡୁଛି । ଆପଣ ଚଢିବେ କି ନାହିଁ ଦ୍ୱନ୍ଦରେ ପଡିଛନ୍ତି । ଆପଣଙ୍କ ନିଷ୍ପତ୍ତି ଉପରେ ଟ୍ରେନ୍ ଛାଡ଼ିବା ନିର୍ଭର କରୁନାହିଁ । ଟ୍ରେନ୍‌ଟି ଛାଡିଦେବା ନିର୍ଦ୍ଧାରିତ ସମୟରେ । ଆପଣ ନ ଚଢିଲେ ଆପଣଙ୍କର କ୍ଷତି । ଆପଣଙ୍କ ପାଖରେ ସମୟ ନାହିଁ । ଟ୍ରେନ୍ କେଉଁ ଗତିରେ ଯିବ, ଦୁର୍ଘଟଣାଗ୍ରସ୍ତ ହେବ କି ନାହିଁ, ଯାତ୍ରା ସୁରକ୍ଷିତ କି ନୁହେଁ, ଏସବୁ ଭାବିବା ପାଇଁ ସୁଯୋଗ ଓ ସମୟ ନାହିଁ । ଜଗତୀକରଣ ପ୍ରକ୍ରିୟା ଠିକ୍ ଟ୍ରେନ୍ ଛାଡିବା ଭଳି, ନୁହେଁ କି ? ନ ହେଲେ କହିଁକି ଜଗତୀକରଣକୁ ଗୋଟାଏ ପରେ ଆଉ ଗୋଟାଏ ଦେଶ, ସାମ୍ରାଜ୍ୟ ଓ ସଭ୍ୟତା ଏପରି ଫୁଲମାଳ ଦେଇ ସ୍ୱାଗତ କରୁଛନ୍ତି ?

କିନ୍ତୁ ଅନେକ ପ୍ରଶ୍ନ କରୁଛନ୍ତି ଏହାର ବୈଧତା ନେଇ, ପ୍ରାସଙ୍ଗିକତା ନେଇ, ମାନବିକତା ନେଇ । ଏହା ଲୋକାଭିମୁଖୀ କି ନୁହେଁ ପଚରାଯାଉଛି । ବିରୋଧାଭାସ ବଢିବାରେ ଲାଗିଛି ଦୁନିଆସାରା । ଧନୀ ଓ ଗରିବଙ୍କ ଭିତରେ ବିଭେଦ ଓ ବିଦ୍ୱେଷ ଯାହା ବଢୁଛି, ଜଗତୀକରଣ ତାହା ଆହୁରି ବ୍ୟାପକ କରିବ ବୋଲି ସମସ୍ତେ ଭାବୁଛନ୍ତି । ସାମାଜିକ ନିରାପତ୍ତା କ୍ଷୁର୍ଣ୍ଣ ହେବ ଓ ବିଶ୍ୱର କ୍ଷୁଧା ଆହୁରି ପ୍ରବଳତର ହେବ, ଏହା ସ୍ପଷ୍ଟ ଦେଖି ହେଉଛି । ବେଶି ପ୍ରଭାବିତ ହେବେ ଗରିବ, ମହିଳା ଓ ଶିଶୁମାନେ । ଲୋକେ ବାସଚ୍ୟୁତ ହେବେ, ବଢିବ ଶିଶୁ ଶ୍ରମିକମାନଙ୍କ ବ୍ୟଥା ।

ଜଗତୀକରଣର ପ୍ରଭାବ ପାଞ୍ଚୋଟି କ୍ଷେତ୍ରରେ ଭୟାନକ ହେବ ବୋଲି ବିଶେଷଜ୍ଞମାନେ ଘୋଷଣା କରିଛନ୍ତି । ଏଗୁଡିକ ହେଲା ଆର୍ଥିକ, ବୈଷୟିକ, ସାଂସ୍କୃତିକ, ରାଜନୈତିକ ଓ ପାରିବେଶିକ । ଗୋଟିଏ ସହ ଅନ୍ୟଟି ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହୋଇଛି । ଗୋଟିଏ ପ୍ରଭାବ ଅନ୍ୟଟିର ପ୍ରଭାବକୁ ଅତି ଉତ୍କଟ କରୁଛି । ପ୍ରଦୂଷଣର ସୀମା ଟପିଯିବ କଳ୍ପନା ଓ ନିୟନ୍ତ୍ରଣର ବାହାରକୁ ।

ଏମ୍.ଏସ୍.ଟି.ର କାର୍ଯ୍ୟପ୍ରଣାଳୀ ଏହି ପାଞ୍ଚୋଟି କ୍ଷେତ୍ରରେ ପ୍ରଭାବ ବିସ୍ତାର କରି ଜଗତୀକରଣ ପ୍ରକ୍ରିୟାକୁ ବିରୋଧ କରିବାକୁ ସକ୍ଷମ ହୋଇଛି । ପ୍ରଥମେ ଯଦି କେହି ସେଟଲ୍‌ମେଣ୍ଟ୍‌କୁ ଦେଖିବାକୁ ଯାଏ ତେବେ ତାଙ୍କୁ ଏମ୍.ଏସ୍.ଟି.ର ଇସ୍ତାହାର ଦେଖିବାକୁ ମିଳେ । ଯାହାକୁ ମୁଁ ବୁଝିବାକୁ ଚେଷ୍ଟା କରିଥିଲି । ସେଥିରେ ନିମ୍ନଲିଖିତ ଉକ୍ତିଗୁଡିକ ଉଲ୍ଲେଖ କରାଯାଇଛି ।

୧) ପ୍ରକୃତିଦତ୍ତ ଜମି ଓ ଜୀବନକୁ ଭଲ ପାଇବା ଓ ସଂରକ୍ଷଣ କରିବା, ୨) ପ୍ରକୃତି ଓ କୃଷି ବିଷୟରେ ଜ୍ଞାନ ବିସ୍ତାର କରିବା, ୩) ଖାଦ୍ୟ ଉତ୍ପାଦନ କରି କ୍ଷୁଧାକୁ

ସମ୍ପୂର୍ଣ୍ଣ ଦୂର କରିବା । ଗୋଟିଏ ପ୍ରକାରର ଚାଷ ନକରି ଜୈବ ବିବିଧତାକୁ ପ୍ରାଧାନ୍ୟ ଦେବା, ୪) ବୃକ୍ଷଲତାଙ୍କୁ ସଂରକ୍ଷଣ କରିବା ଓ ନୂତନ ଜଙ୍ଗଲ ସୃଷ୍ଟି କରିବା, ୫) ନଦୀ, ନାଳ, ଝରଣା, ପୋଖରୀ ଗୁଡ଼ିକର ଯତ୍ନ ନେବା ଓ ଜଳର ଘରୋଇକରଣକୁ ବିରୋଧ କରିବା, ୬) ସେଟଲ୍‌ମେଣ୍ଟକୁ ଗଛ, ଫୁଲ, ଫଳ ଔଷଧୀୟ ଗୁଳ୍ମଲତା ଦ୍ୱାରା ସୁଶୋଭନୀୟ କରିବା, ୭) ବର୍ଜ୍ୟବସ୍ତୁ ଏବଂ ମଇଳାକୁ ଠିକ୍‌ଭାବେ ନିଷ୍କାସନ କରି ପରିବେଶକୁ ପ୍ରଦୂଷଣମୁକ୍ତ କରିବା, ୮) ମଣିଷ, ସମାଜ ଓ ପ୍ରକୃତି ବିରୋଧରେ ହେଉଥିବା ଅନ୍ୟାୟ, ଶୋଷଣ ଓ ଆକ୍ରମଣକୁ ସଂଗଠିତ ହୋଇ ପ୍ରତିହତ କରିବା, ୯) ଜମିମୁକ୍ତି ଆନ୍ଦୋଳନକୁ ସୁଦୃଢ଼ କରିବା ଓ ୧୦) ଜମିମୁକ୍ତି ପରେ ଅଧିକୃତ ଜମିକୁ କଦାପି ବିକ୍ରୟ ନ କରିବା ।

ବନ୍ଧୁଗଣ! ଚାଲନ୍ତୁ ଆମେ ବିଶ୍ଳେଷଣ କରିବା ଜଗତୀକରଣର ପ୍ରଭାବ ଓ ଏମ୍.ଏସ୍.ଟି.ର ସଫଳତମ ବିରୋଧାଭାସ । ଜଗତୀକରଣ ପ୍ରକ୍ରିୟାର ପ୍ରଥମ ପଦକ୍ଷେପ ହେଉଛି ପ୍ରାକୃତିକ ସମ୍ପଦ ଉପରେ ନିୟନ୍ତ୍ରଣ । ଏମ୍.ଏସ୍.ଟି. ବଳିଷ୍ଠ ଓ ବ୍ୟାପକ କାର୍ଯ୍ୟକ୍ରମ ଜରିଆରେ ଜମି, ଜଳ ଓ ଜୈବ ବିବିଧତା ଉପରେ ଯଥେଷ୍ଟ ମାଲିକାନା ଜାହିର କରିଛି ଯାହା ବ୍ରାଜିଲ୍‌ରେ ଜଗତୀକରଣ ଉପରେ ଅଙ୍କୁଶ ଲଗାଇଛି ।

ଜଗତୀକରଣ ପ୍ରକ୍ରିୟାର ଦ୍ୱିତୀୟ ପଦକ୍ଷେପ ହେଉଛି ଖାଦ୍ୟ ନିରାପତ୍ତା ଉପରେ ଆକ୍ରମଣ । ଏମ୍.ଏସ୍.ଟି.ର ପ୍ରତ୍ୟେକ ସଦସ୍ୟ ନିଜ ପାଇଁ ତଥା ନିଜର କୁଟୁମ୍ବ ପାଇଁ ଖାଦ୍ୟ ଉତ୍ପାଦନରେ ଲାଗି ପଡ଼ିଛନ୍ତି । ସେମାନେ ବ୍ୟାବସାୟିକ କୃଷିକୁ ପ୍ରାଧାନ୍ୟ ଦେଉନାହାନ୍ତି, ବରଂ ଯାହା ପେଟ ପାଇଁ ଆବଶ୍ୟକ ତାହାକୁ ଅଗ୍ରାଧିକାର ଦେଇଛନ୍ତି । ଗୋଟାଏ ପ୍ରକାରର ଫସଲ (ମୋନୋକଲ୍‌ଚର)କୁ ବିରୋଧ କରୁଛନ୍ତି । ସମ୍ପୂର୍ଣ୍ଣ କ୍ଷୁଧାମୁକ୍ତିର ଆହ୍ୱାନ ଦେଇଛି ଏମ୍.ଏସ୍.ଟି.ର ସେଟଲ୍‌ମେଣ୍ଟ କୃଷିର ଯୋଜନା କରୁନାହିଁ । ଜମିର ଉର୍ବରତା କିପରି ବଢ଼ିବ ଓ ସେଥିରେ ଜୈବିକ ଓ ପ୍ରାକୃତିକ ଚାଷ କିପରି ସ୍ଥାୟୀ ହେବ ତଥା ରାସାୟନିକ ଖତ, ସାର ଓ ଔଷଧ ବ୍ୟବହାର ବନ୍ଦ ହେବ, ସେଟଲ୍‌ମେଣ୍ଟରେ ଯେଉଁ ମତ ବିନିମୟ ହୋଇଥିଲା, ସେଥିରେ ଏହା ଆଲୋଚନାର ମୁଖ୍ୟ ବିଷୟବସ୍ତୁ ହୋଇଥିଲା । ଜମି ମାଲିକମାନେ ସୋୟାବିନ୍ ଚାଷକୁ ପ୍ରାଧାନ୍ୟ ଦେଉଥିବା ବେଳେ ସେଟଲ୍‌ମେଣ୍ଟ ଚାଷୀମାନେ ମକା, ବିନ୍‌ସ, ଫଳ ଓ ପନିପରିବା ଉପରେ ଗୁରୁତ୍ୱ ଦେଇଛନ୍ତି ।

ଜଗତୀକରଣ ପ୍ରକ୍ରିୟା ଓ ଘରୋଇକରଣ ପ୍ରକ୍ରିୟା ମୁଦ୍ରାର ଦୁଇ ପାର୍ଶ୍ୱ ଭଳି । ଏମ୍.ଏସ୍.ଟି. ଘରୋଇକରଣ ପ୍ରକ୍ରିୟାକୁ ବ୍ରାଜିଲ୍‌ରେ ଘୋର ବିରୋଧ କରୁଛି । ଜଳ ଓ ଜଙ୍ଗଲର ଘରୋଇକରଣ ପାଇଁ ସର୍ବଦା ଉଦ୍ୟମ ହେଉଛି ଯେ ଦେଶରେ ଆମାଜନ୍ ନଦୀର ଅବବାହିକାକୁ ଧ୍ୱସ୍ତବିଧ୍ୱସ୍ତ କରିବା ପାଇଁ ଘରୋଇ କମ୍ପାନୀମାନଙ୍କର ଷଡ଼ଯନ୍ତ୍ର ଆରମ୍ଭ ହୋଇଛି । ଏସବୁକୁ ଆଖି ଆଗରେ ରଖି ଏମ୍.ଏସ୍.ଟି. ତାହାର ଆନ୍ଦୋଳନକୁ ବ୍ୟାପକ ଓ ସୁଦୂର ପ୍ରକାଶୀ କରିଛି । ଏମ୍.ଏସ୍.ଟି.ର ସେଟଲମେଣ୍ଟ କେନ୍ଦ୍ରୀୟ ବ୍ରାଜିଲରେ ନ ରହି ଅନ୍ୟ ପ୍ରଦେଶକୁ ସଂପ୍ରସାରିତ ହୋଇଛି ।

ଜଗତୀକରଣ ପ୍ରକ୍ରିୟା ଦ୍ୱାରା ଶିକ୍ଷା ଓ ସଂସ୍କୃତି ଯେପରି ବିଶ୍ୱବ୍ୟାପୀ ପ୍ରଭାବିତ ହୋଇଛି ତାହାକୁ ଧ୍ୟାନକୁ ନେଇ ଏମ୍.ଏସ୍.ଟି. ଶକ୍ତିଶାଳୀ ପଦକ୍ଷେପ ନେଇଛି । ଆଗରୁ କହି ରଖିଛି ଯେ ବିଶିଷ୍ଟ ଶିକ୍ଷାବିତ୍ ପାଉଲୋ ଫ୍ରେୟାରୀଙ୍କ ଶିକ୍ଷା ପଦ୍ଧତିରେ ଏମ୍.ଏସ୍.ଟି. ସମ୍ପୂର୍ଣ୍ଣ ବିଶ୍ୱାସ କରି ଆସିଛି । ଶିକ୍ଷାଟି କିପରି ଛୋଟ ଚାଷୀ ଓ ଜମିହୀନଙ୍କ ପ୍ରତି ପ୍ରଯୁଜ୍ୟ ହେବ ଏବଂ ବଡ଼ ଚାଷୀଙ୍କୁ ସୁହାଇବ ନାହିଁ ସେ ଦିଗରେ ବିଶେଷ ଉଦ୍ୟମ ହୋଇଛି । ଏ ଶିକ୍ଷା ନବଚେତନାର ଶିକ୍ଷା, ନୂଆ ସଂସ୍କୃତି ଓ ସଭ୍ୟତା ଗଢିବାର ଶିକ୍ଷା । ପାଉଲୋ ଫ୍ରେୟାରୀ 'ମୁକ୍ତି ପାଇଁ ସାଂସ୍କୃତିକ କାର୍ଯ୍ୟକ୍ରମ' ବୋଲି ଗୋଟିଏ ଛୋଟ ପୁସ୍ତିକା ଲେଖିଛନ୍ତି ଏମ୍.ଏସ୍.ଟି. ଅନୁଭୂତିକୁ ନେଇ । ନୂଆ ଗୀତ ଲେଖାଯାଇଛି, ନୂଆ ସାହିତ୍ୟ ସୃଷ୍ଟି ହୋଇଛି, ନୂତନ ଥିଏଟର୍ ଦଳ ଗଢ଼ାଯାଇଛି ।

ସେଦିନ କୃଷକ ଓ ଜମିହୀନଙ୍କ ସମାବେଶରେ ଏହି ନୂତନ ଧରଣର ଗୀତ ଓ ଥିଏଟର୍ ମାଧ୍ୟମରେ ଏମ୍.ଏସ୍.ଟି.ର ଉଦ୍ଦେଶ୍ୟ ଓ ଆଦର୍ଶବାଦକୁ ପ୍ରକାଶ କରାଯାଇଥିଲା । ଛୋଟ ଛୋଟ ପିଲାମାନେ ଇତିହାସର ଅଧ୍ୟାୟ ଗୁଡିକୁ ଅଭିଯନ ମାଧ୍ୟମରେ ଜଣାଇଥିଲେ । ଗଣସଂଗ୍ରାମ ଓ ବିପ୍ଳବର ଆଭାସ ମିଳୁଥିଲା ସବୁଠାରେ । ଅନ୍ୟ ଏକ ନୂତନ ପୃଥିବୀ ଗଢିବା ପାଇଁ ଯେମିତ ମୂଳଦୁଆ ପଡିସାରିଥିଲା । ଯନ୍ତ୍ରର ମଣିଷ ମାଟିର ମଣିଷ ହେବାକୁ ଚାହିଁଛି । ସ୍ୱପ୍ନ ସାର୍ଥକ ହୋଇଛି । ମାଟି ହୋଇଛି ଆମର ମାଆ । ବିହନ ହୋଇଛି ବାପା । ଏମ୍.ଏସ୍.ଟି. ଜଗତୀକରଣ ପ୍ରକ୍ରିୟାକୁ ରାଜନୈତିକ ସ୍ତରରେ ମଧ୍ୟ ସମ୍ପୂର୍ଣ୍ଣ ବିରୋଧ କରି ଆସିଛି । ଆଜି ବାମପନ୍ଥୀ ଶ୍ରୀଯୁକ୍ତ ଲୁଲା ଯଦି ବ୍ରାଜିଲ୍‌ର ରାଷ୍ଟ୍ରପତି ହୋଇଛନ୍ତି ଓ ଏକଛତ୍ରବାଦୀ ଶାସନର ସମାପ୍ତ ହୋଇଛି, ଏହା କେବଳ ଏମ୍.ଏସ୍.ଟିର ସାଧାରଣ ଲୋକଙ୍କ ସହଯୋଗରେ ହିଁ ହୋଇଛି । ବିକଳ୍ପ ଗ୍ରାମ୍ୟ ବିକାଶ ଓ ଲୋକ କାର୍ଯ୍ୟକ୍ରମର ଯେଉଁ ଆହ୍ୱାନ ଦେଇଥିଲା ତାହା ହିଁ ଏକଛତ୍ରବାଦର ପରିସମାପ୍ତି

ପାଇଁ ବାଟ ଖୋଲି ଦେଇଥିଲା । ଏଥିପାଇଁ ଏମ୍.ଏସ୍.ଟି.ର ସଂହତି ସ୍ଥାପିତ ହୋଇଥିଲା ସହରର ଓ୍ୱାର୍କର୍ସ ପାର୍ଟି ସହ । ଶ୍ରୀଯୁକ୍ତ ଲୁଲା ସେହି ଓ୍ୱାର୍କର୍ସ ପାର୍ଟିର ନେତା ଯିଏ ନିର୍ବାଚନରେ ଜୟଯୁକ୍ତ ହୋଇ ବ୍ରାଜିଲ୍‌ର ରାଷ୍ଟ୍ରପତି ହୋଇଛନ୍ତି । ଗାଆଁରେ ଅଛି ଏମ୍.ଏସ୍.ଟି. ଓ ସହରରେ ଅଛି ଓ୍ୱାର୍କର୍ସ ପାର୍ଟି । ଏହାର ସମନ୍ୱୟ ଓ ରାଜନୈତିକ ସମୀକରଣ ଜଗତୀକରଣ ପ୍ରକ୍ରିୟାକୁ ମୃତାହତ କରିପାରିଛି । ବ୍ରାଜିଲ୍‌ର କୋଣ ଅନୁକୋଣରେ ଲାଲ୍‌ଝଣ୍ଡା ଉଡୁଛି, ଲାଲ ଟୋପି ସହ ଟି-ସାର୍ଟ ପିନ୍ଧୁଛନ୍ତି ସମସ୍ତେ । ଝଲସି ଯାଉଛି ଏମ୍.ଏସ୍.ଟି.ର ପ୍ରତୀକ । ଆନ୍ଦୋଳନର ତରଙ୍ଗ ଖେଳି ଯାଉଛି ସବୁଆଡକୁ । ଦକ୍ଷିଣ ଆମେରିକାରେ ଏମ୍.ଏସ୍.ଟି.ର ଅନ୍ୟ ଅନ୍ଦୋଳନ ସହ ସମ୍ପର୍କ ଅଛି, ଯେଉଁମାନେ ଜଗତୀକରଣକୁ ସାମଗ୍ରିକ ଭାବେ ବିରୋଧ କରି ଆସୁଛନ୍ତି । ଏଥିପାଇଁ ମେକ୍ସିକୋ, ବିଲିଭିଆ, ପେରୁ, ଆର୍ଜେଣ୍ଟିନା ଓ ଭେନେଜୁଏଲା ସବୁଠାରେ ଏମ୍.ଏସ୍.ଟି. ଆଦୃତ ହୋଇଛି ଓ ନେତୃତ୍ୱ ମଧ୍ୟ ପ୍ରଦର୍ଶନ କରିଛି । ଏମ୍.ଏସ୍.ଟି.ର ଜମି ଆନ୍ଦୋଳନ ସାକାର ହୋଇପାରିଛି ମେକ୍ସିକୋର ଜାପାଟିଷ୍ଟା ଆନ୍ଦୋଳନରେ । ଆଜି ପରାହତ ହୋଇଛି ବିଶ୍ୱବ୍ୟାପୀ ପୁଞ୍ଜିପତିମାନଙ୍କ ପ୍ରଭାବ । ୧୯୯୬ ମସିହାରେ ଜମିହୀନଙ୍କ ଉପରେ ହୋଇଥିବା ଆକ୍ରମଣ ଓ ଗଣହତ୍ୟା ଆଡି ବୀରତ୍ୱର କାହାଣୀ ହୋଇଛି ଏବଂ 'ତୃଣମୂଳ ଆନ୍ଦୋଳନ' ବିଶ୍ୱ ଦରବାରରେ ପରିଚିତ ହୋଇପାରିଛି ଆଜି । ୧୯୯୭ ମସିହାରେ ବ୍ରାସିଲିଆ ସହରକୁ ଯେଉଁ ପାଞ୍ଚ ହଜାର ଜମିହୀନ ବିକ୍ଷୋଭ କରିବାକୁ ଯାଇଥିଲେ ସିସେରୋ ଡି. ସିଲ୍‌ଭାଙ୍କ ନେତୃତ୍ୱରେ, ସେମାନେ ଆଜି ବିଶ୍ୱ ଦରବାରରେ ଏକ ସତ୍ୟ କାହାଣୀର ନାୟକ ଭାବେ ପ୍ରତିଷ୍ଠିତ ହୋଇଛନ୍ତି ।

## (୫)

୨୦୦୪ ମସିହା ଫେବୃୟାରୀ ମାସ । ମୁମ୍ବାଇରେ ବିଶ୍ୱ ସାମାଜିକ ସମ୍ମିଳନୀ ଅୟୋଜିତ ହୋଇଥାଏ । ସାରା ବିଶ୍ୱରୁ ପ୍ରାୟ ୨ ଲକ୍ଷ କାର୍ଯ୍ୟରତ ସ୍ୱେଚ୍ଛାସେବୀ ଆକ୍ଟିଭିଷ୍ଟ ଏକତ୍ରିତ ହୋଇ ଥାଆନ୍ତି ଓ ଆଲୋଚନା କରୁଥାଆନ୍ତି ଅନ୍ୟ ଏକ ପୃଥିବୀ ସମ୍ଭବ କିପରି ହୋଇପାରିବ । ଏହା ଏକ ଅଦ୍ୱିତୀୟ ଅବର୍ଣ୍ଣନୀୟ ଦୃଶ୍ୟ ଯାହା ଜଣେ ଯଦି ନିଜ ଆଖିରେ ଦେଖିନାହିଁ – ବିଶ୍ୱାସ କରିପାରିବ ନାହିଁ । ଆଦିବାସୀ ଓ ଦଳିତଙ୍କ ଠାରୁ ଆରମ୍ଭ କରି ଦେଶବିଦେଶର ବହୁ ସଂଗ୍ରାମରତ ମଣିଷ, ଆକ୍ଟିଭିଷ୍ଟ, ଯୁବକ ଯୁବତୀ, ବୃଦ୍ଧ ବୃଦ୍ଧା, ଆସି ଠୁଳ ହୋଇଛନ୍ତି ବିଭିନ୍ନ ବିଷୟରେ କଥାବାର୍ତ୍ତା କରିବା ପାଇଁ, ମାନବିକ

ଅଧିକାର ଜାହିର୍ କରିବା ପାଇଁ ତଥା ଜଗତୀକରଣର ପ୍ରଭାବ ଓ ପ୍ରତିଷ୍ଠାକୁ ଆହ୍ୱାନ ଦେବାପାଇଁ । ଗୀତରେ ଗୀତରେ, ନାଚରେ ନାଚରେ, ସ୍ଲୋଗାନ୍ ମାଧ୍ୟମରେ, ପୋଷ୍ଟର ବାନର୍ ଜରିଆରେ ଗୋଟିଏ କଥା - ଜଗତୀକରଣକୁ ଦୃଢ଼ସ୍ୱରରେ ବିରୋଧ କର । ରଙ୍ଗବେରଙ୍ଗର ଶୋଭାଯାତ୍ରା ବାହାରିଥିଲା । ଏ ଜନସମାଗମ ଭିତରୁ ସମସ୍ତଙ୍କ ମୁହଁରେ ଖଣିଖାଦାନକୁ ନେଇ ସାରା ବିଶ୍ୱରେ ଯେଉଁ ତର୍କ ଆରମ୍ଭ ହୋଇଛି ତାହା କେତୋଟି ଅଧିବେଶନରେ ଆଲୋଚନା କରାଯାଇଥିଲା ଯେଉଁଥିରେ ମୁଁ ଭାଗ ନେଇଥିଲି । ଖଣିଜଦ୍ରବ୍ୟକୁ ଶିଳ୍ପୀକରଣ ଓ ପ୍ରକ୍ରିୟାକରଣ କରିବାକୁ ହେଲେ ଖଣି ଖୋଳିବାକୁ ହେବ ଓ ଶିଳ୍ପ ପ୍ରତିଷ୍ଠା କରିବାକୁ ହେବ । ଲୋକେ ବିସ୍ଥାପିତ ହେବେ । ପରିବେଶ ଧ୍ୱଂସ ହେବ । ସ୍ଥାନୀୟ ଲୋକଙ୍କ କିଛି ଲାଭ ହେବନାହିଁ । ଦାରିଦ୍ର୍ୟର ସୀମାରେଖା ବଢ଼ିବ । ପୁଞ୍ଜିପତି, ଖଣିମାଲିକମାନେ ପୁଞ୍ଜିନିବେଶ କରି ପ୍ରଚୁର ଲାଭ ପାଇବେ । ଏ ସବୁ ଜାଣି ମଧ୍ୟ ତଥାପି ସାରାବିଶ୍ୱର ବିଭିନ୍ନ ଅଞ୍ଚଳରେ ଖଣିଖାଦାନ ଖୋଳା ଚାଲିଛି ବ୍ୟାପକ ସ୍ତରରେ । ଏ ବିଷୟରେ ବିଶ୍ୱର ନାଗରିକ ସମାଜ ଓ ସ୍ୱେଚ୍ଛାସେବୀ ସଂଗଠନମାନେ କ'ଣ ଭାବୁଛନ୍ତି ତାହା ଜାଣିବାର ମୋର ଖୁବ୍ ଇଚ୍ଛା ଥିଲା । କେଉଁଠି କେଉଁଠି ସବୁ ଖଣିଜ ଶିଳ୍ପ ପ୍ରତିଷ୍ଠାକୁ ନେଇ ଆନ୍ଦୋଳନ ଓ ରାଜନୀତି ହୋଇଛି ତାହା ମଧ୍ୟ ଜାଣିବାର ଅଭିପ୍ରାୟ ଥିଲା ।

ଖଣିଜ ଶିଳ୍ପ ପ୍ରତିଷ୍ଠା ପାଇଁ ସମାଜର ଗୋଟାଏ ଶ୍ରେଣୀର ଲୋକମାନେ ଆଗ୍ରହୀ ଯେଉଁମାନେ ଏଥିରୁ ଲାଭ ପ୍ରତ୍ୟକ୍ଷ ଭାବେ ପାଇବେ । ସେମାନେ ଠିକାଦାର ହୋଇପାରନ୍ତି, ବ୍ୟବସାୟୀ ହୋଇପାରନ୍ତି, ଅଥବା ରାଜନୈତିକ ନେତା ବା ସରକାରୀ ଅଫିସର ହୋଇ ପାରନ୍ତି । ସେମାନେ ବି ଶ୍ରମିକ ସଂଗଠନର ନେତା ମଧ୍ୟ ହୋଇପାରନ୍ତି । ସେମାନଙ୍କ ରୀତିରେ ପେଶାଦାର ଗୋଷ୍ଠି ବେଶୀ ଲାଭର ଆଶା ରଖିଥାଆନ୍ତି । ମୋଟାମୋଟି କହିବାକୁ ଗଲେ, ମଧ୍ୟବିତ୍ତ ବର୍ଗ ହିଁ ଖଣିଜଶିଳ୍ପରୁ ବେଶୀ ଲାଭାନ୍ୱିତ ହୋଇଥାଆନ୍ତି ଏବଂ ପୁଞ୍ଜିପତିମାନଙ୍କ ହାତବାରସୀ ଭଳି କାମ କରିଥାଆନ୍ତି । ଏବେ କିଛିଦିନ ତଳେ ମୋର ଜଣେ ସମାଜସେବୀ ବନ୍ଧୁ ଏଇ ଭଳି ଜଣେ ଓଡ଼ିଆ ପେଶାଦାର ଓ ଖଣି କମ୍ପାନୀର ସମର୍ଥକଙ୍କ ସହ ଟ୍ରେନ୍‌ରେ ଯୁକ୍ତି କରିବା ପ୍ରକ୍ରିୟାରେ ହାତାହାତି ହୋଇଥିଲେ । ଖଣିକମ୍ପାନୀର ସମର୍ଥକ କୁଆଡ଼େ କହିଥିଲେ, ଖଣିକୁ ବିରୋଧ କରୁଥିବା ଲୋକଙ୍କୁ ମର୍ଡ଼ର କରିବା ଉଚିତ୍ । ସାରା ବିଶ୍ୱରେ ଏଇ ପେଶାଦାର ବର୍ଗକୁ ଲୋକାଲ୍

ଏଲିଟ୍ (Local elite) କୁହାଯାଏ ଓ ସେମାନେ ହିଁ ଜଗତୀକରଣ ପ୍ରକ୍ରିୟାର ପ୍ରଥମ ଅଂଶିଦାର ଭାବେ ଚିହ୍ନିତ ହୋଇ ସାରିଲେଣି ।

ଖଣିଜଶିଳ୍ପକୁ ବିରୋଧ କରୁଥିବା ଗୋଷ୍ଠି ଦୁଇ ଭାଗରେ ବିଭକ୍ତ ହୋଇଛନ୍ତି । ଦଳେ ଏହାକୁ ସମ୍ପୂର୍ଣ୍ଣ ବିରୋଧ କରୁଥିବା ବେଳେ ଅନ୍ୟ ଦଳେ ଏହା କିପରି ଦୀର୍ଘସ୍ଥାୟୀ ବିକାଶର ଭିତ୍ତିଭୂମି ହେବ ଓ ସକାରାତ୍ମକ ହେବ (Positive Mining) ତାହା ଯୁକ୍ତି କରୁଛନ୍ତି । ଆଉ ଦଳେ ସ୍ଥାନୀୟ ଲୋକେ ଖଣିଜ ଶିଳ୍ପ ପ୍ରତିଷ୍ଠାରେ କିପରି ସକ୍ରିୟ ଭାବେ ଭାଗ ନେଇ ଲାଭ ଉଠାଇବେ ତାହା ପାଇଁ ମଧ୍ୟ ଯୁକ୍ତ କରୁଛନ୍ତି । କେଉଁ ଯୁକ୍ତିଟି ଠିକ୍ ଓ କେଉଁଟି ଭୁଲ୍ ତାହା ଏ ଯାବତ୍ ନିର୍ଣ୍ଣୟ କରାଯାଇ ପାରିନାହିଁ । ବହୁଭାଗ ଲୋକ କିନ୍ତୁ କହୁଛନ୍ତି ଯେ ମାଇନିଂ ଶିଳ୍ପ ପ୍ରତିଷ୍ଠା କରାଯାଉ କିନ୍ତୁ ବିସ୍ଥାପନ ଓ ପରିବେଶୀୟ କୁପ୍ରଭାବକୁ ରୋକାଯାଉ । ସ୍ଥାନୀୟ ଲୋକମାନଙ୍କର ବିକାଶ ପାଇଁ ଯଥେଷ୍ଟ ଧ୍ୟାନ ଦିଆଯାଉ । କିନ୍ତୁ ଇତିହାସରେ ଏଭଳି ଉଦାହରଣ ଆଜିପର୍ଯ୍ୟନ୍ତ ଦେଖାଯାଇନାହିଁ । କାନାଡ଼ାରେ 'Mining Watch' ବୋଲି ସଂସ୍ଥାଟିଏ ସାରା ବିଶ୍ୱରେ ଖଣିଜଶିଳ୍ପର ପ୍ରତିକୂଳ ପ୍ରଭାବ ଉପରେ ଆଖି ରଖିଛି । ବିକାଶଶୀଳ ଦେଶର ମାଇନିଂ କମ୍ପାନୀମାନେ ଏସିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକାର ଖଣିଜ ଦ୍ରବ୍ୟକୁ ଲୁଣ୍ଠନ କରି ଯେଉଁ ଧ୍ୱଂସର ତାଣ୍ଡବଲୀଳା ଆରମ୍ଭ କରିଛନ୍ତି ତାହା ଉପରେ ଅନୁସନ୍ଧାନ ଓ ଗବେଷଣା ଜାରି ରଖିଛନ୍ତି । ଆମେରିକାରେ Sustainable Energy and Economy Network (SEEN) ବୋଲି ଏକ ନେଟ୍‌ୱାର୍କ ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ଡ଼ି.ଆଇ.ଏଫ୍.ଡ଼ି ଭଳି ସଂସ୍ଥାମାନଙ୍କର ଖଣିଜ ଶିଳ୍ପ ପ୍ରତିଷ୍ଠାରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭୂମିକାକୁ ଅନୁଧ୍ୟାନ କରି ଲୋକଲୋଚନକୁ ଆଣୁଛନ୍ତି ।

ବିଶ୍ୱ ସାମାଜିକ ସମ୍ମିଳନୀରେ ଖଣିଜ ଶିଳ୍ପକୁ ନେଇ ଯେଉଁ ପରାମର୍ଶ ଓ ବିଚାର ବିମର୍ଷ ହୋଇଥିଲା ସେଥିରେ ଭାଗ ନେଇ ମଧ୍ୟବିତ୍ତଙ୍କ ମାଇନିଂ ପ୍ରୀତି କଥା ଉଲ୍ଲେଖ କରିଥିଲି । ମୁଁ କହିଥିଲି ଯେ ଥରେ ମାଇନିଂ ଶିଳ୍ପ ପ୍ରତିଷ୍ଠା ହେଲେ ତାହାକୁ ବନ୍ଦ କରିବା ସମ୍ଭବ ନୁହେଁ । କିନ୍ତୁ ମୋର ଯୁକ୍ତିକୁ ବିରୋଧ କରି ଦକ୍ଷିଣ ଆମେରିକାର ପେରୁ ଦେଶର ଜଣେ ସାମାଜିକ କର୍ମକର୍ତ୍ତା କହିଥିଲେ ଯେ ତାଙ୍କ ଦେଶର ମାଇନିଂ କମ୍ପାନୀକୁ ଲୋକମାନେ ଆନ୍ଦୋଳନ ମାଧ୍ୟମରେ ବହିଷ୍କାର କରିବାକୁ ସକ୍ଷମ ହୋଇଛନ୍ତି । ମୁଁ ଏକଥା ଶୁଣି ଅବାକ୍ ହୋଇଥିଲି । ସେ ଅଧିବେଶନ ସମାପ୍ତି ପରେ ତାଙ୍କ ସହ କିଛି କଥାବାର୍ତ୍ତା ହୋଇଥିଲା । ସେ ଇଂରାଜୀ ଠିକ୍

ବୁଝିପାରୁନଥିଲେ ବା କହିପାରୁନଥିଲେ । କିନ୍ତୁ ସେ 'କୋନାକାମୀ' ଆନ୍ଦୋଳନ କଥା ମୋତେ ଜଣାଇଥିଲେ । ପରେ ଏ 'କୋନାକାମୀ' ଆନ୍ଦୋଳନ ଜଗତୀକରଣ ପ୍ରକ୍ରିୟାକୁ ସଫଳତାର ସହ ବିରୋଧ କରି ସାରା ପୃଥିବୀରେ ଖ୍ୟାତି ଅର୍ଜନ କରିଛନ୍ତି । ପେରୁର ଇତିହାସ ଖୁବ୍ ଘଟଣାବହୁଳ ଓ ହିଂସା ଓ ହତ୍ୟାରେ ରକ୍ତରଞ୍ଜିତ । ୫୦୦ ବର୍ଷ ପୂର୍ବେ ସ୍ଥାନୀୟ ଉପନିବେଶବାଦୀ ମାନେ ପେରୁ ଜୟ କରି ଇନ୍‌କାମାନଙ୍କୁ ଓ ସେମାନଙ୍କ ସଭ୍ୟତାକୁ ଧ୍ୱଂସ କରି ଦେଇଥିଲେ । ଏହା ପଛରେ ଥିଲା ଗୋଟିଏ ଉଦ୍ଦେଶ୍ୟ - ସୁନା ଓ ରୂପାର ଅଗାଧ ସମ୍ପତ୍ତିକୁ ଲୁଣ୍ଠନ କରିବା । ସେହିଦିନଠାରୁ ସୁନା, ରୂପା ଓ ତମ୍ବାର ବିପୁଳ ଖଣିଜ ସମ୍ପଦକୁ ନେଇ ଅନେକ ଶିଳ୍ପ ପ୍ରତିଷ୍ଠା ହୋଇଛି । ବିଶ୍ୱବ୍ୟାଙ୍କର ପ୍ରତ୍ୟକ୍ଷ ପୁଞ୍ଜିନିବେଶ ଫଳରେ ଏବେ ପେରୁ ତମ୍ବା ଧାତୁ ରପ୍ତାନି କରି ହଜାର ହଜାର କୋଟି ଆମେରିକୀୟ ଡଲାର୍ ପାଉଛି । ହେଲେ ପେରୁର ଅର୍ଦ୍ଧାଧିକ ଲୋକ ବିଶେଷ କରି ସ୍ଥାନୀୟ ଆଦିବାସୀମାନେ ଯେଉଁ ତିମିରେ କି ସେଇ ତିମିରେ ରହିଛନ୍ତି ଓ ଦାରିଦ୍ର୍ୟର ସୀମାରେଖା ତଳେ ରହି ପୁଷ୍ଟିହୀନତାର ଶୀକାର ହୋଇ ଆସିଛନ୍ତି । ନିଜର ଜୀବନଜୀବିକା କ୍ଷେତକାମ ଓ ପଶୁପାଳନ ହୋଇଥିଲେ ମଧ୍ୟ ତାହା ଯଥେଷ୍ଟ ଅର୍ଥକାରୀ ନୁହେଁ । ଏମାନେ ସବୁ ମାଇନିଂ ଶିଳ୍ପ ଓ ଖଣିଖାଦାନର ପାଖ ଆଖରେ ବସତି ସ୍ଥାପନ କରିଥିବାରୁ ପାରିବେଶିକ ଓ ସ୍ୱାସ୍ଥ୍ୟଗତ ସମସ୍ୟାଗୁଡ଼ିକର ଶୀକାର ହୋଇଛନ୍ତି । ସେମାନଙ୍କର ବଦ୍ଧମୂଳଧାରଣା ହୋଇଛି ଯେ କୋଟି କୋଟି ଡଲାର୍ ସରକାରଙ୍କ ରାଜକୋଷକୁ ଯାଉଛି ପୁଞ୍ଜିନିବେଶ କରିଥିବା କମ୍ପାନୀଙ୍କ ବ୍ୟାଙ୍କ ବାଲାନ୍‌ସ ବଢୁଛି ଅଥଚ ଖଣିପ୍ରତିଷ୍ଠା ଦ୍ୱାରା ପ୍ରଭାବିତ ଲୋକଙ୍କ ହାତକୁ ପଇସାଟିଏ ଆସୁନାହିଁ । ପୁରୁଷ ପୁରୁଷ ଧରି ଉପନିବେଶବାଦ ଏବଂ ଜାତିଗତ ବୈଷମ୍ୟତା, ବର୍ଷବର୍ଷର ଏକଛତ୍ରବାଦୀ ଶାସନ ଓ ଗୃହଯୁଦ୍ଧ ସେମାନଙ୍କର ଜୀବନଯନ୍ତ୍ରଣାର ସ୍ୱରକୁ ରୁଦ୍ଧ କରିଦେଇଛି । ଆଦିବାସୀଙ୍କ ସମସ୍ୟାକୁ ଗୁରୁତ୍ୱ ନଦେଇ ପେରୁ ସରକାର କେବଳ ଖଣିଜଶିଳ୍ପ ଓ ପୁଞ୍ଜିନିବେଶକୁ ପ୍ରାଥମିକତା ଦେଇଆସିଛି ।

ଏସବୁକୁ ବୁଝି ଆଦିବାସୀମାନେ ବିଭିନ୍ନ ସଂଗଠନ ଓ ଆନ୍ଦୋଳନକୁ ଏକତ୍ରିତ କରି 'କୋନାକାମୀ' ସଂଗଠନ ନାମରେ ଏକ ବୃହତ୍ ଜନ ଆନ୍ଦୋଳନ ଆରମ୍ଭ କରିଥିଲେ । ୧୯୯୯ ମସିହାରେ ଏହାର ସଦସ୍ୟ ଥିଲେ ୧୬ଟି ବିଭିନ୍ନ ପ୍ରାଦେଶିକ

ସଂଗଠନ । ସେମାନଙ୍କର ଆନ୍ଦୋଳନର ୩ଟି ମୁଖ୍ୟ ଉଦ୍ଦେଶ୍ୟ ଥିଲା; ଯଥା: (୧) ମାଇନିଂ ବର୍ଜ୍ୟବସ୍ତୁ ଆଦିବାସୀଙ୍କ ଜମିରେ ନପକାଇବା, (୨) ମାଇନିଂ ଶିଳ୍ପ ପ୍ରତିଷ୍ଠା ପାଇଁ ଆଦିବାସୀଙ୍କ ଜମି ଅକ୍ତିଆର ନକରିବା ଓ (୩) ଆଦିବାସୀଙ୍କ ନେତାମାନଙ୍କୁ ସମସ୍ୟା ବିଷୟରେ ସଚେତନ କରି ଲଢ଼େଇକୁ ବ୍ୟାପକ କରିବା ।

'କୋନାକାମୀ'ର ଲକ୍ଷ୍ୟ ଥିଲା ଯେ ଯଦି ସର୍ବସାଧାରଣ ମାଇନିଂ ଶିଳ୍ପ ସମ୍ପର୍କରେ ସେମାନଙ୍କର ଅଧିକାର ଜାଣିପାରିବେ ତେବେ ମାଇନିଂ କମ୍ପାନୀମାନେ ସେମାନଙ୍କର ଜମି ମାଡ଼ିବସି ପାରିବେ ନାହିଁ । କୋନାକାମୀ ଆନ୍ଦୋଳନ ସ୍ୱଳ୍ପ ସମୟ ଭିତରେ ଜାତୀୟ ସ୍ତରରେ ଏକ ପ୍ରତିବାଦର ସ୍ୱର ହୋଇ ସାରା ବିଶ୍ୱର ଦୃଷ୍ଟି ଆକର୍ଷଣ କରିଥିଲା । ମାଇନିଂ ଶିଳ୍ପ ଦ୍ୱାରା ଯେଉଁ ସବୁ ସମସ୍ୟା ଦେଖା ଦେଇଥିଲା ଓ ଯେଉଁଠି ଆଦିବାସୀ ଓ ଖଣିର ମ୍ୟାନେଜ୍‌ମେଣ୍ଟ ସହ ସଂଘର୍ଷ ହେଉଥିଲା, କୋନାକାମୀ ସେଠାରେ ସଫଳତାର ସହ ହସ୍ତକ୍ଷେପ କରୁଥିଲା । ଏହାର ସମସ୍ୟା ସଂଖ୍ୟା ୧୬ରୁ ବଢ଼ି ୧ ୧୩୫ ହୋଇଥିଲା । ୨୦୦୨ ମସିହା ଜୁଲାଇ ମାସରେ ପେରୁ ରାଜଧାନୀ ଲିମାଠାରେ ହଜାର ହଜାର ଆଦିବାସୀ ଓ କୃଷକ ବିକ୍ଷୋଭ କରି କୋନାକାମୀର ନେତୃବର୍ଗଙ୍କ ଉପରୁ ମିଥ୍ୟା ମକଦମା ଉଠାଇବାକୁ ଦାବୀ କରିଥିଲେ । ଏ ବିକ୍ଷୋଭର ପ୍ରଭାବ ଓ ପ୍ରଶଂସା ସାରା ବିଶ୍ୱକୁ ପ୍ରସାରିତ ହୋଇସାରିଛି ।

କୋନାକାମୀର ଆନ୍ଦୋଳନ ଏବେ ମଧ୍ୟ ସରିନାହିଁ । 'ମାନହାଟାନ୍ ମିନେରାଲ୍ କର୍ପ' ନାମକ କାନାଡ଼ାର ଏକ ବିଶାଳ ଖଣି କମ୍ପାନୀ ବିରୁଦ୍ଧରେ ସଂଗ୍ରାମ ଅବିରତ ଅଛି । ଏ କମ୍ପାନୀକୁ ଜମି ମିଳିଛି ୮୯,୦୦୦ ହେକ୍ଟର, ଦଶଲକ୍ଷ ଆଉନ୍‌ସର ସୁନା, ୨ କୋଟି ଆଉନ୍‌ସର ରୂପା ଏବଂ ୬.୪ କୋଟି ଟନ୍‌ର ତମ୍ବା ଓ ଜିଙ୍କ ଖଣି ମିଳିଛି । ଜମି ଉପରେ ଖଣି ଖୋଳିବା ପାଇଁ ସ୍ଥାନୀୟ ଲୋକ ଚାହୁଁନାହାନ୍ତି । ଖଣି କମ୍ପାନୀର ଅଫିସ ଉପରେ ଚଢ଼ାଉ ହୋଇଛି ୨୦୦୧ ମସିହା ଫେବୃୟାରୀ ମାସରେ । ସେ ବର୍ଷ ମାର୍ଚ୍ଚ ମାସରେ କୋନାକାମୀର ମାଇନିଂ ବିରୋଧୀ ନେତା ''ଗଡ୍ରୋପ୍ରେଡ୍ରୋ ଗାର୍ସିଆ ବାକାଙ୍କୁ'' ହତ୍ୟା କରାଯାଇଛି କମ୍ପାନୀର ପ୍ରରୋଚନାରେ ।

ନିଉମଣ୍ଟ କର୍ପୋରେସନ୍ ନାମକ ଆମେରିକୀୟ କମ୍ପାନୀ ଠିକା ପାଇଛି ବିଶାଳ ସୁନାଖଣିରୁ ଖଣିଜଦ୍ରବ୍ୟ ଉତ୍ତୋଳନ ପାଇଁ କିନ୍ତୁ ଲୋକଙ୍କ ଜୀବନ ଓ ଜୀବିକା ପାଇଁ ଲଢ଼ାଇ ମଧ୍ୟ ଜାରି ରହିଛି ।

ଯୁଦ୍ଧ ସରି ନାହିଁ, ଅରି ଫେରି ନାହିଁ ବା ସମ୍ପୂର୍ଣ୍ଣ ପରାସ୍ତ ହୋଇନାହିଁ । ❑

# ଜଗତୀକରଣ ଓ ମେକ୍ସିକୋର ଜାପାଟିଷ୍ଟା ଆନ୍ଦୋଳନ

## (୧)

ମୋର ଅନେକ ଅପୂରଣୀୟ ଅଭିଳାଷ ଭିତରେ ରହିଛି । ମେକ୍ସିକୋ ଯାଇ ଜାପାଟିଷ୍ଟା ଆନ୍ଦୋଳନ ସହ ସାମିଲ୍ ହେବା ଏବଂ ଏହାର ନେତା ସବ୍ କମାଣ୍ଡାଣ୍ଟ୍ ମାର୍କସ (Sub-commandante Marcos)ଙ୍କ ଠାରୁ ଜଗତୀକରଣ ବିରୋଧରେ ଲଢ଼େଇର ରଣନୀତି ଶିଖିବା । ସାରା ପୃଥିବୀରେ ଜଗତୀକରଣ ପ୍ରକ୍ରିୟାକୁ ବିରୋଧ କରି ଯେତେ ଜନ ଆନ୍ଦୋଳନ ସୃଷ୍ଟି ହୋଇଛି ଓ ସଫଳତାରେ ଗୌରବାନ୍ୱିତ ହୋଇଛି, ଜାପାଟିଷ୍ଟା ଆନ୍ଦୋଳନ ସର୍ବଶ୍ରେଷ୍ଠ ବୋଲି ମୁଁ ବିବେଚନା କରିଆସିଛି । ମୋର କେହି କେହି ବନ୍ଧୁ ମେକ୍ସିକୋ ଯାତ୍ରା କଲେ ସେମାନଙ୍କୁ ଜାପାଟିଷ୍ଟା ଆନ୍ଦୋଳନ ସମ୍ବନ୍ଧୀତ ବହି ଓ ଦସ୍ତାବିଜ୍ ସବୁ ଆଣିବାକୁ ଅନୁରୋଧ କରିଛି । ମୋର ଯେଉଁ ବନ୍ଧୁମାନେ ବିଶ୍ୱ ସାହିତ୍ୟକୁ ଓଡ଼ିଆରେ ଅନୁବାଦ କରୁଛନ୍ତି, ସେମାନଙ୍କୁ ଅନୁରୋଧ କରିବି ବିଶ୍ୱର ଅନ୍ୟତମ ପ୍ରତିଷ୍ଠିତ ଲେଖକ ଗାବ୍ରିଏଲ ଗାସିଆ ମାର୍କେଜ୍ ଜାପାଟିଷ୍ଟା ଆନ୍ଦୋଳନ ସବ୍‌କମାଣ୍ଡାଣ୍ଟ୍ ମାର୍କ୍‌ସଙ୍କ ଉପରେ ଲେଖିଥିବା ଓ ସାକ୍ଷାତ୍‌କାରଗୁଡ଼ିକୁ ଅନୁବାଦ କରିବା ପାଇଁ । ମୋର ଯଦି ସମୟ ଥାଆନ୍ତା ଜାପାଟିଷ୍ଟାମାନଙ୍କ ଉପରେ ଏକ ବିଶ୍ଳେଷଣାତ୍ମକ ପୁସ୍ତକ ଲେଖନ୍ତି ଓ ଓଡ଼ିଶାର ପାଠକମାନଙ୍କୁ ଉପହାର ଦିଅନ୍ତି । ଏବେ ଦୁଇଟି ଲେଖା ଆମ ପାଠକଙ୍କ ଆଗରେ ଉପସ୍ଥାପିତ କରିବି । ଗୋଟିଏ ହେଲା ଜାପାଟିଷ୍ଟାମାନଙ୍କ ବିଷୟରେ । ଅନ୍ୟଟି ହେଲା ସବ୍ କମାଣ୍ଡାଣ୍ଟ ମାର୍କ୍‌ସଙ୍କ ନେତୃତ୍ୱ ଓ ରଣନୀତି ବିଷୟରେ ।

ମେକ୍ସିକୋ ଯୁକ୍ତରାଷ୍ଟ୍ର ଆମେରିକାକୁ ଲାଗି ଉତ୍ତର ଆମେରିକାର ଏକ ଦେଶ । ମେକ୍ସିକୋ କହିଲେ ଆମେ ବୁଝୁ ମେକ୍ସିକୋର ସ୍ଥାନୀୟ ମୂଳ ଆଦିବାସୀ ଇଣ୍ଡିଆନ୍ ସମୂହଙ୍କୁ ନତୁବା ମେକ୍ସିକୋର ନୃତ୍ୟ, ସଂଗୀତ ଓ ଗ୍ୱିଟାରକୁ । ମେକ୍ସିକୋର ଲଙ୍କାଦିଆ

ସୁସ୍ୱାଦୁ ଖାଦ୍ୟ ମଧ୍ୟ ପୃଥିବୀସାରା ଲୋକପ୍ରିୟ । ଆଉ ମଧ୍ୟ ମେକ୍ସିକୋର ଟୋପି ମଧ୍ୟ ସେ ଦେଶର ଏକ ଅଦ୍ୱିତୀୟ ପରିଚୟ । ଐତିହାସିକ ମାୟା ସଭ୍ୟତାର ଧ୍ୱଂସାବଶେଷ ଯେତିକି ଆକର୍ଷଣୀୟ, କାନ୍‌କୁନ୍ ଦ୍ୱୀପ ପର୍ଯ୍ୟଟକଙ୍କ ପାଇଁ ସେତିକି ମନୋମୁଗ୍ଧକର । ଆହୁରି ମଧ୍ୟ ବିଶ୍ୱକପ୍ ଫୁଟବଲ ଟୁର୍ଣ୍ଣାମେଣ୍ଟରେ ମେକ୍ସିକୋ ଟିମ୍ ଏକ ଦୁର୍ଦ୍ଧର୍ଷ ଦଳ ଭାବେ ପରିଚିତ । କିନ୍ତୁ ମେକ୍ସିକୋ ବି ଆଦିମ ଆଦିବାସୀଙ୍କ ଦେଶ ଓ ଗରିବମାନଙ୍କ ଦେଶ । ଯୁକ୍ତରାଷ୍ଟ୍ର ଆମେରିକାର ସୀମାନ୍ତରେ ଥିବାରୁ ସେ ଦେଶକୁ ଖସିପଳାଇବା କାମଧନ୍ଦା ପାଇଁ ବା ଜୀବନ ଜୀଇଁବା ପାଇଁ ମେକ୍ସିକୋବାସୀଙ୍କ ଏକ ଅପ୍ରକାଶିତ ପ୍ରେମ । ମେକ୍ସିକୋ ସୀମାନ୍ତ ନିଶାଦ୍ରବ୍ୟ କାରବାର ପାଇଁ ବେଶ୍ କୁଖ୍ୟାତ । ଏ ସବୁକୁ ନେଇ ଯୁକ୍ତରାଷ୍ଟ୍ର ଆମେରିକା ମେକ୍ସିକୋକୁ ନିଜ ନିୟନ୍ତ୍ରଣରେ ରଖିବାକୁ ସଦାସର୍ବଦା ଉଦ୍ୟମରତ ।

ଜାତୀୟ ମୁକ୍ତି ପାଇଁ ଜାପାଟିଷ୍ଟା ସୈନ୍ୟବାହିନୀ ଯାହା ଇଏଲ୍‌ଏନ୍‌ଏ (ELNA) ନାମରେ ବିଖ୍ୟାତ ପ୍ରଥମେ ମୁଣ୍ଡ ଟେକିଥିଲା ଦକ୍ଷିଣ ପୂର୍ବ ମେକ୍ସିକୋର ଚିଆପାସ୍ ଅଞ୍ଚଳରେ । ସେ ଗରିବ ଅଞ୍ଚଳରେ ରହନ୍ତି ଆଦିବାସୀ ଓ ମୂଳ ମାୟା ସଭ୍ୟତାର ବଂଶଧରମାନେ । ଜାପାଟିଷ୍ଟା ସୈନ୍ୟବାହିନୀ ଯଦିଓ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କିନ୍ତୁ ଅହିଂସାରେ ସାମଗ୍ରିକ ଭାବେ ବିଶ୍ୱାସ କରେ । ଏହାର ସାମାଜିକ ସମର୍ଥକମାନେ ଗାଁରେ ରହିବା ସଙ୍ଗେ ସଙ୍ଗେ ସହରରେ ମଧ୍ୟ ଥାଆନ୍ତି । ଇଣ୍ଟରନେଟ୍ ଜରିଆରେ ଏହାର ସମର୍ଥକମାନେ ସାରା ପୃଥିବୀର ବିଭିନ୍ନ କୋଣରେ ସଂଗ୍ରାମରତ । ସେମାନେ ଏକ ନୂତନ ଆଦର୍ଶରେ ଅନୁପ୍ରାଣୀତ ଓ ଜଗତୀକରଣ ବିରୋଧରେ ଲଢିବାକୁ ସମ୍ପୂର୍ଣ୍ଣ ଉତ୍ସର୍ଗୀକୃତ । ଏ ଲୋକାଭିମୁଖୀ ସୈନ୍ୟବାହିନୀ ପ୍ରଥମେ ଆତ୍ମପ୍ରକାଶ କରେ ୧୯୯୪ ମସିହାରେ । ଏହାର ଉଦ୍ଦେଶ୍ୟ ହେଲା ମେକ୍ସିକୋ ସରକାରଙ୍କୁ ଗାଦିଚ୍ୟୁତ କରିବା । କାରଣ ମେକ୍ସିକୋ ସରକାର ବର୍ଷ ବର୍ଷ ଧରି ଚିଆପାସ୍ ଅଞ୍ଚଳର କୃଷକ ଓ ଆଦିବାସୀମାନଙ୍କର ବିକାଶ ପ୍ରତି ଧ୍ୟାନ ଦେଇ ନଥିଲେ ଓ ଏମାନଙ୍କର ଐତିହାସିକ ପରିଚୟକୁ ମାନ୍ୟତା ଦେଇ ନଥିଲେ । ସ୍ପେନୀୟମାନଙ୍କ ପ୍ରଭାବ ଫଳରେ ଏ ଅଞ୍ଚଳରେ ଲାଗି ରହିଥିଲା । ଋଣଭାର ଓ ଏକ ଦାସତ୍ୱ ପ୍ରକ୍ରିୟା । ଋଣ ସୁଝି ନପାରିଲେ ଚିଆପାସ୍‌ର ଅଧିବାସୀମାନଙ୍କୁ କ୍ରୀତଦାସ ଭଳି ସ୍ପେନିସ୍‌ମାନେ ବ୍ୟବହାର ଦେଖାଉଥିଲେ । ଷୋଡ଼ଶ ଶତାବ୍ଦୀରୁ ଏହା ଲାଗି ଆସିଥିଲା । ଯଦିଓ ବେଳେବେଳେ ବିଦ୍ରୋହ କରୁଥିଲେ ସ୍ଥାନୀୟ ଆଦିବାସୀମାନେ । ୧୯୧୦ ମସିହାରେ ଏଇଭଳି ଏକ ବିଦ୍ରୋହର ନେତା ଥିଲେ ଏମିଲିଆନୋ ଜାପିଟା

ଓ ତାଙ୍କର ନାମରେ ଚିଆପାସ୍‌ର ବାସିନ୍ଦାମାନେ ନିଜକୁ ଜାପାଟିଷ୍ଟା ସୈନ୍ୟବାହିନୀ ନାମରେ ପରିଚିତ କରିଥିଲେ । ୧୯୯୪ ମସିହା ପୂର୍ବରୁ ୧୯୭୪ ମସିହାରେ ମଧ୍ୟ ଏକ ବଡ଼ ଧରଣର ସଂଘର୍ଷ ହୋଇଥିଲା । କ୍ରମେ ସ୍ପେନୀୟମାନଙ୍କର ଉପନିବେଶକାରୀ ଅତ୍ୟାଚାର ଓ ଶୋଷଣର ସୀମା ଟପିଥିଲା । ଏହାର ଦୁଇଟି ମୁଖ୍ୟ ଦିଗ ଥିଲା । ଗୋଟିଏ ହେଲା ଜାତିଗତ ବୈଷମ୍ୟ, ଅର୍ଥାତ୍ ସ୍ପେନୀୟ ବଂଶଧରମାନେ ସ୍ଥାନୀୟ ଆଦିମ ଅଧିବାସୀଙ୍କୁ ହୀନ ଦୃଷ୍ଟିରେ ଦେଖିବା । ଦ୍ୱିତୀୟଟି ହେଲା ଯେ ସାମାଜିକ ଓ ଆର୍ଥିକ ବୈଷମ୍ୟ । ସରକାର ସ୍ଥାନୀୟ ମୂଳ ଆଦିବାସୀମାନଙ୍କୁ ଗୁରୁତ୍ୱ ନଦେଇ ସାମାଜିକ ଓ ଆର୍ଥିକ ଶୋଷଣ କରିବାକୁ ତତ୍ପର ଥିଲେ ।

ଜାପାଟିଷ୍ଟାମାନେ ଗୋଟିଏ ଦୃଷ୍ଟିରୁ ଏକ ଗରିଲା ସୈନ୍ୟବାହିନୀ ଭାବେ ନିଜକୁ ଗଢିଥିଲେ ଓ ଏଥିରେ ଥିଲେ କେବଳ କୃଷକ ଓ କୃଷିଜୀବୀମାନେ । ପୂର୍ବରୁ ଲାଗିଥିବା ଛୋଟଧରଣର ସଂଘର୍ଷ ଏକ ବିଶାଳ ସଂଗ୍ରାମର ରୂପ ନେଲା । ୧୯୯୪ ମସିହାରେ ଯେତେବେଳେ ମେକ୍ସିକୋ ସରକାର ଯୁକ୍ତରାଷ୍ଟ୍ର ସହ ମୁକ୍ତ ବାଣିଜ୍ୟ ଚୁକ୍ତି ବା ନାଫଟା ଚୁକ୍ତି ମାନି ନେଇଥିଲେ । ନାଫଟା ଚୁକ୍ତି ଅନୁସାରେ ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା ଓ ମେକ୍ସିକୋ ଭିତରେ ଅବାଧ ଓ ମୁକ୍ତି ବାଣିଜ୍ୟ କାରବାର ହୋଇପାରିବ । ଏହା ଫଳରେ ମେକ୍ସିକୋର ବାଣିଜ୍ୟ କାରବାର ଯଦିଓ ଦ୍ରୁତଗତିରେ ବଢି ଚାଲିଥିଲା । କିନ୍ତୁ ଏହାର ଅନେକ ପ୍ରତିକୂଳ ପ୍ରଭାବ ଦେଖା ଦେଇଥିଲା । ୧୯୯୪ ମସିହାଠାରୁ ଗରିବଙ୍କ ସଂଖ୍ୟା ଦ୍ରୁତଗତିରେ ବଢି ଚାଲିଲା । ଯଦିଓ ବାଣିଜ୍ୟ ବେପାର ମେକ୍ସିକୋର ଦୁଇଗୁଣ ବୃଦ୍ଧିପାଇଥିଲା । କାରଣ ଏକତ୍ର ଓ ଅବାଧ ବାଣିଜ୍ୟରେ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଆସି ମେକ୍ସିକୋରେ ପୁଞ୍ଜି ଖଟାଇଲେ ଓ ରପ୍ତାନୀଯୋଗ୍ୟ ଦ୍ରବ୍ୟ ଶସ୍ତାରେ ଉତ୍ପାଦନ କରି ଲାଭ ଉଠାଇଲେ । ବିଶ୍ଳେଷଣରୁ ଜଣାପଡ଼ିଲା ଯେ ନାଫ୍‌ଟା ଦ୍ୱାରା ମେକ୍ସିକୋ ବାସୀ ବା ମେକ୍ସିକୋ ସରକାର ଲାଭାନ୍ୱିତ ହେଲେ ନାହିଁ । ଲାଭ ପାଇଲେ କେବଳ ପୁଞ୍ଜିପତି ବହୁରାଷ୍ଟ୍ରୀୟ କମ୍ପାନୀମାନେ । ଏହାର ପ୍ରଭାବ ଚିଆପାସ୍‌ର ମୂଳ ଆଦିବାସୀଙ୍କ ଉପରେ ପଡ଼ିଥିଲା ଓ ଜାପାଟିଷ୍ଟା ଆନ୍ଦୋଳନର ମୂଳ ଉଦ୍ଦେଶ୍ୟ ଥିଲା ଯେ ମେକ୍ସିକୋ ସରକାରଙ୍କ ଜଗତୀକରଣ ସପକ୍ଷବାଦୀ ନୀତିକୁ ସଶକ୍ତ ସଂଗ୍ରାମ ଦ୍ୱାରା ବିରୋଧ କରିବା । ଚିଆପାସ୍ ଅଞ୍ଚଳରେ କୃଷକମାନେ ସେମାନଙ୍କର ଉତ୍ପାଦିତ ଦ୍ରବ୍ୟରୁ ଲାଭ ପାଇଲେ ନାହିଁ କାରଣ ଆଗ୍ରି ବିଜିନେସ୍ ବହୁ ରାଷ୍ଟ୍ରୀୟ କମ୍ପାନୀମାନେ ଆରମ୍ଭ କରି ଶୋଷଣ ପ୍ରକ୍ରିୟା ଜାରି ରଖିଥିଲେ ।

ଜାପାଟିଷ୍ଟାମାନେ ଗୋଟାଏ ପ୍ରଦେଶରୁ ଆଉ ଗୋଟାଏ ପ୍ରଦେଶକୁ ସହଜରେ ଯାଇ ଦଖଲ କରୁଥିଲେ । ଯେଉଁ ଅଞ୍ଚଳ ହେଉଥିଲା ମୁକ୍ତ ହେଉଥିଲା ସେଠାରେ ସାଇନ୍‌ବୋର୍ଡ ମାରୁଥିଲେ ଯେ ଏ ଅଞ୍ଚଳରେ ଲୋକେ ଅର୍ଡ଼ର ଦିଅନ୍ତି ଓ ସରକାର ତାକୁ ମାନେ । ସରକାରୀ ସୈନ୍ୟମାନେ ମଧ୍ୟ ଖୁବ ବିରୋଧ କରୁଥିଲେ ଜାପାଟିଷ୍ଟାମାନଙ୍କୁ । କିନ୍ତୁ ଏ ଆନ୍ଦୋଳନ ଏତେ ଲୋକପ୍ରିୟ ହୋଇଥିଲା ଓ ଏହାର ସଂଖ୍ୟା ଏତେ ବଢିଯାଇଥିଲା ଯେ ସରକାର ଏକ ଯୁଦ୍ଧ ବିରତି ଶୀଘ୍ର କରିଥିଲେ । ତିନିବର୍ଷର ବାର୍ତ୍ତାଳାପ ଓ ଭାବ ବିନିମୟ ପରେ ଜାପାଟିଷ୍ଟା ଓ ସରକାରଙ୍କ ଭିତରେ ଏକ ରାଜିନାମା ହୋଇଥିଲା ଏବଂ ମୂଳ ଆଦିବାସୀଙ୍କ ସ୍ୱତନ୍ତ୍ର ଅଧିକାର ଓ ସ୍ୱାୟତ୍ତ ଶାସନକୁ ମାନ୍ୟତା ଦିଆଯାଇଥିଲା । ଏହାପରେ କିନ୍ତୁ ନୂତନ ସରକାରଙ୍କ ଜାପାଟିଷ୍ଟା ମାରଣ ନୀତିରେ ବହୁ ଜାପାଟିଷ୍ଟା ସୈନିକଙ୍କୁ ଅକଥନୀୟ ଜେଲ ଓ ମୃତ୍ୟୁ ଦଣ୍ଡ ଭୋଗିବାକୁ ପଡ଼ିଥିଲା । କେତେକ ଜାପାଟିଷ୍ଟାଙ୍କୁ ମଧ୍ୟ ମେକ୍ସିକୋର ସୈନ୍ୟବାହିନୀ ହତ୍ୟା କରିଥିଲେ । ୨୦୦୦ ମସିହାରେ ମେକ୍ସିକୋର ନୂତନ ରାଷ୍ଟ୍ରପତି ଭିସେଣ୍ଟେ ଫକ୍ସ ସାମ୍ବିଧାନିକ ପରିବର୍ତ୍ତନ କରିବାର ପ୍ରତିଶ୍ରୁତି କାର୍ଯ୍ୟକାରୀ କରିଥିଲେ । ବିନା ଅସ୍ତ୍ରଶସ୍ତ୍ରରେ ସବ୍ କମାଣ୍ଡାଣ୍ଟ ମାର୍କସ ରାଜଧାନୀ ମେକ୍ସିକୋ ସିଟିକୁ ଶାନ୍ତି ଯାତ୍ରା କରିଥିଲେ ଓ ବିଭିନ୍ନ ଯାଗାରେ ଭାଷଣ ଦେଇ ଜାପାଟିଷ୍ଟା ଆନ୍ଦୋଳନର ଆଭିମୂଖ୍ୟ କହିଥିଲେ । କିନ୍ତୁ ଆବଶ୍ୟକ ହେଉଥିବା ସାମ୍ବିଧାନିକ ପରିବର୍ତ୍ତନ ଓ ସ୍ୱାୟତ୍ତ ଶାସନ ମୂଳ ଆଦିବାସୀମାନଙ୍କୁ ମିଳି ନଥିଲା । କିନ୍ତୁ ଜାପାଟିଷ୍ଟାମାନଙ୍କ ଆନ୍ଦୋଳନର ପ୍ରଭାବ ବଳରେ ସାମ୍ବିଧାନିକ ପରିବର୍ତ୍ତନ ବହୁ ମତରେ ସ୍ୱୀକୃତି ଲାଭ କରିଥିଲା ଓ ୨୦୦୨ ମସିହାରେ ଲାଗୁ ହୋଇଥିଲା । ଜାପାଟିଷ୍ଟାମାନଙ୍କର ଅବଶେଷରେ ବିଜୟ ହୋଇଥିଲା ।

ଜାପାଟିଷ୍ଟାମାନଙ୍କ ନେତା ସବ୍‌କମାଣ୍ଡାଣ୍ଟ ମାର୍କସ୍ ବେଳେବେଳେ ବିଭିନ୍ନ ସମ୍ବାଦ ଓ ଘୋଷଣାନାମା ଦେଇଥାଆନ୍ତି । ଆନ୍ଦୋଳନର ସ୍ଥିତି ସମ୍ପର୍କରେ ଜାପାଟିଷ୍ଟା ଆନ୍ଦୋଳନଟି ଯେ ଜଗତୀକରଣ ବିରୁଦ୍ଧରେ ଅଭିପ୍ରେତ ଏହା ବାରମ୍ବାର ସେ ଉଲ୍ଲେଖ କରିଛନ୍ତି । ଯେଉଁଠି ସରକାର ଓ ଲୋଭଖୋର କର୍ପୋରେଟ୍‌ମାନେ ଗରିବ ଲୋକମାନଙ୍କୁ ଦୁର୍ବଳ ଓ ଶକ୍ତିହୀନ କରିବାକୁ ବାରମ୍ବାର ଚେଷ୍ଟା କରୁଛନ୍ତି ସେଠାରେ ଜାପାଟିଷ୍ଟା ଆନ୍ଦୋଳନ ସଂଗ୍ରାମରତ । ମେକ୍ସିକୋ ସରକାର ସେ ଦେଶର ତୈଳ ଓ ଅନ୍ୟ ପ୍ରାକୃତିକ ସମ୍ପଦ ଲୁଣ୍ଠନ ପାଇଁ ସ୍ଥାନୀୟ ଆଦିବାସୀମାନଙ୍କୁ ବାସଚ୍ୟୁତ କରିବାକୁ ଦୃଢ ପରିକର ।

କିନ୍ତୁ ଜାପାଟିଷ୍ଟା ଆନ୍ଦୋଳନ ଏହା ବିରୁଦ୍ଧରେ ଲଢ଼େଇ କରିବାକୁ ସଂକଳ୍ପବଦ୍ଧ । ଦେଖାଯାଇଛି ଯେ ଏହି ଆନ୍ଦୋଳନ ବେଳେବେଳେ ଖୁବ୍ ସକ୍ରୀୟ ଓ ଅନ୍ୟ କେତେବେଳେ ଖୁବ୍ ନୀରବ । କିନ୍ତୁ ନୀରବତା ଭିତରେ ସୁପ୍ରଶାସନ ବା ଗୁଡ୍ ଗଭର୍ଣ୍ଣାନସ୍ ପାଇଁ ଏ ଆନ୍ଦୋଳନ ସମୟ ଦେଇଛି । ଜାପାଟିଷ୍ଟାମାନେ ନୀରବ ହେଉଛନ୍ତି ଅର୍ଥ ନୁହଁ ଯେ ସେମାନେ ନିଷ୍କ୍ରିୟ । ସମୟ ଓ ସୁଯୋଗ ଦେଖି ସେମାନେ ପୁଣି ଯୁଦ୍ଧ କ୍ଷେତ୍ରକୁ ଆସିବେ ଏହା ସ୍ଥିର ନିଶ୍ଚିତ ।

ଜାପାଟିଷ୍ଟା ଆନ୍ଦୋଳନର ଆଭିମୁଖ୍ୟ ହେଉଛି ସ୍ଥାନୀୟ ଲୋକଙ୍କ ସ୍ଥିତି ଓ ସୁରକ୍ଷା ପାଇଁ ଜଗତୀକରଣ ବିରୋଧରେ ସଂଗ୍ରାମ । ଏହା ପାଇଁ ଯେଉଁ ରଣନୀତିର କାର୍ଯ୍ୟକାରୀ କରାଯାଇଛି । ତାହାର ବିଶେଷ ଆଲୋଚନା କରିବାର ଯଥେଷ୍ଟ ଆବଶ୍ୟକତା ଅଛି । ପ୍ରଥମେ ଜାପାଟିଷ୍ଟାମାନଙ୍କ ସଶସ୍ତ୍ର ଆନ୍ଦୋଳନ ଓ ସ୍ଥାନ ବିଶେଷରେ ଅହିଂସା ପରିପ୍ରକାଶ ସେମାନଙ୍କର ସବୁଠାରୁ ଶ୍ରେଷ୍ଠ ଶକ୍ତି । ଜାପାଟିଷ୍ଟାମାନେ ପାରମ୍ପରିକ ଅର୍ଥରେ ଏକ ସେନାବାହିନୀ ନୁହେଁ । କାରଣ ଏହାର ଏକ ମିଲିଟାରୀ ଢ଼ାଞ୍ଚା ଥାଇ ମଧ୍ୟ ଏହାର ଲକ୍ଷ୍ୟ ଭିନ୍ନ । ସେଇଥିପାଇଁ ସ୍ଥାନୀୟ କ୍ଷେତ୍ରରେ ଉତ୍ତମ ଶାସନକୁ ଜାପାଟିଷ୍ଟା ଆନ୍ଦୋଳନ ଗୁରୁତ୍ୱ ଦେଇଛି । ଯୁଦ୍ଧ କ୍ଷେତ୍ରରେ ଯୁଦ୍ଧ ଓ ମୁକ୍ତ ଅଞ୍ଚଳରେ ସୁଶାସନ ଏ ଦୁଇଟିର ସମନ୍ୱୟ ରକ୍ଷା କରିବାକୁ ଏ ଆନ୍ଦୋଳନ ସମର୍ଥ ହୋଇଛି । କ୍ଷମତାଶାଳୀ ସରକାର ମଧ୍ୟ ଏ ସୁଶାସନକୁ ସ୍ୱୀକାର କରିଛି । ଶାସନ ଭିତରେ ଆଉ ଏକ ଶାସନ ଏବେ ମେକ୍ସିକୋର ସମ୍ଭବ ହୋଇ ସ୍ଥାନୀୟ ଆଦିବାସୀମାନଙ୍କୁ ସୁଫଳ ମିଳିଛି ।

ଜାପାଟିଷ୍ଟା ଆନ୍ଦୋଳନର ଦ୍ୱିତୀୟ ରଣନୀତି ଥିଲା ସେମାନଙ୍କର ମେକ୍ସିକୋ ଭିତରେ ଏକ ଆନ୍ତର୍ଜାତିକ ସ୍ତରରେ ଯୋଗାଯୋଗ । ଇଣ୍ଟରନେଟ୍ ଓ ସାଟେଲାଇଟ୍ ଫୋନ୍ । ବିଭିନ୍ନ ଅତ୍ୟାଧୁନିକ ଟେକ୍ନୋଲୋଜିର ପ୍ରୟୋଗ କରାଯାଇ ଚିଆପାସ୍‌ରୁ ସାରା ପୃଥିବୀକୁ ସମ୍ବାଦ ପ୍ରେରଣ ସଫଳତାର ସହ କରାଯାଇ ପାରୁଛି । ସାଇବର୍ ସ୍ପେସ୍‌କୁ ବିନିଯୋଗ କରାଯାଇଛି । ସାରା ପୃଥିବୀରେ ଯେଉଁ ଶହ ଶହ ସ୍ୱେଚ୍ଛାସେବୀ ସଂଗଠନ ଓ ନାଗରିକ ସମାଜର କର୍ମକର୍ତ୍ତା ଆଜି ସଂଗ୍ରାମରତ ସେମାନଙ୍କର ସନ୍ନିଧାନ ପାଇଁ ଜାପାଟିଷ୍ଟା ଆନ୍ଦୋଳନ ବାର୍ତ୍ତାଳାପ ଜାରି ରଖିଛି । ଦେଶ ମହାଦେଶରେ ତର୍କ ସଭାମାନ ଇଣ୍ଟରନେଟ୍ ଜରିଆରେ ଜାପାଟିଷ୍ଟାମାନେ ମଧ୍ୟ ଆୟୋଜନ କରିଛନ୍ତି । ଏହାର ଅନେକ ସୁଫଳ ମିଳିଛି ।

ଜାପାଟିଷ୍ଟା ଆନ୍ଦୋଳନ ସବୁବେଳେ ଶାନ୍ତି ରହିଛି । ମେକ୍ସିକୋର ସରକାରୀ ସୈନ୍ୟମାନଙ୍କର ମୁକାବିଲା କରି ରକ୍ତପାତ କରିନାହାଁନ୍ତି । ସାରା ଦେଶରେ ଏକ ମାନସିକତା ଓ ଚେତନାବୋଧ ସୃଷ୍ଟି କରିବାକୁ ଚାହିଁଛନ୍ତି ସେମାନେ । ସାମ୍ବିଧାନିକ ପରିବର୍ତ୍ତନ ହେଉ ଏହା ପାଇଁ ଓକିଲାତି କରିଛନ୍ତି । ସେମାନେ ନିର୍ବାଚନ ଲଢ଼ି ନାହାନ୍ତି କିମ୍ବା ପ୍ରାର୍ଥୀକୁ ସମର୍ଥନ କରିନାହାନ୍ତି । କେବଳ ନିର୍ବାଚନ ସହ ସଂଶ୍ଳିଷ୍ଟ ନଥିବା ଏକ ରାଜନୈତିକ ମଞ୍ଚ ସୃଷ୍ଟି କରିଛନ୍ତି ।

୨୦୦୬ ମସିହାରେ ନୂତନ ରାଷ୍ଟ୍ରପତି ନିର୍ବାଚନରେ ସେମାନେ ଗଣତାନ୍ତ୍ରିକ ମୂଲ୍ୟବୋଧ ପାଇଁ, ଏବଂ କୌଣସି ଅସ୍ତ୍ରଶସ୍ତ୍ରର ସହାୟତା ନନେଇ ସେମାନେ ମେକ୍ସିକୋର ମୋଟ ୩୧ଟି ପ୍ରଦେଶକୁ ଯାତ୍ରା କରିଛନ୍ତି । ସବୁ ପଛରେ ଗୋଟିଏ ଉଦ୍ଦେଶ୍ୟ ଅଛି- ମୂଳ ଆଦିବାସୀଙ୍କ ବିକାଶ ହେବ ଓ ସ୍ୱାତନ୍ତ୍ର୍ୟ ବଜାୟ ରହିବ । ମେକ୍ସିକୋରେ ଜାପାଟିଷ୍ଟା ଆନ୍ଦୋଳନ ହେତୁ ଏହା ଆଜି ବାସ୍ତବରେ ସମ୍ଭବ ହୋଇଛି ।

ଆମେ ଓ ସାରା ପୃଥିବୀ ଜାପାଟିଷ୍ଟା ଆନ୍ଦୋଳନରୁ କ'ଣ ଶିଖିବା ? ସେଗୁଡ଼ିକ ନିମ୍ନରେ ଦିଆଗଲା-

(କ) ଜାପାଟିଷ୍ଟାମାନଙ୍କ ନିଜଦ୍ୱାରା ପରିଚାଳିତ ସ୍ୱାୟତ୍ତ ଶାସନ ହିଁ ଏକ ଅତୁଳନୀୟ ଅବଦାନ । ଯେତେବେଳେ ଗାଁରେ ସବୁଲୋକ ତୃଣମୂଳ ପ୍ରଶାସନିକ ଢାଞ୍ଚାରେ ଭାଗ ନେଇ ସବୁ ନିଷ୍ପତ୍ତି ନେଉଛନ୍ତି, ଏଥିରେ ଦୁର୍ନୀତି ଓ ଠକାମୀର ମାତ୍ରା ଯଥେଷ୍ଟ ପରିମାଣରେ ହ୍ରାସ ପାଇଛି ।

(ଖ) ଜାପାଟିଷ୍ଟା ଆନ୍ଦୋଳନରେ ସଶସ୍ତ୍ର ସଂଘର୍ଷ ଓ ଶାନ୍ତିପୂର୍ଣ୍ଣ ବାର୍ତ୍ତାଳାପ ଉଭୟଙ୍କୁ ବ୍ୟବହାର କରାଯାଇଛି । ଯେତେବେଳେ ଶାନ୍ତିପୂର୍ଣ୍ଣ ଓ ଅହିଂସା ବାର୍ତ୍ତାଳାପ କିଛି ଫଳପ୍ରଦ ହୋଇନାହିଁ, ସେତେବେଳେ ସଂଘର୍ଷର ମାଧ୍ୟମ ଲୋଡା ଯାଇଛି । ଯେତେବେଳେ ସଂଘର୍ଷର ଫଳାଫଳ ଆଶାଜନକ ହୋଇଛି, ସେତେବେଳେ ଅହିଂସା ମାର୍ଗରେ ଯିବାକୁ ଜାପାଟିଷ୍ଟାମାନେ ପସନ୍ଦ କରିଛନ୍ତି ।

(ଗ) ଜାପାଟିଷ୍ଟ ଆନ୍ଦୋଳନକୁ ସୁଦୂର ପ୍ରସାରୀ କରିବା ପାଇଁ ଓ ଦେଶ ବିଦେଶରେ ଲୋକପ୍ରିୟ କରିବା ପାଇଁ ଇଣ୍ଟରନେଟ୍‌କୁ ମାଧ୍ୟମ କରାଯାଇଛି ।

(ଘ) ଜାପାଟିଷ୍ଟା ଆନ୍ଦୋଳନର ନେତୃତ୍ୱ ସବ୍‌କମାଣ୍ଡାଣ୍ଟ ମାର୍କସଙ୍କ ଭଳି ମହାନ୍ ବ୍ୟକ୍ତିତ୍ୱଙ୍କ ହାତରେ ଅଛି । ଜାପାଟିଷ୍ଟର ଆନ୍ଦୋଳନ ମୁଖ୍ୟତଃ ତାଙ୍କ ଯୋଗୁ ଆଜି ପର୍ଯ୍ୟନ୍ତ ଉଜ୍ଜୀବିତ ରହିଛି ।

(ଙ) ଜାପାଟିଷ୍ଟା ଆନ୍ଦୋଳନର ମୂଳ ଆଦିବାସୀଙ୍କ ଜୀବନ ଜୀବିକା ଓ ସ୍ୱାୟତ୍ତ ଶାସନ ଉପରେ ଆଧାରିତ ହୋଇଛି ଯାହା ଏକ ନିରନ୍ତର ସଂଘର୍ଷ ପାଇଁ ଖୋରାକ୍ ଯୋଗାଇଛି ।

(୨)

ଜାପାଟିଷ୍ଟା ଆନ୍ଦୋଳନ ଓ ସବ୍‌କମାଣ୍ଡାଣ୍ଟ ମାରକସ୍ ଅବିଚ୍ଛିନ୍ନ ଓ ଏକାକାର । ଜାପାଟିଷ୍ଟା ଆନ୍ଦୋଳନକୁ ବୁଝିବାକୁ ହେଲେ ସ୍ୱବକମାଣ୍ଡାଣ୍ଟ ମାର୍‌କସ୍‌ଙ୍କୁ ବୁଝିବାକୁ ହେବ, ତାଙ୍କର ଲେଖନୀ ନିସୃତ ବର୍ଣ୍ଣନା ଓ ଦର୍ଶନାତ୍ମକ ପ୍ରବନ୍ଧ ଗୁଡ଼ିକୁ ପଢିବାକୁ ହେବ ଓ ତାଙ୍କ ଉପରେ ଲେଖା ଯାଇଥିବା ବର୍ଣ୍ଣନାଗୁଡିକୁ ଆଦର କରିବାକୁ ହେବ । ବିଶ୍ୱ ସାହିତ୍ୟର ଅନ୍ୟତମ ଲେଖକ ଓ ନୋବେଲ୍ ପୁରସ୍କାର ବିଜେତା ଗାବ୍ରିଏଲ୍ ଗାର୍ସିଆ ମାର୍କ୍ୱେଜ୍ ସବ୍‌କମାଣ୍ଡାଣ୍ଟ ମାର୍‌କସ୍‌ଙ୍କ ସହ ଏକ ସାକ୍ଷାତକାରରେ ଉଲ୍ଲେଖ କରିଛନ୍ତି-

'ଡ଼ନ୍‌କୁଇ‌ଟି (ସରଭାଣ୍ଟିସ୍‌ଙ୍କ ଲିଖିତ), ରୋମାନ୍‌ସେରେ ଗିଟାନୋ (ଗାର୍ସିଆ ଲୋର୍କାଙ୍କ ଲିଖିତ), ହାମଲେଟ୍ ଓ ମାକ୍‌ବେଥ (ସେକ୍ସପିଅର୍‌ଙ୍କ ଲିଖିତ) ବହି ମୋ ପାଖରେ ସବୁବେଳେ ଥାଏ । କାରଣ ମେକ୍ସିକୋର ରାଜନୈତିକ ବ୍ୟବସ୍ଥା ବୁଝିବାକୁ ଏ ବହିଗୁଡିକ ବେଶ୍ ସାହାଯ୍ୟ କରିଥାଏ । ଟ୍ରାଜିକ୍ କମେଡି ଅଥବା ହସକାନ୍ଦଭରା ଏ ବହିଗୁଡିକ ଯେ କୌଣସି ରାଜନୈତିକ ସ୍ତମ୍ଭକାରଙ୍କଠାରୁ ବେଶୀ ଉପାଦେୟ ବୋଲି ମୁଁ ମନେକରେ ।'

ବିଖ୍ୟାତ ବିପ୍ଳବୀ ଚେ ଗୁଆଭେରାଙ୍କ ପରେ ସାରା ପୃଥିବୀରେ ଦୃଷ୍ଟି ଆକର୍ଷଣ କରିଥିବା ସବ୍‌କମାଣ୍ଡାଣ୍ଟ ମାରକସ୍ ଜଣେ ରହସ୍ୟମୟ ମଣିଷ । ତାଙ୍କର ପ୍ରକୃତ ପରିଚୟ ବହୁତ କମ୍ ଲୋକ ଜାଣିଛନ୍ତି ଓ ତାଙ୍କର ଜୀବନ ଇତିହାସ ମଧ୍ୟ । ମୁଖା ପିନ୍ଧିଥିବା ମଣିଷ ହିସାବରେ ତାଙ୍କୁ ସମସ୍ତେ ଚିହ୍ନନ୍ତି । ଆହୁରି ମଧ୍ୟ ସବୁବେଳେ ପାଇପ ମୁହଁରେ ଥାଏ । ମେକ୍ସିକୋ ସରକାରଙ୍କ ଗୁପ୍ତଚର ବିଭାଗର ସୂଚନାରୁ ଜଣାପଡେ ଯେ ତାଙ୍କ ପ୍ରକୃତ ନାମ ରାଫାଏଲ୍ ଗୁଇଲେନ୍ । ମଧ୍ୟବିତ୍ତ ପରିବାରୁ ଆସିଥିବା ଜଣେ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ସେ । କିନ୍ତୁ ସବ୍‌କମାଣ୍ଡାଣ୍ଟ ମାର୍‌କସ୍ ଏହା ଅସ୍ୱୀକାର କରି ନିଜର ପରିଚୟକୁ ଲୁଚାଇ ରଖିଛନ୍ତି । ସେ ମୂଳ ଆଦିବାସୀ ସମ୍ପ୍ରଦାୟର କି ? ତାଙ୍କର ସଫାଗୋରା ଚେହେରାରୁ ଜଣା ପଡ଼େ ଯେ ସେ ଆଦିବାସୀ ନହୋଇ ପାରନ୍ତି । ଏଥିପାଇଁ ତାଙ୍କ ସମାଲୋଚକମାନେ

ମାରକସ୍‌ଙ୍କ ଲକ୍ଷ୍ୟ, ଉଦ୍ଦେଶ୍ୟ ଓ ରଣନୀତିକୁ ପ୍ରଶ୍ନ କରନ୍ତି ଓ ସନ୍ଦେହ ଚକ୍ଷୁରେ ଦେଖନ୍ତି । କିନ୍ତୁ ସବ୍‌କମାଣ୍ଡାଣ୍ଟ ମାର୍‌କସ୍ ଜଣେ ଦକ୍ଷ କମ୍ୟୁନିକେଟର । ଚମତ୍କାର ସେ ଲେଖନ୍ତି ଓ ଓଜସ୍ୱିନୀ ଭାଷଣ ଦିଅନ୍ତି । ସାରା ମେକ୍ସିକୋ ତାଙ୍କର ଲେଖା କେବେ ପ୍ରକାଶିତ ହେବ ଚାହିଁ ବସିଥାଆନ୍ତି । ଆଦିବାସୀଙ୍କ କାହାଣୀ ହେଉ ବା ସଂଘର୍ଷର ଇତିହାସ ହେଉ ତାଙ୍କର ବଳିଷ୍ଠ ଲେଖନୀ କେବେ ଅଟକି ଯାଇନି ଯଦିଓ ସେ ବେଳେବେଳେ ନୀରବ ହୋଇ ଯାଆନ୍ତି ଓ ଆତ୍ମଗୋପନ କରିଥାଆନ୍ତି । ଗତ ୨୦୦୪ ମସିହା ଅଗଷ୍ଟ ମାସରେ କିଛି ଦିନର ନୀରବତା ଭଙ୍ଗକରି ସବ୍‌କମାଣ୍ଡାଣ୍ଟ ମାରକସ୍ ଆଠୋଟି ଘୋଷଣାପତ୍ର ପ୍ରକାଶିତ କରିଥିଲେ ଯାହାର ନାମ ଥିଲା 'ଭିଡିଓ ପଠନ' । ୨୦୦୫ ମସିହାରେ ସେ ମେକ୍ସିକୋ ସାରା ଧ୍ୟାନ ଆକର୍ଷଣ କରିଥିଲେ ଯେତେବେଳେ ସେ ଲେଖିଥିଲେ ଯେ ଜାପାଟିଷ୍ଟା ଆନ୍ଦୋଳନର ଏକ ଢାଞ୍ଚାଗତ ପରିବର୍ତ୍ତନ ହୋଇଛି ଓ ସବ୍‌କମାଣ୍ଡାଣ୍ଟ ମାରକସ୍‌ଙ୍କ ନେତୃତ୍ୱର ଏକ ପର୍ଯ୍ୟାୟ ଶେଷ ହୋଇଛି । 'ଲାକାଣ୍ଡନ୍ ଜଙ୍ଗଲର ଷଷ୍ଠ ଘୋଷଣାପତ୍ର' ଆଜି ଏକ ଯୁଗାନ୍ତକାରୀ ଦସ୍ତାବିଜ ଭାବେ ଆଦୃତ ହୋଇଛି ।

ସବ୍‌କମାଣ୍ଡାଣ୍ଟ ମାରକସ୍ ଜାପାଟିଷ୍ଟା ଆନ୍ଦୋଳନ ରଣନୀତି ତିଆରି କରିବାରେ ମୁଖ୍ୟ ଭୂମିକା ନେଇଛନ୍ତି । ଜାପାଟିଷ୍ଟା ଆନ୍ଦୋଳନ ଯେତେବେଳେ ସାମରିକ ବାହିନୀ ରୂପେ ଛିଡା ହୋଇଛି ମାରକସ୍ ତାହାର ସେନାଧିପତି ଭାବେ ଦାୟିତ୍ୱ ନେଇଛନ୍ତି । କିନ୍ତୁ ଏହି ଜାତୀୟ ମୁକ୍ତିବାହିନୀ ଏକ ସାମାରିକ ଶକ୍ତି ରୂପେ କ୍ଷମତାସୀନ ହେଉ ସେ ଚାହିଁ ନାହାନ୍ତି । କାରଣ ସେ ଜାଣିଛନ୍ତି ଯେ ଜାପାଟିଷ୍ଟା ଆନ୍ଦୋଳନ ଯଦି କ୍ଷମତା ଦଖଲ କରିବ ସେ ଆନ୍ଦୋଳନ ହିସାବରେ ତିଷ୍ଠି ପାରିବ ନାହିଁ । ବିଫଳତା ଗ୍ରାସ କରିବ । ଲାଟିନ୍ ଆମେରିକାରେ ସାମରିକ ଶକ୍ତି ବଳରେ ଯେଉଁ ଆନ୍ଦୋଳନ ସବୁ କ୍ଷମତାସୀନ ହୋଇଛନ୍ତି ସେମାନେ ଯେ ସବୁ କ୍ଷେତ୍ରରେ ସଫଳତା ହାସଲ କରଛନ୍ତି ଏହା କହିହେବ ନାହିଁ । ଏ ବିଷୟରେ ମାରକସ୍ ସଦାସର୍ବଦା ସଚେତନ ଅଛନ୍ତି । ଦେଖା ଦେଇଛି ଯେ କୌଣସି ଦେଶର ଶକ୍ତିଶାଳୀ ଅତ୍ୟାଚାରୀ ଶାସକ ଗୋଷ୍ଠୀକୁ ବିରୋଧ କରି କେତେକ ଦୂରଦୃଷ୍ଟି ସମ୍ପନ୍ନ ମାର୍ଗଦର୍ଶୀମାନେ ଏକ ଗୋଷ୍ଠୀ ତିଆରି କରି ଅତ୍ୟାଚାରୀମାନଙ୍କୁ କ୍ଷମତାଚ୍ୟୁତ କରନ୍ତି ଓ କ୍ଷମତା ଦଖଲ କରନ୍ତି । କିନ୍ତୁ ଉଭୟ କ୍ଷେତ୍ରରେ ସାମାଜିକ ପରିବର୍ତ୍ତନ ହୁଏ ନାହିଁ । ବାମପନ୍ଥୀ ମତବାଦୀ ହୁଅନ୍ତୁ ବା ଦକ୍ଷିଣପନ୍ଥୀ ମିଲିଟାରୀ ହୁଅନ୍ତି, କେହି ଦେଶପାଇଁ ଉତ୍ତମ ବାତାବରଣ ସୃଷ୍ଟିକରି ପାରନ୍ତି ନାହିଁ । ବାମପନ୍ଥୀ ହୁଅନ୍ତୁ ବା

ଦକ୍ଷିଣପନ୍ଥୀ ହୁଅନ୍ତୁ, ଲୋକ ଲୋକ ଭିତରେ, ଗୋଷ୍ଠୀ ଗୋଷ୍ଠୀ ଭିତରେ ସମ୍ମାନ ଓ ସହନଶୀଳତା ସୃଷ୍ଟି କରିପାରନ୍ତି ନାହିଁ । ଜାପାଟିଷ୍ଟା ଆନ୍ଦୋଳନର ରୂପରେଖ ଏଇଭଳି ମାର୍‌କସ୍‌ଙ୍କ ଚିନ୍ତନରୁ ଗଢ଼ି ଉଠିଛି । ତେଣୁ ଲଢାଇ ଚାଲିଛି ସରକାରଙ୍କ ସୈନ୍ୟବାହିନୀ ହେଉ ବା ବହୁରାଷ୍ଟ୍ରୀୟ କମ୍ପାନୀମାନେ ହୁଅନ୍ତୁ । କିନ୍ତୁ ଅହିଂସା ମୂଲ୍ୟବୋଧ ବିରାଜମାନ କରିଛି ଜାପାଟିଷ୍ଟା ଆନ୍ଦୋଳନରେ । ସବ୍‌କମାଣ୍ଡାଣ୍ଟ୍ ମାର୍‌କସ୍ ଯେତେବେଳେ ମେକ୍ସିକୋ ସିଟି ଅଭିମୁଖେ ଅଭିଯାନ ଯାତ୍ରା ଆରମ୍ଭ କରିଥିଲେ ସମ୍ପୂର୍ଣ୍ଣ ନିରସ୍ତ୍ର ଥିଲେ ଓ ଅହିଂସା ମାର୍ଗ ଗ୍ରହଣ କରିଥିଲେ । ସବ୍‌କମାଣ୍ଡାଣ୍ଟ୍ ମାର୍‌କସ୍ କୁହନ୍ତି 'ଆମର ବିପ୍ଳବ ଶବ୍ଦର ବିପ୍ଳବ । ଅର୍ଥାତ ଆମେ ପ୍ରକାଶ କିରବାକୁ ଚାହିଁନ୍ତୁ ଯେ ଆମର ବିପ୍ଳବ ଆରମ୍ଭ ହୋଇଛି । ସାରା ପୃଥିବୀକୁ ଆମେ ଜଣାଇ ଦେବାକୁ ଚାହୁଁନ୍ତୁ ଯେ ଆମେ ଲୁଚି ରହିନ୍ତୁ, ସ୍କିମାସ୍କ (ମୁଖା) ପିନ୍ଧିନ୍ତୁ । ଗୋଟାଏ ନିଷିଦ୍ଧ ସଂସ୍କାର ସଭ୍ୟ ହୋଇନ୍ତୁ ଓ ବିଭିନ୍ନ ଅସ୍ପଷ୍ଟ ବାଟରେ ଆମେ ଉପସ୍ଥିତ ହୋଇନ୍ତୁ । ଆମେ ଉପସ୍ଥିତ ହୋଇନ୍ତୁ ଲକ୍ଷ ଲକ୍ଷ ସଂଖ୍ୟାରେ, ଅଗଣିତ ସଂଖ୍ୟାରେ, ମେକ୍ସିକୋ ଆମକୁ ଭୁଲି ଯିବାକୁ ବସିଛି ।'

ସେ ଆହୁରି କୁହନ୍ତି- ୧ ୯ ୯ ୪ ମସିହା ଜାନୁଆରୀ ମାସରେ ଯେଉଁ ଜାପାଟିଷ୍ଟା ଆନ୍ଦୋଳନ ଆରମ୍ଭ ହେଲା ପୂର୍ଣ୍ଣ ପ୍ରାଣରେ ତାହାର ଏକମାତ୍ର କାରଣ ଥିଲା ଜଗତୀକରଣ ବିରୁଦ୍ଧରେ ଲଢ଼ିବା । ମେକ୍ସିକୋ ଯୁକ୍ତରାଷ୍ଟ୍ର ଆମେରିକା ସହ ନାଫ୍‌ଟା ଚୁକ୍ତି ସାକ୍ଷର କରିବା ମାତ୍ରକେ ଜଣା ପଡିଲା ଯେ ସାରା ମେକ୍ସିକୋ ଓ ଏହାର ମୂଳ ଆଦିମ ଅଧିବାସୀଙ୍କୁ ବଳି ପକାଯାଉଛି । ଗୋଟାଏ ଜାତିକୁ ନିଶ୍ଚିହ୍ନ କରିବା ପାଇଁ, ନବ-ଉଦାରୀକରଣକୁ ପ୍ରୋତ୍ସାହନ ଦିଆଯାଇ ସମର୍ଥନ କରାଯାଇଛି । ଚିଆପାସ୍‌ର ଅଧିବାସୀମାନେ ବିଶେଷ ଭାବେ କ୍ଷତିଗ୍ରସ୍ତ ହେବେ । ସେଇଥିପାଇଁ ଏ ବିପ୍ଳବର ଅୟମାରମ୍ଭ । ସାରା ପୃଥିବୀର କୃଷକ ଆନ୍ଦୋଳନ, ପୃଥିବୀର ବିଭିନ୍ନ ସଂଖ୍ୟା ଲଘୁଙ୍କ ଆନ୍ଦୋଳନ ସହ ଏ ଜାପାଟିଷ୍ଟା ଆନ୍ଦୋଳନର ସମ୍ପର୍କ ଅଛି ଓ ସମର୍ଥନ ଅଛି । ଜାପାଟିଷ୍ଟା ଆନ୍ଦୋଳନର ସେ ଦେଶ ମଧ ଠିକ୍ ସେଇଆ । ଚିଆପାସ୍ ଅଧିବାସୀଙ୍କ ଦଶା ଯାହା ସାରା ପୃଥିବୀରେ ଆଦିବାସୀ ଓ ସଂଖ୍ୟାଲଘୁଙ୍କ ଦଶା ସେଇଆ- ଜାପାଟିଷ୍ଟା ଆନ୍ଦୋଳନ ସାରା ପୃଥିବୀରେ ଜଗତୀକରଣ ବିରୋଧରେ ସତର୍କବାଣୀ ଶୁଣାଇଛି । ପୃଥିବୀରେ ଜଗତୀକରଣ ପ୍ରକ୍ରିୟାରେ ଅତ୍ୟାଧୁନିକ ମୂଲ୍ୟବୋଧ ଓ ବସ୍ତୁକୁ ପୁଞ୍ଜିକରି ଯେତେ ପ୍ରକଚ୍ଚ କାର୍ଯ୍ୟକାରୀ ହେଉ ପଛକେ, ସେ ଅତୀତର ମୂଲ୍ୟବୋଧ ଓ ଇତିହାସକୁ ବିଚାରକୁ ନେବ ହିଁ ନେବ । ନହେଲେ ମେକ୍ସିକୋର

ଯେଉଁ ପରିଣତି ହେଲା ତାହା ନିଶ୍ଚିତ ଘଟିବ । ଜଗତୀକରଣ ସପକ୍ଷବାଦୀ ଶକ୍ତିକୁ ବହୁମୂଲ୍ୟ ଦେବାକୁ ହେବ ।

ଆଦିବାସୀଙ୍କ ଅବସ୍ଥା ଗୁରୁତର ଅବସ୍ଥାରେ ପହଞ୍ଚିଛି । ସେମାନଙ୍କର ନାଗରିକତାର ସ୍ତର ନିମ୍ନକୁ ଖସିଛି । ମଣିଷଠାରୁ ହୀନ ବୋଲି ସେମାନଙ୍କୁ ଧରାଯାଇଛି, ଶିକ୍ଷାୟତନର ଦ୍ୱାର ସେମାନଙ୍କ ପାଇଁ ବନ୍ଦ ହୋଇଯାଇଛି । ଏପରିକି ଜୀବନର ଶିଢ଼ି ଚଢ଼ିବାକୁ ତାଙ୍କୁ ସୁଯୋଗ ଦିଆଯାଉନାହିଁ । ସମସ୍ତ ଆଦିବାସୀଙ୍କ ପରିବାରରୁ କିଏ ନା କିଏ ପିଲାମାନେ ମରିଯାଇଛନ୍ତି । ଏହା ହିଁ ହେଉଛି ଜାପାଟିଷ୍ଟା ଆନ୍ଦୋଳନର ଏକ ସାମାଜିକ ମତବାଦର ଭିତ୍ତିଭୂମି । ଏହାକୁ ନେଇ ହଜାର ହଜାର ଆଦିବାସୀ ରାଜ ରାସ୍ତାକୁ ଓହ୍ଲାଇଛନ୍ତି । ହାତରେ ନାନା ପ୍ରକାର ଅସ୍ତ୍ରଶସ୍ତ୍ର । ଏପରିକି ଅସଲ ବନ୍ଧୁକ ପରିବର୍ତ୍ତେ କାଠର ବନ୍ଧୁକ । ନାଁ ମିଲିଟାରୀ ଟ୍ରେନିଂ ଅଛି ନା ସାମରିକ ଶୃଙ୍ଖଳା ଅଛି । କିନ୍ତୁ ଏକ ଶକ୍ତିଶାଳୀ ମେକ୍ସିକୋର ସେନାବାହିନୀ ବିରୁଦ୍ଧରେ ଲଢ଼ିବାର ଅଦମ୍ୟ ସାହସ ଅଛି । ସରକାରଙ୍କ ନୀତି ଓ ମୁକ୍ତ ଏକ ଅବାଧ ବେପାର ବାଣିଜ୍ୟ ବିରୁଦ୍ଧରେ ଏକ ସଶସ୍ତ୍ର ବିଦ୍ରୋହ । ସେମାନଙ୍କ ପାଇଁ ଅନ୍ୟ କୌଣସି ରାସ୍ତା ଆଉ ଯେମିତି ନାହିଁ । ସଶସ୍ତ୍ର ଆନ୍ଦୋଳନ ପୂର୍ବରୁ ସବୁଆଡ଼େ ମୃତ୍ୟୁ ବିରାଜମାନ କରୁଥିଲା । ଆଦିବାସୀଙ୍କ ଦାରିଦ୍ର୍ୟ, ଶୋଷଣ ଓ ଅତ୍ୟାଚାର ଦ୍ୱାରା ସେମାନଙ୍କୁ ଲଜ୍ଜିତ ହେବାକୁ ପଡୁଥିଲା ଆଦିବାସୀ ବୋଲି । ରାସ୍ତାରେ ଚାଲିବାକୁ ସାହସ ହେଉନଥିଲା । ଅଣଆଦିବାସୀ ମାଲିକମାନେ ସେମାନଙ୍କୁ ଦେଖୁଥିଲେ ପଶୁଠାରୁ ହୀନ ଦୃଷ୍ଟିରେ । ଧନୀ ମାଲିକ ନିଜର ପଶୁଟିଏ ମରିଗଲେ ଦୁଃଖରେ ମ୍ରିୟମାଣ ହୋଇପଡୁଥିଲା ଅଥଚ ଆଦିବାସୀ ଶ୍ରମିକଟିଏ ମରିଗଲେ ତା'ର ଖାତିର ନଥିଲା । ଏଇଆ ହେଉଛି ମେକ୍ସିକୋର ଚିଆପାସର ମୂଳ ଆଦିବାସୀଙ୍କ ସଂକ୍ଷିପ୍ତ ଇତିହାସ । ଆଦିବାସୀଙ୍କ ଜମି ଓ ଭିଟାମାଟି ସହ ସମ୍ପର୍କ କୃଷିକର ଜମିସହ ସମ୍ପର୍କଠାରୁ ଆହୁରି ମୌଳିକ ଓ ନିବିଡ଼ । ଜମି ଓ ଭିଟାମାଟି ଖାଲି ଖାଦ୍ୟଶସ୍ୟ ଉତ୍ପାଦନ ସହ ସମ୍ପର୍କରେ ସୀମିତ ନାହିଁ । ଏହା ସେମାନଙ୍କର ଇତିହାସ ସହ ସଂଶ୍ଳିଷ୍ଟ । ସେଠାକାର ମଣିଷ, ପାହାଡ଼ ପର୍ବତ, ନଦୀଝରଣା ସହ ତାର ଅନ୍ତରଙ୍ଗ ସମ୍ପର୍କ ଅଛି । ଅତୀତରେ ଯାହା ଘଟିଛି, ବର୍ତ୍ତମାନ ଯାହା ଘଟୁଛି ଓ ଭବିଷ୍ୟତରେ ଯାହା ଘଟିବାକୁ ଯାଉଛି । ଏ ଜମି ଓ ଭିଟାମାଟିର ଘନିଷ୍ଠ ସମ୍ପର୍କ ଅଛି । ସେ ଗୋଟାପଣେ ଭୂମିପୁତ୍ର ସବୁ ଦୃଷ୍ଟିରେ ।

ସବ୍‌କମାଣ୍ଡାଣ୍ଟ ମାର୍‌କସ୍ ଜଣେ ବୁଦ୍ଧିଜୀବୀ, ଜଣେ ଆଧୁନିକବାଦ ପର ସମୟରେ ବିପ୍ଳବୀ । ସେ ହସନ୍ତି ଓ ହସାନ୍ତି । ଅନ୍ୟ ବିପ୍ଳବୀ ନେତାଙ୍କ ଭଳି ଗମ୍ଭୀର

ନୁହନ୍ତି । ସେ କୁହନ୍ତି ଯେ ଲାକାଣ୍ଡନ୍ ଜଙ୍ଗଲରେ ଜୀବିତ ରହିବାକୁ ହେଲେ ହସିବାକୁ ପଡ଼ିବ ଓ ହାସ୍ୟରସରେ ବିଶ୍ୱାସ କରିବାକୁ ପଡ଼ିବ । ଜଣେ ଗରିଲା ଯୋଦ୍ଧା ହିସାବରେ ଏହାକୁ ଏକ ଅସ୍ତ୍ର ରୂପେ ବ୍ୟବହାର କରିବାକୁ ପଡ଼ିବ । ମାରକସ୍ ନିଜେ ପରିବର୍ତ୍ତନ ହେଉଛି । ଅତୀତର ମାରକସ୍, ୧୯୯୪ ମସିହା ପୂର୍ବରୁ ପାହାଡ଼ ପର୍ବତରେ ରହୁଥିବା ମାରକସ୍ ଓ ବିପ୍ଳବ ଆରମ୍ଭ ହେବା ପରଠାରୁ ମାରକସ୍- ଏଇଭଳି ତିନୋଟି ବ୍ୟକ୍ତିତ୍ୱର ସମାହାରରେ ନୂତନ ସବ୍‌କମାଣ୍ଡାଣ୍ଟ ମାର୍‌କସ୍ ରୂପ ଦେଇଛି । ସେ ହେଉଛି ଗୋଟିଏ ପ୍ରତୀକ, ବିପ୍ଳବର ପ୍ରତୀକ । କେବଳ ଗୋଟାଏ ନାଁ ନୁହଁ । ବାର ବର୍ଷଧରି ଜଙ୍ଗଲରେ ଥିବା ମାର୍‌କସ୍ ଜନ୍ମ ଦେଇଛି ନୂତନ ଭାବେ । ମରିଯାଇଛି ସମାଜ ଭିତରେ ସାଧାରଣ ନାମ ଦେଇଥିବା ମାର୍‌କେସ୍ । ସବ୍‌କମାଣ୍ଡାଣ୍ଟ ମାର୍‌କସ୍ ଲେଖନୀ ବଳିଷ୍ଠ ଓ ଘୋଷଣାନାମା ସବୁ ଭାବଉଦ୍ରେକକାରୀ । ସେ ବିଭିନ୍ନ ସମୟରେ ବିଭିନ୍ନ ବସ୍ତୁ ଉପରେ ପ୍ରବନ୍ଧ ଲେଖିଛନ୍ତି । ସାହିତ୍ୟ ସେସବୁ । କିନ୍ତୁ ବିପ୍ଳବର ଅଭିପ୍ରକାଶ ମଧ୍ୟ । ଗୋଟିଏ ଲେଖା ସାରା ବିଶ୍ୱରେ ଆଦୃତ ହୋଇଛି ଯାହା ନାମ ହେଉଛି- "ଚତୁର୍ଥ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଛି" । ତାଙ୍କ ସବୁ ଲେଖାରେ ଅଗ୍ନିକଣିକା ଅଛି, ବୌଦ୍ଧିକ ଭାରସାମ୍ୟତା ଅଛି, ଭାବାବେଗ ଅଛି ଓ ଆନ୍ଦୋଳିତ ହେବାର ଅନେକ ସାମଗ୍ରୀ ଅଛି । ସେଇ ଲେଖାଟିର କିୟଦଂଶ ମୁଁ ଉପସ୍ଥାପିତ କରୁଛି ଆମର ପାଠକ ମାନଙ୍କ ପାଇଁ ।'

"ସାରା ବିଶ୍ୱ ବ୍ୟବସ୍ଥାରେ ନବ-ଉଦାରୀକରଣ ସଂଶ୍ଳିଷ୍ଟ ମତବାଦ ପୃଥିବୀକୁ ଜିତିବାକୁ ଯୁଦ୍ଧ ଘୋଷଣା କରିଛି । ଶୀତଳ ଯୁଦ୍ଧ ବା କୋଲ୍‌ଡ୍ ୱାର୍ ତୃତୀୟ ବିଶ୍ୱ ଯୁଦ୍ଧ ଥିଲା କିନ୍ତୁ ଏହି ଯୁଦ୍ଧରେ ସମାଜବାଦୀମାନେ ହାରିଗଲେ ନିଶ୍ଚିତ ଭାବେ । କିନ୍ତୁ ଏହାର ଅର୍ଥ ନୁହେଁ ଯେ କିଏ ନିଶ୍ଚିତ ଭାବେ ବିଜୟୀ ହେଲା, କିଏ ଜିତିଲା ? ଯୁକ୍ତରାଷ୍ଟ୍ର ଆମେରିକା ? ଇୟରୋପ ? ଜାପାନ ? କିଏ ? ଖଳ ସାମ୍ରାଜ୍ୟର ପତନ ହେଲା ସତ ନୂତନ ବଜାର ଓ ବେପାର ସବୁଆଡେ ଖୋଲା ବ୍ୟାପିଗଲା । ଏଇଥିପାଇଁ ଏକ ନୂତନ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଛି ଯାହା ହେଉଛି ଚତୁର୍ଥ ବିଶ୍ୱଯୁଦ୍ଧ ।"

ସବ୍‌କମାଣ୍ଡାଣ୍ଟ ମାର୍‌କସ୍ କୁହନ୍ତି ଯେ ଜଗତୀକରଣ ଏକ ବିଶ୍ୱଯୁଦ୍ଧ । ଯଦି ଏ କଥାରେ କାହାର ସନ୍ଦେହ ଅଛି ସେ ସୋଭିଏତ୍ ଋଷିଆ, ଚେକୋସ୍ଲୋଭାକୀୟା ଏବଂ ଯୁଗସ୍ଲୋଭିୟା ଆଦି ରାଷ୍ଟ୍ରର ପତନ ଜନିତ ସଂଘର୍ଷକୁ ଅବଲୋକନ କରୁ, ବିଶ୍ଳେଷଣ କରୁ । ଜଗତୀକରଣ ଗୋଟିଏ ଜାତୀୟ ରାଷ୍ଟ୍ରର ରାଜନୈତିକ ଏବଂ ଆର୍ଥିକ ମେରୁଦଣ୍ଡ ଭାଙ୍ଗି ଦେବା ସଙ୍ଗେ ସଙ୍ଗେ ସାମାଜିକ ଐକ୍ୟ ମଧ୍ୟ ଧ୍ୱଂସ କରିଦିଏ । ଗୋଟାଏ ଜାତୀୟ

ରାଷ୍ଟ୍ରରେ ବଡ଼ ବଡ଼ ମହାନଗର ଗଢ଼ି ଉଠିବା ଓ ସେ ରାଷ୍ଟ୍ର ଖଣ୍ଡବିଖଣ୍ଡ ହୋଇଯିବା ପରିସ୍ଥିତିରୁ ଜଣାପଡ଼େ ଯେ ଜଗତୀକରଣ ଯୋଗୁଁ ଗୋଟାଏ ସ୍ୱାଧୀନ ରାଷ୍ଟ୍ର ଧ୍ୱଂସ ହେବା ଅତି ସହଜ । ଏହି ଦୁଇଟି ଏକା କଥା କି ସମାନ୍ତରାଳ ପ୍ରକ୍ରିୟା ? ଦେଶରେ ଏହିଭଳି ଜଟିଳ ପରିସ୍ଥିତି ସୃଷ୍ଟି ହେବାଟା କେଉଁ ଲକ୍ଷଣର ସୂଚନା ଦିଏ ? ଏହା କେବଳ ଜଗତୀକରଣ ପ୍ରକ୍ରିୟାର ଅନ୍ତର୍ଦ୍ୱନ୍ଦର ପରିପ୍ରକାଶ ଏବଂ ନବ-ଉଦାରୀକରଣ ଚିନ୍ତାଧାରର ବାସ୍ତବ ରୂପାୟନ ।

ସବ୍‌କମାଣ୍ଡାଣ୍ଟ୍ ମାର୍‌କସ୍ ଜିନ୍ଦାବାଦ୍ !

ଜାପାଟିଷ୍ଟା ଆନ୍ଦୋଳନ ଜିନ୍ଦାବାଦ୍ ! ❑

# ଜଗତୀକରଣ ଓ ସଂଗ୍ରାମରତ ମେଧା ପାଟ୍‌କରମାନେ

## (୧)

ମେଧା ପାଟ୍‌କର ମୋର ଚିରଦିନ ନମସ୍ୟା ରହିବେ । ବିକାଶ ଓ ସଂଘର୍ଷର ଇତିହାସରେ ମାଇଲ୍‌ଷ୍ଟୋନ୍ ଭଳି ଛିଡା ହୋଇ ରହିଥିବା ମେଧାଜୀଙ୍କୁ ତାଙ୍କର ସଂଗ୍ରାମ ଓ ବଳିଷ୍ଠ ଜନ ଆନ୍ଦୋଳନର ନେତୃତ୍ୱ ପାଇଁ ଏ ପୃଥିବୀ ମନେ ରଖିବ । ଆଉ ମନେ ରଖିବେ ବିଶ୍ୱବ୍ୟାଙ୍କ ଓ ସେଇଭଳି ଅନୁଷ୍ଠାନମାନେ । କେବେହେଲେ ଭୁଲିବେ ନାହିଁ ବୃହତ ନଦୀବନ୍ଧ ଯୋଜନାର ସପକ୍ଷବାଦୀମାନେ ତାଙ୍କୁ । ସାରା ପୃଥିବୀର ନାଗରିକ ସମାଜ ତାଙ୍କୁ ଅନନ୍ୟା ଭାବେ ସମ୍ମାନ ଦେବ ଓ ଅନେକ ଅଦ୍ୱିତୀୟ ସଂଘର୍ଷ ପାଇଁ ପ୍ରେରଣା ଆହରଣ କରିବ । 'ନର୍ମଦା ବଞ୍ଚାଓ ଆନ୍ଦୋଳନ'କୁ ନେତୃତ୍ୱ ଦେଉଥିବା ମେଧା ପାଟ୍‌କର କିମ୍ବଦନ୍ତୀ ମଣିଷ ହୋଇ ରହିଛନ୍ତି ଓ ସବୁଦିନ ପାଇଁ ରହିବେ । ତାଙ୍କ ସହ ମୋର ଥରେ ଅଧେ ଦେଖା ହୋଇଛି ଓ ତାଙ୍କର ଭାଷଣ ମୋତେ ଶୁଣିବାକୁ ସୁଯୋଗ ମିଳିଛି । ଅବଶ୍ୟ ବ୍ୟକ୍ତିଗତ ଯୋଗାଯୋଗ ତାଙ୍କ ସହ କେବେ ସମ୍ଭବ ହୋଇନାହିଁ । ସେ ଯେତେଥର ଓଡ଼ିଶା ଆସିଛନ୍ତି, ଦୁର୍ଭାଗ୍ୟ ଯେ ମୁଁ ସେତେବେଳେ ଉପସ୍ଥିତ ନାହିଁ । ତାଙ୍କୁ ମୁଁ ସମ୍ମାନ କରି ଆସିଛି ସଂଗ୍ରାମୀ ହିସାବରେ ଓ ସାଂଗ୍ରାମର ରଣନୀତି ସ୍ପଷ୍ଟ ଉପସ୍ଥାପନା କରିବାରେ । ତାଙ୍କର ଅହିଂସା ସଂଘର୍ଷ ଅନେକଙ୍କୁ ଆକୃଷ୍ଟ କରିଛି ଓ ନର୍ମଦା ବଞ୍ଚାଓ ଆନ୍ଦୋଳନକୁ ବିଶେଷ ଶକ୍ତିଶାଳୀ କରିପାରିଛି । ଅନ୍ୟ ପକ୍ଷରେ ଜଗତୀକରଣ ବିରୁଦ୍ଧରେ ସଂଗ୍ରାମ କରିବାର ଅକ୍ଲାନ୍ତ ଚେଷ୍ଟା ଓ ପରିଶ୍ରମ ଓ ସମସ୍ତଙ୍କୁ ଏକାଠି କରିବାର ବିଶ୍ୱାସ ସେ ହରାଇ ନାହାନ୍ତି । ତାଙ୍କୁ ଓ ନର୍ମଦା ବଞ୍ଚାଓ ଆନ୍ଦୋଳନକୁ କେନ୍ଦ୍ରକରି କେତୋଟି ଉପାଦେୟ ପୁସ୍ତକ ଲେଖା ଯାଇଛି । ଯାହାକୁ ପଢ଼ି ଅନେକ ଏ ଅନ୍ଦୋଳନ ପ୍ରତି ଆକୃଷ୍ଟ ହୋଇଛନ୍ତି । ବୃହତ୍ ନଦୀବନ୍ଧର ବିକଳ୍ପ ଯୋଜନା ମୋ ଭଳି ଅନେକଙ୍କୁ ମାର୍ଗ ଦର୍ଶନ ଦେଇଛି ।

ମେଧା ପାଟ୍‌କର ତାଙ୍କର ସଂଗ୍ରାମୀ ଜୀବନ ପ୍ରାୟ ୧୯-୨୦ ବର୍ଷ ତଳେ ଆରମ୍ଭ କରିଥିଲେ ନର୍ମଦା ଅବବାହିକାରେ । ୧୯୪୭ ମସିହାରେ ୪୦ହଜାରରୁ

ଊର୍ଦ୍ଧ୍ୱ ପରିବାର ବାସଚ୍ୟୁତ ହେଉଥାଆନ୍ତି । ଟାଟା ଇନ୍‌ଷ୍ଟିଚ୍ୟୁଟ୍ ଅଫ ସୋସିଆଲ ସାଇନ୍ସ ପକ୍ଷରୁ ଗବେଷିକା ହିସାବରେ ଏକ ଅପହଞ୍ଚ ଇଲାକାରେ ସେ ପହଞ୍ଚିଥିଲେ । ବୃହତ୍ ନଦୀବନ୍ଧ ଯୋଜନା ଦ୍ୱାରା ବିସ୍ଥାପିତ ଲୋକଙ୍କ ଦୁର୍ଦ୍ଦଶା ଦେଖି ସେ ପ୍ରଥମେ ଏପ୍ରକାର ଯୋଜନାର ଯଥାର୍ଥତା ସମ୍ପର୍କରେ ପ୍ରଶ୍ନ ଉଠାଇ ଥିଲେ । ସରକାର, ବିଶ୍ୱବ୍ୟାଙ୍କ, ରାଜନୈତିକ ନେତୃବର୍ଗଙ୍କ ନଦୀବନ୍ଧ ଯୋଜନା ପ୍ରତି ଅନୁରାଗ ଓ ସମର୍ଥନକୁ ସେ ଗ୍ରହଣ କରିପାରିନଥିଲେ । ଥଇଥାନ ଓ ପୁନର୍ବାସ ନୀତିକୁ ସେ ଗ୍ରହଣ କରିନଥିଲେ । 'ଜାତୀୟ ସ୍ୱାର୍ଥ'ର ଯୁକ୍ତି ଦେଖାଇ ଡ୍ୟାମ୍ ନିର୍ମାଣ କରିବା, ପ୍ରଭାବିତ ଆଦିବାସୀମାନଙ୍କୁ ଅତି ଅମାନୁଷିକ ଭାବେ ବିସ୍ଥାପିତ କରିବା ଓ ସେମାନଙ୍କର ଜୀବନ ଜୀବିକା ପ୍ରଶ୍ନକୁ ଉପେକ୍ଷା କରିବା, ପରିବେଶ ଉପରେ ଡ୍ୟାମ୍‌ମାନଙ୍କର ପ୍ରତିକୂଳ ପ୍ରଭାବକୁ ସ୍ୱୀକାର ନକରିବା ଓ ମାନବ ଅଧିକାରକୁ ମାନ୍ୟତା ନଦେବାକୁ କେନ୍ଦ୍ରକରି ମୁଣ୍ଡ ଟେକିଥିଲା 'ନର୍ମଦା ବଚାଓ ଆନ୍ଦୋଳନ' ଯାହାର ନେତ୍ରୀ ଓ ମାର୍ଗ ଦର୍ଶକ ଥିଲେ ମେଧା ପାଟ୍‌କର । ସର୍ଦ୍ଦାର ସରୋବର ଡ୍ୟାମ୍, ମହେଶ୍ୱର ଡ୍ୟାମ୍, ମାନ୍ ଡ୍ୟାମ୍, ଗୋଇ ଡ୍ୟାମ୍, ବର୍ଗୀ ଡ୍ୟାମ୍ ଆଦି ନଦୀବନ୍ଧକୁ ନେଇ ଏଇ ଯୋଜନାର ପରିକଳ୍ପନା କରାଯାଇଥିଲା । ବଜେଟ୍ ଥିଲା କେତେ ହଜାର କୋଟି ଟଙ୍କା । କିନ୍ତୁ ଏ ଯୋଜନାର ଲାଭକ୍ଷତି, ହାଇଡ୍ରୋଲୋଜି, ଭୂକମ୍ପନ ପ୍ରବଣତା, ଥଇଥାନ ଓ ପୁନର୍ବାସ ଆଦି ଅନେକ ସମାଲୋଚନାତ୍ମକ ପ୍ରଶ୍ନ ଉଠାଯାଇଥିଲା । ଏହାର ସ୍ଥାୟୀତ୍ୱ ଓ ସାମାଜିକ ଏବଂ ଅର୍ଥନୈତିକ ନ୍ୟାୟ ଉପରେ ଅନେକଙ୍କ ସନ୍ଦେହ ଥିଲା । ଯେତିକି ଖର୍ଚ୍ଚ ଅଟକଳ ହୋଇଛି ତାହା ପରିବର୍ତ୍ତେ ଏକ ବିକଳ୍ପ ବିକାଶ ଓ ଏକ ନିରନ୍ତର ବିକାଶର ପରିକଳ୍ପନା କରାଯାଇଥିଲା । ତିନି ଲକ୍ଷରୁ ଊର୍ଦ୍ଧ୍ୱ ବାସଚ୍ୟୁତ ଓ ପ୍ରଭାବିତ ମଣିଷଙ୍କ ସ୍ୱାର୍ଥ ରକ୍ଷା ପାଇଁ ଗଢି ଉଠିଥିଲା ନର୍ମଦା ବଚାଓ ଆନ୍ଦୋଳନ । ଏ ଆନ୍ଦୋଳନର ପ୍ରଭାବରେ ବିଶ୍ୱବ୍ୟାଙ୍କ୍ ଏକ ଉଚ୍ଚସ୍ତରୀୟ କମିଟି ୱାର୍ଲ୍ଡ଼ କମିଶନ ଅନ୍ ଡ୍ୟାମ୍‌ସ (World Commission on Dams) ଗଠନ କରିଥିଲା, ବୃହତ ନଦୀବନ୍ଧଗୁଡିକର ଲାଭକ୍ଷତି ବିଶ୍ଳେଷଣ କରିବା ପାଇଁ । ସାରା ପୃଥିବୀରେ ଏହାକୁ ନେଇ ତର୍କ ବିତର୍କ ହୋଇଥିଲା । ବିକାଶ ପାଇଁ ବୃହତ ନଦୀବନ୍ଧ ଯୋଜନା ଉପଯୋଗୀ କି ବିକଳ୍ପ କ୍ଷୁଦ୍ର ନଦୀବନ୍ଧମାନ ଯଥାର୍ଥ ଏହା ଜନମାନସକୁ ଛୁଇଁଥିଲା । ସେ ତର୍କ ଯଦିଓ ଏବେ ମଧ୍ୟ ଶେଷ ହୋଇନାହିଁ, ବୃହତ୍

ନଦୀବନ୍ଧ ଯୋଜନାର ମାନ୍ୟତା ଓ ପ୍ରାଥମିକତା ବିଶ୍ୱବ୍ୟାଙ୍କ ଓ ଅନ୍ୟ ଅର୍ଥ ସାହାଯ୍ୟକାରୀ ସଂସ୍ଥାମାନଙ୍କର କାର୍ଯ୍ୟକ୍ରମରେ ଗୁରୁତ୍ୱ ହରାଇଥିଲା ।

'ନର୍ମଦା ବଚାଓ ଆନ୍ଦୋଳନ'ର ମୁଖ୍ୟ ପୁରୋଧା ଥିଲେ ମେଧା ପାଟ୍‌କର । କିନ୍ତୁ ଏହାକୁ ସମର୍ଥନ ଦେଇଥିଲେ ପୃଥିବୀର ବୁଦ୍ଧିଜୀବୀ, ପରିବେଶବିତ୍, ନାଗରିକ ସମାଜ, ସାମାଜିକ ଆନ୍ଦୋଳନ ଓ ସାଧାରଣ ଲୋକମାନେ । ପ୍ରସିଦ୍ଧ ଲେଖିକା ଅରୁନ୍ଧତୀ ରାୟ, ବିଖ୍ୟାତ ସମାଜସେବୀ ବାବା ଆମ୍‌ତେ ଆଦି ବ୍ୟକ୍ତିମାନେ ଏ ଆନ୍ଦୋଳନ ପ୍ରତି ସର୍ବପ୍ରକାର ସମର୍ଥନ ଦେଇଥିଲେ । ସମୟକ୍ରମେ ଜାତୀୟ ସ୍ତରରେ ଗଢି ଉଠିଥିଲା ଜନ ଆନ୍ଦୋଳନଗୁଡିକର ସମାବେଶ- (ନ୍ୟାସ୍‌ନାଲ୍ ଆଲିୟାନସ୍ ଫର୍ ପିପୁଲସ୍ ମୁଭ୍‌ମେଣ୍ଟ) । ଅରୁନ୍ଧତୀ ରାୟ ତାଙ୍କ ଲେଖନୀ ସହ ବ୍ୟକ୍ତିଗତ ଭାବେ ଆନ୍ଦୋଳନରେ ସଂଶ୍ଳିଷ୍ଟ ହେବା ଏକ ଦୁଃସାହସିକ ପଦକ୍ଷେପ ଥିଲା । ଏକ ଐତିହାସିକ ଆନ୍ଦୋଳନ ହିସାବରେ ଏହା ପୃଥିବୀରେ ପ୍ରତିଷ୍ଠା ଲାଭ କରିଥିଲା । ଜାତୀୟ ଜନ ଆନ୍ଦୋଳନ ସମାବେଶର ମୁଖ୍ୟ ଆଭିମୁଖ୍ୟ ଥିଲା ଜଗତୀକରଣ ବିରୁଦ୍ଧରେ ଜନ ଆନ୍ଦୋଳନ ତେଜୀୟାନ୍ କରିବାକୁ । ଏହାର ବାସ୍ତବ ଉଦ୍ଦେଶ୍ୟ ଥିବା ବିକଳ୍ପ ବିକାଶ ଧାରାକୁ ପ୍ରସାରିତ କରିବା ଓ ଗରିବଙ୍କ ବିରୁଦ୍ଧରେ ଯେଉଁ ଶକ୍ତିଗୁଡିକ କାମ କରୁଛି ତାହାର ପ୍ରଭାବକୁ ପ୍ରତିହତ କରିବା । ଉଦ୍ଦେଶ୍ୟ ଥିଲା ଜଳ, ଜମି, ଜଙ୍ଗଲ, ଜୀବନ ଓ ଜୀବିକାର ସୁରକ୍ଷା ଓ ନିରାପତ୍ତା । ସ୍ୱାଧୀନତା ସଂଗ୍ରାମର ଅନ୍ୟ ଏକ ଅଧ୍ୟାୟ ସୃଷ୍ଟି କରିବା ମଧ୍ୟ ଏହାରି ଲକ୍ଷ୍ୟ ଥିଲା । ଏ ସଂଗଠନର ମୁଖ୍ୟ ନେତୃତ୍ୱ ମେଧା ପାଟ୍‌କରଙ୍କର ସହ ଅନ୍ୟ ସଂଗ୍ରାମୀ ସାଥୀ ଥୋମାସ୍ କୋଚେରୀ, ଅରୁଣା ରାୟ, ବିନାୟକ ସେନ ଚେନ୍ନାୟା, ଗାବ୍ରିଏଲା ଡେଇଟ୍ରିଚ୍ ଆଦି ନେଇଥିଲେ । ଗାନ୍ଧିବାଦୀ ସ୍ୱର୍ଗତ ସିଦ୍ଧରାଜ ଧଡ୍‌ଡା, ସମାଜବାଦୀ ସ୍ୱର୍ଗତ କିଶନ ପଟ୍ଟନାୟକ ଆଦିଙ୍କ ଶୁଭେଚ୍ଛା ଏ ସଂଗଠନ ପଛରେ ବଳିଷ୍ଠ ଭାବେ ଥିଲା ।

ମେଧା ପାଟ୍‌କର ଓ ତାଙ୍କ ସାଥୀମାନେ ଅନେକ ଥର ଜେଲ୍ ଗଲେଣି ବାସଚ୍ୟୁତ ବ୍ୟକ୍ତିଙ୍କ ସପକ୍ଷରେ ଲଢ଼ି ଲଢ଼ି । ସୁପ୍ରିମ୍ କୋର୍ଟର ଗୁରୁତ୍ୱପୂର୍ଣ୍ଣ ରାୟ ହେତୁ ଡ୍ୟାମ୍ ସବୁ ଗଢ଼ି ଉଠିଲା ଓ ଏହାର ଉଚ୍ଚତା ବଢ଼ିଲା । ବାସଚ୍ୟୁତ ଲୋକଙ୍କୁ ନ୍ୟାୟ ମିଳିଲା ନାହିଁ । ଗ୍ରାମ, ସହର, ଜଙ୍ଗଲ ଓ ପରିବେଶ ଜଳମଗ୍ନ ହେଲା । ଜଳସେଚନର ସୁବିଧା ଗୁଜୁରାଟର ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳରେ ପ୍ରାପ୍ତ

ହେଲା । କିନ୍ତୁ ନ୍ୟାୟ ପାଇଁ ପୁନର୍ବାସ ପାଇଁ, ପରିବେଶ ପାଇଁ ଏବେ ବି ମେଧା ପାଟ୍‌କରଙ୍କ ଆନ୍ଦୋଳନ ଶେଷ ହୋଇ ନାହିଁ ଓ ସଂଗ୍ରାମ ସରି ନାହିଁ । ଗୁଜୁରାଟରେ ମେଧାଙ୍କୁ ମାରିଦେବାକୁ ଷଡ଼ଯନ୍ତ୍ର କରାଯାଇଥିଲା ଏକଦା, ତାଙ୍କର ସମାଲୋଚକମାନେ ଏପରିକି କେତେକ ସ୍ୱେଚ୍ଛାସେବୀ ସଂଗଠନମାନେ ତାଙ୍କର ମୂଲ୍ୟବୋଧ ଓ ସଚ୍ଚୋଟପଣିଆ ଉପରେ ପ୍ରଶ୍ନ ଉଠାଇ ଥିଲେ । ଆଜିର ଆନ୍ଦୋଳନରତ ମେଧା କିନ୍ତୁ ଡରି ନାହାନ୍ତି କି ଥକି ଯାଇ ନାହାନ୍ତି । ଜଗତୀକରଣ ବିରୁଦ୍ଧରେ ତାଙ୍କର ସଂଘର୍ଷ ଜାରି ରହିଛି । ସଂଘର୍ଷ ଓ ନିର୍ମାଣ- ଉଭୟରେ ବିଶ୍ୱାସ ରଖିଥିବା ଲୋକପ୍ରିୟ ମେଧା ତାଇ ବା ମେଧା ଦିଦି ଆଜି ଅନେକ ପୁରସ୍କାର ଓ ସମ୍ମାନର ଅଧିକାରୀ । ମହାତ୍ମା ଫୁଲେ ପୁରସ୍କାର, ଗୋଲ୍‌ଡମ୍ୟାନ ପରିବେଶ ପୁରସ୍କାର, ବି.ବି.ସି.ର ସବୁଜ ରିବନ୍ ପୁରସ୍କାର, ଆମ୍ନେଷ୍ଟି ଇଣ୍ଟରନ୍ୟାସନାଲ୍‌ର ମାନବାଧିକାର ପୁରସ୍କାର, ବିକଳ୍ପ ନୋବେଲ୍ ପ୍ରାଇଜ୍ ବା ରାଇଟ୍ ଲାଇଭଲି ପୁରସ୍କାର ତାଙ୍କୁ ମିଳି ସାରିଛି ।

'ନର୍ମଦା ବଞ୍ଚାଓ ଆନ୍ଦୋଳନ'ର ସୀମା ଓ ପରସରକୁ ଅତିକ୍ରମ କରି ମେଧା ପାଟ୍‌କର ଜଗତୀକରଣ ପ୍ରକ୍ରିୟା ବିରୁଦ୍ଧରେ ସଶକ୍ତ ସଂଗଠନ ସୃଷ୍ଟି କରିବାରେ କିଛିଟା ସଫଳ ମଧ ହୋଇଛନ୍ତି । ତାଙ୍କ ମତରେ ଜଗତୀକରଣ ପ୍ରଭାବରେ ସୃଷ୍ଟି ହେଉଥିବା ବେକାରୀ ଜୀବନ ଓ ଜୀବିକାର ଅବକ୍ଷୟ, ରାଷ୍ଟ୍ରଶକ୍ତି ଓ ବିଶ୍ୱପୁଞ୍ଜିର ଅତ୍ୟାଚାର, ଦୁର୍ନୀତି ପ୍ରାକୃତିକ ସମ୍ପଦର ଦୁରୂପୋଯୋଗ ଏବଂ ମାନବାଧିକାର ଉଲ୍ଲଂଘନ ଏବଂ ସାମ୍ରାଜ୍ୟବାଦର ନୂତନ ଆବିର୍ଭାବ ଆଦିକୁ ଦୃଢ଼ଭାବରେ ବିରୋଧ କରିବାର ଅଛି । ଜଗତୀକରଣ ପ୍ରଭାବରେ କୃଷିକ୍ଷେତ୍ର, ଗାଁ ମାନଙ୍କରେ, ନଦୀ ଅବବାହିକା ମାନଙ୍କରେ, ଫ୍ୟାକ୍ଟ୍ରି ମାନଙ୍କରେ କୃଷକ, ଶ୍ରମିକ, ଆଦିବାସୀ, ଦଳିତ, ମହିଳା ଓ ଶିଶୁ ସମସ୍ତେ ଅସହାୟ ଭାବେ ଅତ୍ୟାଚାରିତ ହେଉଛନ୍ତି । ଏହି ପ୍ରକ୍ରିୟାକୁ ଦୃଢ଼ ଭାବେ ବିରୋଧ କରିବା ପାଇଁ ସେ ଦେଶସାରା ଗସ୍ତ କରିଛନ୍ତି ଓ ଉଦ୍‌ବୋଧନ ଦେଇଛନ୍ତି । କାଶୀପୁର ହେଉ ବା କଳିଙ୍ଗନଗର ହେଉ, ସମସ୍ତ ଆନ୍ଦୋଳନର ଘଟଣା ପ୍ରବାହରେ ସାମିଲ ହୋଇଛନ୍ତି । ଏକ ନୂତନ ରାଜନୀତିର ବିଶ୍ୱାସ କରୁଥିବା ମେଧା ପାଟ୍‌କର ନିର୍ବାଚନରେ ବିକଳ୍ପ ପ୍ରାର୍ଥୀ ହୋଇ ଲଢ଼େଇ କରିବାର ପ୍ରସ୍ତାବ ମଧ ଦେଇଛନ୍ତି । ଜଗତୀକରଣ ପ୍ରକ୍ରିୟା ଯେଉଁ ଯେଉଁ ବାଟ ଦେଇ ଅନୁପ୍ରବେଶ କରୁଛି ତାହା ଦ୍ୱାରା ଦେଶରେ ବିଶାଳ ପ୍ରତିବନ୍ଧକ ସୃଷ୍ଟି କରିବାର ସ୍ୱପ୍ନ ଦେଖିଛନ୍ତି ସେ । ବିକଳ୍ପ ଶିକ୍ଷା, ସ୍ୱାସ୍ଥ୍ୟ, ଜଳସେଚନ, କୃଷି ଓ ମାନବ ବିକାଶରେ ସେ ବିଶ୍ୱାସ ରଖି

ବିଭିନ୍ନ ପରୀକ୍ଷା ଓ ଅନୁସନ୍ଧାନ ମଧ୍ୟ କରିଛନ୍ତି ନର୍ମଦା ବାସନ୍ଧ୍ୟୁତମାନଙ୍କ ସହାୟତାରେ ।

ଆଜିକାଲି ଗଣମାଧ୍ୟମରେ ମେଧା ପାଟ୍କରଙ୍କ ଅନଶନ, ଗିରଫଦାରୀ ଓ ସରକାରଙ୍କ ବିସ୍ଥାପନ ଓ ଥଇଥାନ ଉପରେ ଅସ୍ପଷ୍ଟନୀତି ସମ୍ପର୍କରେ ବିଭିନ୍ନ ସମ୍ବାଦ ପ୍ରକାଶ ପାଇଥିବା କଥା ପାଠକମାନେ ଜାଣିଥିବେ । ସୁପ୍ରିମ୍ କୋର୍ଟ ରାୟ ଫଳରେ ଡ୍ୟାମ୍ର ଉଚ୍ଚତା ବଢିଲା ଓ ନର୍ମଦା ନଦୀବନ୍ଧ ଯୋଜନାରେ ଅନେକ ଅଗ୍ରଗତି ହୋଇ ଜଳସେଚନ ବ୍ୟବସ୍ଥା ଗୁଜୁରାଟରେ ସମ୍ଭବ ହେଲାପରେ ମେଧା ପାଟ୍କରଙ୍କ ଘୋର ପରାଜୟ ହେଲା ବୋଲି ଗଣମାଧ୍ୟମରେ ମଧ୍ୟ ପ୍ରକାଶିତ ହୋଇଥିଲା । ଏକଦା ଥଇଥାନ ଓ ପୁନର୍ବାସରେ ବିଶ୍ୱାସ ନକରି ସଂଘର୍ଷରେ ବିଶ୍ୱାସ କରୁଥିବା ମେଧା ଯେ ବିସ୍ଥାପିତଙ୍କ ସଫଳ ଥଇଥାନ ପାଇଁ ଅନଶନ କରିବେ ତାହା ଅନେକଙ୍କୁ ସମାଲୋଚନାର ବାରୁଦ ଯୋଗାଇଥିଲା । ବୃହତ୍ ନଦୀବନ୍ଧର ବିକଳ୍ପ ଅନୁସନ୍ଧାନରେ ସେ ସଫଳ ହେଲେ ନାହିଁ ବୋଲି ତାଙ୍କୁ ନିନ୍ଦା ମଧ୍ୟ କରାଯାଇଥିଲା । ଏସବୁ ସତ୍ତ୍ୱେ ମେଧା ପାଟ୍କରଙ୍କୁ ଜନ ଆନ୍ଦୋଳନ ପରିପ୍ରେକ୍ଷୀରେ ବୁଝିବାକୁ ହେବ । ହାରଜିତ୍ ବା ସଫଳତା ବିଫଳତାର ଯୁକ୍ତିର ଉର୍ଦ୍ଧ୍ୱକୁ ଉଠି ସଂଘର୍ଷ ପ୍ରକ୍ରିୟାର ଐତିହାସିକ ମାନ୍ୟତାକୁ ସ୍ୱୀକାର କରିବାକୁ ହେବ ।

ମେଧା ପାଟ୍କର ଏବେ ଯେଉଁ ସଂଘର୍ଷର ପର୍ଯ୍ୟାୟ ଆରମ୍ଭ କରିଛନ୍ତି ତାହାର ମୂଳ କାରଣ ହେଲା ଅନ୍ୟାୟ ଅବିଚାରର ବିରୋଧରେ ପ୍ରତିବାଦ । ସୁପ୍ରିମ୍ କୋର୍ଟର ଆଦେଶ ଉଲଂଘନ କରାଯାଇ ଡ୍ୟାମ୍ର ଉଚ୍ଚତା ଯେଉଁଭଳି ବଢାଯାଇଛି ଓ ପ୍ରଭାବିତ ଲୋକଙ୍କ ଥଇଥାନ ପ୍ରତି ଆଖିବୁଜି ଦିଆଯାଇଛି ଏହା ଘୋର ଅନ୍ୟାୟ ଓ ପ୍ରତିବାଦ ଯୋଗ୍ୟ । ସୁପ୍ରିମ୍ କୋର୍ଟ ତାଙ୍କ ରାୟ ଜରିଆରେ କହିଛନ୍ତି ଯେ ସର୍ଦ୍ଦାର ସରୋବର ପ୍ରକଳ୍ପର ଡ୍ୟାମ୍ ଉଚ୍ଚତା ବଢିପାରିବ ନାହିଁ, ଯେ ପର୍ଯ୍ୟନ୍ତ ପ୍ରତ୍ୟେକ ପ୍ରଭାବିତ ଓ ବିସ୍ଥାପିତ ବ୍ୟକ୍ତିଙ୍କ ଥଇଥାନ ହୋଇନାହିଁ । ସେଥିପାଇଁ ବର୍ତ୍ତମାନ ସେ ଆମରଣ ଅନଶନ ଆରମ୍ଭ କରିଛନ୍ତି ଓ ଗିରଫ ହୋଇ ଚିକିତ୍ସାଧିନ ଅଛନ୍ତି । ତାଙ୍କୁ ପଚାରିଲେ ସେ କୁହନ୍ତି ଯେ ସେ ବିକାଶ ଓ ଟେକ୍ନୋଲୋଜିର ବିରୁଦ୍ଧରେ ନାହାନ୍ତି । ଯେଉଁ ବୈଷୟିକ ଜ୍ଞାନରେ ସୁନ୍ଦର, ସନ୍ତୁଳିତ, ସମତା ସମ୍ପନ୍ନ, ନିରନ୍ତର ଭାବବୋଧ, ଆଦର୍ଶ ଓ ମାନବିକ ମୂଲ୍ୟବୋଧ ରହିଛି ତାହା ସର୍ବଦା ଗ୍ରହଣୀୟ । ଯେଉଁ ବିକାଶ ଓ ବୈଷୟିକ ଜ୍ଞାନ ଭବିଷ୍ୟତ ପାଇଁ ଧ୍ୱଂସ ଓ ଧ୍ୱସ୍ତ ବିଧ୍ୱସ୍ତର ଆଶଙ୍କା

ସୃଷ୍ଟି କରୁଛି, ଲକ୍ଷ ଲକ୍ଷ ଲୋକଙ୍କୁ ଘରଦ୍ୱାର, ଭିଟାମାଟି ଛାଡିବାକୁ ପଡୁଛି, ଯାହା ଜମାଧ୍ୟମରେ ଗୋଟାଏ ସମାଜର ପରିବେଶ, ଭୂଗୋଳ, ଇତିହାସ ଲୋପ ପାଇ ଯାଉଛି ଏବଂ ଯେଉଁ ବିକାଶ ଅଳ୍ପ କେତେକଙ୍କୁ ଲାଭାନ୍ୱିତ କରୁଛି ତାହା ହିଁ ହିଂସାର ପ୍ରତୀକ ଓ ବିଚାରଶକ୍ତି ବିହୀନ । ସେଥିପାଇଁ ସେ ଜୀବନର ଶେଷ ଶକ୍ତି ଥିବା ପର୍ଯ୍ୟନ୍ତ ଲଢ଼ିବାକୁ ପ୍ରସ୍ତୁତ ବୋଲି କହିଛନ୍ତି । ଆମରଣ ଅନଶନ ଏହାର ଏକ ପ୍ରତିଫଳନ ମାତ୍ର ।

(୨)

କମ୍ରେଡ୍ ଅଜୟନଙ୍କୁ ଆପଣମାନେ ଅନେକ ଜାଣି ନଥିବେ । ସେ କୌଣସି କମ୍ୟୁନିଷ୍ଟ ପାର୍ଟି ବା ସାମ୍ୟବାଦୀ ଆଦର୍ଶବାଦ ସହ ସଂଶ୍ଳିଷ୍ଟ ସେ କଥା ମୁଁ ଜାଣି ନାହିଁ କି ଜାଣିବାକୁ ମଧ ଚେଷ୍ଟା କରିନାହିଁ । କମ୍ରେଡ୍‌ମାନଙ୍କ ପ୍ରତି ଏ ଦେଶରେ ଯେତିକି ସମ୍ମାନ ଅଛି ସେତିକି ସନ୍ଦେହ ରହିଛି ବୋଲି ଇତିହାସରେ ବାରମ୍ବାର ଉଲ୍ଲେଖ କରାଯାଇଛି । ଜଗତୀକରଣ ବିରୁଦ୍ଧରେ ସଂଗ୍ରାମରତ ସବୁ ମଣିଷ କମ୍ରେଡ୍ ମଧ ନୁହନ୍ତି ବା ଉଗ୍ର ବାମପନ୍ଥୀ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇ ନଥାନ୍ତି । ସାଧାରଣ ମଣିଷ, ଶ୍ରମିକ ଓ କୃଷିଜୀବୀ, ନାଗରିକ ସମାଜ ଓ ବୁଦ୍ଧିଜୀବୀ, ସ୍ରଷ୍ଟାକାର ଓ କଳାକାର ସମସ୍ତେ ମିଶିଛନ୍ତି ଆଜି ଜଗତୀକରଣ ବିରୁଦ୍ଧରେ ଲଢ଼ିବା ପାଇଁ । କମ୍ରେଡ୍ ଅଜୟନ୍ ଏ ସଂଗ୍ରାମୀ ମଣିଷଙ୍କ ଭିତରୁ ଅନ୍ୟତମ ।

କେରଳବାସୀ କମ୍ରେଡ୍ ଅଜୟନ୍‌ଙ୍କ ସହ ବନ୍ଧୁତା ସ୍ଥାପନ ହୁଏ ଇଣ୍ଟରନେଟ୍ ମାଧ୍ୟମରେ । କୋକାକୋଲା ବିରୁଦ୍ଧରେ ପ୍ଲାଚିମାଡାଠାରେ ମୁଣ୍ଡ ଟେକିଛି ଏକ ବଳିଷ୍ଠ ଓ ଅଦ୍ୱିତୀୟ ଆନ୍ଦୋଳନ । ଅନେକ ଉତ୍‌ଥାନ ପତନ ଦେଇ ଏ ଆନ୍ଦୋଳନ ଜାରି ରହିଛି ଆଜି ଆସନ୍ତା ଏପ୍ରିଲ ୨୨ତାରିଖରେ ଏହା ପଞ୍ଚମ ବର୍ଷରେ ପଦାର୍ପଣ କରିବ । ବିଗତ ୪ବର୍ଷଧରି ସଂଗ୍ରାମର ଦୀପ ତେଜିୟାନ ରହିଛି ସେଠାରେ । ଏଇ ଆନ୍ଦୋଳନର ଏକ ମୁଖ୍ୟ ସ୍ତମ୍ଭ ହେଉଛନ୍ତି କମ୍ରେଡ୍ ଅଜୟନ୍ । ସେ ଲେଖି ପାରନ୍ତି, ଓଜସ୍ୱିନୀ ଭାଷଣ ଦେଇ ପାରନ୍ତି, ଆଦର୍ଶବାଦକୁ ନେଇ ତର୍କ ମଧ କରିପାରନ୍ତି । ସେଇଥିପାଇଁ ସେ ଏତେ ବଡ ଆନ୍ଦୋଳନକୁ କୋକାକୋଲା ଭଳି ଏକ ଶକ୍ତିଶାଳୀ ବିଶାଳକାୟ ବହୁରାଷ୍ଟ୍ରୀୟ କମ୍ପାନୀ ବିରୁଦ୍ଧରେ ଉଜ୍ଜୀବିତ କରି

ରଖିପାରିଛନ୍ତି । ଆନ୍ଦୋଳନ କରି କମ୍‌ରେଡ୍ ଅଜୟନ କେତେଥର ଜେଲ ଯାଇଛନ୍ତି । ଜେଲ୍‌ରେ ମଧ୍ୟ ତାଙ୍କୁ ଶାରିରୀକ ଯନ୍ତଣା ଦିଆଯାଇଛି ଇଲେକ୍‌ଟ୍ରିକ୍ ସକ୍ ମାଧ୍ୟମରେ । ଏଥିପାଇଁ ସେ କିଛି ମାତ୍ରାରେ ନିଜର ସ୍ମରଣ ଶକ୍ତି ଓ ଶ୍ରବଣ ଶକ୍ତି ହରାଇ ବସିଛନ୍ତି । କିନ୍ତୁ ସେ ଥକି ଯାଇନାହାନ୍ତି କି ଆନ୍ଦୋଳନରୁ ଓହରି ଯାଇନାହାନ୍ତି । ଏବେ କିଛିଦିନ ତଳେ ସେ ଭୁବନେଶ୍ୱର ଆସିଥିଲେ ଜଳ ଉପରେ ଏକ ଜାତୀୟ କର୍ମଶାଳାରେ ଭାଗ ନେବା ପାଇଁ । ସେ ଅବସରରେ ତାଙ୍କ ସହ ଜଗତୀକରଣ ଓ ଏହା ବିରୁଦ୍ଧରେ ସଂଗ୍ରାମ ବିଷୟରେ ଅନେକ ଭାବ ବିନିମୟ କରାଯାଇଥିଲା । ଅନେକ କମ୍‌ରେଡ୍‌ଙ୍କ ଭଳି ସେ ଜଣେ ମତାନ୍ଧ ବ୍ୟକ୍ତି ନୁହନ୍ତି । ସ୍ୱେଚ୍ଛାସେବୀ ସଂଗଠନ ଓ ଅନ୍ୟ ନାଗରିକ ସମାଜର କର୍ମକର୍ତ୍ତାଙ୍କ ସହ ତାଙ୍କର ସଂବାଦ ଓ ସଂଳାପ ଜାରି ରହିଛି । ଜଗତୀକରଣ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଏକ ମଜବୁତ ଶକ୍ତି ଓ ସଂଗଠନ ଗଢିବାକୁ ସେ ସଦା ସର୍ବଦା ଉଦ୍ୟମ କରୁଛନ୍ତି ବୋଲି ଖୋଲା ଖୋଲି କହିଛନ୍ତି ।

କମ୍‌ରେଡ୍ ଅଜୟନ୍‌ଙ୍କ ମୁହଁରୁ ପ୍ଲାଚିମାଡା ଜନ ଆନ୍ଦୋଳନର ଇତିହାସ ଆମୂଳଚୂଳ ଶୁଣିବାକୁ ମିଳିଥିଲା ଏବଂ ତାହା ସହିତ ତାଙ୍କର ବ୍ୟକ୍ତିଗତ ଅନୁଭୂତି ମଧ୍ୟ । କେରଳର ପାଲାକଡ୍ ଜିଲ୍ଲାର ପ୍ଲାଚିମାଡ଼ା ହେଉଛି ଗୋଟିଏ ଗାଁ । ୧୯୯୯ ମସିହାରେ କୋକାକୋଲା ବହୁରାଷ୍ଟ୍ରୀୟ କମ୍ପାନୀ ସେଠାରେ ହିନ୍ଦୁସ୍ତାନ୍ କୋକାକୋଲା ବିଭରେଜ୍ ଲିମିଟେଡ (Hindustan Cocacola Biverages Ltd.) ନାମରେ ଏକ ଭାରତୀୟ କମ୍ପାନୀ ପ୍ରତିଷ୍ଠା କରି କୋକାକୋଲା ବଟ୍‌ଲିଂ ଆରମ୍ଭ କରିଥିଲା । ଏଥିପାଇଁ ଆବଶ୍ୟକ ହେଉଥିଲା ପ୍ରଚୁର ପାଣି । ଏଥିପାଇଁ କମ୍ପାନୀକୁ ଗଭୀର ନଳକୂପ ଖନନ କରି ଜଳ ଉତ୍ତୋଳନ କରିବାକୁ ପଡିଥିଲା । ଏହାର ଫଳ ସ୍ୱରୂପ ପ୍ଲାଚିମାଡାର ଭୂଜଳ ଦୂଷିତ ହୋଇଥିଲା ଓ କୂପଗୁଡିକର ଜଳର ସ୍ତର ଓ ଗୁଣାତ୍ମକ ମାନ ହ୍ରାସ ପାଇଥିଲା । କୂଅ ପାଣି ବ୍ୟବହାର କରିବା ଦ୍ୱାରା ସାଧାରଣ ଲୋକଙ୍କ ଚର୍ମରୋଗ ହେଲା ଓ ଆଖିରେ ହେଉଥିଲା ଜ୍ୱଳନ । ସାଧାରଣ ଲୋକଙ୍କ ପ୍ରତିବାଦ କ୍ରମାଗତ ଭାବେ ବଢିଚାଲିଥିଲା । ୨୦୦୨ ମସିହାରେ ଏହା ଏକ ଶକ୍ତିଶାଳୀ ଜନ ଆନ୍ଦୋଳନ ରୂପେ ମୁଣ୍ଡ ଟେକିଥିଲା । ଲୋକେ ଧାରଣା ଦେଇଥିଲେ ପ୍ଲାଣ୍ଟର ପ୍ରବେଶ ଦ୍ୱାର ସମ୍ମୁଖରେ । କମ୍ପାନୀ କର୍ତ୍ତୃପକ୍ଷ ଏହାକୁ ଭଣ୍ଡୁର କରିବା ପାଇଁ କମ୍ପାନୀରେ କର୍ମରତ ସ୍ଥାନୀୟ କର୍ମଚାରୀଙ୍କୁ ନିୟୋଜିତ କରିଥିଲେ । କିନ୍ତୁ ୨୦୦୩ ଏପ୍ରିଲ୍ ମସିହାରେ ପ୍ଲାଚିମାଡା

ପଞ୍ଚାୟତ ନୀତିଗତ ଭାବେ କୋକାକୋଲା କମ୍ପାନୀ ଲାଇସେନ୍ସ ଆଉ ପୁର୍ନବାର ନବୀକରଣ ନକରିବା ପାଇଁ ନିଷ୍ପତ୍ତି ନେଇଥିଲା ଯାହା ଏକ ଐତିହାସିକ ନିଷ୍ପତ୍ତି ଥିଲା । କେରଳର ଯେଉଁ ସ୍ଥାନୀୟ ସ୍ୱାୟତ୍ତଶାସନ ବ୍ୟବସ୍ଥା ରହିଛି ସେଥିରେ ଏଭଳି କ୍ଷମତା ପଞ୍ଚାୟତକୁ ଦିଆଯାଇଛି । ହେଲେ ଏ ନିଷ୍ପତ୍ତି ବିରୁଦ୍ଧରେ ରାଜ୍ୟସରକାରଙ୍କ ପାଖରେ ଅପିଲ୍ କରିବା ପାଇଁ ମଧ୍ୟ କେରଳ ପଞ୍ଚାୟତିରାଜ୍ ଆକ୍ଟରେ ବ୍ୟବସ୍ଥା ରହିଛି । ପଞ୍ଚାୟତର ନିଷ୍ପତ୍ତି ପଛରେ ରାଜ୍ୟ ସରକାରଙ୍କ ସ୍ୱାସ୍ଥ୍ୟ ବିଭାଗର ଅନୁସନ୍ଧାନ ଏକ କାରଣ ଥିଲା । କୋକାକୋଲା ପ୍ଲାଣ୍ଟ ପାଖରେ ଥିବା ସ୍ଥାନୀୟ କୂଅରୁ ମିଳୁଥିବା ପାଣି ପିଇବା ଯୋଗ୍ୟ ନୁହେଁ ବୋଲି ରାଜ୍ୟ ସ୍ୱାସ୍ଥ୍ୟ ବିଭାଗ ଏକ ରିପୋର୍ଟ ଦେଇଥିଲା । ଯେଉଁ ସବୁ ଜଳର ନମୁନା ପରୀକ୍ଷାଗାରରେ ପରୀକ୍ଷିତ ହୋଇଥିଲା । ସେଥିରେ କ୍ଲୋରାଇଡ୍ ଏବଂ ଅନ୍ୟ ସବୁ ରାସାୟନିକ ଦ୍ରବ୍ୟ ମିଶିଛି ବୋଲି ପ୍ରମାଣିତ ହୋଇଥିଲା । ଭୂଜଳ ଆଉ ପିଇବା ଯୋଗ୍ୟ ନୁହେଁ ବୋଲି ସ୍ପଷ୍ଟ ପ୍ରମାଣ ମିଳିଥିଲା । ଫଳତଃ ମହିଳାମାନଙ୍କୁ ପିଇବା ପାଣି ଆଣିବାକୁ ୪-୫ କିଲୋମିଟର ପ୍ରତିଦିନ ଚାଲିବାକୁ ପଡୁଥିଲା । ଏସବୁ ଲକ୍ଷ୍ୟ କରି ମଧ୍ୟ ବିଭିନ୍ନ ସରକାରୀ ସଂସ୍ଥା ଯଥା ରାଜ୍ୟ ଜଳସମ୍ପଦ ବିଭାଗ, କେନ୍ଦ୍ର ଭୂଜଳ ବୋର୍ଡ, କେରଳର ପରିବେଶ ସମ୍ପର୍କିତ ବ୍ୟବସ୍ଥାପକ କମିଟି, ରାଜ୍ୟ ପ୍ରଦୂଷଣ ବୋର୍ଡ କୋକାକୋଲା କମ୍ପାନୀକୁ ସୁହାଇଲା ଭଳି ମତାମତ ଦେଇଥିଲେ ବିଭିନ୍ନ ପରୀକ୍ଷା ନିରୀକ୍ଷା କରିଲା ପରେ । କୋକାକୋଲା ବଟଲିଂ ପ୍ଲାଣ୍ଟ୍ ଯେ ମାତ୍ରାଧିକ ଭୂଜଳ ଉତ୍ତୋଳନ କରିବା ଦ୍ୱାରା ଭୂଜଳ ବିଶେଷ ପ୍ରଦୂଷିତ ହେଉଛି ତାହା ସ୍ୱୀକାର କରି ନଥିଲେ ଏବଂ ଉପୁଜିଥିବା ସମସ୍ୟା ବିଶେଷ ଗୁରୁତର ନୁହେଁ ବୋଲି କହିଥିଲେ । ବର୍ଷା ଜଳର ପରିମାଣ ଓ କମ୍ପାନୀର ନିୟନ୍ତ୍ରଣ ହେଉଥିବା ଜମିରେ ଜଳ ଅମଳ କ୍ଷମତା ମଧ୍ୟ ଅଧ୍ୟୟନ କରାଯାଇ ନଥିଲା । ଅନେକ କିଛି ଭ୍ରମାତ୍ମକ ସୂଚନା ସରକାରୀ କମିଟିମାନ ଦେଇଥିଲେ । କିନ୍ତୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଥିଲା ଯେ କୋକାକୋଲା କମ୍ପାନୀ ୩ ଲକ୍ଷ ଲିଟରରୁ ଅଧିକ ଭୂଜଳ ଦୈନିକ ଉତ୍ତୋଳନ କରିପାରିବ ନାହିଁ ।

ସରକାରୀ କମିଟି ଓ ସଂସ୍ଥାମାନଙ୍କର ବିପରୀତ ମନୋଭାବ ଦେଖି ପ୍ଲାଚିମାଡାର ଜନ ସାଧାରଣ ଏକ "ପିପୁଲ୍ସ କମିଶନ" ଗଠନ କରିଥିଲେ । ବିଭିନ୍ନ ସ୍ୱେଚ୍ଛାସେବୀ ସଂଗଠନ ଓ ସମ୍ବେଦନଶୀଳ ବୈଜ୍ଞାନିକମାନଙ୍କର ସହାୟତାରେ ପ୍ରମାଣ କରିଥିଲେ ଯେ କୋକାକୋଲା କମ୍ପାନୀ କର୍ତ୍ତୃପକ୍ଷ ଦୈନିକ ଦଶ ଲକ୍ଷ

ଲିଟରେରୁ ଊର୍ଦ୍ଧ୍ୱ ଭୂଜଳ ଉତ୍ତୋଳନ କରୁଛନ୍ତି ଯାହା ୨୦,୦୦୦ ଲୋକଙ୍କ ଆବଶ୍ୟକତା ଠାରୁ ବେଶୀ । ଏହାଦ୍ୱାରା କେବଳ ପାନୀୟ ଜଳ ନୁହେଁ, କୃଷି ଉପରେ ମଧ୍ୟ ପ୍ରଭାବ ପଡିଛି ଓ ୨୫୦ ହେକ୍ଟର ଧାନ ଜମି ପଡିଆ ପଡିଛି । ବାସ୍ତବ ପରୀକ୍ଷାରୁ ଜଣା ପଡିଲାଯେ ଭୂଜଳ ଖାରିଆ ହୋଇଯାଇଛି । କାର୍ବୋନେଟ୍ ଓ କ୍ଲୋରାଇଡ୍‌ର ମାତ୍ରା ସୀମା ଟପିଛି ଏବଂ ଭୂଜଳ ମଣିଷ ବ୍ୟବହାର ଯୋଗ୍ୟ ନୁହେଁ ବୋଲି ପ୍ରମାଣିତ ହୋଇ ଯାଇଛି ।

ପଞ୍ଚାୟତର ନିଷ୍ପତ୍ତି ବିରୁଦ୍ଧରେ ହାଇକୋର୍ଟରେ କୋକାକୋଲା କମ୍ପାନୀ ଏକ କେଶ୍ ଲଢିଥିଲା ଏବଂ ଏଥିରେ ବିଭିନ୍ନ ସରକାରୀ ସଂସ୍ଥାମାନଙ୍କର ଅନୁକୂଳ ରିପୋର୍ଟ ସବୁ ଉପସ୍ଥାପନା କରିଥିଲା । ହାଇକୋର୍ଟ ମଧ୍ୟ କୋକାକୋଲା କମ୍ପାନୀ ସପକ୍ଷରେ ରାୟ ଦେଇ ପଞ୍ଚାୟତର ନିଷ୍ପତ୍ତିକୁ ଅକାମୀ କରି ଦେଇଥିଲା । କିନ୍ତୁ ସର୍ବଶେଷରେ ସୁପ୍ରିମ୍ କୋର୍ଟ ହାଇକୋର୍ଟର ଆଦେଶକୁ ବାତିଲ କରି ରାୟ ଦେଇଥିଲା ଯେ ଶିଳ୍ପ ପାଇଁ ଆବଶ୍ୟକ ଲାଇସେନ୍‌ସ ଦେବା ବା ନଦେବା ଉପରେ ପଞ୍ଚାୟତର ନିଷ୍ପତ୍ତି ନେବାର ଅଧିକାର ଅଛି । କମ୍‌ରେଡ୍ ଅଜୟନ୍ ହାଇକୋର୍ଟର ରାୟ ଉପରେ ମତାମତ ଦେଇ କହିଥିଲେ ଯେ ଅଦାଲତ ଗୁଡିକ ଆଇନ୍ ଓ ସମ୍ବିଧାନର ବ୍ୟବସ୍ଥା ଗୁଡିକୁ ତର୍ଜମା କରି ସବୁକଥା ବିଚାର କରିବା ଆବଶ୍ୟକ । ଭାରତ ଭଳି ଗଣତାନ୍ତ୍ରିକ ଓ ସମାଜବାଦୀ ରାଷ୍ଟ୍ରରେ ଆଇନ୍ ଓ ବିଭିନ୍ନ ନ୍ୟାୟଳୟର ରାୟ ଲୋକାଭିମୁଖୀ ହେବା ନିତାନ୍ତ ଜରୁରୀ ଓ ସବୁକ୍ଷେତ୍ରରେ ଜନ ସାଧାରଣ ମୂଳରେ ରହିବା ଯୁକ୍ତିଯୁକ୍ତ । ହାଇକୋର୍ଟ କୋକାକୋଲା କମ୍ପାନୀ ସପକ୍ଷରେ ରାୟ ଦେବା ଜନସ୍ୱାର୍ଥ ବିରୋଧୀ । ଏପରିକି ଭୂତପୂର୍ବ ସୁପ୍ରିମ କୋର୍ଟ ବିଚାରପତି ଜଷ୍ଟିସ୍ କ୍ରିଷ୍ଣା ଆୟର ମଧ୍ୟ ଏପ୍ରକାର ରାୟ ଉପରେ ମନ୍ତବ୍ୟ ଦେଇ ଜଜ୍‌ମାନେ ମଧ୍ୟ ଭୁଲ କରିଥାଇପାରନ୍ତି ବୋଲି କହିଛନ୍ତି । ଏ କ୍ଷେତ୍ରରେ ଭୂଜଳ ଭଳି ଏକ ପ୍ରାକୃତିକ ସମ୍ପଦ ଉପରେ ଜନ ସାଧାରଣଙ୍କ ଅଧିକାର ଅଛି, ଏହା ନିରାଟ ସତ୍ୟ ଓ ଅପରିବର୍ତ୍ତନୀୟ । ପ୍ଲାଚିମାଡା ବାସୀମାନେ ଏହା ଅନୁଭବ କରି କୋର୍ଟର ରାୟକୁ ମାନି ନାହାନ୍ତି ।

କମ୍‌ରେଡ୍ ଅଜୟନ୍ କହୁଥିଲେ ଯେ ପ୍ଲାଚିମାଡାରେ ସଂଘର୍ଷରତ ଜନ ସାଧାରଣ ଦୁଇଟି ଗବେଷଣା ପ୍ରେରିତ ତଥ୍ୟକୁ ସହାୟ କରି ସେମାନଙ୍କର ଆନ୍ଦୋଳନକୁ ଦୃଢ଼ୀଭୂତ କରିଛନ୍ତି । ପ୍ରଥମଟି ହେଲା ଯେ କୋକାକୋଲା ପ୍ଲାଣ୍ଟରୁ

ବର୍ହିଗତ ବର୍ଜ୍ୟବସ୍ତୁରେ କାଡ୍‌ମିୟମ ଓ ସୀସା ରହିଛି ଯାହାର ପ୍ରଦୂଷଣ ମଣିଷର ସ୍ୱାସ୍ଥ୍ୟ ପାଇଁ ବିଶେଷ ହାନିକାରକ । ଦ୍ୱିତୀୟଟି ହେଲା ନୂଆଦିଲ୍ଲୀର ସେଣ୍ଟର ଫର ସାଇନ୍‌ସ ଆଣ୍ଡ ଏନ୍‌ଭିରନ୍‌ମେଣ୍ଟର ଗବେଷଣାରୁ ପ୍ରାପ୍ତ ତଥ୍ୟ ଯେ କୋକାକୋଲାରେ କୀଟନାଶକ ଦ୍ରବ୍ୟ ମିଶିଛି ଯାହା ସାଧାରଣ ସ୍ୱାସ୍ଥ୍ୟ ପାଇଁ ଅନୁକୂଳ ନୁହେଁ ।

କ୍ରମାଗତ ଆନ୍ଦୋଳନର ପ୍ରତିକ୍ରିୟା ସ୍ୱରୂପ କୋକାକୋଲା କମ୍ପାନୀ କେରଳ ସରକାରଙ୍କୁ ଅନୁରୋଧ କରିଛି ଯେ ସେମାନଙ୍କୁ ପ୍ଲାଚିମାଡାରେ ଉତ୍ପାଦନ ଆରମ୍ଭ କରିବାକୁ ଅନୁମତି ଦିଆଯାଉ ଅଥବା ଅନ୍ୟତ୍ର ଉଠାଇ ନେବାକୁ ସୁବିଧା ସୁଯୋଗ ସୃଷ୍ଟି କରାଯାଉ । ପ୍ରତ୍ୟକ୍ଷ ଭାବେ ନିକଟସ୍ଥ ଅନ୍ୟ ଏକ ପଞ୍ଚାୟତକୁ କୋକାକୋଲା କମ୍ପାନୀ ସେମାନଙ୍କର ପ୍ଲାଣ୍ଟ ଉଠାଇ ନେବାର ଯୋଜନା ରହିଛି । କିନ୍ତୁ ପ୍ଲାଚିମାଡା ଜନ ଆନ୍ଦୋଳନ ମଧ୍ୟ ଏହାକୁ ବିରୋଧ କରି ଆସୁଛି କେରଳରୁ ସାମଗ୍ରିକ ଭାବେ କୋକାକୋଲା କମ୍ପାନୀ ହଟିଯାଉ । ଏ ଦାବୀ ବାରମ୍ବାର ଉଠୁଛି ।

ଜନ ଆନ୍ଦୋଳନ ଦ୍ୱାରା ମାର୍ଚ୍ଚ ୨୦୦୪ଠାରୁ ପ୍ଲାଚିମାଡାଠାରେ ବନ୍ଦ ରହିଥିବା କୋକାକୋଲା ପ୍ଲାଣ୍ଟ ଏକ ସଫଳତାର କାହାଣୀ ବୋଲି ସ୍ୱୀକାର କରିବାକୁ ହେବ । ପଞ୍ଚାୟତ ନୂଆ ଭାବେ ଲାଇସେନ୍‌ସ ଦେଇନାହିଁ । ଆହୁରି ମଧ୍ୟ ଯେଉଁଭଳି ସର୍ତ୍ତ ପଞ୍ଚାୟତ ତରଫରୁ ରଖାଯାଇଛି ନୂଆ ଭାବେ ପ୍ଲାଣ୍ଟ୍ ଚାଲୁ କରିବା ପାଇଁ, ତାହା କୋକାକୋଲା କମ୍ପାନୀ କେବେ ହେଲେ ଗ୍ରହଣ କରିନାହିଁ । କୋକାକୋଲା କମ୍ପାନୀ ଯେତେ ଯୁକ୍ତି ବାଢିଛି ତାହା ଏବେ କେରଳ ସରକାର ତଥା ରାଜ୍ୟ ପ୍ରଦୂଷଣ ବୋର୍ଡ ମାନିବାକୁ ପ୍ରସ୍ତୁତ ନୁହନ୍ତି । ଏହା ଜନ ସାଧାରଣଙ୍କ ମାନସିକ ଦୃଢ଼ତା ଏବଂ ଜନ ଆନ୍ଦୋଳନର ଶକ୍ତି ଏବଂ ସାମର୍ଥ୍ୟକୁ ଜାହିର କରିଛି ।

ଏ ଜନ ଆନ୍ଦୋଳନର ପ୍ରତିକ୍ରିୟା ସ୍ୱରୂପ କୋକାକୋଲା କମ୍ପାନୀ ବିରୋଧରେ ଭାରତରେ ରାଜସ୍ଥାନ(କାଲାଡ଼େରା), ତାମିଲନାଡୁ(ଗଙ୍ଗାଇ କୋଣ୍ଡେନ୍) ଓ ଉତ୍ତରପ୍ରଦେଶ(ମେହଦିଗଞ୍ଜ)ରେ ମଧ୍ୟ ଜନଆନ୍ଦୋଳନ ଓ ପ୍ରତିବାଦର ଲହରୀ ଦେଖା ଦେଇଛି । ସାରା ବିଶ୍ୱରେ ମଧ୍ୟ କୋକାକୋଲା କମ୍ପାନୀ ବିରୋଧରେ ଜନମତ ପ୍ରକାଶ ପାଇଛି ଓ କେତେକ ନିର୍ଦ୍ଦିଷ୍ଟ ପଦକ୍ଷେପ ମଧ୍ୟ ନିଆଯାଇଛି । ଯୁକ୍ତରାଷ୍ଟ୍ର ଆମେରିକାର ମିଚିଗାନ୍ ବିଶ୍ୱବିଦ୍ୟାଳୟ ଭଳି ଅନେକ ବିଶ୍ୱ ବିଦ୍ୟାଳୟରେ ଛାତ୍ରମାନେ କୋକାକୋଲାକୁ ବୟକଟ କରିଛନ୍ତି । ବର୍ତ୍ତମାନ ହାର୍ଭାଡ, ପ୍ରିନ୍‌ସଟ୍. ମିନେସୋଟା

ଆଦି ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ କୋକାକୋଲା କମ୍ପାନୀ ସହ ସମସ୍ତ ପ୍ରକାର ବ୍ୟବସାୟିକ ସମ୍ପର୍କ ଛିନ୍ନ କରିବାକୁ ଯୋଜନା କରୁଛନ୍ତି । ସମଗ୍ର ବିଶ୍ୱରେ ବିକଶିତ ଦେଶ ହେଉ ବା ବିକାଶଶୀଳ ଦେଶ ହେଉ, କୋକାକୋଲା କମ୍ପାନୀର କାର୍ଯ୍ୟବିଧି ଉପରେ ପ୍ରଶ୍ନ ଉଠିଛି । ଭାରତ ଭଳି କଲମ୍ବିଆରେ ମଧ୍ୟ ଜନ ଆନ୍ଦୋଳନ ମୁଣ୍ଡ ଟେକିଛି । ୨୦୦୫ ମସିହା ବିଶ୍ୱ ସାମାଜିକ ସଂଗଠନ ମିଟିଂରେ ଅନେକ ଦେଶର ପ୍ରତିନିଧି କୋକାକୋଲା ଓ ସେଇଭଳି ଅନ୍ୟ ମୃଦୁ ପାନୀୟ ତିଆରି କରୁଥିବା ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଜନବିରୋଧୀ କାର୍ଯ୍ୟକଳାପକୁ ଘୋର ବିରୋଧ କରାଯାଇଥିଲା ।

କମ୍‌ରେଡ଼ ଅଜୟନ୍ ପ୍ଲାଚିମାଡ଼ାରେ କୋକାକୋଲା ପ୍ଲାଣ୍ଟ ବନ୍ଦହେବା ଛଡ଼ା ଅନ୍ୟ କେତେକ ଦାବୀ କରି ଆସୁଛନ୍ତି । ସେଗୁଡ଼ିକ ହେଲା-

୧) ପ୍ରଭାବିତ ପରିବାର ଭିତରୁ ଯେଉଁମାନେ ଜୀବିକ ହରାଇ ବସିଛନ୍ତି କୋକାକୋଲା ପ୍ଲାଣ୍ଟଦ୍ୱାରା ସେମାନଙ୍କୁ କ୍ଷତିପୂରଣ ମିଳୁ । (୨) ଭୂଜଳର ଗୁଣାତ୍ମକମାନ ଓ ସ୍ୱାଭାବିକ ମାତ୍ରା ଫେରାଇ ଆଣି ସମ୍ପୂର୍ଣ୍ଣ ଭାବେ ପ୍ରଦୂଷଣ ମୁକ୍ତ କରାଯାଉ । (୩) ପ୍ରଦୂଷଣ ଦ୍ୱାରା ଯେଉଁ ଭଳି ସ୍ୱାସ୍ଥ୍ୟହାନୀ ହୋଇଛି ତାହାର ପ୍ରତିକାର କରାଯାଉ । (୪) କୋକାକୋଲା ଯେଉଁ ଭଳି ଜୀବନ, ଜୀବିକା ଓ ପରିବେଶ ନଷ୍ଟ କରିଛି, ତାହା ବିରୁଦ୍ଧରେ ଆବଶ୍ୟକୀୟ ଆଇନ୍‌ଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉ । (୫) ଜନ ଆନ୍ଦୋଳନର କର୍ମୀମାନେ ଯେଉଁମାନଙ୍କ ନାମରେ ମିଥ୍ୟା ମୋକଦ୍ଦମା କରାଯାଇଛି ସେମାନେ ନିର୍ଦ୍ଦୋଷ ବୋଲି ଘୋଷଣା କରାଯାଉ ଓ ସମସ୍ତ କେଶ୍ ପ୍ରତ୍ୟାହାର କରିନିଆଯାଉ । (୬) କୋକାକୋଲା ପ୍ଲାଣ୍ଟ୍ ବନ୍ଦ ହେଲେ ପ୍ରଭାବିତ କର୍ମଚାରୀଙ୍କ ଜୀବନ ଜୀବିକା ପାଇଁ ବିକଳ୍ପ ଯୋଜନା କରାଯାଉ ।

କମ୍‌ରେଡ଼ ଅଜୟନ୍ ଏବେ ପ୍ଲାଚିମାଡ଼ା ଜନ ଆନ୍ଦୋଳନର ଚତୁର୍ଥ ବାର୍ଷିକ ଉତ୍ସବ ଆୟୋଜନ କରିବାରେ ବ୍ୟସ୍ତ ଅଛନ୍ତି । ସଂଗ୍ରାମ ଶେଷ ହୋଇନାହିଁ । ଜଗତୀକରଣ ବିରୁଦ୍ଧରେ ଲଢ଼ାଇ କରିବାରେ ସେ ଏକ ମାଇଲଖୁଣ୍ଟ ହୋଇ ସାରିଛନ୍ତି । ❑

# ଜଗତୀକରଣ ଓ ଓଡ଼ିଶାର ଥ୍ରୀ ମସ୍କେଟିଅରସ୍

## (୧)

କଳିଙ୍ଗନଗର ଜଘନ୍ୟ ଓ ଅମାନୁଷିକ ଗୁଳିକାଣ୍ଡ ପରେ ବିଭିନ୍ନ ସ୍ତରରେ ପ୍ରତିବାଦ ପ୍ରକାଶ ପାଇଥିଲା । କେଉଁଠି ଖୁବ୍ ଗଭୀର ଓ ତୀବ୍ର ଭାବେ ତ ଆଉ କେଉଁଠି ଉପର ଠାଉରିଆ ଭାବେ । ସବୁଠାରୁ ବଡ଼ ଆଶ୍ଚର୍ଯ୍ୟ କଥା ଥିଲା ଯେ ନାଗରିକ ସମାଜ ତରଫରୁ ଯେଉଁଭଳି ପ୍ରତିବାଦ ହେବା କଥା ସେଇଭଳି ହେଲା ନାହିଁ । ଓଡ଼ିଶାର ତଥାକଥିତ ନାଗରିକ ସମାଜ ଓ ସ୍ୱେଚ୍ଛାସେବୀ ସଂଗଠନମାନେ କେତେ ଦୁର୍ବଳ ଓ ସରକାରଙ୍କ ପ୍ରତି କେତେ ଭୟଭୀତ ତାହା ଅନେକ ପୂର୍ବ ଉଦାହରଣ ଭଳି ଏଥର ମଧ୍ୟ ସତ୍ୟବୋଲି ପ୍ରମାଣିତ ହେଲା । ଜଗତୀକରଣ ପ୍ରକ୍ରିୟାରେ ନାଗରିକ ସମାଜର ଭୂମିକା ହେଲା ଦାରିଦ୍ର୍ୟ ବଢ଼ାଉଥିବା ରାଜଶକ୍ତି ଓ ବଜାରୀକରଣ ବଢ଼ାଉଥିବା ପୁଞ୍ଜି ଓ ପୁଞ୍ଜିପତି ଆଦିଙ୍କୁ ବଳିଷ୍ଠ ଢ଼ଙ୍ଗରେ ବିରୋଧ କରିବା । ସରକାର ଓ ବଜାରର ଗରିବମାରଣ ନୀତିକୁ ଯେଉଁ ସଂଗଠନ ବିରୋଧ କରୁନାହିଁ, ସେ ନାଗରିକ ସମାଜ ପଦବାଚ୍ୟ ନୁହେଁ । ଜଗତୀକରଣ ସନ୍ଦର୍ଭରେ ନାଗରିକ ସମାଜ ନିଜକୁ ବାରମ୍ବାର ମୂଲ୍ୟାଙ୍କନ କରିବା ଓ ପରିବର୍ତ୍ତନର ନକ୍ସାରେ ନିଜକୁ ଠାବ କରିବା ଉଚିତ ।

ଓଡ଼ିଶାରେ ଗତ କେତେ ବର୍ଷ ଧରି ଯେଉଁଭଳି ଜଗତୀକରଣ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରାଯାଉଛି ତାକୁ ତିନିଜଣ ବିଶିଷ୍ଟ ଓ ସମ୍ମାନୀୟ ବ୍ୟକ୍ତି ନିଜର ସବୁ ଶକ୍ତି ବିନିଯୋଗ କରି ବିରୋଧ କରୁଥିଲେ ଓ ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସେମାନେ ହାର ମାନି ନଥିଲେ । ସେ ତିନିଜଣ ହେଉଛନ୍ତି ବାଙ୍କ ବିହାରୀ ଦାସ, ମନମୋହନ ଚୌଧୁରୀ ଏବଂ କିଶନ ପଟ୍ଟନାୟକ । ଏ ତିନି ବ୍ୟକ୍ତିତ୍ୱ ସ୍ୱତନ୍ତ୍ର ଓ ଅଦ୍ୱିତୀୟ ଥିଲେ । କର୍ମ ଓ ଚିନ୍ତନରେ ଅସାଧାରଣ ଥିଲେ । ପଠନ, ଲିଖନ ଓ ଭାଷଣରେ ଥିଲେ ସିଦ୍ଧହସ୍ତ । ବ୍ୟକ୍ତିଗତ ଜୀବନରେ ନଥିଲେ କଳଙ୍କିତ । ବିଶ୍ୱାସ ଓ ମତବାଦରେ ଥିଲେ ସ୍ୱଚ୍ଛ । ଓଡ଼ିଶାର କଳୁଷ ରାଜନୀତି, ସ୍ୱାବଲମ୍ବନ ହରାଇଥିବା ଅର୍ଥନୀତି, ଦୁର୍ବଳ ସମାଜିକ ମୂଲ୍ୟବୋଧ, ଅବକ୍ଷୟ ହୋଇଥିବା ପରିବେଶ ଆଦିକୁ ସେମାନେ ଉଚିତ ଢଙ୍ଗରେ ବୁଝିଥିଲେ । ଓଡ଼ିଶାର ତଥା ଦେଶର ହିତ ପାଇଁ ଯେଉଁସବୁ ଜନ ଆନ୍ଦୋଳନ ମୁଣ୍ଡଟେକି ଥିଲା ସେ ସବୁର ନୈତିକ ଓ ବୌଦ୍ଧିକ ନେତୃତ୍ୱ ଏମାନେ ଦେଇଥିଲେ । ଶ୍ରୀ ବାଙ୍କ ବିହାରୀ ଦାସ

ରାଜନୀତିରୁ ଜନ ଆନ୍ଦୋଳନକୁ ଆସିଥିଲେ । ଶ୍ରୀ ମନମୋହନ ଚୌଧୁରୀ ଜନ ଆନ୍ଦୋଳନକୁ ଡ଼େଇଁଥିଲେ ଗାନ୍ଧୀବାଦରୁ । ଶ୍ରୀ କିଶନ ପଟ୍ଟନାୟକ ଜନ ଆନ୍ଦୋଳନ ସହ ସାମିଲ ହୋଇଥିଲେ ସମାଜବାଦୀ ଆନ୍ଦୋଳନରୁ । ଏମାନେ ସବୁଦୃଷ୍ଟିରେ ଥିଲେ ଏକ ଅହିଂସା ସଂଗ୍ରାମର ବୀର ଯୋଦ୍ଧା । ଫରାସୀ ଲେଖକ ଆଲେକ୍‌ଜାଣ୍ଡାର ଡୁମାଙ୍କ ଲୋକପ୍ରିୟ ଉପନ୍ୟାସକୁ ଆଧାର କରି ମୁଁ ସେମାନଙ୍କୁ କହିବି ଓଡ଼ିଶାର ଥ୍ରୀ ମସ୍କେଟିଅରସ୍ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଜନ ଆନ୍ଦୋଳନ ପରିପ୍ରେକ୍ଷୀରେ ସେମାନ ଇତିହାସ ସୃଷ୍ଟି କରିଛନ୍ତି । ସାମ୍ପ୍ରତିକ ଓ ଆଗାମୀ ଦିନର ଜନ ଆନ୍ଦୋଳନ ଗୁଡ଼ିକରେ ସେମାନଙ୍କୁ ଯେ ଲୋଡ଼ାଯିବ ଓ ମନେ ପକାଯିବ ଏଥିରେ ଟିକେହେଲେ ସନ୍ଦେହ ନାହିଁ । ଜଗତୀକରଣ ପରିପ୍ରେକ୍ଷୀରେ ସେମାନଙ୍କର ସ୍ମରଣୀୟ ଅବଦାନକୁ ସଂକ୍ଷେପରେ ଆଲୋଚନା କରାଯିବା ଯଥାର୍ଥ ବୋଲି ମୁଁ ମନେକରି ଏହା ପାଠକମାନଙ୍କ ସମ୍ମୁଖରେ ତିନୋଟି ପର୍ଯ୍ୟାୟରେ ଉପସ୍ଥାପିତ କରୁଛି ।

ଏବେ ସିନା ଖଣି ଖାଦାନ ଓ ଶିଳ୍ପ କାରଖାନାକୁ ନେଇ ଓଡ଼ିଶାରେ ଜଗତୀକରଣ ପ୍ରକ୍ରିୟା ବ୍ୟାପକ ହୋଇଛି । ଏହା ପୂର୍ବରୁ ନବେଦଶକର ଆରମ୍ଭରେ କିନ୍ତୁ ଉପକୂଳ ଓ ସେ ଅଞ୍ଚଳରେ ବ୍ୟାପକ ଚିଙ୍ଗୁଡି ଚାଷ ଜରିଆରେ ଜଗତୀକରଣ ପ୍ରକ୍ରିୟା ଓଡ଼ିଶାରେ ସକ୍ରିୟ ହୋଇଥିଲା । କିଛି ବର୍ଷ ଧରି ପଶ୍ଚିମ ଦେଶଗୁଡିକରେ ତଥା ଇୟୁରୋପ ଓ ଯୁକ୍ତରାଷ୍ଟ୍ର ଆମେରିକାରେ ସାମୁଦ୍ରିକ ଖାଦ୍ୟଦ୍ରବ୍ୟ ବା ସି-ଫୁଡ୍‌ର ଚାହିଦା ଅନେକ ଗୁଣରେ ବଢ଼ି ଯାଇଥିଲା । ଏଥିପାଇଁ ସମୁଦ୍ରରୁ ଚିଙ୍ଗୁଡ଼ି ଧରିବା ଓ ତାହା ଯଥେଷ୍ଟ ନହେବାରୁ ଉପକୂଳବର୍ତ୍ତି ଅଞ୍ଚଳରେ ଚିଙ୍ଗୁଡ଼ି ଚାଷ କରିବା ବଜାର, ବାଣିଜ୍ୟ ଓ ଲାଭ ଦୃଷ୍ଟି କୋଣରୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ଏଇଥିପାଇଁ ସମୁଦ୍ର ଭିତରେ ପାରମ୍ପରିକ ଡ଼ଙ୍ଗା ବଦଳରେ ଟ୍ରଲର ବ୍ୟବହାର ବଢ଼ିଗଲା । ଏହା ସଙ୍ଗେ ସଙ୍ଗେ ଉପକୂଳବର୍ତ୍ତି ଅଞ୍ଚଳରେ ଲୁଣିପାଣି ମାଡୁଥିବା ଇଲାକା ଗୁଡିକରେ ଚିଙ୍ଗୁଡ଼ି ଚାଷକୁ ପ୍ରୋତ୍ସାହନ ଦିଆଗଲା । ଗବେଷଣାରୁ ଜଣା ପଡିଲାଯେ ପୃଥିବୀରେ ଏପରି ଅନେକ ଉପକୂଳ ଅଛି ଯେଉଁଠି ଚିଙ୍ଗୁଡ଼ି ଚାଷ ଅନୁକୂଳ ଓ ଲାଭଜନକ ହେବ । ଭାରତ, ଶ୍ରୀଲଙ୍କା, ଥାଇଲାଣ୍ଡ, ଫିଲିପାଇନ୍‌ସ, ଇଣ୍ଡୋନେସିଆ ଓ ବିଭିନ୍ନ ଦ୍ୱୀପସବୁ ଉପଯୁକ୍ତ କ୍ଷେତ୍ର ବୋଲି ବଛାଗଲା । ଚିଙ୍ଗୁଡ଼ି ଚାଷ ଭଳି ସାମୁଦ୍ରିକ ଚାଷ ବା ଆକ୍ୱାକଲଚରକୁ ବିଶ୍ୱବ୍ୟାଙ୍କ ଏବଂ ପୁଞ୍ଜିପତି ବହୁରାଷ୍ଟ୍ରୀୟ କମ୍ପାନୀମାନେ ହଠାତ ଅହେତୁକ ପ୍ରୋତ୍ସାହନ ଦେବା ଆରମ୍ଭ କରିଥିଲେ ଓ ପୁଞ୍ଜିନିବେଶ ପାଇଁ ବ୍ଲୁ ପ୍ରିଣ୍ଟ ତିଆରି କରିଥିଲେ । ଓଡ଼ିଶାର ଲୁଣା ଜଙ୍ଗଲ ସମେତ ଉପକୂଳ ଓ

ବିଶେଷକରି ଚିଲିକା ହ୍ରଦ ସବୁଦୃଷ୍ଟିରୁ ଚିଙ୍ଗୁଡ଼ି ଚାଷ ପାଇଁ ସର୍ବୋତ୍କୃଷ୍ଟ କ୍ଷେତ୍ର ବୋଲି ମଧ୍ୟ ଘୋଷଣା କରାଯାଇଥିଲା । ଏହାକୁ ଭିତ୍ତିକରି ଟାଟାକମ୍ପାନୀ ଚିଲିକା ହ୍ରଦ ଭିତରେ ଚିଙ୍ଗୁଡ଼ି ଚାଷ କରିବାକୁ ସରକାରଙ୍କ ଠାରୁ ଅନୁମତି ପାଇଥିଲା । ଓଡ଼ିଶା ସରକାର ଏ ପ୍ରକଳ୍ପ ଦ୍ୱାରା ପାରମ୍ପରିକ ମତ୍ସଜୀବୀ ଓ ଚିଲିକା ପରିବେଶ ଉପରେ କି ପ୍ରଭାବ ପଡ଼ିବ ତାହା ଅନୁଧ୍ୟାନ ସମ୍ଭବତଃ କରି ନଥିଲେ । ଟାଟା କମ୍ପାନୀ ପ୍ରତି ଉଦାର ମନୋଭାବ ଏବଂ ଏ କମ୍ପାନୀର ସରକାରୀ କଳ ଓ ରାଜନୈତିକ ଦଳ ଉପରେ ପ୍ରଭାବ ଚିଙ୍ଗୁଡ଼ି ଚାଷ ପାଇଁ ଏକ ଅନୁକୂଳ ବାତାବରଣ ସୃଷ୍ଟି କରିଥିଲା । ଚିଲିକା ବଞ୍ଚାଓ ଆନ୍ଦୋଳନ ୧୯୯୨ ମସିହା ଜାନୁୟାରୀ ମାସରେ ଜନ୍ମ ନେଇଥିଲା । କିନ୍ତୁ ଚିଲିକାରେ ୧୯୮୬ ମସିହାରେ ତତ୍‌କାଳୀନ କଂଗ୍ରେସ ସରକାର ଟାଟା କମ୍ପାନୀ ସହ ହାତମିଳାଇ ଚିଲିକାର ସମନ୍ୱିତ ଚିଙ୍ଗୁଡ଼ି ଚାଷ ପାଇଁ ବୁଝାମଣା କରିଥିଲେ । ଏହା ଏକ ଯୌଥ ପ୍ରକଳ୍ପ ଥିଲା । ଯେଉଁଥିରେ ସରକାରଙ୍କ ଅଂଶଧନ ଥିଲା ଶତକଡ଼ା ୧୦ । ସରକାର ୧୪୦୦ ହେକ୍ଟର ଚିଲିକାରୁ ଟାଟାକୁ ଲିଜ୍ ଦେବା ପାଇଁ ପ୍ରସ୍ତାବ ଥିଲା । ୧୯୮୯ ମସିହାରେ ଜନତା ଦଳ ସରକାର କ୍ଷମତାକୁ ଆସିଲାପରେ ପୂର୍ବରୁ ବିରୋଧ କରୁଥିବା ଏ ପ୍ରକଳ୍ପକୁ ନୂଆଭାବେ କରିବାକୁ ଟାଟା ସହ ବୁଝାମଣା କରିଥିଲା । ଏଥର ସରକାରଙ୍କ ଅଂଶଧନ ଥିଲା ୪୦% । ଏହାଛଡ଼ା ୧୯୯୧ ମସିହାରେ ୪୦୦ ହେକ୍ଟର ଜମି ଲିଜ୍ ଦେବାକୁ ନିଷ୍ପତ୍ତି ନେଇଥିଲା । ଏଥିରେ ଚିଲିକା ଭିତରେ ଏକ କୃତ୍ରିମ ହ୍ରଦ କରାଯାଇ ଚିଙ୍ଗୁଡ଼ି ଚାଷ କରାଯିବ ଓ ୧୩.୭କି.ମି.ର ବନ୍ଧ ନିର୍ମାଣ କରାଯାଇ ଏ ହ୍ରଦ ପ୍ରାୟ ୩୦୦ ହେକ୍ଟର ଆୟତନରେ ସୃଷ୍ଟି ହେବ । ବର୍ଷକୁ ୧୫୦୦ ମେଟ୍ରିକ ଟନ ଚିଙ୍ଗୁଡ଼ି ଉତ୍ପାଦିତ ହେବ ଓ ପ୍ରକ୍ରିୟାକରଣ କରାଯାଇ ରପ୍ତାନୀ କରାଯିବ । ବୈଦେଶିକ ମୁଦ୍ରାରେ ବାର୍ଷିକ ୩୦କୋଟି ଲାଭ ହେବ । ସରକାର ଓ ଟାଟାକମ୍ପାନୀ କାମ ଆରମ୍ଭ କରିବା ପୂର୍ବରୁ ବିରୋଧାଭାସ ଦେଖା ଦେଇଥିଲା । ବିଶ୍ୱବିଦ୍ୟାଳୟର ଛାତ୍ର, ବୁଦ୍ଧିଜୀବୀ, ପରିବେଶବିତ୍‌ମାନେ ଚିଲିକା ଓ ତାର କୂଳରେ ପ୍ରଭାବିତ ଗାଁ ମାନଙ୍କରେ ସଚେତନତା ସୃଷ୍ଟି କରି ଏ ପ୍ରକଳ୍ପର ଜୀବନ ଜୀବିକା ଉପରେ କୁପ୍ରଭାବ ଏବଂ ପରିବଶେ ଅବକ୍ଷୟ ବିଷୟଗୁଡିକ ଆଲୋଚନା କରିଥିଲେ । ସ୍ଥାନୀୟ ସଂଗଠନଗୁଡିକ ମଧ୍ୟ ଏ ପ୍ରକଳ୍ପକୁ ଦୃଢ଼ ପ୍ରତିରୋଧ କରିଥିଲେ । ଅବଶେଷରେ ଏ ସବୁ ସଂଗଠନଙ୍କୁ ନେଇ ଚିଲିକା ବଞ୍ଚାଓ ଆନ୍ଦୋଳନ ଗଡ଼ି ଉଠିଥିଲା । ଏହାର ନେତୃତ୍ୱ ନେଇଥିଲେ ବିଖ୍ୟାତ ସମାଜବାଦୀ ନେତା ଓ ରାଜନୀତିଜ୍ଞ ଶ୍ରୀ ବାଙ୍କ

ବିହାରୀ ଦାସ । ଚିଲିକା ବଞ୍ଚାଓ ଆନ୍ଦୋଳନ ତାଙ୍କରି ନେତୃତ୍ୱ ଓ ମାର୍ଗଦର୍ଶନରେ ପରିଚାଳିତ ହୋଇଥିଲା । ବାଙ୍କ ବାବୁଙ୍କ ରଣନୀତି ଥିଲା ଖୁବ୍ ସ୍ପଷ୍ଟ ଓ ସୁଦୂରପ୍ରସାରୀ । ସେ ପ୍ରଥମେ ପ୍ରକଳ୍ପର ପରିବେଶ ଉପରେ ପ୍ରଭାବ କିପରି ପଡ଼ିବ ତାହାର ଏକ ଅଧ୍ୟୟନ ପାଇଁ ସରକାରଙ୍କ ଠାରେ ଦାବୀ କରିଥିଲେ । ରାମସର୍ କନ୍‌ଭେନ୍‌ସନ୍ ଅନୁସାରେ ବିପନ୍ନ ଚିଲିକା ହ୍ରଦର ସୁରକ୍ଷା ପାଇଁ ଓଡ଼ିଶା ସରକାର ଉତ୍ତର ଦାୟୀ । ତାକୁ ବିନାଶ କରିବା ପାଇଁ ଏ ଟାଟା ପ୍ରକଳ୍ପ ଦାୟୀ ହେବ ବୋଲି ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ଜନମତ ସୃଷ୍ଟି କରିବାରେ ମୁଖ୍ୟ ଦାୟିତ୍ୱ ବାଙ୍କବାବୁ ନେଇ ସଫଳ ହୋଇଥିଲେ । ଏହି ଆନ୍ଦୋଳନ ଜରିଆରେ ବାଙ୍କବାବୁ ତିନୋଟି ମୁଖ୍ୟ ପ୍ରଶ୍ନ ଉଠାଇଥିଲେ ।

(କ) ଚିଲିକା ହ୍ରଦଟି କାହାର - ଲୋକଙ୍କର ନା ସରକାରଙ୍କର ?

(ଖ) ଯଦି ଟାଟା କମ୍ପାନୀଭଳି ବ୍ୟବସାୟ ପ୍ରତିଷ୍ଠାନ ଓ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଚିଙ୍ଗୁଡ଼ି ଚାଷ କରନ୍ତି ତାହା ହେଲେ ପାରମ୍ପରିକ ମତ୍ସ୍ୟଜୀବୀମାନଙ୍କର ଜୀବନ ଜୀବିକାର ସ୍ଥିତି କ'ଣ ହେବ ?

(ଗ) ପ୍ରାକୃତିକ ସମ୍ପଦର ବଜାରୀକରଣ ଓ ବେପାରୀକରଣ ଯଦି ଜନସାଧାରଣଙ୍କ ଜୀବିକା ଉପରେ ପ୍ରତିକୂଳ ପ୍ରଭାବ ପକାଏ, ରାଷ୍ଟ୍ରପାଇଁ ମୁଖ୍ୟ ବିଚାର କ'ଣ ରହିବ ?

ବାଙ୍କବାବୁଙ୍କର ରଣନୀତି ଥିଲା ଅଦ୍ୱିତୀୟ । ଦଳୀୟ ରାଜନୀତି ଓ ପାର୍ଲିଆମେଣ୍ଟର ଅନୁଭୂତିକୁ ନେଇ ସେ ଯେଉଁ ସବୁ ଯୁକ୍ତି ଉପସ୍ଥାପନା କରିଥିଲେ ତାହା ଆଜିର ଜନ-ଓକିଲାତି ବା ଆଡ୍‌ଭୋକେସିର ବଳିଷ୍ଠ ଉଦାହରଣ ହୋଇଯାଇଛି । ଗଣମାଧ୍ୟମକୁ ଅସ୍ତ୍ରକରି ସେ ମଧ୍ୟ ଜନମତ ସୃଷ୍ଟି କରି ପାରିଛନ୍ତି । ଚିଲିକା ବଞ୍ଚାଓ ଆନ୍ଦୋଳନ ଏ ଦେଶର ଜନଆନ୍ଦୋଳନ ଇତିହାସରେ ଏକ ସଫଳ ପର୍ଯ୍ୟାୟ ଭାବେ ଆଜି ସ୍ୱୀକାର କରାଯାଇଛି । ଏ ଜନ ଆନ୍ଦୋଳନ ଏତେ ବଳିଷ୍ଠ ଥିଲା ଯେ ଟାଟାକମ୍ପାନୀ ହାରମାନିଲା । ସରକାର ପଛଘୁଞ୍ଚା ଦେଲେ । ମତ୍ସଜୀବୀମାନେ ସେମାନଙ୍କର ଅଧିକାର ସାବ୍ୟସ୍ତ କରିପାରିଲେ । ଚିଲିକା କେତେକାଂଶରେ ସୁରକ୍ଷିତ ହେଲା । ଏବେ ଶ୍ରୀ ବାଙ୍କ ବିହାରୀ ଦାସ ଏବଂ ଚିଲିକା ବଞ୍ଚାଓ ଆନ୍ଦୋଳନ ଇତିହାସ । କିନ୍ତୁ ଏ ଆନ୍ଦୋଳନର ପୁନରୁଦ୍ଧାର ହେବାର ଆବଶ୍ୟକତା ସବୁବେଳେ ରହିଛି । ଟାଟା ଓହରିଲା ସତ, ହେଲେ ଚିଙ୍ଗୁଡ଼ି ମାଫିଆ ସକ୍ରିୟ ହୋଇଛି ଚିଲିକା ଭିତରେ । ଘେରି ବଢ଼ିଚାଲିଛି ଓ ଚିଙ୍ଗୁଡ଼ି ମାଫିଆ ସହ ପାରମ୍ପରିକ ମତ୍ସଜୀବୀମାନଙ୍କ ସଂଘର୍ଷ ବ୍ୟାପକ ହୋଇଛି । ୧୯୯୯ ମସିହାରେ ସୋରଣ ଠାରେ

ପୋଲିସ ଗୁଳିରେ ୪ଜଣ ମତ୍ସ୍ୟଜୀବୀ ମରିଛନ୍ତି । ଆଶା ରହିଛି ଯେ ଘେରି ଉଠିବ, ମାଫିଆର ପତନ ହେବ ଏବଂ ଚିଲିକାରେ ମତ୍ସଜୀବୀଙ୍କ ଅଧିକାର ସମ୍ପୂର୍ଣ୍ଣ ରୂପେ ଜାହିର ହେବ ।

ଶ୍ରୀ ବାଙ୍କ ବିହାରୀ ଦାସ ଆଉ ଦୁଇଟି ଆନ୍ଦୋଳନର ନେତୃତ୍ୱ ନେଇଥିଲେ, ସେଥିରୁ ଗୋଟିଏ ହେଲା ଲୁଣାଜଙ୍ଗଲର ସୁରକ୍ଷା । ଉପକୂଳବର୍ତ୍ତୀ ଅଞ୍ଚଳରେ ଭିତରକନିକାର ଲୁଣା ଜଙ୍ଗଲ ଏକ ଅଦ୍ୱିତୀୟ ପରିବେଶ ବ୍ୟବସ୍ଥା ରହିଛି; ଯାହା ମଣିଷ, ସାମୁଦ୍ରିକ ଜୀବଜନ୍ତୁ, ପକ୍ଷୀ ଓ ବନ୍ୟପ୍ରାଣୀ ଓ ସାମଗ୍ରିକଭାବେ ସହାବସ୍ଥାନ ପାଇଁ ନିତାନ୍ତ ଆବଶ୍ୟକ, ଯେତେବେଳେ ସାମୁଦ୍ରିକ ଘୂର୍ଣ୍ଣିବାତ୍ୟା ବା ଲୁଣା ଜୁଆର ମାଡ଼ିଆସେ, ସେତେବେଳେ ତାହା ସୁରକ୍ଷା ଦେଇଥାଏ । ଲୁଣା ଜଙ୍ଗଲ ଧ୍ୱଂସ ହେଲେ କି ଭୟଙ୍କର ଫଳାଫଳ ହୁଏ ତାହା ଓଡ଼ିଶାବାସୀ ୧୯୯୯ ମହାବାତ୍ୟା ବେଳେ ଅଙ୍ଗେ ନିଭେଇଥିଲେ । ଚିଙ୍ଗୁଡ଼ି ମାଫିଆ ଓ ଅନ୍ୟ ଅନୁପ୍ରବେଶକାରୀଙ୍କ ଯୋଗୁ ଓଡ଼ିଶାର ଲୁଣା ଜଙ୍ଗଲ କେବଳ ନୁହେଁ ସାରା ପୃଥିବୀର ଲୁଣା ଜଙ୍ଗଲ ନଷ୍ଟ ହେବାକୁ ବସିଛି । ଜଗତୀକରଣ ପ୍ରକ୍ରିୟାରେ ଲୁଣା ଜଙ୍ଗଲ ସଫାକରି ଚିଙ୍ଗୁଡ଼ି ଚାଷକୁ ପ୍ରୋତ୍ସାହନ ଦିଆଯାଇଛି । କେଉଁଠି କେଉଁଠି ବିଶ୍ୱବ୍ୟାଙ୍କ ସହାୟତା ନେଇ ବିଭିନ୍ନ ଆକ୍ୱାକଲଚର ପ୍ରକଳ୍ପ ମୁଣ୍ଡ ଟେକିଛି । ସମୁଦ୍ର ତଟରେ ମାଛଧରା ଜେଟ୍ ତିଆରି କରାଯାଇଛି । ବାଙ୍କବାବୁ ସେ ସବୁର ବିରୋଧକରି ଅନେକ ପ୍ରବନ୍ଧ ଲେଖିଛନ୍ତି । ସଂସଦ ଓ ବିଧାନସଭାରେ ପ୍ରଶ୍ନ ଉଠାଇଛନ୍ତି । ବିଭିନ୍ନ ରାଜନୈତିକ ଦଳର କର୍ମକର୍ତ୍ତାଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । ଏହାଛଡା ସ୍ୱନାମଧନ୍ୟ ପରିବେଶବିତ୍‌ମାନଙ୍କୁ ଏ ଆନ୍ଦୋଳନରେ ମଧ ସାମିଲ କରିଛନ୍ତି । ତାଙ୍କ ଯୋଗୁଁ ଓଡ଼ିଶାର ଲୁଣା ଜଙ୍ଗଲ କେତେକାଂଶରେ ରକ୍ଷା ପାଇ ଯାଇଛି ।

ଉପକୂଳମାନଙ୍କରେ ଖାଲି ଜଙ୍ଗଲ ନଷ୍ଟ ହୋଇନାହିଁ । ଜଗତୀକରଣ ପ୍ରଭାବ ବଳରେ ପର୍ଯ୍ୟଟନର ଅଭିବୃଦ୍ଧି ପାଇଁ ହୋଟେଲ ଶିଳ୍ପକୁ ମଧ ସମୁଦ୍ର ତଟରେ ପ୍ରୋତ୍ସାହନ ଦିଆଯାଇଛି । ବେଳାଭୂମି ବିକାଶ ନାଁରେ ବିନାଶ ହେବା ଆରମ୍ଭ ହୋଇଛି । ବାଙ୍କବାବୁ ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସମୁଦ୍ରତଟର ସୁରକ୍ଷା ପାଇଁ ଯେଉଁ ଆଇନ୍ ରହିଛି ତାହାକୁ ଜନସଚେତନତା ବଢ଼ିବା ପାଇଁ ବ୍ୟାଖ୍ୟା କରୁଥିଲେ ଓ ଜନଆନ୍ଦୋଳନ ପାଇଁ ପ୍ରେରଣା ଯୋଗାଉଥିଲେ । କୋଷ୍ଟାଲ ରେଗୁଲେଟୋରୀ ଜୋନ୍ ଓଡ଼ିଶାର ଉପକୂଳରେ ଲାଗୁହେବ ଏବଂ ଏକ ବେଳାଭୂମିରେ ପ୍ରାକୃତିକ ପରିବେଶ ସୁରକ୍ଷିତ ହେବ । ଏଇଥିପାଇଁ ଅହର୍ନିଶ ଚେଷ୍ଟା କରୁଥିଲେ । ଏଥିପାଇଁ ସେ ଆଇନ ଏବଂ ଜନସ୍ୱାର୍ଥ ମକଦ୍ଦମାର

ସାହାଯ୍ୟ ମଧ ନେବାକୁ କୁଣ୍ଠା ପ୍ରକାଶ କରୁନଥିଲେ । ଓଡ଼ିଶାର ବେଳାଭୂମି ଏ ପର୍ଯ୍ୟନ୍ତ ଯେ ସମ୍ପୂର୍ଣ୍ଣଭାବେ ଧ୍ୱଂସ ପାଇନାହିଁ ଏଥିପ୍ରତି ବାଙ୍କବାବୁଙ୍କ ଅବଦାନ ନିଶ୍ଚିତ ଅଛି ।

ଜଗତୀକରଣର ପ୍ରଭାବରେ ମାନବାଧିକାର ଯେଉଁଭଳି ଉଲଘନ ହେଉଛି ତାହା ହୃଦ୍‌ବୋଧ କରି ସବୁ ଜନ ଆନ୍ଦୋଳନକୁ ସେ ନୈତିକ ଏବଂ ବୌଦ୍ଧିକ ସମର୍ଥନ ଦେଇ ଆସୁଥିଲେ । ସେ କୃଷକ ମହାସଂଘର ସଭାପତି ଥିଲେ ମଧ ଶିଳ୍ପକାରଖାନା ଓ ଖଣି ଖାଦାନ୍ ପ୍ରତିଷ୍ଠା ବିରୋଧରେ ଜନମତ ସୃଷ୍ଟି କରିଥିଲେ । ମୋର ମନେଅଛି ଯେ ଏକଦା ରାୟଗଡ଼ାର ପୁଲିସ୍ ସୁପରିଟେଣ୍ଡେଣ୍ଟ ଶିଳ୍ପ ବିରୋଧୀମାନଙ୍କୁ ନାସାରେ ଗିରଫ କରାଯିବାର ଧମକ ଦେଇଥିଲେ । ତାହାକୁ ବିରୋଧ କରି ସେ ବକ୍ତବ୍ୟ ଦେଇଥିଲେ ଯେଉଁମାନେ ଶିଳ୍ପ ପ୍ରତିଷ୍ଠାକୁ ଘୋର ବିରୋଧ କରନ୍ତି, ସରକାର ପ୍ରଥମେ ସେମାନଙ୍କୁ ଗିରଫ କରୁ । ଏ ବକ୍ତବ୍ୟ ପରେ ସରକାର ଏକ ଶିଳ୍ପ ବିରୋଧୀ ମତାମତକୁ ଚାପି ଦେବାକୁ ଯେଉଁ ପ୍ରୟାସ କରୁଥିଲେ, ସେଥିରୁ କିଛି ସମୟ ପାଇଁ କ୍ଷାନ୍ତ ହୋଇଥିଲେ ।

(୨)

ମୋର ବନ୍ଧୁ ଓ ଏକଦା ସହକର୍ମୀ ମଜଦୁର କିଶାନ୍ ଶକ୍ତି ସଂଗଠନର ନେତ୍ରୀ ଓ ମାଗ୍‌ସାସେ ପୁରସ୍କାର ପ୍ରାପ୍ତ ଶ୍ରୀମତୀ ଅରୁଣା ରାୟଙ୍କ ସହ ଯେତେବେଳେ ଦେଖାହୁଏ, ସେ ସବୁଥର ଗୋଟାଏ କଥା ପଚାରନ୍ତି- କିଶନ୍ ବାବୁଙ୍କ ସହ ବାର୍ତ୍ତାଳାପ ହୋଇଛି ନା ନାହିଁ, ଦେଖା ସାକ୍ଷାତ ହୋଇଛି ନାହିଁ, ଯୋଗାଯୋଗ ଅଛି କି ନାହିଁ ? ମୁଁ ବେଳେବେଳେ ନିରୁତ୍ତର ରହିଯାଏ କାରଣ ସ୍ୱର୍ଗତ ଶ୍ରୀ କିଶନ୍ ପଟ୍ଟନାୟକଙ୍କ ସହ ପରିଚିତ ଥାଇ ମଧ ଦୃଢ ସମ୍ପର୍କ ନଥାଏ । ସମ୍ଭବତଃ ଏକ ମତବାଦର ଦୂରତ୍ୱ ବା ସ୍ୱାଭିମାନ ଯେମିତି ମୋତେ ଆକ୍ରାନ୍ତ କରିଥାଏ । ଯୁବାବସ୍ଥାରେ ମୁଁ କିଛିଦିନଧରି ଏକ ବୌଦ୍ଧିକ ଅରାଜକତାର ଆବର୍ତ୍ତରେ ପଡିଯାଇଥିଲି । ପଢ଼ିଥିଲି ମାର୍କସ, ମାଓ ଓ ଗାନ୍ଧୀ । ବୁଝିଥିଲି ଦସ୍ତୋଭସ୍କି, କାଫ୍‌କା, କାମ୍ୟୁ ଓ ସାର୍ତ୍ତ । ପ୍ରଭାବିତ ହୋଇଥିଲି ଏକ ଅଭିନବ ଅସ୍ତିତ୍ୱବାଦରେ । ବନ୍ଧୁମାନଙ୍କ ସହ ଆଲୋଚନା କରିଥିଲି ସାହିତ୍ୟ, ଦର୍ଶନ ଓ ରାଜନୀତି । ପ୍ରସିଦ୍ଧ ଅର୍ଥନୈତିଜ୍ଞ ଯୋସେଫ ସମ୍ପେଟରଙ୍କ 'କ୍ୟାପିଟାଲିଜିମ୍, ସୋସିଆଲିଜିମ୍ ଏଣ୍ଡ ଡେ଼ମୋକ୍ରାସୀ'କୁ ନେଇ ଅନେକ ଯୁକ୍ତି କରିଥିଲି । ଆର୍ଥର କେସ୍‌ଲରଙ୍କ ଲେଖାରେ ଏକ କମ୍ୟୁନିଷ୍ଟ ବିରୋଧୀ ଚିନ୍ତାର ଝଲକ ଦେଖିଥିଲି ।

ଏଇଭଳି ଏକ ଅରାଜକତା ଓ ବିଶୃଙ୍ଖଳା କେଜାଣି କାହିଁକି ମୋତେ ସବୁବେଳେ ତଥାକଥିତ ଗାନ୍ଧୀବାଦୀ ଓ ସମାଜବାଦୀମାନଙ୍କ ପାଖକୁ ଆସିବାକୁ ଦେଇନଥିଲା ଅନେକ ସମୟଧରି । କିନ୍ତୁ କାଶୀପୁରରେ କାର୍ଯ୍ୟକରିବା ମଧ୍ୟରେ ସାଥି ଓ ସମଧର୍ମୀମାନଙ୍କୁ ଖୋଜୁ ଖୋଜୁ ମୁଁ ଯେତେ ଜଣଙ୍କ ସଂସ୍ପର୍ଶରେ ଆସିଥିଲି ସେ ଭିତରେ ଥିଲେ, କିଶନ୍ ବାବୁ । ପ୍ରଥମ ଦେଖାରେ ସେ କହିଥିଲେ, ଜାଣିଛକି କାଶୀପୁରରେ ମୁଁ ପାଠ ପଢ଼ିଛି ଓ ମୋର ବାଲ୍ୟକାଳ କଟାଇଛି.. । ବିଗତ ଦିନକୁ ମନେପକାଇବା ପାଇଁ ଲକ୍ଷେ ଚମ୍ପାର ସେ ଦେଶକୁ ମୁଁ ନିଶ୍ଚୟ କେବେ ଯିବି । ସେ ଗତ ଦଶବର୍ଷ ଭିତରେ କାଶୀପୁର କେତେଥର ଆସିଥିବେ ସତ କିନ୍ତୁ ମୁଁ ଯେଉଁ ସମାଜ କାର୍ଯ୍ୟରେ ନିଜକୁ ଉତ୍ସର୍ଗୀକୃତ କରିଛି, ତାହାର ସମୀକ୍ଷା କରିବାକୁ ସେ କେବେହେଲେ ଆଗ୍ରହ ଦେଖାଇ ନାହାଁନ୍ତି । ଆମେ ଯେଉଁମାନେ ସବୁ ବିକାଶ କାର୍ଯ୍ୟକ୍ରମ ପାଇଁ ବିଦେଶୀ ଅନୁଦାନ ନେଇଥାଉ, ସେମାନଙ୍କ ସହ ସେ ଏକମତ ନଥିଲେ । ଓଡ଼ିଶା ଓ ସାମ୍ପ୍ରତିକ ଓଡ଼ିଆ ସମାଜ ଯଦି ଜଣେ କାହାକୁ ଯଥାର୍ଥ ସମ୍ମାନ ଦେଇନାହିଁ ସେ ହେଉଛନ୍ତି ଶ୍ରୀ କିଶନ୍ ପଟ୍ଟନାୟକ । କାରଣ ସେ ରାଜନୀତିରେ ଥାଇ ମଧ୍ୟ କୁଚକ୍ରୀ ରାଜନୈତିକ ନେତା ନଥିଲେ । ସେ ଲେଖକ ଓ ବୁଦ୍ଧିଜୀବୀ ହୋଇ ଶସ୍ତା ସାହିତ୍ୟିକ ବା ପ୍ରାବନ୍ଧିକ ହେବାକୁ ଚାହିଁନଥିଲେ । ସେ ବାଗ୍ମୀ ହୋଇମଧ୍ୟ ଓଡ଼ିଶାର ଲୋକପ୍ରିୟ ବକ୍ତା ହେବାକୁ ପସନ୍ଦ କରିନଥିଲେ । ସେ ଏସବୁର ଶୀର୍ଷସ୍ଥାନରେ ଥାଇ ମଧ୍ୟ ସେ ଯେମିତି କେଉଁଠି ନଥିଲେ । ପଶ୍ଚିମ ଓଡ଼ିଶାରେ ହେଉ ବା ପୂର୍ବ ଉପକୂଳରେ ହେଉ, ସେ ଯେମିତି ସାମଗ୍ରୀକ ଭାବେ ଲୋକଙ୍କ ପାଖରେ ପହଞ୍ଚୁଥିଲେ । ଆଉ ଗୋଟିଏ ଦୃଷ୍ଟିରେ ଦେଖିଲେ ଓଡ଼ିଶା ବାହାରେ ତାଙ୍କ ପ୍ରତି ଯେତିକି ଆଦର ଥିଲା ତାହାର ଅଭାବ ଏଠାରେ ବେଶ ଅନୁଭୂତ ହେଉଥିଲା । ବନ୍ଧୁ ଅଭୟ ସିଂଙ୍କ ଦ୍ୱାରା ସମ୍ପାଦିତ ଶ୍ରଦ୍ଧାଞ୍ଜଳୀ "ସ୍ମୃତିର ସୁନୀଳ ସରସୀ" ପଢ଼ିଲେ କିଶନ ବାବୁଙ୍କ ବିସ୍ତୃତ ଗଭୀର ବ୍ୟକ୍ତିତ୍ୱର ଅଧ୍ୟୟନ ହୋଇଯାଏ । ଓଡ଼ିଶାର ସାମାଜିକ ଓ ରାଜନୈତିକ ପୃଷ୍ଠଭୂମିରେ ତାଙ୍କର ଚିନ୍ତା ଓ ଚେତନାର ବହୁବିଧ ଦୃଷ୍ଟିକୋଣ ବୁଝି ହୁଏ ।

ଓଡ଼ିଶାର ତଥା ଭାରତର ବିଭିନ୍ନ ଅଞ୍ଚଳରେ ମୁଣ୍ଡଟେକିଥିବା ଜନ ଆନ୍ଦୋଳନ ଗୁଡ଼ିକୁ ଅଧ୍ୟୟନ କଲେ ସେଗୁଡ଼ିକରେ କିଶନ ବାବୁଙ୍କ ସଂଶ୍ଳିଷ୍ଟତାର ପରିସରକୁ ଆକଳନ କରିହୁଏ । ଭାରତର ସବୁ ସକ୍ରିୟ ଜନ ଆନ୍ଦୋଳନକୁ ମୁଁ ଅଧ୍ୟୟନ କରିଛି ଓ ନିଜକୁ ପରିଚିତ କରିବାକୁ ଚାହିଁଛି । ଅଧିକ ସ୍ପଷ୍ଟତା ପାଇଁ କିଶନ ବାବୁଙ୍କ ସହ ମଧ୍ୟ ଯୁକ୍ତିତର୍କ କରିବାକୁ ସୁଯୋଗ ଖୋଜିଛି । ସେ ନ୍ୟାସନାଲ୍ ଆଲାଏନସ୍ ଫର ପିପୁଲସ୍ ମୁଭମେଣ୍ଟ୍

ବା ଏନ୍.ଏ.ପି.ଏମ୍. ଯାହାକି ଭାରତର ସବୁ ଜନ ଆନ୍ଦୋଳନର ସଂଯୋଜନା କରେ, ତାହାର ଏକ ମୂଳସ୍ତମ୍ଭ ହୋଇଥିବାରୁ କିଛି ମୌଳିକ ଚିନ୍ତାଧାରର ସୁରାକ ପାଇବା ପାଇଁ ମୁଁ କେତେଥର ଚେଷ୍ଟା କରିଛି; କିନ୍ତୁ ସଫଳତା ପାଇନାହିଁ । ଓଡ଼ିଶା ଗବେଷଣା ଚକ୍ରର ବିଭିନ୍ନ ଅଧିବେଶନରେ ତାଙ୍କର ମତାମତକୁ ଜାଣିବା ପାଇଁ ମୁଁ ସର୍ବଦା ଉତ୍ସୁକ ହୋଇଛି । ତାଙ୍କର ମୃତ୍ୟୁ ପୂର୍ବରୁ ମୁଁ ଗୋଟିଏ ଚିଠି ଲେଖି ଓଡ଼ିଶାର ବିଭିନ୍ନ ମତବାଦୀ, ବିକ୍ଷିପ୍ତ ଓ ପଥଚ୍ୟୁତ ଜନ ଆନ୍ଦୋଳନର ସଂଗ୍ରାମୀମାନଙ୍କୁ ସେ ଏକାଠି କରି ଗୋଟିଏ ମଞ୍ଚକୁ ଆଣିବାକୁ ଅନୁରୋଧ କରିଥିଲି । ସେ ସଂକ୍ଷେପରେ ଉତ୍ତର ଦେଇ ଲେଖିଥିଲେ ଯେ ବନ୍ଧୁ ହିସାବରେ ସମସ୍ତେ ଏକାଠି ବସି ଆଲୋଚନା କରିବା ସମ୍ଭବ କିନ୍ତୁ ତଥାକଥିତ ଏନ୍.ଜି.ଓ ମାନେ ବିଶେଷକରି ଯେଉଁମାନେ ବିଦେଶୀ ସାହାଯ୍ୟ ନେଇଛନ୍ତି ସେମାନଙ୍କ ସହ ତାଙ୍କର ମୌଳିକ ମତପାର୍ଥକ୍ୟ ରହିଛି । ସେଥିପାଇଁ ଏ ଆଲୋଚନାର ପ୍ରଭାବ ଯଥେଷ୍ଟ ହେବନାହିଁ ବୋଲି ସେ ଭବିଷ୍ୟତବାଣୀ ଶୁଣାଇ ଥିଲେ । ତାଙ୍କର କଥାରେ ଅବଶ୍ୟ କେତେକ ସତ୍ୟତା ଅଛି । ଏକଥା ସତ୍ୟ ଯେ ସବୁ ରାଜନୈତିକ ଦଳ, ସରକାର, କର୍ପୋରେଟ୍, ବୁଦ୍ଧିଜୀବୀ, ଗବେଷକ ଓ ଜନଆନ୍ଦୋଳନ ଜଗତୀକରଣ ପ୍ରକ୍ରିୟାରେ ବିଦେଶୀ ସାହାଯ୍ୟ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ନେଇ ଆସୁଛନ୍ତି ବୋଲି ବାରମ୍ବାର ଅଭିଯୋଗ ଉଠିଛି । ଆହୁରି ମଧ୍ୟ ସତ୍ୟ ଯେ ସର୍ବଗ୍ରାସୀ ଜଗତୀକରଣ ପ୍ରକ୍ରିୟାକୁ ଜଣେ କିଶନ ପଟ୍ଟନାୟକଙ୍କ ବା ଜଣେ ମେଧାପାଟ୍‌କର ସମ୍ଭବତଃ ଅଟକେଇ ପାରିବ ନାହିଁ । ଏଥିପାଇଁ ଯେଉଁ ସଂସ୍ଥା ଓ ବ୍ୟକ୍ତିବିଶେଷ ଜଗତୀକରଣ ବିରୁଦ୍ଧରେ ଲଢୁଛନ୍ତି ସେମାନଙ୍କୁ ଭିନ୍ନ ମତବାଦ ସତ୍ତ୍ୱେ ଏକତାଭାବ ରଖି ଲଢ଼ିବାକୁ ହେବ । ଜଗତୀକରଣ ବିରୁଦ୍ଧରେ ଲଢ଼ିବାକୁ ଗାନ୍ଧୀ ଟୋପି ବା ଲାଲ୍ ଝଣ୍ଡାର ସହାୟତା କେବଳ ଯଥେଷ୍ଟ ହେବନାହିଁ । ଏକଥା ମୁଁ କହିବାକୁ ଚାହିଁଥିଲି ବାସ୍ତବ ଦୃଷ୍ଟିକୋଣରୁ ଓ ମାନବବାଦର ଯୁକ୍ତି ନେଇ । ମୋ ପାଇଁ ଥିଲା ଗତ ଶତାବ୍ଦୀର ବିଶିଷ୍ଟ ଲେଖକ କାମ୍ୟୁଙ୍କ ପ୍ରସ୍ତାବ ଅକାଟ୍ୟ-ପ୍ରତ୍ୟେକ ସଚେତନ ସଂଗ୍ରାମୀ ମଣିଷଙ୍କ ବ୍ୟକ୍ତିଗତ ପ୍ରଚେଷ୍ଟା ଏବଂ ସମସ୍ତଙ୍କର ଭିତରେ ସଂହତି ଯାହାକୁ ଇଂରାଜୀରେ କୁହାଯାଇଛି ଇଫୋର୍ଟ ଅଫ୍ ଇଚ୍ ୱାନ୍ ଅଫ୍ ଅସ୍ ଆଣ୍ଡ ଉୟୁନିଅନ୍ ଅଫ୍ ଅଲ୍ । (....effort of each one of us and union of all)

ସମ୍ମାନୀୟ କିଶନ୍ ବାବୁ ଜଗତୀକରଣ ପ୍ରକ୍ରିୟାର ବିରୋଧରେ ତିନୋଟି ଉପାୟରେ ସଂଗ୍ରାମ ଜାରି ରଖିଥିଲେ ଜଣେ ଅଦ୍ୱିତୀୟ ବୀର ଓ ଅପରାଜିତ ସଂଗ୍ରାମୀ

ହିସାବରେ । ପ୍ରଥମଟି ହେଲା ଚିନ୍ତା ଓ ଚିନ୍ତନ, ଦ୍ୱିତୀୟଟି ହେଲା ବ୍ୟକ୍ତିଗତ ଜୀବନ ଓ ତୃତୀୟଟି ହେଲା କର୍ମକ୍ଷେତ୍ର । ଜଗତୀକରଣ କହିଲେ କ'ଣ ବୁଝାଯାଏ ଓ ଏହା ସହ କିପରି ରାଜନୀତି, ଅର୍ଥନୀତି, ସାମାଜିକ ବ୍ୟବସ୍ଥା ଆଦିର ସମ୍ପର୍କ ରହିଛି ତାହା ସେ ବିଶ୍ଳେଷଣ କରି ସୁନ୍ଦର ଓ ସରଳ ଭାବେ ସମ୍ବେଦନଶୀଳ ବ୍ୟକ୍ତିମାନଙ୍କ ସମ୍ମୁଖରେ ଉପସ୍ଥାପନା କରିଛନ୍ତି । ତାଙ୍କର ଅନ୍ୟତମ ପୁସ୍ତକ "ବିଚାରର ଟିପାଖାତା"ରେ ସେ ସ୍ପଷ୍ଟ ଭାବେ ଯେଉଁ ତତ୍ତ୍ୱ ଉଲ୍ଲେଖ କରିଛନ୍ତି ଯାହା ମୁଁ ନିମ୍ନରେ ଉଦ୍ଧାର କରୁଛି ।

"ଜଗତୀକରଣ ବିରୋଧରେ ଲଢ଼େଇ ପାଇଁ ସର୍ବପ୍ରଥମ ରାଜନୈତିକ ଓ ଅର୍ଥନୈତିକ ଦୃଢ଼ ପଦକ୍ଷେପ ହେଉଛି ବିଦେଶୀ ପୁଞ୍ଜି ଉପରେ ନିର୍ଭରଶୀଳତାକୁ ପ୍ରତ୍ୟାଖାନ କରିବା । ଯଦି ଜଗତୀକରଣକୁ ସାମଗ୍ରୀକ ଭାବେ ବିରୋଧ ନକରାଯାଏ, ତେବେ ଏହାର ସମାଲୋଚନାର କୌଣସି ଅର୍ଥନାହିଁ । ଦ୍ୱିତୀୟ ପର୍ଯ୍ୟାୟ ସୁଧାରକୁ ବନ୍ଦ କରିବା ଦରକାର ଓ ଯେଉଁଠି ତାହା ଚାଲୁ ହୋଇ ସାରିଛି, ତାହାପଛକୁ ଫେରାଇ ନେବା ଦରକାର । ତୃତୀୟତଃ, ତୃତୀୟ ବିଶ୍ୱ ଭିତରେ ହିଁ ପୁଞ୍ଜି ଓ ପୁଞ୍ଜିର ଉତ୍ସ ଖୁବ୍ ଭଲଭାବରେ ଖୋଜାଯିବା ଆବଶ୍ୟକ ।"

ଜଗତୀକରଣ ଓ ଦରିଦ୍ର୍ୟର ଉତ୍ପତ୍ତି ସମ୍ପର୍କରେ ମଧ୍ୟ ସ୍ପଷ୍ଟ ମନ୍ତବ୍ୟ ଦେଇଛନ୍ତି । ସେ କହିଛନ୍ତି- 'ବିଷମତା ବୃଦ୍ଧିର ଏହି ତଥ୍ୟ ଗୁଡ଼ିକୁ କେହି ଖଣ୍ଡନ କରିପାରିବେ ନାହିଁ । କେହି କହି ପାରିବେ ନାହିଁ ଯେ ଜଗତୀକରଣର ତୀବ୍ର ପ୍ରସାର ଫଳରେ ପୃଥିବୀର ଦାରିଦ୍ର୍ୟ କମୁଛି ବା ବିଷମତା ହ୍ରାସ ପାଉଛି, ବରଂ ବର୍ଦ୍ଧିଷ୍ଣୁ ବିଷମତା ଫଳରେ ନାନା ପ୍ରକାରର ସାମାଜିକ ଅସନ୍ତୁଳନ ଦେଖାଯାଉଛି ଓ ଦୁର୍ନୀତି ତଥା ବିଶୃଙ୍ଖଳା ବଢ଼ିଚାଲିଛି । ସାମ୍ରାଜ୍ୟବାଦର ଏକ ନୂଆ ଅଧ୍ୟାୟ ଖୋଲିଛି ଏବଂ ଏଥିରେ ବିଷମତା, ଦୁର୍ନୀତି ଓ ବିଶୃଙ୍ଖଳା ତୀବ୍ର ଭାବରେ ବଢୁଛି । ଜନସାଧାରଣଙ୍କର ଆର୍ଥିକ ଅସହାୟତା ଓ ଅସନ୍ତୁଷ୍ଟ ଗୋଷ୍ଠୀମାନଙ୍କ ଦ୍ୱାରା ଆତଙ୍କବାଦର ଧମକ ଏହାର ଦୁଇଟି ଚରମ ପରିଣତି ।'

ଯେତେବେଳେ ଜଗତୀକରଣ, ଉଦାରୀକରଣ, ଘରୋଇକରଣ ଓ ଘୂର୍ଣ୍ଣିବାତ୍ୟାଭଳି ମାଡ଼ି ଆସୁଥିଲା ତାହାର ବିରୋଧରେ କି ପ୍ରକାର ପ୍ରତିରୋଧ ହେବ ସେ ଜଣେ ବୁଦ୍ଧିଜୀବୀ ହିସାବରେ ସେ ଏ ଘୂର୍ଣ୍ଣିବାତ୍ୟାର ମୂଳ କେନ୍ଦ୍ରକୁ ବୁଝିବାକୁ ଚେଷ୍ଟା କରିଥିଲେ । ଜଣେ ପକ୍‌କା ସମାଜବାଦୀ ହିସାବରେ ସମାଜବାଦକୁ ମାଧ୍ୟମ କରି

ଜଗତୀକରଣର ମୁକାବିଲା କରାଯାଇ ପାରିବ ବୋଲି ତାହା ସେ ଜୀବନର ଶେଷ ପର୍ଯ୍ୟନ୍ତ ସ୍ୱପ୍ନ ଦେଖୁଥିଲେ । ଜଗତୀକରଣକୁ ସୁଦୃଢ଼ କରୁଥିବା ସରକାର ଓ ପ୍ରଶାସନକୁ ସନ୍ଦେହ କରୁଥିଲେ । ଜିଲ୍ଲାପାଳମାନଙ୍କୁ ଏତେ କ୍ଷମତା କାହିଁକି ଦିଆଯାଇଛି ସେ ପ୍ରଶ୍ନ ପଚାରୁଥିଲେ । ମୋର ପ୍ରତ୍ୟକ୍ଷ ଚେଷ୍ଟାରେ ଭବାନୀପାଟଣାଠାରେ କଳାହାଣ୍ଡିର କ୍ଷୁଧା ଓ ଅନଗ୍ରସରତା ଉପରେ ଆୟୋଜିତ ଏକ ଆଲୋଚନା ଚକ୍ରରେ କିଶନ ବାବୁ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ଓ ଅନାହାର ମୃତ୍ୟୁ ଆଦିର ଏକ ବିକଳ୍ପ ବିଶ୍ଳେଷଣ କରିଥିଲେ ଯାହା ଆଜି ଅନ୍ୟତ୍ର ଦେଖିବାକୁ ପାଇନାହିଁ । "ବିକଳ୍ପ ବିଚାର" ପତ୍ରିକା ପ୍ରକାଶନରେ ସୁଦୂର ପ୍ରସାରୀ ଚିନ୍ତନ ପ୍ରକାଶ କରୁଥିଲେ । ଏ ପତ୍ରିକାର ଅନ୍ୟତମ ଉଦ୍ଦେଶ୍ୟ ଥିଲା ଜଗତୀକରଣ ବିରୁଦ୍ଧରେ ଏକ ବିକଳ୍ପ ଚିନ୍ତନ ଛିଡା କରାଇବା ।

ବ୍ୟକ୍ତିଗତ ଜୀବନରେ ତାଙ୍କର ସ୍ୱଚ୍ଛତା ଓ ସରଳତା ଅସାମାନ୍ୟ ଥିଲା । ଜଗତୀକରଣ ପ୍ରକ୍ରିୟା ତାଙ୍କର ବ୍ୟକ୍ତିଗତ ଜୀବନକୁ କଳୁଷିତ ନକରୁ ସେଥିପ୍ରତି ସେ ସଚେତନ ଥିଲେ । ରହିବା, ଖାଇବା, ପିନ୍ଧିବା ଓ ଅନେକ ଯେତେସବୁ ବ୍ୟକ୍ତି କୈନ୍ଦ୍ରିକ ତ୍ରୁଟି ଭିତରକୁ ଜଗତୀକରଣର ପ୍ରଭାବ ପଶିନଥିଲା । ତାଙ୍କର ଜୀବନ ଶୈଳୀ କେମିତି ଥିଲା ତାହା ତାଙ୍କର ସହଧର୍ମିଣୀ ଓ ଅନ୍ୟ ଅନ୍ତରଙ୍ଗ ବନ୍ଧୁମାନେ ଜାଣିଥିଲେ । ରାଜନୈତିକ କ୍ଷମତା ଜଗତୀକରଣ ସହ ଓତଃପ୍ରୋତଃ ଭାବେ ଜଡ଼ିତ ଥିବାରୁ ସେ ବିଶେଷ ଭାବରେ ଦୂରତ୍ୱ ସ୍ଥାପନା କରିଥିଲେ । ବ୍ୟକ୍ତିଗତ ଜୀବନ ଦର୍ଶନରେ ଗାନ୍ଧୀ, ଲୋହିଆ ଓ ଜେପି ଆଦିଙ୍କ ପ୍ରଭାବ ତାଙ୍କ ଉପରେ ନିଶ୍ଚିତ ପଡ଼ିଥିଲା ଓ ସମାଜବାଦୀ ଚିନ୍ତାଧାରାକୁ ନିଶ୍ଚୟ ସେ ଗୋଟାପଣେ କ୍ରିୟାନ୍ୱିତ କରୁଥିଲେ । ଯାହା ତାଙ୍କ ଲେଖନୀରୁ ନିଃସୃତ ହୋଇଛି ଓ ଯାହା ତାଙ୍କର ଭାଷଣ ମାଧ୍ୟମରେ ପରିପ୍ରକାଶ ହୋଇଛି, ସେଥିରେ କିଛି ବ୍ୟତିକ୍ରମ ନାହିଁ । ଗୋଟାଏ ନିଛକ ବୌଦ୍ଧିକ ସଚ୍ଚୋଟପଣିଆର ସେ ଉଦାହରଣ ହୋଇ ଯାଇଛନ୍ତି ।

ଯେ କୌଣସି ଜନ ଆନ୍ଦୋଳନ ଯାହାର ଜଗତୀକରଣ ପ୍ରକ୍ରିୟାକୁ ଟକ୍କର ଦେବାର ଶକ୍ତି ଅଛି ସେ ଆନ୍ଦୋଳନକୁ କିଶନ ବାବୁ କାୟ, ମନ ଓ ବାକ୍ୟରେ ସମର୍ଥନ ଦେଇଥିଲେ । କିଛିବର୍ଷ ତଳେ ଦିଲ୍ଲୀରେ ଜଗତୀକରଣ ବିରୋଧରେ ଏକ ଜାତୀୟ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥିଲା, ଯେଉଁଠାରେ ଦେଶର ବିଭିନ୍ନ କୋଣରୁ ଆକ୍ଟିଭିଷ୍ଟ, ବୁଦ୍ଧିଜୀବୀ, ବିଭିନ୍ନ ଜନଆନ୍ଦୋଳନର ନେତୃବର୍ଗ, ଗବେଷକ ଓ ସାମାଜିକ କାର୍ଯ୍ୟକର୍ତ୍ତା ଯୋଗଦେଇଥିଲେ । ଏ ଆଲୋଚନାରେ କିଶନ୍ ବାବୁ ମୁଖ୍ୟ ଭୂମିକା ଗ୍ରହଣ କରି

ଜନଆନ୍ଦୋଳନ ଗୁଡ଼ିକର ଭୂମିକା ଉପରେ ଆଲୋକପାତ କରିଥିଲେ । ବାଲ୍‌କୋ ଆନ୍ଦୋଳନ, ଗୋପାଳପୁର ଟାଟା ବିରୋଧି ଆନ୍ଦୋଳନ, କାଶୀପୁର ଆନ୍ଦୋଳନ, ଲାଞ୍ଜିଗଡ଼ ଆନ୍ଦୋଳନ, କୋକାକୋଲା ବିରୁଦ୍ଧରେ କେରଳର ପ୍ଲାଚିମାଡ଼ା ଆନ୍ଦୋଳନ ଆଦି ଜନଆନ୍ଦୋଳନରେ ସେ ସକ୍ରିୟ ଭୂମିକା ନେଇ ସାହାଯ୍ୟ ଓ ସମର୍ଥନକୁ ସୁଦୃଢ଼ କରିଥିଲେ । ସ୍ୱାସ୍ଥ୍ୟହାନୀ ସତ୍ତ୍ୱେ କାଶୀପୁର ଆନ୍ଦୋଳନକୁ ପ୍ରତ୍ୟକ୍ଷ ସମର୍ଥନ ଦେବାକୁ ମେଧାପାଟେ୍କରଙ୍କ ସହ ଯାଇଥିଲେ । ଅନ୍ୟ ନେତୃବର୍ଗ ଯଥା ଶ୍ରୀ ରବି ରାୟ ଓ ଶ୍ରୀ ମନମୋହନ ଚୌଧୁରୀ ଆଦିଙ୍କ ସହ ମିଶି ଓଡ଼ିଶାର ସବୁ ଜନଆନ୍ଦୋଳନକୁ ସୁଦୃଢ଼ ଓ ଶକ୍ତିଶାଳୀ କରିଥିଲେ । ଜଗତୀକରଣରେ ବେଶୀ ପ୍ରଭାବିତ ହେଉଥିବା ଆଦିବାସୀ, ଦଳିତ ମହିଳା ଓ ବିସ୍ଥାପିତଙ୍କ ସମସ୍ୟା ବିଷୟରେ ସେ ଅନବରତ ଆଲୋଚନା କରୁଥିଲେ ଓ ଲେଖୁଥିଲେ । ଜନଆନ୍ଦୋଳନର କର୍ମକର୍ତ୍ତା ଓ ନେତୃତ୍ୱକୁ ସେ ବାରମ୍ବାର ଶିବିର ଜରିଆରେ ପ୍ରଶିକ୍ଷଣ ଦେଇଥିଲେ । ବିଶ୍ୱ ସାମାଜିକ ସଂଗଠନ ପରିପ୍ରେକ୍ଷୀରେ ସେ ଏକ ବିକଳ୍ପ ଚିନ୍ତନ ଉପସ୍ଥାପନା କରିଥିଲେ ଯାହା ମୁମ୍ବାଇ ଅଧିବେଶନରେ ବେଶ ଆଦୃତ ହୋଇଥିଲା । ଏ ଦେଶର ଜନଆନ୍ଦୋଳନ ସବୁ ତାଙ୍କ ବିସ୍ତୃତ ଜ୍ଞାନ ଓ ଅନୁଭୂତି ଉପରେ ପରିପୁଷ୍ଟ ହୋଇଛି ଏହା ମୁଁ ଅନେକଙ୍କ ଠାରୁ ଶୁଣିଛି । ବିଜୁ ପଟ୍ଟନାୟକ ରାଜନୈତିକ ସନ୍ଥ ବୋଲି କହୁଥିଲେ କିଶାନ୍ ବାବୁଙ୍କୁ । ପ୍ରଫେସର୍ ମନୋରଞ୍ଜନ ମହାନ୍ତି ତାଙ୍କୁ "ଆକ୍ଟିଭିଷ୍ଟ ଥିଙ୍କର" ନାମରେ ନାମିତ କରିଥିଲେ । ଓଡ଼ିଶାରେ ଜଗତୀକରଣକୁ ବିରୋଧ କରୁଥିବା ଥ୍ରୀ ମସ୍କେଟିଅର୍‌ସଙ୍କ ଭିତରେ ସେ ଥିଲେ ଅନ୍ୟତମ ।

## (୨)

ଜଗତୀକରଣ, ଉଦାରୀକରଣ, ବଜାରୀକରଣ, ଆଧୁନିକକରଣ ଆଦି ବିଷୟରେ ଓଡ଼ିଶାରେ ଯଦି କାହାର ମୌଳିକ ଚିନ୍ତନ ଓ ବୌଦ୍ଧିକ ସ୍ୱଚ୍ଛତା ଥିଲା, ସେ ହେଉଛନ୍ତି ସ୍ୱର୍ଗତ ଶ୍ରୀ ମନମୋହନ ଚୌଧୁରୀ । ତାଙ୍କ ଦ୍ୱାରା ସମ୍ପାଦିତ "ଭିଜିଲ୍" ପତ୍ରିକାର ଗତ ୧୫ ବର୍ଷ ଭିତରେ ଜଗତୀକରଣ ପ୍ରକ୍ରିୟାର ବିଷାକ୍ତ ପ୍ରଭାବ ଓ ଫଳାଫଳ କ'ଣ ସବୁ ହେବାକୁ ଯାଉଛି ସେ ବିଷୟରେ ଅନେକ ପ୍ରବନ୍ଧ / ସମ୍ପାଦକୀୟ ଶ୍ରୀ ଚୌଧୁରୀ ଲେଖିଛନ୍ତି ବା ଅନ୍ୟମାନଙ୍କର ସେଇ ମର୍ମର ଲେଖା ସବୁ ବିଭିନ୍ନ ସମୟରେ ପ୍ରକାଶ କରିଛନ୍ତି ।

ସମସ୍ତେ ତାଙ୍କୁ ସମ୍ମାନ ଓ ଶ୍ରଦ୍ଧାର ସହ ବୁଲୁ ଭାଇ ବୋଲି ଡ଼ାକନ୍ତି । ଗାନ୍ଧୀବାଦ ଓ ଗାନ୍ଧୀଦର୍ଶନ ସହ ଜ୍ଞାନ ବିଜ୍ଞାନ, ରାଜନୀତି ଓ ଅର୍ଥନୀତି ଆଦି ବିଷୟ ଉପରେ ତାଙ୍କର ଅପରିମିତ ଦଖଲ ଥିଲା । ଯେଉଁମାନେ ଆମ ସମାଜର ମଙ୍ଗ ଧରିଛନ୍ତି "ଭିଜିଲ୍" ପତ୍ରିକାକୁ ନିଶ୍ଚୟ ପଢୁଥିବେ ଓ ବୁଲୁ ଭାଇଙ୍କ ମାନସିକତା ଜାଣି ପାରିଥିବେ ।

ଯଦିଓ ବୁଲୁ ଭାଇଙ୍କୁ ମୁଁ ଜାଣିଥିଲି ଅନେକ ଦିନରୁ, ତାଙ୍କ ସହ ମୋର ପରିଚୟ ହୁଏ କାଶୀପୁର ଆନ୍ଦୋଳନ ପରିପ୍ରେକ୍ଷୀରେ । କେତେଜଣ କାନକୁହା ବ୍ୟକ୍ତିଙ୍କ କଥାରେ ପଡ଼ି କୁଆଡ଼େ ମୁଁ ମାଇନିଂ କମ୍ପାନୀମାନଙ୍କ ସପକ୍ଷରେ କାମ କରୁଛି ବୋଲି ସେ ଧାରଣା ରଖିଛନ୍ତି, ଏ ଖବର ମୋ ପାଖରେ ପହଞ୍ଚିଥିଲା । ଅବଶ୍ୟ ଏ ଭୁଲ ଧାରଣାକୁ ମୁଁ ତିଳେମାତ୍ର ପ୍ରମାଣ ଗୁରୁତ୍ୱ ଦେଇନଥିଲି । ତଥାପି ତାଙ୍କୁ ସାକ୍ଷାତ କରି ବୁଝାଇବା ଓ ବାସ୍ତବଚିତ୍ର ଦେବାକୁ କେତେକ ବନ୍ଧୁ ପରାମର୍ଶ ଦେଇଥିଲେ ଓ ମୁଁ ଏକଦା ତାଙ୍କ ପାଖକୁ ଯାଇଥିଲି । ଯେତେବେଳେ 'ଅଗ୍ରଗାମୀ' ଉପରେ ଆକ୍ରମଣ ହୋଇ ଆମର କର୍ମୀମାନଙ୍କୁ ଗିରଫ କରାଗଲା ଓ ଆମର ଅଫିସ୍ ଓ ଫିଲ୍ଡ଼ କାର୍ଯ୍ୟାଳୟ ଗୁଡ଼ିକୁ ଭଙ୍ଗାରୁଜା କରାଗଲା, ସେତେବେଳେ ବୁଲୁ ଭାଇଙ୍କ ମୋ ପ୍ରତି ତଥା 'ଅଗ୍ରଗାମୀ' ପ୍ରତି ତାଙ୍କର ସହାନୁଭୂତି ବଢ଼ିଥିଲା । କାଶୀପୁର ଆନ୍ଦୋଳନ ପ୍ରତି ସେ ଯେଉଁ ସମର୍ଥନ ଓ ସହାୟତା ପ୍ରଦର୍ଶନ କରିଥିଲେ ଓ ଆବଶ୍ୟକ ସ୍ଥଳେ ନିଜର ଭଗ୍ନ ସ୍ୱାସ୍ଥ୍ୟକୁ ଖାତିର ନକରି କାଶୀପୁରର ମାଇନିଂ ବିରୋଧୀ ର୍‍ୟାଲିମାନଙ୍କରେ ଯୋଗଦେଇଥିଲେ ତାହା ଖୁବ୍ ପ୍ରଶଂସନୀୟ । ଯଦିଓ ବୁଲୁ ଭାଇ ତାଙ୍କର ବିଭିନ୍ନ ଦୃଷ୍ଟିକୋଣ ଓ ଅହେତୁକ ସ୍ୱାଭିମାନ ପାଇଁ ସମାଲୋଚନା କରାଯାଏ ତଥା ତାଙ୍କ ଭଳି ଗାନ୍ଧୀବାଦୀଙ୍କ ଭିତରେ ଅଯୌକ୍ତିକ ଆଭିଜାତ୍ୟର ଏକ ଝଲକ ଦେଖିବାକୁ ମିଳେ, ମୁଁ ତଥାପି ଜନଆନ୍ଦୋଳନ ପ୍ରତି ତାଙ୍କର ଯେଉଁ ଅକୁଣ୍ଠିତ ଓ ଅବାରିତ ସଂବେଦନଶୀଳତା ରହିଛି ସେଥିପାଇଁ ସମ୍ମାନ ଦେଇ ଆସିଛି ଓ ଭବିଷ୍ୟତରେ ଦେଉଥିବି । ତାଙ୍କର ଦୁଇଟି ବହି "ଅର୍ଥନୀତିର ଗୋଲକ ଧନ୍ଦା" ଓ "ବିଦେଶୀ ଯନ୍ତାରେ ଭାରତ" ମୁଁ କେତେଥର ପଢ଼ିଛି ଏ ଭିତରେ । ପ୍ରତ୍ୟେକ ସ୍ୱାଧୀନତା ଓ ସ୍ୱଦେଶପ୍ରେମୀ ବ୍ୟକ୍ତି ତାଙ୍କର ମତାମତ ସହ ଦ୍ୱିମତ ହୋଇ ପାରିବ ନାହିଁ ।

ବୁଲୁ ଭାଇ ଗାନ୍ଧୀବାଦୀକୁ ଅସ୍ତ୍ର କରି ଜଗତୀକରଣ ବିରୁଦ୍ଧରେ ଯେଉଁ ରଣନୀତି ଉପସ୍ଥାପିତି କରିଛନ୍ତି ଏବଂ ସବୁ ନୂଆ ପୁରୁଣା ଗାନ୍ଧୀବାଦୀମାନଙ୍କୁ ଏକାଠି କରିବାରେ ବଳିଷ୍ଠ ଭୂମିକା ଗ୍ରହଣ କରିଛନ୍ତି ତାହା ବିଶେଷଭାବେ ଆଲୋଚନା ଯୋଗ୍ୟ । ଜଗତୀକରଣ ଓ ଜନଆନ୍ଦୋଳନ - ଏହା ପରସ୍ପର ବିରୋଧୀ ବୋଲି ପୃଥିବୀରେ ସର୍ବତ୍ର

ପ୍ରମାଣିତ । ଯେଉଁଠି ଜଗତୀକରଣ ପ୍ରକ୍ରିୟା ଘନୀଭୂତ ହୋଇଛି, ଇତିହାସରୁ ଜଣାପଡେ ଯେ, ସେଠାରେ ଜନଆନ୍ଦୋଳନ ତୀବ୍ର ହୋଇ ମୁଣ୍ଡ ଟେକିଛି ବିଭିନ୍ନ ବାଟରେ, ବିଭିନ୍ନ ରୂପରେ । ଜଗତୀକରଣ ପ୍ରକ୍ରିୟା କେବେହେଲେ ବି ସୁଦ୍ଧା ଅଜେୟ ଓ ଅଦମ୍ୟ ହୋଇନାହିଁ । ଦକ୍ଷିଣ ଆମେରିକାର ଚାରୋଟି ଦେଶ- କ୍ୟୁବା, ବଲିଭିଆ, ଭେନେଜୁଏଲା ଓ ବ୍ରାଜିଲ - ଜନଆନ୍ଦୋଳନକୁ ମାଧ୍ୟମ କରି ଜଗତୀକରଣକୁ ପ୍ରତିହତ କରିଛନ୍ତି । ପୁଞ୍ଜିବାଦ ଓ ପୁଞ୍ଜିପତିଙ୍କ ଦୁର୍ଗ ଭାଙ୍ଗି ପଡ଼ିଛି ସେ ଦେଶମାନଙ୍କରେ । ଆଜି ପୃଥିବୀରେ ସର୍ବତ୍ର ଏହା ଆଲୋଚନାର ବିଷୟ ବସ୍ତୁ ହୋଇଯାଇଛି । ଭାରତରେ ଏହି ଅହିଂସା, ଗାନ୍ଧୀବାଦୀ ଜନ ଆନ୍ଦୋଳନର ସାମ୍ପ୍ରତିକ ବ୍ୟାପକତା ଓ ଦୃଢ଼ତାକୁ ବିଶ୍ଳେଷଣ କରିବା ପାଇଁ ବରିଷ୍ଠ ଗାନ୍ଧୀବାଦୀମାନେ ୨୦୦୦ ମସିହା ଅଗଷ୍ଟ ୨୦ରୁ ୨୩ ତାରିଖ ପର୍ଯ୍ୟନ୍ତ ସେବାଗ୍ରାମ ଆଶ୍ରମରେ ଏକତ୍ରିତ ହୋଇଥିଲେ । ସେଥିରେ ଯାହା ଆଲୋଚନା ହୋଇଥିଲା ଓ ନିଷ୍ପତ୍ତି ନିଆ ଯାଇଥିଲା, ତାହା ଭିଜିଲ୍ ପତ୍ରିକାର ୨୦୦୦ ମସିହା ସେପ୍ଟେମ୍ବର ୧-୧୫ ସଂଖ୍ୟାରେ ପ୍ରକାଶିତ ହୋଇଛି । ସାମ୍ପ୍ରତିକ ଶୋଷକ ଶକ୍ତିର କବଳରୁ ରକ୍ଷା ପାଇବାକୁ ହେଲେ ଏ ଶୋଷକ ଶକ୍ତିର ବିଭିନ୍ନ ରଣକୌଶଳକୁ ବୁଝି ଅସଲ ରଣନୀତି ଗ୍ରହଣ କରିବାକୁ ହେବ ବୋଲି କେତେ ଗୁଡ଼ିଏ ପ୍ରସ୍ତାବ ଦିଆଯାଇଛି । ସେ ଗୁଡ଼ିକ ନିମ୍ନରେ ବର୍ଣ୍ଣନା କରାଗଲା । ସତ୍ୟାଗ୍ରହ ଓ ସ୍ୱରାଜ୍ୟ ଗାନ୍ଧୀବାଦର ମୂଳମନ୍ତ୍ର । ତାହାକୁ ଅସ୍ତ୍ରକରି ପ୍ରଥମେ ଦୃଢ଼ ଜନ ଆନ୍ଦୋଳନ ଗଢ଼ି ଉଠିବା ଯାହା ଶିଳ୍ପୀକରଣ ଓ ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ପ୍ରକଳ୍ପ ବିରୁଦ୍ଧରେ ସଂଗ୍ରାମ କରିବ । ଯେଉଁଠି ଭୂଅର୍ଜନ କରାଯାଉଛି ଶିଳ୍ପ କାରଖାନା ଓ ପୁଞ୍ଜିପତିଙ୍କ ସ୍ୱାର୍ଥ ପାଇଁ, ସେଇଠି ପ୍ରତିରୋଧର ପାଚେରୀ ଗଢ଼ା ହେବ । ଏହି କର୍ପୋରେସନ୍‌ମାନଙ୍କ ବିରୁଦ୍ଧରେ ନ୍ୟାୟାଳୟର ସାହାଯ୍ୟ ନିଆଯିବ । ବହୁରାଷ୍ଟ୍ରୀୟ କମ୍ପାନୀମାନେ ଏ ଦେଶରେ ଜୋତା, ତେଲ, ଲୁଗାଧୁଆ ଓ ଟଏଲେଟ୍ ସାବୁନ୍ ଆଦିର ବଜାରକୁ ଏକଚାଟିଆ କରି ମୁନାଫା ଉଠାଉଛନ୍ତି । ଏ ଗୁଡ଼ିକ ବୟକଟ୍ କରିବାକୁ ହେବ ।

ଶୋଷକ ଶକ୍ତିମାନଙ୍କ ଅନ୍ୟ ଏକ ଅସ୍ତ୍ର ହେଉଛି ଶୋଷଣ ପ୍ରକ୍ରିୟାକୁ ଦୁର୍ନୀତିର ସାହାଯ୍ୟ ନେଇ ତୀବ୍ର କରିବା । ଜଗତୀକରଣର ଅନ୍ୟଏକ ପ୍ରକ୍ରିୟା ହେଉଛି ଦୁର୍ନୀତିକରଣ । ଅର୍ଥାତ ଦୁର୍ନୀତିର ଚେରକୁ ଆହୁରି ବ୍ୟାପକ କରିବ । ସତ୍ୟାଗ୍ରହର ସାହାଯ୍ୟ ନେଇ ଦୁର୍ନୀତିର ମୂଳୋତ୍ପାଟନ କରାଯାଇ ପାରିବ ଏଥିରେ ସନ୍ଦେହ ନାହିଁ । ସବୁକର୍ମଚାରୀ ଓ ସଂସ୍ଥା ସ୍ୱଚ୍ଛ ଓ ଉତ୍ତରଦାୟୀ ହେବେ, ସେଥିପାଇଁ ସାମାଜିକ ଚାପ ସୃଷ୍ଟି

କରିବାକୁ ହେବ । ଦୁର୍ନୀତି କେବଳ ତଳସ୍ତରରେ ହେଉନାହିଁ, ସର୍ବୋଚ୍ଚ ସ୍ତରରେ ହେଉଛି; ରାଜନୀତିରେ, ଅମଲାତନ୍ତ୍ରରେ, ଧର୍ମକ୍ଷେତ୍ରରେ, ସ୍ୱେଚ୍ଛାସେବୀ ସଂଗଠନରେ ଓ କର୍ପୋରେଟ୍‌ରେ । ଏବେ ଏନ୍‌ରନ୍ ନାମକ ବିତ୍ତଶାଳୀ ଓ ଶକ୍ତିଶାଳୀ ଆମେରିକୀୟ କର୍ପୋରେସନ୍‌ର ମାଲିକ ଓ ମୁଖ୍ୟ ଅଧିକାରୀଙ୍କୁ ଦୁର୍ନୀତି ପାଇଁ ଜେଲ୍‌ଦଣ୍ଡ ଦିଆଯାଇଛି । ଏଣୁ ଦୁର୍ନୀତିକୁ ଲଢ଼ିବାକୁ ସତ୍ୟାଗ୍ରହର ଆବଶ୍ୟକ ରହିଛି । ଦୁର୍ନୀତିର ଦୁର୍ଗ ପତନ ହେଲେ ଜଗତୀକରଣର ରକ୍ଷାକବଚ ମଧ୍ୟ ଅକାମୀ ହୋଇଯିବ । ବିକାଶ ପ୍ରକ୍ରିୟାରେ ଯେଉଁ ଦୁର୍ନୀତି ଦେଖା ଦେଇଛି ସେଥିରେ ମଧ୍ୟ ଜଗତୀକରଣର ଉପାଦାନ ରହିଛି । 'ଲର୍ଡ୍‌ସ୍ ଅଫ ପୋଭର୍ଟି' ବୋଲି ଗୋଟିଏ ବିଖ୍ୟାତ୍ ବହି ଲେଖାଯାଇଛି ଯେଉଁଥିରେ ବିକାଶ ପ୍ରକ୍ରିୟାରେ ଯେଉଁ ଦୁର୍ନୀତି ଚାଲିଛି ତାହାକୁ ପରିସଂଖ୍ୟାନ ସହ ପ୍ରକାଶ କରାଯାଇଛି । ଚମକପ୍ରଦ କଥା ସବୁ ଲେଖାଯାଇଛି ।

ଜଗତୀକରଣର ଅନ୍ୟଏକ ପରିପ୍ରକାଶ ହେଉଛି ସାମାଜିକ ନ୍ୟାୟକୁ ଖତମ କରିବା, ଏହାର କାରଣ ହେଲା, ଯେ ଅନ୍ୟାୟ ଓ ବୈଷମ୍ୟ ଜଗତୀକରଣର ଉଭୟ କାରଣ ଓ ଫଳାଫଳ- କଜ୍ ଏଣ୍ଡ ଇଫେକ୍ଟ । ଅନ୍ୟାୟର ସୀମାରେଖା କେମିତି ବଢ଼ି ଚାଲିଛି, ବାଣିଜ୍ୟ ଓ ବେପାରକୁ ସୁହାଇବା ପାଇଁ ତାହା ବୁଝିବାକୁ ଚେଷ୍ଟା କଲେ ଜଣେ ନିଜର ମାନସିକ ଭାରସାମ୍ୟ ହରାଇ ବସିବ । ଆଜି ସାଧାରଣ ମଣିଷଟି ଏ ଅନ୍ୟାୟ ଓ ବୈଷମ୍ୟକୁ ଅଙ୍ଗେ ଅଙ୍ଗେ ଅନୁଭବ କରିପାରୁଛି । ଗାନ୍ଧୀବାଦ ହିଁ ଏ ଅନ୍ୟାୟ ଓ ବୈଷମ୍ୟ ବିରୋଧରେ ସଂଗ୍ରାମ କିରବାର ଅସ୍ତ୍ର । ଗାନ୍ଧୀ ନିଜେ ଦେଖାଇ ଦେଇଛନ୍ତି ଯେ ସତ୍ୟ ଓ ଅହିଂସା ମାର୍ଗରେ ପ୍ରବଳ ପ୍ରତାପୀ ବ୍ରିଟିଶ ସାମ୍ରାଜ୍ୟକୁ ହଟାଇ ପାରିହେବ । ଯଦି ଜମିହୀନକୁ ଜମି ମିଳୁନାହିଁ ଓ ଖଟିଖିଆ ଶ୍ରମିକକୁ ସର୍ବନିମ୍ନ ମଜୁରୀ ମିଳୁନାହିଁ, ଏ ଅନ୍ୟାୟକୁ ସମସ୍ତେ ପ୍ରତିରୋଧ କରିପାରିବା ହିଁ ଜଗତୀକରଣ ବିରୋଧରେ ସଂଗ୍ରାମ ବୋଲି ମାନିବାକୁ ହେବ ।

ସ୍ୱାବଲମ୍ବନଶୀଳ ଅର୍ଥନୀତି ଓ ସ୍ୱପରିଚାଳିତ ବିକାଶଧାରା ହିଁ ଅସଲରେ ଜଗତୀକରଣକୁ ମୁକାବିଲା କରିପାରିବ । ବିଦେଶୀ ସାହାଯ୍ୟ ଆଣି ଜଗତୀକରଣ ପ୍ରକ୍ରିୟାକୁ ବିରୋଧ କରି ହେବନାହିଁ, ପ୍ରଶାସନ ମଧ୍ୟ ସୁଶାସନ, ସ୍ୱଶାସନ ଓ ସ୍ୱାୟତ୍ତଶାସନକୁ ଅସଲ ଅର୍ଥରେ ବୁଝିବାକୁ ହେବ ବୋଲି ଗାନ୍ଧୀବାଦୀମାନେ ଦୃଢ଼ ସ୍ୱରରେ କହନ୍ତି । ଆୟୋଡ଼ିନ୍‌ଯୁକ୍ତ ଲବଣ ସପକ୍ଷରେ ଯେଉଁଭଳି ପ୍ରଚାର କରାଯାଇ ସାଧାରଣ ଲୁଣକୁ ଯେମିତି ନିଷିଦ୍ଧ କରାଗଲା, ଏହା ଜଗତୀକରଣର ଅନ୍ୟ ଏକ ପରିପ୍ରକାଶ ।

ବୁଲୁ ଭାଇ ସରକାର ବାହାଦୁର ଓ ୟୁନିସେଫ ଆଦିଙ୍କ ଯୁକ୍ତିକୁ ବିରୋଧ କରି ସାଧାରଣ ଲୁଣ ବ୍ୟବହାର ଉପରେ କଟକଣା ଉଠାଇବାକୁ ଆନ୍ଦୋଳନ କରିଥିଲେ ଯାହା ଅନେକକୁ ପ୍ରଭାବିତ କରିଥିଲା । ଆୟୋଡ଼ିନଯୁକ୍ତ ଲୁଣ କେବଳ କର୍ପୋରେସନ୍‌ମାନଙ୍କ ହାତରେ ଅଛି । ଭାରତରେ ଟାଟା କମ୍ପାନୀ ଆୟୋଡ଼ିନଯୁକ୍ତ ଲୁଣ ବିକ୍ରୟ କରି ପ୍ରଚୁର ଲାଭ ପାଇଛି । ଏଇଭଳି କମ୍ପାନୀମାନଙ୍କ ଚାପ ଫଳରେ ସରକାର ମୁଣ୍ଡ ନୁଆଁଇଛନ୍ତି ଓ ହଜାର ହଜାର ଲୁଣ ମାରି ବଞ୍ଚୁଥିବା ପରିବାରକୁ ସର୍ବସ୍ୱାନ୍ତ କରୁଛନ୍ତି ।

ବୁଲୁ ଭାଇଙ୍କ ଭଳି ସବୁ ଗାନ୍ଧୀବାଦୀମାନେ ବିକଳ୍ପ ରାଜନୀତି ବା ଲୋକନୀତି ଏହା ଉପରେ ଆସ୍ଥା ରଖିଛନ୍ତି । ଏହା ଫଳରେ ସାଧାରଣ ଭୋଟଦାତାଙ୍କ ନିର୍ବାଚିତ ପ୍ରତିନିଧିଙ୍କ ଉପରେ କର୍ତ୍ତୃତ୍ୱ ରହିବ । ଏହାଛଡ଼ା ନିର୍ବାଚନରେ ବିକଳ୍ପ ଏବଂ ଅସଲ ପ୍ରାର୍ଥୀ ଦେବାକୁ ପଦକ୍ଷେପ ନେବ । ଏହା ଲୋକନୀତିର ଅନ୍ୟ ଏକ ଦିଗ । ଜଗତୀକରଣ ପ୍ରକ୍ରିୟାକୁ ରାଜନୈତିକ ଦୃଷ୍ଟିକୋଣରୁ ବିରୋଧ କରିବାକୁ ହେଲେ ଏକ ବଳିଷ୍ଠ ଲୋକନୀତିର ଆବଶ୍ୟକତା ରହିଛି । ଦେଖାଯାଉଛି ଯେ ଜଗତୀକରଣ ଏକଛତ୍ରବାଦୀ ଶାସନକୁ ସମର୍ଥନ ଦେଇ ଆସୁଛି ଓ ଗଣତନ୍ତ୍ରକୁ କୌଣସି ନା କୌଣସି ବାଟରେ ଦୁର୍ବଳ କରୁଛି । ଏସିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକାର ବଭିନ୍ନ ଦେଶରେ ଏହାର ଜ୍ୱଳନ୍ତ ଉଦାହରଣ ଅଛି ।

ବୁଲୁ ଭାଇ ଜଗତୀକରଣକୁ କିପରି ସକ୍ରିୟଭାବେ ବିରୋଧ କରାଯାଇ ପାରିବ ତାହାର ଚଲାବାଟ ସୃଷ୍ଟି କରିଛନ୍ତି । "ଭିଜିଲ୍"ରେ ଲେଖିବା ଛଡ଼ା ରାଜ୍ୟ ଭିତରେ ଓ ବାହାରେ ବକ୍ତୃତା ଦେବା, ଗାନ୍ଧୀବାଦୀ ଅହିଂସା ଆନ୍ଦୋଳନରେ ସାମିଲ ହେବା, ବ୍ୟକ୍ତି ଓ ଅନୁଷ୍ଠାନମାନଙ୍କ ସହ ସମ୍ପର୍କ ରଖିବା, ଜଗତୀକରଣ ପ୍ରକ୍ରିୟାରେ ପ୍ରଭାବିତ ବ୍ୟକ୍ତିଙ୍କୁ ସାହାଯ୍ୟ ଓ ସମର୍ଥନ ଦେବା, ଗ୍ରାମ ସ୍ୱରାଜ୍ୟର ମୂଳମନ୍ତ୍ରକୁ ସୁଦୂର ପ୍ରସାରୀ କରିବା ଏବଂ ସର୍ବୋପରି ଆକ୍ଟିଭିଷ୍ଟମାନଙ୍କୁ ପ୍ରେରଣା ଓ ପ୍ରଶିକ୍ଷଣ ଦେବା ଆଦି ପଦକ୍ଷେପ ନେଇ ବୁଲୁ ଭାଇ ଆଜି ଆମ ସମସ୍ତଙ୍କ ପାଖରେ ସ୍ମରଣୀୟ ହୋଇଯାଇଛନ୍ତି ।

ବୁଲୁ ଭାଇଙ୍କ "ଭିଜିଲ୍" ପତ୍ରିକାର (୧-୧୫ ଅକ୍ଟୋବର ୨୦୦୦ ସଂଖ୍ୟା) ସମ୍ପାଦକୀୟ 'ଦ ଫୁଟ୍‌ଫଲ୍‌ସ ଅଫ ଇକୋନୋମିକ ସ୍ଲେଭେରି' (The Footfalls of Economic Slavery) ଏକ ଚମତ୍କାର ପ୍ରବନ୍ଧ ବୋଲି ସ୍ୱୀକାର କରିବାକୁ ହେବ । ନୂତନ ଅର୍ଥନୀତି କିପରି ଭାରତ ଉପରେ ଲଦି ଦିଆଯାଇ ସ୍ଥାୟୀକରଣ, ଘରୋଇକରଣ, ଉଦାରୀକରଣ ଓ ଜଗତୀକରଣ ପ୍ରକ୍ରିୟାକୁ ସ୍ୱଦୃଢ଼ କରାଯାଇପାରିବ

ତାହାର ସର୍ବଶେଷ ଆଲୋଚନା କରିଛନ୍ତି । ଶିଳ୍ପୀକରଣ ଉପରେ ମତାମତ ଦେବାକୁ ଯାଇ ସେ କହିଛନ୍ତି ଯେ ଭାରତର କୁଟୀର ଶିଳ୍ପ ଯେଉଁ ଗତିରେ ଲୁପ୍ତ ପ୍ରାୟ ହୋଇଛି ଓ ବେକାରୀ ବଢ଼ିଛି ତାହା ଭାବି ହେଉ ନାହିଁ । ଦେଢ଼ଲକ୍ଷ କୁଟୀର ଏବଂ କ୍ଷୁଦ୍ରଶିଳ୍ପ ବନ୍ଦ ହୋଇଯାଇଛି । ଜଳର ଘରୋଇକରଣ ଏବଂ ପେଟେଣ୍ଟ ଆଇନର ସଂଶୋଧନ ଯେଉଁଭଳି ଏ ଦେଶରେ କରାଯାଇଛି ତାହାମଧ୍ୟ ଜଗତୀକରଣର ପ୍ରଭାବ ଓ ପ୍ରତିକ୍ରିୟା ବୋଲି ସେ କହିଛନ୍ତି । "ସ୍ୱଦେଶୀ ଜାଗରଣ ମଞ୍ଚ" ଅସଲରେ ସ୍ୱଦେଶୀ ଚିନ୍ତାରେ ଚିନ୍ତିତ କି ନାହିଁ ସେ ବିଷୟ ମଧ୍ୟ ଆଲୋଚନା କରିଛନ୍ତି । ଯଦିଓ ନୂତନ ଅର୍ଥନୀତିକୁ ବଦଳେଇବା ଏକ ଜଟିଳ ବ୍ୟାପାର, ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ମୂଳୋତ୍ପାଟନ ହେବା ନିତାନ୍ତ ଆବଶ୍ୟକ ବୋଲି ସେ ଯୁକ୍ତି କରିଛନ୍ତି ।

ଏ ସ୍ତମ୍ଭକୁ ମିଶାଇ ତିନୋଟି ସ୍ତମ୍ଭରେ ମୁଁ ସ୍ୱର୍ଗତ ବାଙ୍କ ବିହାରୀ ଦାସ, ସ୍ୱର୍ଗତ କିଶନ୍ ପଟ୍ଟନାୟକ ଓ ସ୍ୱର୍ଗତ ମନମୋହନ ଚୌଧୁରୀଙ୍କ ଥ୍ରୀ ମସ୍କେଟିଅରସ୍ ଭାବେ ପାଠକଙ୍କ ସାମନାରେ ଜଗତୀକରଣ ପରିପ୍ରେକ୍ଷୀରେ ପରିଚିତ କରାଇଛି । ଏମାନେ ଓଡ଼ିଶାର ପ୍ରବାଦ ପୁରୁଷ ଓ ସମ୍ମାନସ୍ପଦ । ଏମାନେ ଇତିହାସ ସୃଷ୍ଟି କରିଛନ୍ତି । ଜଗତୀକରଣ ପ୍ରକ୍ରିୟାକୁ ମୁକାବିଲା କରିବାକୁ ରଣନୀତି ପ୍ରଦର୍ଶନ କରିଛନ୍ତି । କିନ୍ତୁ ଏମାନେ ସମ୍ଭବତଃ ଏକାକୀ ଏସବୁ କରିଛନ୍ତି । ଦୁଃଖର କଥା ଯେ ସେମାନଙ୍କ ମରଣୋତ୍ତର ରଙ୍ଗମଞ୍ଚରେ ଦ୍ୱିତୀୟ ପିଢ଼ୀର କର୍ମୀ, ଆକ୍ଟିଭିଷ୍ଟ ଓ ନେତୃତ୍ୱ ଆଶା ଅନୁଯାୟୀ ସୃଷ୍ଟି ହୋଇପାରିନାହିଁ । ଏ ତିନି ମହାନ୍ ବ୍ୟକ୍ତିତ୍ୱଙ୍କ ବ୍ୟକ୍ତିକୈନ୍ଦ୍ରିକ ମନୋଭାବ ଏଥିପାଇଁ ଦାୟୀ କି ? ପାଠକମାନେ ବିଚାର କରିବେ । ମଣିଷ ପାଦଚଲା ବାଟରେ ଯିବା ଫଳରେ ରାସ୍ତା ତିଆରି ହୁଏ । ଏଇ ତିନି ମହାନ୍ ବ୍ୟକ୍ତି ଯାଇଥିବା ରାସ୍ତାରେ ବହୁ ସଂଖ୍ୟାର ବ୍ୟକ୍ତି ବିଶେଷକରି ଯୁବଗୋଷ୍ଠୀ ଚାଲିବାକୁ ଆରମ୍ଭ କରିଛନ୍ତି । ଗତ କେତେବର୍ଷର ଜନଆନ୍ଦୋଳନର ବଢ଼ନ୍ତି ଗ୍ରାଫ୍‌ରୁ ଏହା ସ୍ପଷ୍ଟ ଜଣାପଡୁ ନାହିଁ କି ? ଏ ଥ୍ରୀ ମସ୍କେଟିଅରସ୍‌ଙ୍କୁ ଧନ୍ୟବାଦ ନଦେଇ ରହିହେବ ନାହିଁ । ❑

# ଜଗତୀକରଣ ଏବଂ ଇୟୁରୋପର୍ ଯୁଗାନ୍ତକାରୀ ସଂଗଠନ 'ଆଟାକ୍'

ବ୍ରାଜିଲ୍‌ର ଗ୍ରାମାଞ୍ଚଳରେ ଯେଉଁଠି ଜମି ଅଧିକାର ଉପରେ ଆନ୍ଦୋଳନ ଚାଲିଛି ମୁଁ ୨୦୦୩ ମସିହାରେ ୩ଜଣ ଇୟୁରୋପୀୟ ଆକ୍ଟିଭିଷ୍ଟଙ୍କୁ ଭେଟିଥିଲି । ଦୁଇଜଣ ସ୍ପେନ୍‌ରୁ ଓ ଜଣେ ଫ୍ରାନ୍ସରୁ । ଆମେ ସବୁ ଗୋଟିଏ କ୍ୟାମ୍ପରେ ରହୁଥିଲୁ । ଏକାଠି ଖାଉଥିଲୁ ଓ ବ୍ରାଜିଲ୍‌ର ସଂଘର୍ଷରତ କୃଷିଜୀବୀମାନଙ୍କ ସହ କଥାବାର୍ତ୍ତା କରୁଥିଲୁ । ମୁଁ ପର୍ତ୍ତୁଗୀଜ୍ ଭାଷା ଜାଣିନଥିଲି । ସେମାନେ ମଧ୍ୟ ଇଂରାଜୀ ଭାଷା ବୁଝୁ ନଥିଲେ । ଏହି ପରିପ୍ରେକ୍ଷୀରେ ଜଣେ ସ୍ପେନୀୟ ଆକ୍ଟିଭିଷ୍ଟ ଇଂରାଜୀ ଭାଷା ଜାଣିଥିବାରୁ ମୋର ବାର୍ତ୍ତାଳାପର ଅନୁବାଦକ ହେବାକୁ ଦାୟିତ୍ୱ ସ୍ୱେଚ୍ଛାରେ ନେଇଥିଲେ । କଥା ଛଳରେ ସେ ଇୟୁରୋପୀୟ ଆକ୍ଟିଭିଷ୍ଟମାନେ 'ଆଟାକ୍' ନାମକ ଏକ ଇୟୁରୋପୀୟ ସଂଗଠନରୁ ଆସିଛନ୍ତି ବୋଲି କହିଥିଲେ । ମୁଁ 'ଆଟାକ୍' ବିଷୟରେ ଅଳ୍ପକିଛି ଜାଣିଥିଲି । ଏ ବନ୍ଧୁ 'ଆଟାକ୍' ବିଷୟରେ ସମ୍ୟକ ଧାରଣା ଦେଇଥିଲେ । ଜଗତୀକରଣ ବିରୁଦ୍ଧରେ ଲଢୁଥିବା ଏ ସଂସ୍ଥା ବର୍ତ୍ତମାନ ଇୟୁରୋପ୍‌ର ପ୍ରାୟ ପ୍ରତ୍ୟେକ ଦେଶରେ ଶାଖା ଖୋଲି ବହୁସଂଖ୍ୟାରେ ସଦସ୍ୟମାନଙ୍କୁ ଆକର୍ଷିତ କରିଛି । ହଜାର ହଜାର ସଂଖ୍ୟାରେ ଆକ୍ଟିଭିଷ୍ଟ ଓ ସ୍ୱେଚ୍ଛାସେବୀ ଏ ସଂଗଠନକୁ ବିଶ୍ୱର ଏକ ପ୍ରଭାବଶାଳୀ ଓ ଶକ୍ତିଶାଳୀ ସଂସ୍ଥା ହିସାବରେ ପ୍ରତିଷ୍ଠିତ କରାଇଛନ୍ତି ।

'ଆଟାକ୍'ମାନେ ଆକ୍ରମଣ ବା ସେଇଭଳି ଅର୍ଥରେ ଅନ୍ୟକିଛି ବୋଲି ଭାବିବା ଭୁଲ । ୧୯୯୭ ମସିହାରେ, ଇଗ୍ନାସଓ ରାମୋନେଟ୍ ନାମରେ ଜଣେ ଖ୍ୟାତନାମା ସମ୍ପାଦକ ଯିଏ "ଡ଼ିସ୍‌ଆର୍ମିଂ ଦ ମାର୍କେଟ" ବୋଲି ଏକ ଫ୍ରେଞ୍ଚ ମାସିକ ପତ୍ରିକା ସମ୍ପାଦନା କରୁଥିଲେ ସେ ପାଠକମାନଙ୍କୁ ବଜାରୀକରଣକୁ ବିରୋଧ କରିବା ପାଇଁ ଏକ ସଂଗଠନ ଗଢ଼ିବାକୁ ଆହ୍ୱାନ ଦେଇଥିଲେ । ଏହାର ନାମ ସେ ଦେଇଥିଲେ 'ଆଟାକ୍' ବା ବଜାର ଏବଂ ଟିକସ ଆଦି ଅକଥନୀୟ ଶୋଷଣ ବିରୋଧରେ ଏକ ସଂଗଠନ । ଇଗ୍ନାସିଓଙ୍କୁ ପଚରା ଯାଇଥିଲା ଯେ ସଂଗଠନର ନାମକରଣ କାହିଁକି 'ଆଟାକ୍' କରାଯାଇଛି । ସେ କହିଥିଲେ ଯେ ରବର୍ଟ ଆଲ୍‌ଡ୍ରିଚ୍‌ଙ୍କ ଏକ ଚଳଚ୍ଚିତ୍ର 'ଆଟାକ୍' ଦ୍ୱାରା ସେ ପ୍ରଭାବିତ ହୋଇ ଏପରି ନାମ ଦେଇଛନ୍ତି । ମାସିକ ପତ୍ରିକାରେ ଏ ବିଷୟରେ ଲେଖିବାପରେ

ସେ ଭାବି ନଥିଲେ ଯେ ପାଠକମାନଙ୍କଠାରୁ ଏପରି ଉଚ୍ଛ୍ୱସିତ ପ୍ରତ୍ୟୁତ୍ତର ପାଇବେ ବୋଲି । ସମ୍ପାଦକୀୟ ଲେଖାଟିଏ ଖୁବ୍ ଭଲ ହୋଇଥିଲେ ୩୦-୪୦ ଜଣ ପାଠକଙ୍କଠାରୁ କିଛି ନା କିଛି ମତାମତ ସେ ସାଧାରଣ ଭାବେ ପାଇଥାଆନ୍ତି । କିନ୍ତୁ ଏ 'ଆଟାକ୍' ସମ୍ବନ୍ଧ ଲେଖା ଉପରେ ପାଠକଙ୍କ ମତାମତ ପୋଷ୍ଟବକ୍ସ ପ୍ରତିଦିନ ଭରିଯାଉଥିଲା ଏବଂ ଅନେକ ଦିନ ଧରି ଏମିତି ଚାଲିଲା । ସମସ୍ତଙ୍କର ଗୋଟାଏ ଅନୁରୋଧ ଯେ 'ଆଟାକ୍' ନାମକ ସଂସ୍ଥା ଗଢ଼ିବାକୁ ଆଉ ବିଳମ୍ବ ନ କରାଯାଉ । ଫ୍ରାନ୍ସରେ ମାର୍ଚ୍ଚ ୧୯୯୮ ମସିହାରେ ଔପଚାରିକ ଭାବେ 'ଆଟାକ୍' ସଂସ୍ଥା ଗଢ଼ାଗଲା ଏବଂ ବର୍ନାଡ୍ କାସେନ୍ ବୋଲି ଜଣେ ସଂଗଠନକୁ ଏହାର ପରିଚାଳନା ଦାୟିତ୍ୱ ଦିଆଗଲା । ଫ୍ରାନ୍ସରେ ଜନସାଧାରଣ ଜଗତୀକରଣ ପ୍ରକ୍ରିୟାରେ ବିଶେଷଭାବେ ପ୍ରଭାବିତ ହୋଇ ସମର୍ଥକ ଓ ବିରୋଧିପକ୍ଷ ଭାବେ ଦୁଇଟି ସ୍ୱତନ୍ତ୍ର ଦଳରେ ବିଭକ୍ତ ହୋଇ ଯାଇଥିଲେ । ସାଧାରଣ ଭାବେ 'ଆଟାକ୍'ର ଅର୍ଥ ଥିଲା ନାଗରିକ ସହାୟତା କାର୍ଯ୍ୟକ୍ରମ । ଅର୍ଥାତ ବଜାର ଓ ଟିକସ ସମସ୍ୟାରେ ନାଗରିକକୁ ସହାୟତା ଦେବା ସଂଗଠନ । ପ୍ରଥମେ ସଦସ୍ୟତା ପାଇଁ ବ୍ୟକ୍ତି ବିଶେଷଙ୍କୁ ଗୁରୁତ୍ୱ ନଦେଇ କେତେକ ତୃଣମୂଳ ସଂଗଠନକୁ ପ୍ରାଥମିକ ସଦସ୍ୟ ଭାବେ ଗ୍ରହଣ କରାଗଲା । ଏଥିରେ ଥିଲେ ଶ୍ରମିକ ସଂଗଠନ, ନାଗରିକ ସମାଜ, ଜନ ଆନ୍ଦୋଳନ ଏବଂ ଗଣମାଧମକୁ ପ୍ରଭାବିତ କରୁଥିବା ସମ୍ବାଦ ପତ୍ର । କୃଷକ ସଂଗଠନମାନେ ମଧ ଧୀରେ ଧୀରେ 'ଆଟାକ୍'ର ସଦସ୍ୟତା ଗ୍ରହଣ କରିଥିଲେ ଫ୍ରାନ୍ସରେ । ଆଟାକ୍ ଏଇଭଳି ଜଗତୀକରଣ ବିରୁଦ୍ଧରେ ଏକତ୍ରିତ ହୋଇଥିବା ବ୍ୟକ୍ତି ଓ ସଂଗଠନମାନଙ୍କ ଏକ ମୋଜାଇକ୍ ଭାବେ ପ୍ରତିଷ୍ଠିତ ହୋଇଥିଲା । ଅକ୍ଟୋବର ୧୯୯୮ ମସିହା ସୁଦ୍ଧା ଏହାର ମୂଳଦୁଆ ସୁଦୃଢ଼ ହୋଇଥିଲା ଓ ପ୍ରଥମ ସମ୍ମିଳନୀରେ ୩୫୦୦ରୁ ଊର୍ଦ୍ଧ୍ୱ ବ୍ୟକ୍ତି ଓ ସଂଗଠନ ଅଂଶ ଗ୍ରହଣ କରିଥିଲେ । ବର୍ଷେ ଦୁଇବର୍ଷରେ ଏହାର ସଭ୍ୟ ସଂଖ୍ୟା ୩୦,୦୦୦କୁ ଟପିଗଲା । ଫ୍ରାନ୍ସର ବିଭିନ୍ନ ପ୍ରାନ୍ତରେ ଏହାର ଶାଖା ଖୋଲିଲା । କେଉଁଠି ୫୦ଜଣ ସଭ୍ୟ ତ ଆଉ କେଉଁଠି ୫୦୦ । ସ୍ଥାନୀୟ କମିଟିକୁ ନୀତି ଓ ନିଷ୍ପତ୍ତି ସବୁ ସ୍ଥିର କରିବାକୁ କ୍ଷମତା ଦିଆଗଲା । ଯଦି ବିଶ୍ୱ ବାଣିଜ୍ୟ ସଂଗଠନ ବା ଅନ୍ୟକିଛି ଅନ୍ୟାୟ ବିରୁଦ୍ଧରେ ଜାତୀୟ ସ୍ତରରେ ଆନ୍ଦୋଳନାତ୍ମକ ପ୍ରଦର୍ଶନ କରିବାକୁ ନିଷ୍ପତ୍ତି ନିଆଯାଏ ତାହା ସ୍ଥାନୀୟ କମିଟିମାନଙ୍କର ସହମତିରେ ସମ୍ଭବ ହୁଏ ।

'ଆଟାକ୍'ର ପ୍ରଭାବ ଓ ପ୍ରତିଷ୍ଠାକୁ ଅନୁଭବ କରି ପ୍ରାୟ ପ୍ରତ୍ୟେକ ଇୟୁରୋପୀୟ ଦେଶରେ ଶାଖାପ୍ରଶାଖା ଏବେ ଖୋଲି ସାରିଛି । ଏହା ଖୁବ୍ ଶକ୍ତିଶାଳୀ ହୋଇଛି

ଡେନ୍‌ମାର୍କ, ସ୍ୱିଡେନ୍, ନିରଓ୍ୱେ ଏବଂ ଫିନ୍‌ଲାଣ୍ଡରେ । ଏହାଛଡ଼ା ଜର୍ମାନୀ ଓ ଇଟାଲୀ ଭଳି ଦେଶରେ 'ଆଟାକ୍'ନାମରେ ଶକ୍ତିଶାଳୀ ସଂଗଠନ ଗଢ଼ା ସରିଛି । ଇୟୁରୋପ ବାହାରେ କାନାଡ଼ା, ଆଫ୍ରିକା, ଲାଟିନ ଆମେରିକା ଏବଂ ଜାପାନରେ ମଧ୍ୟ 'ଆଟାକ୍'ର ଶାଖାମାନ ସ୍ଥାନୀୟ ଆକ୍ଟିଭିଷ୍ଟମାନେ ଖୋଲି ସାରିଛନ୍ତି । ସବୁକ୍ଷେତ୍ରରେ ଫ୍ରାନ୍‌ସରେ ପ୍ରଥମେ ଆରମ୍ଭ ହୋଇଥିବା ଏହି ଲୋକ ସଂଗଠନର ମୂଳ ମୂଲ୍ୟବୋଧକୁ ଆଧାର କରି ଏହା ସମ୍ଭବ ହୋଇପାରିଛି । କିନ୍ତୁ 'ଆଟାକ୍'ର ମୂଳ ଲକ୍ଷ୍ୟ କ'ଣ କେବଳ ଜଗତୀକରଣ ପ୍ରକ୍ରିୟାକୁ ବିରୋଧ କରିବା ? ବଜାରୀକରଣକୁ ପ୍ରତିରୋଧ କରିବା ? ମୂଳତଃ ଏହାର ପ୍ରଥମ ଉଦ୍ଦେଶ୍ୟ ହେଲା 'ଲୋକ ଶିକ୍ଷା ପାଇଁ ଜନ ଆନ୍ଦୋଳନ' ଅର୍ଥାତ୍ ଆକ୍ଟିଭିଷ୍ଟ ଓ ସ୍ୱେଚ୍ଛାସେବୀମାନେ ଜନଆନ୍ଦୋଳନରେ ସକ୍ରିୟ ଭାଗ ନେବା ପୂର୍ବରୁ ଜ୍ଞାନ ଆହରଣ କରି ବୌଦ୍ଧିକ ସ୍ତରରେ ନିଜକୁ ଶକ୍ତିଶାଳୀ କରିବା । କେବଳ ସଂଖ୍ୟା ବଢାଇବା ପାଇଁ ଆନ୍ଦୋଳନ ବା ରାଲିରେ ଯୋଗ ଦେବା ଯଥେଷ୍ଟ ନୁହେଁ । ସବୁକଥା ହୃଦୟଙ୍ଗମ କରିବା ଓ ସମସ୍ୟା ଗୁଡ଼ିକୁ ବିଶ୍ଳେଷଣ କରିବା ଆବଶ୍ୟକ । ଏଥିପାଇଁ 'ଆଟାକ୍' ଆୟୋଜନକରି ଆସୁଛି ବିଶେଷ ଆଲୋଚନାଚକ୍ର, ସମ୍ମିଳନୀ, ଡ଼ିବେଟ୍-ତର୍କ ବିତର୍କ । ପ୍ରକାଶ କରିଆସୁଛି ପ୍ରଭାବଶାଳୀ ପୁସ୍ତିକା, ଲିଫ୍‌ଲେଟ୍, ପାମ୍ପଲେଟ୍, ପୋଷ୍ଟର । ଏସବୁ ପ୍ରକାଶନ ନିର୍ଭୁଲ ହୋଇଥିବାରୁ ରାଜନୈତିକ ଦଳ ଓ ଗଣମାଧ୍ୟମଙ୍କର ସମ୍ମାନ ଅର୍ଜନ କରିଛି । ଜାତୀୟ ଆସେମ୍ବ୍ଲି ହେଉ ବା ସିନେଟ୍ ହେଉ ଅଥବା ଇୟୁରୋପିୟାନ୍ ପାର୍ଲିଆମେଣ୍ଟ ହେଉ, 'ଆଟାକ୍'ର ପ୍ରତିନିଧିମାନେ ସବୁ ରାଜନୈତିକ ଦଳରୁ ଆସିଥାଆନ୍ତି । ଏଥିରେ ଥାଆନ୍ତି ସୋସିଆଲିଷ୍ଟ, କମ୍ୟୁନିଷ୍ଟ, ଗ୍ରୀନ୍‌ପାର୍ଟି, ରାଡ଼ିକାଲ ପାର୍ଟି । ଏପରିକି ଦକ୍ଷିଣ ପନ୍ଥୀ ଦଳମାନଙ୍କୁ ମଧ୍ୟ 'ଆଟାକ୍'ର ସଦସ୍ୟତା ଗ୍ରହଣ କରିଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟର କଥା 'ଆଟାକ୍'ରେ ସବୁଶ୍ରେଣୀ ଓ ସବୁ ପେଶାର ବ୍ୟକ୍ତିମାନେ ସଦସ୍ୟତା ଗ୍ରହଣ କରିଛନ୍ତି । ଏଥିରେ ମୁଖ୍ୟତଃ ନିମ୍ନ ମଧ୍ୟବିତ୍ତ ଶ୍ରେଣୀରୁ ବେଶି ଅଛନ୍ତି । ତଥାପି ଅଛନ୍ତି ଶିକ୍ଷକ ଓ ଛାତ୍ର, କୃଷକ ଓ ଚାକିରିଆ । ଆହୁରି ମଧ୍ୟ ଅଛନ୍ତି ବିଭିନ୍ନ ଘରୋଇ କମ୍ପାନୀର କର୍ମଚାରୀମାନେ । ବିଶ୍ୱ ସାମାଜିକ ସଂଗଠନ ବା ଓ୍ୱାର୍ଲ୍ଡ ସୋସିଆଲ୍ ଫୋରମ ଗଠନ ହେବାରେ 'ଆଟାକ୍' ମଧ୍ୟ ଏକ ସକ୍ରିୟ ଭୂମିକା ଗ୍ରହଣ କରିଛି । ଏଥିପାଇଁ ଏହାକୁ ବିଶ୍ୱରେ ମାନ୍ୟତା ଦିଆଯାଇଛି ।

'ଆଟାକ୍' କେବଳ 'ବିଶ୍ୱ ବଜାରର ରାଜନୀତି'ରେ ନିଜକୁ ସୀମିତ ରଖି ନାହିଁ । ଦେଶ ଭିତରେ ତଥା ଦେଶ ବାହାରେ ଯେଉଁ ଅସମାନତା ରହିଛି, ଆର୍ଥିକ ନିରାପତ୍ତା ଯେପରି ବିପନ୍ନ ହୋଇଛି, ବେରୋଜଗାରୀ ଯେତିକି ବଢ଼ିଛି ତଥା ଏକ ଗଣତାନ୍ତ୍ରିକ ସମାଜ

ଯେଉଁଭଳି ଭାଙ୍ଗିପଡୁଛି ତାହାର ବାରମ୍ବାର ଆଲୋଚନା କରି ଆସିଛି । ଏହାକୁ ଛାଡି ଦୁଇଟି ନୂତନ ଆଲୋଚନା ପ୍ରସାର କରିଛି । ଗୋଟିଏ ହେଲା ଜଗତୀକରଣ ଓ ଅନ୍ୟଟି ହେଲା ଦେଶ ଓ ଜାତିର ଅବକ୍ଷୟ । ଜଗତୀକରଣ ଫଳରେ ଉଦାରୀକରଣ ହେଉଛି ଓ ଦେଶର ନିଜର ବଜାର ମୁକ୍ତ ବଜାର ହୋଇଯାଇଛି ଓ ବିଶ୍ୱପୁଞ୍ଜି ଅକ୍ଲେଶରେ ପ୍ରବେଶ କରୁଛି । ଏହାଛଡ଼ା ଦେଶବାସୀ ବିଶ୍ୱ ବଜାରାଭିମୁଖୀ ହୋଇ ପଡୁଛନ୍ତି । ଫଳସ୍ୱରୂପ ଗଣତାନ୍ତ୍ରିକ ମୂଲ୍ୟବୋଧ ମଧ୍ୟ ହ୍ରାସ ପାଇଛି । 'ଆଟାକ୍' ଜଗତୀକରଣ ପ୍ରଭାବରେ ଗଣତାନ୍ତ୍ରିକ ମୂଲ୍ୟବୋଧର ଅବକ୍ଷୟ ଉପରେ ଅଧ୍ୟୟନ କରି ଏଇ ସିଦ୍ଧାନ୍ତରେ ଉପନୀତ ହୋଇଛି ।

ସର୍ବଶେଷରେ 'ଆଟାକ୍' କୃଷି, ବିତ୍ତନ, ବାଇଓଟେକ୍ନୋଲୋଜି ଆଦି କ୍ଷେତ୍ରରେ ଜଗତୀକରଣ ଓ ବଜାରୀକରଣର ପ୍ରଭାବକୁ ପ୍ରତିହତ କରିବା ପାଇଁ ବଳିଷ୍ଠ ପଦକ୍ଷେପ ନେଇଛି । ଏସବୁକ୍ଷେତ୍ରରେ ରାଜକୀୟ ଅର୍ଥନୀତି (ପଲିଟିକାଲ୍ ଇକୋନୋମି)କୁ ଅତି ସରଳଭାବରେ ବୁଝାଇ ଦିଆଯାଇଛି । ଏ ପୃଥିବୀରେ ପରିବେଶ, ଜୈବବିବିଧତା, କୃଷିଜୀବୀଙ୍କ ଜୀବିକା ଏବଂ ସାଧାରଣ ମଣିଷଙ୍କ ସ୍ୱାଧୀନତା ବର୍ତ୍ତମାନ ଏକ ସଂଘର୍ଷମୟ ପରିସ୍ଥିତି ଦେଇ ଗତି କରୁଛି । ଲାଭଖୋର ପୁଞ୍ଜି ଓ ବଜାର ଏହାର ମୂଳକାରଣ ବୋଲି 'ଆଟାକ୍' ପ୍ରମାଣିତ କରିଛି ସାରା ପୃଥିବୀରେ । ଜଗତୀକରଣ ଏକ ଅପ୍ରାକୃତିକ ପ୍ରକ୍ରିୟା, ଏକ ଭୟାନକ ରାଜନୈତିକ ପ୍ରକଳ୍ପ । ଏହା ଅପରିହାର୍ଯ୍ୟ ନୁହେଁ, ଅପରିବର୍ତ୍ତନୀୟ ନୁହେଁ । ସାଧାରଣ ମଣିଷର ସୁରକ୍ଷା ଓ କଲ୍ୟାଣ ପାଇଁ, ସ୍ୱାଧୀନତା ଓ ମାନବିକତା ଅକ୍ଷୂର୍ଣ୍ଣ ରଖିବା ପାଇଁ 'ଆଟାକ୍' ଯେ ଉତ୍ସର୍ଗୀକୃତ ଏହାର ମାନିଫେଷ୍ଟୋ ବା ଘୋଷଣାପତ୍ରରେ କୁହାଯାଉଛି ।

'ଆଟାକ୍' ସାଧାରଣ ରଣନୀତି ହେଲା ବିଶ୍ୱସ୍ତରରେ ଚିନ୍ତା କରିବା ଓ ସ୍ଥାନୀୟ ସ୍ତରରେ ସକ୍ରୀୟ ହେବା – ଅର୍ଥାତ ଥିଙ୍କ୍ ଗ୍ଲୋବାଲି, ଆକ୍ଟ ଲୋକାଲି । ଏଥିରେ ତିନୋଟି ଦିଗ ଥିଲା ଯଥା- କ) ଲୋକ ଶିକ୍ଷା, ଖ) ନେଟ ଓ୍ୱାର୍କିଙ୍ଗ, ଗ) ରାଷ୍ଟ୍ରଉପରେ ଚାପ ପକାଇବା । ଜଗତୀକରଣ ବିରୁଦ୍ଧରେ ଏକ ଶକ୍ତିଶାଳୀ ମେଣ୍ଟ ଗଢ଼ିବାକୁ ହେଲେ ଆନ୍ତର୍ଜାତିକ ଅର୍ଥନୀତି ବିରୋଧରେ ଥିବା ବିଭିନ୍ନ ଅଭିଯୋଗକୁ ଏକାଠି କରିବା । ଏଥିପାଇଁ ଆବଶ୍ୟକ ହେଉଥିବା ସୂଚନା, ବିଶ୍ଳେଷଣ, କ୍ରିୟାପ୍ରତିକ୍ରିୟାକୁ ଇଣ୍ଟରନେଟ୍ ଛଡ଼ା ବିଭିନ୍ନ ପୁସ୍ତକ ଓ ମୁଖପତ୍ର ଜରିଆରେ ପ୍ରକାଶ କରିବା ପାଇଁ 'ଆଟାକ୍' ଦୃଢ଼ ପଦକ୍ଷେପ ନେଇଥିଲା । ଭାଷା ଥିଲା ସରଳ ଓ ସୁଗମ । ଏହାଛଡ଼ା କର୍ମଶାଳା ଓ

ଆଲୋଚନାଚକ୍ର ମଧ ବହୁ ସଂଖ୍ୟାରେ ଆୟୋଜନ କରାଯାଇ ବହୁ ସଂଖ୍ୟାରେ ଲୋକମାନଙ୍କୁ ଜଗତୀକରଣର କୁପ୍ରଭାବର ଚିତ୍ର ଦିଆଯାଇଥିଲା । ୨୦୦୨ ମସିହାର ଘୋଷଣାପତ୍ରରେ କୁହାଯାଇଥିଲା ଯେ ଗତ ୨୫ ବର୍ଷଧରି ଜଗତୀକରଣ ଓ ଉଦାରୀକରଣ ଯେଉଁ ମାନସିକ ଅତ୍ୟାଚାର କରିଆସିଛି ତାହାକୁ ଦୂର କରି ମଣିଷ ନୂତନ ଭାବେ, ସ୍ୱାଧୀନ ଭାବେ ଚିନ୍ତା କରିବା ଆରମ୍ଭ କରିଛି । ଏଇ ଚିନ୍ତାଧାରା ପୃଥିବୀକୁ ପୁଣି ବଦଳେଇଦେବ ।

ସ୍ଥାନୀୟ, ଜାତୀୟ ଓ ଆନ୍ତର୍ଜାତିକ ନେଟ୍ ଓ୍ୱାର୍କିଙ୍ଗ୍ କାର୍ଯ୍ୟକ୍ରମ 'ଆଟାକ୍'ର ମୂଳ ଲକ୍ଷ୍ୟ ରହିଛି । ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାକୋଷ, ବିଶ୍ୱ ବାଣିଜ୍ୟ ସଂଗଠନ ଆଦି ଆନ୍ତର୍ଜାତିକ ସଂଗଠନ ଗୁଡ଼ିକର ପ୍ରଭାବକୁ ପ୍ରତିହତ କରିବାକୁ ହେଲେ ଏକ ଆନ୍ତର୍ଜାତିକ ମେଣ୍ଟର ଆବଶ୍ୟକତା ରହିଛି ବୋଲି 'ଆଟାକ୍' ଦୃଢ଼ ଭାବେ କହି ଆସିଛି । ଏଇଥିପାଇଁ ବିଶ୍ୱ ସାମାଜିକ ସଂଗଠନ ହେଉ ଅଥବା ସିଆଟେଲ୍‌ରେ ବିଶ୍ୱ ବାଣିଜ୍ୟ ସଂଗଠନ ବିରୋଧୀ ଆନ୍ଦୋଳନ ହେଉ, 'ଆଟାକ୍' ହଜାର ହଜାର ସ୍ୱେଚ୍ଛାସେବୀ ପଠାଇ ପାରିଛି । ନେଟ୍ ଓ୍ୱାର୍କିଙ୍ଗକୁ ଅସ୍ତ୍ର କରି । ଜଗତୀକରଣ ବିରୁଦ୍ଧରେ ଚାଲିଥିବା ଆନ୍ଦୋଳନକୁ ସରକାର ଓ କ୍ଷମତାଶାଳୀ ଗୋଷ୍ଠୀ ଅଟକାଇ ପାରିନାହାନ୍ତି । ରାଜନୈତିକ ଚିନ୍ତନରେ ଘୋର ପରିବର୍ତ୍ତନ ମଧ ଆସିଛି । ଯାହା ସ୍ଥାନୀୟ ରାଜନୀତି ଥିଲା ତାହା ଜାତୀୟ ସ୍ତରକୁ ସମ୍ପ୍ରସାରିତ ହୋଇଛି । ଯେଉଁ ରାଜନୀତି ଜାତୀୟ ସ୍ତରର ସୀମାବଦ୍ଧ ଥିଲା ତାହା ଆନ୍ତର୍ଜାତିକ କ୍ଷେତ୍ରକୁ ବ୍ୟାପି ଯାଇଛି । ସ୍ଥାନୀୟ ଭାବେ ଉଠିଥିବା ଅଭିଯୋଗ ଆଜି 'ଆଟାକ୍' ଯୋଗୁ ଆନ୍ତର୍ଜାତିକ ଆନ୍ଦୋଳନର ରୂପ ନେଇଛି ।

ଆଜି 'ଆଟାକ୍' ପ୍ରମାଣିତ କରିଛି ଯେ ଜଗତୀକରଣକୁ ବିରୋଧ କରିବାକୁ ହେଲେ କେବଳ ଆନ୍ତର୍ଜାତିକ ବାଣିଜ୍ୟ ବେପାରର କୁପ୍ରଭାବକୁ ବିଚାରକୁ ନେବା ଯଥେଷ୍ଟ ନୁହେଁ । ତୃଣମୂଳ ସ୍ତରରେ ରାଷ୍ଟ୍ର କେଉଁଭଳି ଜନହିତକର କାର୍ଯ୍ୟ କରୁଛି ଓ ରାଷ୍ଟ୍ର ଲୋକଙ୍କ ହିତ ପାଇଁ କେଉଁ ନୀତି ଓ ନିଷ୍ପତ୍ତି ଗ୍ରହଣ କରୁଛି ତାହାକୁ ବିଚାରକୁ ନିଆଯାଇ ଏକ ମଜ୍‌ଭୁତ ସଂଗଠନ ଗଢ଼ା ଯିବା ସମ୍ଭବ । ସାମ୍ପ୍ରତିକ ରାଜକୀୟ ଅର୍ଥନୀତିକୁ ସହଜରେ ବୁଝିବାର ପ୍ରୟାସକୁ ମାଧ୍ୟମ କରି ଏ ମଜ୍‌ଭୁତ ସଂଗଠନ ମୁଣ୍ଡଟେକି ଛିଡ଼ା ହୋଇ ପାରିବ । 'ଆଟାକ୍' ବର୍ତ୍ତମାନ ସାରା ବିଶ୍ୱରେ ନାଗରିକ ସମାଜମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇସାରିଛି । ❑

# ଜଗତୀକରଣ ଓ ଆଫ୍ରିକୀୟ ଆନ୍ଦୋଳନ

## (୧)

୨୦୦୫ ମସିହା ସେପ୍ଟମ୍ବର ମାସ । କେନିଆର ନାଇରୋବି ସହରରେ ପହଞ୍ଚିଲା ବେଳକୁ ସନ୍ଧ୍ୟା । ନାଇରୋବିର ଉପକଣ୍ଠରେ ହୋଟେଲରେ ପହଞ୍ଚିଲାବେଳକୁ ରାତ୍ରି ୧୧ । ସହରର ଏକ ଚିତ୍ର ରାତିଅଭିଯାନରୁ ବିସ୍ତୃତଭାବେ ମିଳିଥିଲା ମୋତେ । ଯେଉଁଆଡ଼େ ଦେଖିବ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ବିରାଟ ଓ ଆଲୋକ ସଜ୍ଜାରେ ଶୋଭିତ ବିଜ୍ଞାପନ । ଜଣେ ଆଶ୍ଚର୍ଯ୍ୟ ହୋଇଯିବ ଯେ ସେ ଦେଶରେ ଯେମିତ କିଛି ନିଜସ୍ୱ ନାହିଁ । କାର, ଟିଭି, ପୋଷାକ, ବ୍ୟାଙ୍କ୍ ମୃଦୁପାନୀୟ, ତୈଳକମ୍ପାନୀ ଆଦିଙ୍କ ବିଜ୍ଞାପନରେ ଭରପୁର ହୋଇଯାଇଛି ଏ ସହରଟି । ମଣିଷମାନଙ୍କ ବେଶଭୂଷା, ଚାଲିଚଳନ ଓ ରଙ୍ଗଢ଼ଙ୍ଗ ସବୁ ପାଶ୍ଚାତ୍ୟ ଦେଶଙ୍କ ଦ୍ୱାରା ପ୍ରଭାବିତ । ରାଜରାସ୍ତା ଓ ସୁଉଚ୍ଚ ଅଟାଳିକା, ପର୍ଯ୍ୟଟକ ଓ ଆଫ୍ରିକାନ୍ ସଫାରୀ ପ୍ରତି ଆକର୍ଷିତ ହୋଇଥିବା ଦେଶ ବିଦେଶର ପୁରୁଷ ଓ ସ୍ତ୍ରୀ ଆଫ୍ରିକା ଏକ ଅନ୍ଧାରୀମୂଳକ ବା 'ଡ୍ରାର୍କ କଣ୍ଟିନେଣ୍ଟ' ବୋଲି ସୂଚନା ଦେଇନାହିଁ । କେନିଆ ଇଂରାଜୀମାନଙ୍କ ଉପନିବେଶ ଭାବେ ଅଧିକୃତ ହେବାପରେ ମଣିଷ ଓ ପ୍ରାକୃତିକ ସମ୍ପଦସବୁ ଯେମିତି ଲୁଣ୍ଠନ କରାଯାଇଛି । ସ୍ୱାଧୀନତା ପରେ ଏବେ ମଧ୍ୟ ଲୁଣ୍ଠନ ଅବାରିତ ରହିଛି । କେନିଆ 'ମାଉ ମାଉ' ବିପ୍ଳବର ଦେଶ, ଜାମୋ କେନିଆଟାଙ୍କ ଦେଶ, ଡ଼ମ୍‌ବୋୟାଙ୍କ ଦେଶ । ବିଶ୍ୱାସ କରିହୁଏ ନାହିଁ ଯେ ଯେଉଁ କେନିଆବାସୀ ନିଜର ସ୍ୱାଧୀନତା ପାଇଁ ବ୍ରିଟିଶ ସାମରିକ ବାହିନୀର ଗୁଳି ଖାଇ ସହିଦ୍ ହୋଇଥିଲେ, ସେମାନେ କିପରି କେତେବର୍ଷ ଭିତରେ ନିଜର ସ୍ୱତନ୍ତ୍ର ଓ ପରିଚୟ ହରାଇ ବସିବେ । କେନିଆର ସ୍ୱାଧୀନତା ସଂଗ୍ରାମର ମହାନ୍ ନେତା ଜାମୋକେନିଆଟା ଲେଖିଛନ୍ତି ବହି 'ଫେସିଙ୍ଗ୍ ମାଉଣ୍ଟ କେନିଆ' ଓ ବର୍ଣ୍ଣନା କରିଛନ୍ତି ନିଜ ଦେଶ ଓ ମହାଦେଶର ମୁକ୍ତି ଓ ସ୍ୱାଧୀନତାର ସ୍ୱପ୍ନ । କେତେବର୍ଷ ଭିତରେ ସବୁକିଛି ଯେମିତି ବଦଳିଯାଇଛି । ଜଗତୀକରଣ ଖାଲି କେନିଆରେ ନୁହେଁ, ସାରା ଆଫ୍ରିକାର ଅଣୁ ପରମାଣୁକୁ ବ୍ୟାପି ଯାଇଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଆଫ୍ରିକାକୁ କରଗତ ଓ କବଳିତ କରିବା ପାଇଁ ଇୟୁରୋପର ସବୁ ଦେଶ- ଇଂଲଣ୍ଡ, ଇଟାଲୀ, ଜର୍ମାନୀ, ବେଲ୍‌ଜିୟମ,

ଫ୍ରାନ୍ସ, ତୁର୍କୀ, ପର୍ତ୍ତୁଗାଲ ବିଭିନ୍ନ ପ୍ରକାର ପଦକ୍ଷେପ ନେଇଥିଲେ । ଆଫ୍ରିକାର କିଛି ଭାଗ ମଧ୍ୟ ବିଶ୍ୱଯୁଦ୍ଧର ରଣକ୍ଷେତ୍ର ହୋଇଥିଲା ଓ ଜର୍ମାନୀ ପରାସ୍ତ ହୋଇଥିଲା ବୋଲି ଏହାର ଦିଗ ପରିବର୍ତ୍ତନ ହୋଇଥିଲା । ସବୁ ଇଉରୋପୀୟ ଦେଶ ବିଭିନ୍ନ ବାଟରେ ଆଫ୍ରିକାକୁ ଦଖଲ କରି ଉପନିବେଶ ସ୍ଥାପନ କରିଥିଲେ । ଆମେରିକା ଓ ସୋଭିଏତ ଋଷ ପ୍ରତ୍ୟକ୍ଷ ଭାବରେ ନହେଲେ ମଧ୍ୟ ପରୋକ୍ଷଭାବରେ ବିଭିନ୍ନ ବାଟରେ ଆଫ୍ରିକାରେ ପ୍ରବେଶ କରିଥିଲେ । ଏବେ ଜଗତୀକରଣରେ ଏସବୁ ଦେଶମାନଙ୍କର ପୁଞ୍ଜିପତି କର୍ପୋରେଟ୍‌ମାନେ ନୂତନ ଉପନିବେଶବାଦ ସୃଷ୍ଟି କରିବାରେ ସମ୍ଭବ ହୋଇଛି । ଏ ପୁଞ୍ଜିପତିମାନଙ୍କ ଭିତରେ ମଧ୍ୟ ଭାରତୀୟ ବଂଶୋଦ୍ଭବ ବଣିକମାନେ ମଧ୍ୟ ଅଛନ୍ତି । ଜଗତୀକରଣର ବିପରୀତ ପ୍ରଭାବ ଓ ପ୍ରତିକ୍ରିୟା ଆଫ୍ରିକାର ବିଭିନ୍ନ ଦେଶମାନଙ୍କରେ ଯେଉଁଭଳି ପଡ଼ିଛି ଅନ୍ୟ ମହାଦେଶରେ ତାହା ସମ୍ଭବତଃ ପଡ଼ିନାହିଁ । ଗତ ୫୦ ବର୍ଷଧରି ଆଫ୍ରିକାରେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାକୋଷ ଭଳି ଆନ୍ତର୍ଜାତିକ ଅର୍ଥନୈତିକ ଅନୁଷ୍ଠାନମାନେ ଯେଉଁଭଳି ବିକାଶନୀତି ଅନୁସରଣ କରିଛନ୍ତି ଓ ଯେଉଁ ଢ଼ଙ୍ଗରେ ପ୍ରାକୃତିକ ତଥା ମାନବ ସମ୍ବଳକୁ ଲୁଣ୍ଠନ କରିବାକୁ ଅପଚେଷ୍ଟା ଜାରି ରଖିଛନ୍ତି, ତାହା ଆଜି ସର୍ବତ୍ର ଆଲୋଚିତ ହେଉଛି ଏବଂ ବିଶ୍ୱବ୍ୟାଙ୍କ ଏବଂ ଆନ୍ତର୍ଜାତିକ ମୁଦ୍ରାକୋଷକୁ ବିଭିନ୍ନବାଟରେ ନିନ୍ଦା କରାଯାଇଛି । ଆଫ୍ରିକାର ସବୁଦେଶରେ କ୍ଷୁଧା, ବେରୋଜଗାରୀ, ଏଡ୍‌ସବ୍ୟାଧି, ଗୃହଯୁଦ୍ଧ, ଦେଶାନ୍ତର ଓ ପଳାୟନ, ଏତେମାତ୍ରାରେ ବଢ଼ିଯାଇଛି ଯେ ବର୍ତ୍ତମାନ ଲକ୍ଷ ଲକ୍ଷ ଲୋକ ମରିବାରେ ଲାଗିଛନ୍ତି । ସବ୍-ସାହାରା, ଇଥିଓପିଆ, ସୁଦାନ୍, ସୋମାଲିଆ ଆଦି ଦେଶରେ ଖାଦ୍ୟାଭାବର ଚିତ୍ର ଏତେ ଭୟାନକ ହୋଇଛି ଯେ ଏ ପୃଥିବୀରେ କେଉଁଭଳି ବିକାଶ ଚାଲିଛି ତାହାର ଏକ ଚିତ୍ର ଆଙ୍କି ହେଉଛି ।

ଆଫ୍ରିକାରେ ଜଗତୀକରଣକୁ ସୁହାଇଲା ଭଳି ସବୁ ପ୍ରାକୃତିକ ସମ୍ବଳ ଭରି ରହିଛି ବୋଲି ଜାଣି ଅନେକଙ୍କ ପାଟିରୁ ଲାଳ ବୋହୁଛି । ସେଗୁଡ଼ିକ ହେଲା ଖଣିଜ ଦ୍ରବ୍ୟ, ତେଲ ଓ ପ୍ରାକୃତିକ ଗ୍ୟାସ୍, ଜଙ୍ଗଲ ଓ ବନ୍ୟଜନ୍ତୁ ସମ୍ପଦ । ଏହାଛଡ଼ା ସେଠାକାର ଗାଈଗୋରୁ ଓ ଗୃହପାଳିତ ଜୀବମାନେ ଜଗତୀକରଣର ଅଂଶବିଶେଷ ମଧ୍ୟ । ବିଭିନ୍ନ ଦେଶର ପୁଞ୍ଜିପତି ଓ କର୍ପୋରେଟ୍‌ମାନଙ୍କ ଛଡ଼ା ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାକୋଷ ଆଫ୍ରିକାର ବିକାଶ ପଥ ପ୍ରକୃତରେ କେଉଁଆଡ଼କୁ ପ୍ରସାରିତ ହେବ, ତାହା ନିଷ୍ପତ୍ତି କରୁଛନ୍ତି । ବ୍ୟବସାୟ ଓ ବେପାର ପାଇଁ ଆଫ୍ରିକାର ସବୁଦ୍ୱାର ଉନ୍ମୁକ୍ତ ହୋଇ ପଡ଼ିଛି । ଆମାଜନ୍ ନଦୀର ଅବବାହିକାରେ ଥିବା ରେନ୍ ଫରେଷ୍ଟ (ବୃଷ୍ଟିଜ ବନ)ର ସଂରକ୍ଷଣ

ପାଇଁ କେତେ କ'ଣ ନିୟମ କରାଯାଉଥିବା ବେଳେ ଆଫ୍ରିକାର ଜଙ୍ଗଲର ସୁରକ୍ଷା ପାଇଁ ଯେମିତି ସମସ୍ତେ ନୀରବ । ଏସୀୟ ପୁଞ୍ଜିପତିମାନେ ମଧ୍ୟଆଫ୍ରିକାର ଘଞ୍ଚ ଜଙ୍ଗଲକୁ କାଟି ସଫା କରୁଥିବାବେଳେ, ଇୟୁରୋପର କର୍ପୋରେଟମାନେ ଇୟୁରାନିଅମ୍ ଖଣି ଖୋଳିବାରେ ବ୍ୟସ୍ତ । ଆମେରିକା ଏବଂ ଅଷ୍ଟ୍ରେଲିଆର ମାଇନିଂ କମ୍ପାନୀମାନେ ପେଟ୍ରୋଲିୟମ ଦ୍ରବ୍ୟ ଲୁଣ୍ଠନ କରିବା ପାଇଁ ଆଫ୍ରିକାର ସବୁଅଞ୍ଚଳରେ ଆତଯାତ ହେଉଛନ୍ତି । ସମସ୍ତ ଲୁଣ୍ଠନ ପ୍ରକ୍ରିୟା ପଛରେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାକୋଷର ପ୍ରତ୍ୟକ୍ଷ ଓ ପରୋକ୍ଷ ଭୂମିକା ରହିଛି । ଆଫ୍ରିକାର ଦୁଃଖ ଏ ଭିତରେ ଅନେକ ଗୁଣ ବଢ଼ିଯାଇଛି । ଜଗତୀକରଣ ପ୍ରକ୍ରିୟାର ପ୍ରତିକୂଳ ପ୍ରଭାବରେ ଏକଥା ସତଯେ ଲାଟିନ୍ ଆମେରିକା ଭଳି ଏ ମହାଦେଶରେ ବିଦ୍ରୋହ ଓ ପ୍ରତିରୋଧ ସେତେଟା ବଳିଷ୍ଠ ନୁହେଁ । ଆଫ୍ରିକାର ନାଗରିକ ସମାଜ ମଧ୍ୟ ଏସିଆ, ଇୟୁରୋପ ଓ ଆମେରିକାର ନାଗରିକ ସମାଜ ଭଳି ଦୃଢ଼ ଓ ଦକ୍ଷ ନୁହେଁ । ବିଶ୍ୱ ସାମାଜିକ ଆନ୍ଦୋଳନରେ ଆଫ୍ରିକାରୁ ପ୍ରତିନିଧିତ୍ୱ କରୁଥିବା ଲୋକମାନଙ୍କ ସଂଖ୍ୟା ସାମାନ୍ୟ । କିନ୍ତୁ ଯେଉଁ କେତେଜଣ ଜଗତୀକରଣ ବିରୁଦ୍ଧରେ ପ୍ରତିରୋଧର ଦୀପ ଉଜ୍ଜ୍ୱଳିତ କରିଛନ୍ତି ସେମାନଙ୍କ ସହ ପାଠକମାନଙ୍କୁ ପରିଚିତ କରାଇବା ମୋର କର୍ତ୍ତବ୍ୟ ।

ପ୍ରଥମେ ଆମେ ଶ୍ରୀମତି ନୋକି ନେହ୍ରୁଙ୍କ କଥା ଆଲୋଚନା କରିବା । କେନିଆର ଜନ୍ମନେଇଥିବା ଏ ଝିଅଟି ଆଜି ଜଗତୀକରଣ ବିରୁଦ୍ଧରେ ଲଢ଼ୁଥିବା ଆନ୍ଦୋଳନର ଏକ ମୁଖ୍ୟ ନେତ୍ରୀ । ଯୁକ୍ତରାଷ୍ଟ୍ର ଆମେରିକାରେ ଯେଉଁଠି ବ୍ରେଟନ୍ ଉଡ୍ ସଂସ୍ଥା (ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି)ମାନଙ୍କର ସଦର ମହକୁମା, ସେଇଠି ମୁଣ୍ଡ ଟେକିଛି ଏକ ବଳିଷ୍ଠ ସଂଗଠନ ଯାହାର ନାମ ହେଉଛି '୫୦ବର୍ଷ ଯଥେଷ୍ଟ' । ନୋକି ନେହ୍ରୁ ଆଫ୍ରିକାରେ ନିଜର ମାଆଙ୍କ ସହ ଜନଆନ୍ଦୋଳନରେ ଭାଗ ନେଇଥିଲେ ଓ ଆଫ୍ରିକାର ଦୟନୀୟ ପରିସ୍ଥିତି ସହ ପରିଚିତ ଥିଲେ । ପରବର୍ତ୍ତୀ ବର୍ଷମାନଙ୍କରେ ଆମେରିକାରେ ଶିକ୍ଷା ଲାଭ କରିଲାବେଳେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରା କୋଷ ଆଦିଙ୍କର ଭୂମିକା ବେଶ୍ ବୁଝିପାରିଥିଲେ । ଝିଅଟିଏ ହୋଇ ମଧ୍ୟ ସେ '୫୦ବର୍ଷ ଯଥେଷ୍ଟ' ସଂଗଠନରେ ସକ୍ରିୟ ଭୂମିକା ନେଇଥିଲେ । ଏ ସଂଗଠନର ମୂଳଦାବୀ ଥିଲା ୫୦ବର୍ଷଧରି ଯେଉଁ ଋଣଭାର ବିଭିନ୍ନ ଦେଶ ଉପରେ ପଡ଼ିଛି ତାହାକୁ ରଦ୍ଦ କରି ସାଧାରଣ ଲୋକଙ୍କ ଅବସ୍ଥାରେ ଉନ୍ନତି ହେଉ । ଆଉ ଏକ ଦାବୀ ଥିଲା ଯେ ଯେତେ ନୀତି ଏ ସଂସ୍ଥା ଗତ ୨୦ବର୍ଷରେ ଆଫ୍ରିକୀୟ ଦେଶମାନଙ୍କ ଉପରେ ଲଦି ଦେଇଛି

ତାହାର ସମୀକ୍ଷା କରାଯାଉ । ଯଦି ଏତେ ଋଣ କରିବା ସତ୍ତ୍ୱେ କୌଣସି ଗୋଟିଏ ଦେଶର ସାଧାରଣ ମଣିଷଙ୍କ ଭାଗ୍ୟ ବଦଳିଲା ନାହିଁ, ସାମାଜିକ, ଆର୍ଥିକ ଓ ପାରିବେଶିକ ସ୍ଥିତିରେ କୌଣସି ପରିବର୍ତ୍ତନ ହେଲାନାହିଁ, ତାହାହେଲେ ସେ ଋଣର କି ଆବଶ୍ୟକତା ଅଛି ? ଯଦି ସାଧାରଣ ମଣିଷଙ୍କ ସମ୍ପତି ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ପାଣ୍ଠିହେତୁ ପୁଞ୍ଜିପତିଙ୍କ ହାତକୁ ଚାଲିଯାଉଛି, ସେ ଆନ୍ତର୍ଜାତିକ ଋଣଦାତାଙ୍କୁ ପ୍ରଶୟ ଆଉ ଦେଇ ହେବକି ?

ଶ୍ରୀମତୀ ନୋକି ନେହୁଙ୍କ ସଂଗଠନର ଆଠୋଟି ମୁଖ୍ୟ ଦାବୀ ଥିଲା ଯାହା ପାଠକମାନେ ଧ୍ୟାନର ସହ ପଢ଼ିବେ ବୋଲି ମୁଁ ଆଶା କରୁଛି । ସେଗୁଡ଼ିକର ତାଲିକା ନିମ୍ନରେ ଦିଆଗଲା-

(୧) ବିନା ସର୍ତ୍ତରେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାକୋଷଙ୍କ ସବୁ ଋଣକୁ ବାତିଲ୍ କରାଯାଉ । (୨) ଯେତେ ଢ଼ାଞ୍ଚାଗତ ସମାଯୋଜନ କାର୍ଯ୍ୟକ୍ରମ ଚାଲିଛି ତାହା ବନ୍ଦ କରାଯାଉ । (୩) ଢ଼ାଞ୍ଚାଗତ ସମାଯୋଜନ କାର୍ଯ୍ୟକ୍ରମ ଦ୍ୱାରା ଯେତେ କ୍ଷତି ହୋଇଛି ସେଥିପାଇଁ କ୍ଷତି ପୂରଣ ମିଳୁ । (୪) ଘରୋଇ ବ୍ୟବସାୟ ପ୍ରତିଷ୍ଠାନ ଓ କର୍ପୋରେଟ୍‌ମାନଙ୍କୁ ସୁହାଇଲାଭଳି ବିଶ୍ୱବ୍ୟାଙ୍କ ଯେଉଁଭଳି ସାହାଯ୍ୟ ଦେଉଛି ତାହା ବନ୍ଦ ହେଉ । (୫) ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିରେ ଯେଉଁ ବ୍ୟକ୍ତିବିଶେଷମାନେ ଦୁର୍ନୀତିଗ୍ରସ୍ତ, ସେମାନଙ୍କ ବିରୋଧରେ କେସ୍ କରାଯାଉ । (୬) ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ସମସ୍ତ ଗୋପନୀୟ ଦଲାଲ୍ ସର୍ବସାଧାରଣଙ୍କ ଗୋଚରାର୍ଥେ ପ୍ରକାଶ କରାଯାଉ । (୭) ବିଶ୍ୱବ୍ୟାଙ୍କ ଦ୍ୱାରା ଯେଉଁ ପାରିବେଶିକ ଓ ସାମାଜିକ ଦୁରବସ୍ଥା ସୃଷ୍ଟିହୋଇଛି ତାହା ପାଇଁ କ୍ଷତିପୂରଣ ଦିଆଯାଉ । (୮) ଭବିଷ୍ୟତରେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାକୋଷକୁ ଗଣତାନ୍ତ୍ରିକ ଓ ସ୍ୱଚ୍ଛ ଢ଼ଙ୍ଗରେ ପରିଚାଳନା କରାଯାଉ ।

ଶ୍ରୀମତୀ ନୋକି ନେହୁ ଆଫ୍ରିକାର ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ଭୂମିକା ବିଷୟରେ କହିଛନ୍ତି ଯେ ୧୯୮୦ ମସିହାରୁ ଏକ ଭୟାନକ ପରିସ୍ଥିତି ସୃଷ୍ଟି ହୋଇଛି । ଆମେରିକାର ପ୍ରରୋଚନାରେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଆଫ୍ରିକାର ବିଭିନ୍ନ ଦେଶର ଅର୍ଥନୀତିରେ ହସ୍ତକ୍ଷେପ କରି କେଉଁଠି ଖର୍ଚ୍ଚକାଟ କରିଛନ୍ତି ତ କେଉଁଠି ଖର୍ଚ୍ଚ ବଢ଼ାଇଛନ୍ତି । ଏହାଫଳରେ ମୌଳିକ ଶିକ୍ଷା, ମୌଳିକ ସ୍ୱାସ୍ଥ୍ୟ ସେବା, କୃଷି ଆଦି କ୍ଷେତ୍ରରେ ଯଥେଷ୍ଟ ଅଧୋଗତି ହୋଇଛି । କୋଟି କୋଟି ଲୋକ ଦାରିଦ୍ର୍ୟର ସୀମାରେଖା ତଳକୁ ଖସୁଛନ୍ତି ଏବଂ ଅନ୍ୟପକ୍ଷରେ ଏଡ୍‌ସ ଆଦି ବେମାରିରେ ଆକ୍ରାନ୍ତ ହୋଇ ଲକ୍ଷ

ଲକ୍ଷ ଲୋକେ ପ୍ରତିବର୍ଷ ମରୁଛନ୍ତି । କ୍ୟୁବା ଭଳି ଦେଶ ଯିଏକି ବିଶ୍ୱବ୍ୟାଙ୍କ ଅଥବା ଆନ୍ତର୍ଜାତିକ ମୁଦ୍ରାକୋଷରୁ ସାହାଯ୍ୟ ନେଉନାହିଁ, ସେ ଦେଶ ଯେକୌଣସି ଆଫ୍ରିକୀୟ ଦେଶଠାରୁ ସବୁଦିଗରେ ଆଗରେ ଅଛି । ଅଥଚ ଆଫ୍ରିକାର ମଣିଷ ମୃତ୍ୟୁ ସହ ଲଢୁଛି । ଜିମ୍ବାୱେ ଦେଶରେ କଫିନ୍ ତିଆରି ଶିଳ୍ପ ଏତେ ମାତ୍ରାରେ ବଢ଼ିଛି ଯେ ବଢ଼େଇମାନଙ୍କୁ ଫୁରସତ୍ ମିଳୁନାହିଁ । ସମସ୍ତେ ଜାଣିଥିବେ ଏଡ୍ସ ଯେତେବେଳେ ମହାମାରୀ ଭଳି ବ୍ୟାପିବାରେ ଲାଗିଲା, ସେତେବେଳକୁ ଆଫ୍ରିକାର ସମାଜରେ ଥିବା ଗଣସ୍ୱାସ୍ଥ୍ୟ ବ୍ୟବସ୍ଥା ପୁରା ଉଜୁଡି ଯାଇଥିଲା । ଢ଼ାଞ୍ଚାଗତ ବ୍ୟବସ୍ଥାପନ ହେତୁ ଅନେକ ଦେଶର ସରକାର ସ୍ୱାସ୍ଥ୍ୟ ସେବାରୁ ଓହରି ଯାଇ ଘରୋଇକରଣ ପ୍ରକ୍ରିୟା ଆଦରି ନେଇଥିଲେ । ସ୍ୱାସ୍ଥ୍ୟସେବା ସମୂଳେ ଧ୍ୱଂସ ପାଇଯାଇଥିଲା ଏଭିତରେ । ଲୋକେ ଏଡ୍ସ, ମ୍ୟାଲେରିଆ ଆଦିରେ ମରିବେ ନାହିଁତ ଆଉ କ'ଣ ?

ଶ୍ରୀମତୀ ନୋକିନେହୁ ଜଣେ ସଂଗ୍ରାମୀ ମହିଳା । ସାରା ବିଶ୍ୱରେ ଆଫ୍ରିକାର ଦୟନୀୟ ଓ ଦୁର୍ବିସହ ପରିସ୍ଥିତି କଥା କହିବାରେ ସେ ଲାଗିଛନ୍ତି । ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି, ବିଶ୍ୱବାଣିଜ୍ୟ ସଂଗଠନ ଆଦିଙ୍କର ଅସଲରୂପ ପ୍ରକାଶ କରିବାରେ ସେ ପଛଘୁଞ୍ଚା ଦେଇନାହାନ୍ତି । ଦକ୍ଷିଣ ଆଫ୍ରିକା ଓ ଲିବିୟାକୁ ଛାଡିଦେଲେ ଅନ୍ୟ ସବୁଦେଶରେ ଜଗତୀକରଣର କୁପ୍ରଭାବ ସ୍ପଷ୍ଟ ପରିଲକ୍ଷିତ ହେଉଛି । ମାଲି, ଘାନା, ବୋତ୍ସୱାନା, ସେନେଗାଲ ଏବଂ କେନିଆ ଆଦି ଦେଶରେ ଢାଞ୍ଚାଗତ ବ୍ୟବସ୍ଥାପନ ଏତେ ବ୍ୟାପକ ହୋଇଛି ଯେ ଶିକ୍ଷା, ସ୍ୱାସ୍ଥ୍ୟ ଓ ଖାଦ୍ୟ ନିରାପତ୍ତା ପୂରାପୂରି ବିପନ୍ନ ହୋଇଛି । ବିଚାର ପାଇଁ ସୋମାଲିଆକୁ ନିଆଯାଉ, କଙ୍ଗୋକୁ ନିଆଯାଉ । ଆଙ୍ଗୋଲା, ଆଇଭରି କୋଷ୍ଟ, ସିଏରାଲିଓନ୍ ଏବଂ ଲାଇବେରିଆ କଥା ମଧ୍ୟ ଆଲୋଚନା କରାଯାଉ । ଏସବୁ ଦେଶରେ ଖଣିଜସମ୍ପଦ ଭରି ରହିଛି । କିନ୍ତୁ ସ୍ଥାନୀୟ ଲୋକେ ଲାଭ ପାଇବେ କି ? ଚାଦ୍-କାମେରୁନ୍‌ରେ ବିଶ୍ୱବ୍ୟାଙ୍କ ସହାୟତାରେ ପେଟ୍ରୋଲିଅମ୍ ଗ୍ୟାସ ପାଇଁ ଗ୍ୟାସଲାଇନ୍ ବିଛାଯାଇଛି ଓ ସ୍ଥାନୀୟ ଲୋକଙ୍କ ଜଳ, ଜମି, ଜଙ୍ଗଲ ଓ ପରିବେଶ ନଷ୍ଟ ହେବାରେ ଲାଗିଛି । ପଶ୍ଚିମ ପୃଥିବୀ ବିଶେଷକରି ଆମେରିକା ଆଲୋକିତ ହେଉଥିଲା ବେଳେ ତମସାଚ୍ଛନ୍ନ ମହାଦେଶ ଆହୁରି ଅନ୍ଧକାରର ଗଭୀରତା ଭିତରେ ପଡ଼ିଯାଇଛି ।

ଆଫ୍ରିକାର ବିଭିନ୍ନ ଦେଶରେ ଯେଉଁଭଳି ଶାସନ ଚାଲିଛି ତାହା ପଛରେ ପୁଞ୍ଜିପତି ଦେଶ ଓ କର୍ପୋରେଟ୍‌ମାନଙ୍କ ହାତ ରହିଛି । କେଉଁଠି ଗୃହଯୁଦ୍ଧ ଲାଗିଛିତ

କେଉଁଠି ଏଡ୍‌ସ ବେମାରୀ ବିରୋଧରେ ଲଢ଼ିବା ଛଡ଼ା ଅନ୍ୟ କିଛିବାଟ ନାହିଁ । ଆଫ୍ରିକାରେ ପ୍ରଥମେ କ୍ରୀତଦାସତ୍ୱ, ତା'ପରେ ଉପନିବେଶବାଦ, ତା'ପରେ ଢ଼ାଞ୍ଚାଗତ ବ୍ୟବସ୍ଥାପନ ଏବଂ ବର୍ତ୍ତମାନ ଏଡ୍‌ସ ମହାମାରୀ– ଏସବୁ ସାଧାରଣ ମଣିଷକୁ ଘୋର ଅସହାୟତାକୁ ଠେଲି ଦେଇଛି । ଆଫ୍ରିକା ବଞ୍ଚିବ କି ? ଏବେ ବିକଶିତ ଦେଶମାନେ ଆଫ୍ରିକା ବଞ୍ଚିରହୁ ବୋଲି କେତେ ଡ୍ରାମା କରୁଛନ୍ତି । କିନ୍ତୁ ନୋକି ନେହୁଙ୍କ ଆନ୍ଦୋଳନ ଜଗତୀକରଣର ଗୋପନରହସ୍ୟକୁ ଖାଲି ଆଫ୍ରିକା ନୁହେଁ, ସାରା ପୃଥିବୀରେ ଲୋକଲୋଚନକୁ ଆଣି ପାରିଛି ।

(୨)

ମହାତ୍ମାଗାନ୍ଧୀଙ୍କ ଦକ୍ଷିଣ ଆଫ୍ରିକାର ସତ୍ୟ ଓ ଅହିଂସା ଉପରେ ବଳିଷ୍ଠ ଓ ଗଭୀର ପରୀକ୍ଷା ଓ ତାହାର ଫଳାଫଳକୁ ମୁଁ କେତେଥର ପଢ଼ିସାରିଥିବି । ମୋ ପାଇଁ ହିରୋ ଭାବେ ପରିଗଣିତ ହେଉଥିବା ନେଲ୍‌ସନ୍ ମାଣ୍ଡେଲାଙ୍କ ଆତ୍ମଜୀବନୀ 'ଏ ଲଙ୍ଗ ୱାକ୍ ଟୁ ଫ୍ରିଡ଼ମ' କଥା ମୁଁ କେତେ ବନ୍ଧୁଙ୍କୁ କହିଥିବି । ଦକ୍ଷିଣ ଆଫ୍ରିକାର ଇତିହାସ ଉପନିବେଶବାଦ ଓ କଳାମାନଙ୍କ ଉପରେ ଗୋରାମାନଙ୍କ ନୃଶଂସ ଓ ଅମାନୁଷିକ ଅତ୍ୟାଚାରର ଇତିହାସ । ଦକ୍ଷିଣ ଆଫ୍ରିକାର ସାହିତ୍ୟ ଆଲାନ୍ ପାଟନ୍‌ଙ୍କ କ୍ଲାସିକ ବହି 'କ୍ରାଇ ଦ ବିଲଭେଡ୍ କଣ୍ଟ୍ରି' ଉପରେ ଯେତିକି ପର୍ଯ୍ୟବେସିତ, କୋଏଟ୍‌ଜିଙ୍କ 'ଦି ଡ଼ିସ୍‌ଗ୍ରେସ୍' ବହି ଉପରେ ସେତିକି ରୂପାୟିତ । ଗୋରାମାନଙ୍କ ଶାସନ, ଶୋଷଣ ଓ ଆଧିପତ୍ୟ ଶେଷହେଲା ଯାହାକୁ ଆପାର୍ଥେଇଡ୍ ବୋଲି ସାଧାରଣ ଭାବେ କୁହାଯାଏ । ୧୯୯୪ ମସିହାରେ ମାଣ୍ଡେଲା ନିର୍ବାଚନ ଜିଣି ଆଫ୍ରିକାନ୍ ନ୍ୟାସ୍‌ନାଲ୍ କଂଗ୍ରେସକୁ କ୍ଷମତାକୁ ଆଣିଲେ ଓ ସଂଖ୍ୟାଗରିଷ୍ଠ କଳାମାନଙ୍କର ଶାସନ ଓ ଗଣତନ୍ତ୍ରର ପର୍ଯ୍ୟାୟ ଆରମ୍ଭ ହୋଇଥିଲା ଏବଂ ସାରା ପୃଥିବୀରେ ଏହା ବର୍ଣ୍ଣ ବୈଷମ୍ୟତାର ଏକ ଘୃଣ୍ୟ ପର୍ଯ୍ୟାୟ ଶେଷ ହେଲା ବୋଲି ବିଜୟ ଉତ୍ସବ ପାଳିତ ହୋଇଥିଲା । ସାରା ପୃଥିବୀରେ ବିଶେଷକରି ଆଫ୍ରିକା ମହାଦେଶରେ ମଧ୍ୟ ଏକ ନୂତନ ବିକାଶ ଓ ପରିବର୍ତ୍ତନର ପରିକଳ୍ପନା ଅନେକଙ୍କ ମନରେ ଆଶାର ଆଲୋକ ସୃଷ୍ଟି କରିଥିଲା । କଳାମାନେ ଯେଉଁ ଭଳି ଦୟନୀୟ ପରିସ୍ଥିତିରେ ଥିଲେ ଓ ଗୋରାମାନଙ୍କର ଔଦ୍ଧତ୍ୟ ଓ ଅମାନବିକତାର ଶୀକାର ବର୍ଷ ବର୍ଷଧରି ହୋଇଥିଲେ, ସେମାନେ କ୍ଷମତାକୁ ଆସି ନିଜର ପରିସ୍ଥିତିକୁ ଯେ

ବଦଳେଇବେ, ସେ କଥା ଆମ ସମସ୍ତଙ୍କ ଭିତରେ ଆଶା ସଂଚାର କରିଥିଲା । ମାଣ୍ଡେଲାଙ୍କ ବ୍ୟକ୍ତିତ୍ୱ, ତ୍ୟାଗ, ଅହିଂସ ବିଚାରଧାରା ଓ ସାରା ଆଫ୍ରିକା ପାଇଁ ସ୍ୱପ୍ନସବୁ କେତେ କ'ଣ ସୁଯୋଗ ସୃଷ୍ଟି କରିବ ବୋଲି ବିଶ୍ୱାସ ଆସିଥିଲା । ମୁକ୍ତି ଓ ସ୍ୱାଧୀନତା, ଆର୍ଥିକ ସ୍ୱଚ୍ଛଳତା ଓ ସମତା, ଏକତା ଓ ନେତୃତ୍ୱ ଭୁଶୁଡ଼ି ପଡ଼ୁଥିବା ଆଫ୍ରିକାରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିବାର ସଂକେତ ମିଳିଥିଲା ।

କିନ୍ତୁ ଜଗତୀକରଣ ଓ ଘରୋଇକରଣ ପ୍ରକ୍ରିୟାରେ ଏବେ ଦକ୍ଷିଣ ଆଫ୍ରିକାରେ କେତେ ସବୁ ଅଘଟଣ ଘଟି ଯାଉଛି ଓ ବିକାଶଧାରା ବିପରୀତ ଦିଗରେ ବୋହିବାକୁ ଲାଗିଛି । ଜଣେ ଜାଣି ଆଶ୍ଚର୍ଯ୍ୟ ହେବ ଯେ ମାଣ୍ଡେଲା ଶାସନ ଗାଦିକୁ ଆସିଲାପରେ ଶତକଡ଼ା ୧୯ଭାଗ ଲୋକ ବେଶୀ ଗରିବ ହୋଇଛନ୍ତି ଓ ଶତକଡ଼ା ୧୫ଭାଗ ଗୋରାଲୋକ ଅଧିକ ଧନୀ ହୋଇଛନ୍ତି । ବେରୋଜଗାରୀ ବର୍ତ୍ତମାନ ଶତକଡ଼ା ୪୩ ଓ ଯୁବଗୋଷ୍ଠୀଙ୍କ ଭିତରେ ଗ୍ରାମାଞ୍ଚଳରେ ବେକାରୀ ଶତକଡ଼ା ୮୦ । ଦଶ ଲକ୍ଷ ଲୋକ ଦକ୍ଷିଣ ଆଫ୍ରିକାରେ ଚାକିରି ହରାଇଛନ୍ତି । ଅନ୍ୟପକ୍ଷରେ ପାଣି, ବିଜୁଳି ଓ ଅନ୍ୟ ନାଗରିକ ସୁବିଧାର ଘୋର ଅଭାବ ଦେଖା ଦେଇଛି । ଘରୋଇକରଣ ହେତୁ ଏସବୁର ଦର ମଧ୍ୟ ଆକାଶ ଛୁଆଁ ହୋଇଛି ଯାହାକୁ ସାଧାରଣ ଦକ୍ଷିଣ ଆଫ୍ରିକାବାସୀ ଦେବାକୁ ସମର୍ଥ ହେଉନାହାନ୍ତି । ଘରୋଇକରଣର ଯେଉଁ ଢେଉ ସୃଷ୍ଟି ହୋଇଛି ଜଗତୀକରଣ ପ୍ରକ୍ରିୟାରେ, ତାହା ଦକ୍ଷିଣ ଆଫ୍ରିକାର ପ୍ରତି କୋଣ ଅନୁକୋଣକୁ ପ୍ରସାରିତ ହୋଇଛି । ନେଲ୍‌ସନ୍ ମାଣ୍ଡେଲା ଯଦିଓ ଭୀଷ୍ମ ପିତାମହ ଭଳି କର୍ତ୍ତବ୍ୟ କରିଆସୁଛନ୍ତି ଓ ତାଙ୍କର ସରକାର ଓ ପାର୍ଟି ସମର୍ଥନରେ ସେ ଖୁବ୍ ଓକିଲାତି କରୁଛନ୍ତି, ତଥାପି ଘରୋଇକରଣ ବିରୁଦ୍ଧରେ ଦକ୍ଷିଣ ଆଫ୍ରିକାରେ ଏକ ମଜଭୁତ୍ ଆନ୍ଦୋଳନ ଦାନା ବାନ୍ଧିଛି । ଏଇ ଆନ୍ଦୋଳନର ଦାୟିତ୍ୱ ନେଇଛନ୍ତି ଟ୍ରେଭର ନ୍ୱାନେ । ଏ ଆନ୍ଦୋଳନର ନାମ ହେଉଛି ଆଣ୍ଟି ପ୍ରାଇଭେଟାଇଜେସନ୍ ଫୋରମ (ଏ.ପି.ଏମ୍) ବା ଘରୋଇକରଣ ବିରୋଧୀ ମଞ୍ଚ । ଏହା ଅନେକ ଦଳର ଏକ ସମାବେଶ । ଏଥିରେ ସଦସ୍ୟ ଅଛନ୍ତି ମ୍ୟୁନିସିପାଲିଟିର କର୍ମୀ, ଶିକ୍ଷାକର୍ମୀ, ସ୍ୱେଚ୍ଛାସେବୀ ସଂଗଠନର କର୍ମକର୍ତ୍ତା, ଛାତ୍ର ଓ ଶ୍ରମିକ । ପ୍ରଥମେ ଏମାନେ ଘରୋଇକରଣ ଉପରେ ଚାଲିଥିବା ଏକ ଆନ୍ତର୍ଜାତିୟ ସମ୍ମିଳନୀକୁ ବିରୋଧ କରିଥିଲେ । ଆଫ୍ରିକାନ୍ ନ୍ୟାସନାଲ୍ କଂଗ୍ରେସର (ଏ.ଏନ୍.ସି) କଡ଼ା ବିରୋଧ ସତ୍ତ୍ୱେ ଏ.ପି.ଏମ୍‌ଙ୍କ ସଫଳ ଆନ୍ଦୋଳନ କରାଇ ପାରିଥିଲା ।

ଟ୍ରେଭର ନ୍ୱାନେଙ୍କୁ ସାରା ପୃଥିବୀ ଜାଣିଛି ଓ ତାଙ୍କର ସଂଘର୍ଷ ଓ ସାହସିକତା ପାଇଁ ତାଙ୍କୁ ପ୍ରଶଂସା କରିଛି । ୧୯୬୦ ମସିହାର ଡ଼ରବାନ୍‌ଠାରେ ଜନ୍ମଗ୍ରହଣ କରିଥିବା ଏ ସଂଗ୍ରାମୀଙ୍କ ଜୀବନ ଉତ୍‌ଥାନ ପତନ ଦେଇ ଗତିକରିଛି । ବାପା ଓ ମାଆ ଉଭୟ ମେଡ଼ିକାଲ୍ ନର୍ସ । ବାପା ଆଫ୍ରିକାନ୍ ନ୍ୟାସ୍‌ନାଲ୍ କଂଗ୍ରେସର ସମର୍ଥକ ଓ ସେଥିପାଇଁ ଦକ୍ଷିଣ ଆଫ୍ରିକାର ବର୍ଣ୍ଣ ବୈଷମ୍ୟବାଦୀ ସରକାରଙ୍କ ତୀକ୍ଷ୍ଣ ଦୃଷ୍ଟିର ଶିକାର ମଧ୍ୟ । କିଛିଦିନ ଟ୍ରେଭର ନ୍ୱାନେଙ୍କ ବାପା ଟାଞ୍ଜାନିଆର ଡ଼ାର ଏସ୍ ସଲାମ୍‌କୁ ସମ୍ଭବତଃ ପଳାୟନ କରିଥିଲେ । ଦକ୍ଷିଣ ଆଫ୍ରିକାକୁ ଫେରି ଆସିଲାପରେ ସେ ଗୋଇନ୍ଦା ପୁଲିସର କଡ଼ା ନଜରରେ ଥିଲେ । ବାପାଙ୍କ ଦ୍ୱାରା ପ୍ରଭାବିତ ହୋଇ ଟ୍ରେଭର ଦକ୍ଷିଣ ଆଫ୍ରିକାର ରାଜନୈତିକ ସ୍ଥିତିକୁ ବୁଝିବାକୁ ଚେଷ୍ଟା କରିଥିଲେ । ଡ଼ରବାନ୍ ପାଖ ଏକ କ୍ୟାଥଲିକ ସ୍କୁଲରେ ପଢୁଥିଲାବେଳେ ୧୯୭୬ ମସିହା ଜୁନ୍ ମାସରେ ସେୱେଟୋ ପ୍ରଦେଶରେ ଯେଉଁ ଅମାନୁଷିକ ଗଣହତ୍ୟା ହୋଇଥିଲା ତାହା ବିରୁଦ୍ଧରେ ତାଙ୍କ ସ୍କୁଲରେ ଯେଉଁ ସ୍ୱତସ୍ଫୂର୍ତ୍ତ ଆନ୍ଦୋଳନ ହୋଇଥିଲା ସେଥିରେ ସେ ସକ୍ରିୟ ଭାଗ ନେଇଥିଲେ । ସେଥିପାଇଁ ମଧ୍ୟ ସେ ସ୍କୁଲରୁ ବହିଷ୍କୃତ ହୋଇଥିଲେ ଏବଂ ଅନ୍ୟ ଏକ ଛୋଟ ସ୍କୁଲରେ ଯୋଗ ଦେଇ ମ୍ୟାଟ୍ରିକ୍ ପାସ୍ କରିଥିଲେ । ଏହାପରେ ଫୋର୍ଟ ହାରେ ଠାରେ ଏକ ବିଶ୍ୱବିଦ୍ୟାଳୟରେ ସେ ସମାଜ ବିଜ୍ଞାନ ପଢ଼ିଥିଲେ । ଏ ବିଶ୍ୱବିଦ୍ୟାଳୟରେ ଏକଦା ମାଣ୍ଡେଲା, ଅଲିଭର ତାମ୍ବୋ ମଧ୍ୟ ଛାତ୍ର ଥିଲେ । ୧୯୭୫ ମସିହାରେ ମୋଜାମ୍ବିକ୍ ପର୍ତ୍ତୁଗୀଜ ଶାସନରୁ ମୁକ୍ତ ହୋଇ ସ୍ୱାଧୀନତା ପାଇଥିଲା । ଏହା ଟ୍ରେଭରଙ୍କୁ ଖୁବ୍ ଅନୁପ୍ରାଣିତ କରିଥିଲା ଓ ଦକ୍ଷିଣ ଆଫ୍ରିକା ଗୋରାଶାସନରୁ ଏବଂ ବର୍ଣ୍ଣ ବୈଷମ୍ୟତାରୁ ମୁକ୍ତ ହେବ ଏହା କଳ୍ପନା କରି ହେଉଥିଲା । ମୋଜାମ୍ବିକ୍‌ର ସ୍ୱାଧୀନତା ସଂଗ୍ରାମକୁ ସମର୍ଥନ କରି ଏକ ଛାତ୍ର ଆନ୍ଦୋଳନ ମୁଣ୍ଡ ଟେକିଥିଲା । ଏବଂ ଶ୍ରେଣୀ ବର୍ଜନ ଏହାର ମାଧ୍ୟମ ଥିଲା । ପ୍ରଶ୍ନଥିଲା ଯେ ଜଣେ ବିଶ୍ୱବିଦ୍ୟାଳୟର ସୁନାପୁଅ ଏବଂ ଉତ୍ତମ ଛାତ୍ର ହେବ ଅଥବା ଛାତ୍ର ଆନ୍ଦୋଳନ ଓ ଶ୍ରେଣୀ ବର୍ଜନ ପ୍ରକ୍ରିୟାରେ ଭାଗନେବ । ଟ୍ରେଭର ନ୍ୱାନେ ଛାତ୍ରଆନ୍ଦୋଳନକୁ ପ୍ରାଥମିକତା ଦେଇ ବିଶ୍ୱ ବିଦ୍ୟାଳୟରୁ ବହିଷ୍କୃତ ହୋଇଥିଲେ । କିନ୍ତୁ ବିଶ୍ୱବିଦ୍ୟାଳୟ ଶିକ୍ଷା କରେସ୍ପଣ୍ଡେନ୍‌ସ୍ କୋର୍ସ ଜରିଆରେ ସେ ଜାରି ରଖିଥିଲେ । ସୋୱେଟୋ ପ୍ରଦେଶରେ ଗୋରା ସରାକରଙ୍କ ବିରୁଦ୍ଧରେ ଆନ୍ଦୋଳନ ଯେତେବେଳେ ତୀବ୍ରତର ହେଲା, ସେତେବେଳେ ୧୯୮୮ ମସିହାରେ ଟ୍ରେଭର ମାର୍କ୍ସବାଦକୁ ଗ୍ରହଣ କରିଥିଲେ । ସେ ଦକ୍ଷିଣ ଆଫ୍ରିକାର ମୁକ୍ତିପାଇଁ ଗୋଟାଏ ଶିକ୍ଷାକେନ୍ଦ୍ର ଖୋଲିଥିଲେ

ଏବଂ ଏଥିରେ ମାର୍କ୍ସ, ମାଓ, ହୋଚିମିନ୍ ଆଦିଙ୍କ ଚିନ୍ତାଧାରା ଆଲୋଚିତ ହେଉଥିଲା । ବହୁବ୍ୟକ୍ତି ଓ ଛାତ୍ର ଏ ଶିକ୍ଷାକେନ୍ଦ୍ର ଦ୍ୱାରା ପ୍ରଭାବିତ ହୋଇଥିଲେ । ମାଣ୍ଡେଲାଙ୍କ ମୁକ୍ତି ପାଇଁ ଗୋରା ସରକାରଙ୍କ ସହ ଯେଉଁ ସବୁ ବିଚାର ବିମର୍ଷ ଚାଲିଥିଲା, ସେଥିରେ ସମସ୍ତ ସଂଘର୍ଷକୁ ବାତିଲ୍ କରାଯିବାକୁ ସମ୍ମତି ମିଳିଥିଲା । ଅତି ସତର୍କତାର ସହ ମାଣ୍ଡେଲା ମଧ୍ୟ ବିଦେଶୀ ପୁଞ୍ଜିନିବେଶ ଫେରିବାର ଆଶ୍ୱାସନା ଦେଇଥିଲେ । ଅତି ଚତୁରତାର ସହ ମାଣ୍ଡେଲା ଧନୀବର୍ଗ ଓ ପୁଞ୍ଜିପତିଙ୍କ ସ୍ୱାର୍ଥରକ୍ଷା କରିବାକୁ ବିଭିନ୍ନ ରଣନୀତି କାର୍ଯ୍ୟକାରୀ କରିଥିଲେ । ଜଣାପଡୁଥିଲା ଯେ ଏ.ଏନ୍.ସିକୁ ପ୍ରଶାସନିକ କ୍ଷମତା ସବୁ ମିଳିଲା ଅଥଚ ଦକ୍ଷିଣ ଆଫ୍ରିକାର ଧନସମ୍ପତି ସବୁ ଗୋରା କମ୍ପାନୀଙ୍କ ହାତରେ ରହିଥିଲା । ଏହାଦ୍ୱାରା ଦକ୍ଷିଣ ଆଫ୍ରିକାର ଅର୍ଥନୀତି ଓ ସାମାଜିକ ବ୍ୟବସ୍ଥାରେ ବିଶେଷ କିଛି ପରିବର୍ତ୍ତନ ହେଲାନାହିଁ । ଟ୍ରେଭର୍ ଟ୍ରାନ୍ସପୋର୍ଟ ଶ୍ରମିକ ସଂଘରେ ଯୋଗଦାନ କରି ଶ୍ରମିକ ଆନ୍ଦୋଳନରେ ଭାଗ ନେଇଥିଲେ । ସର୍ବନିମ୍ନ ମଜୁରୀକୁ ନେଇ ଠିକାଦାରମାନଙ୍କ ସହ ସଂଘର୍ଷ ହୋଇଥିଲା । ଠିକାଦାରମାନଙ୍କୁ ଅମଲାମାନେ ସମର୍ଥନ କରିଥିଲେ ଓ ଶ୍ରମିକ ଶୋଷଣ ପ୍ରକ୍ରିୟା ଗୁରୁତ୍ୱର ହେବାକୁ ବସିଥିଲା । ସହରର ନାଗରିକ ପ୍ରଶାସନ ଅମଲାମାନଙ୍କ ପ୍ରଭାବ ଏଥିରେ ହସ୍ତକ୍ଷେପ କରିନଥିଲା । ସାଧାରଣ ଲୋକଙ୍କ ନିଷ୍ପତ୍ତି ନେବାର ଅଧିକାର ହ୍ରାସ ପାଇଥିଲା ଓ ଏ.ଏନ୍.ସିର ଏଥିରେ ପ୍ରତ୍ୟକ୍ଷ ଭୂମିକା ଥିଲା । ଅର୍ଥାତ୍ ଏ.ଏନ୍.ସି ଏକ ରାଜନୈତିକ ଦଳ ହିସାବରେ ସାଧାରଣ ଲୋକଙ୍କ ମତାମତକୁ ଗୁରୁତର ଭାବେ ଉପେକ୍ଷା କରିଥିଲା । ଅର୍ଥନୈତିକ ସମସ୍ୟା ଦକ୍ଷିଣ ଆଫ୍ରିକାରେ ବଢ଼ିବାରେ ଲାଗିଥିଲା ଓ ଅତି ସନ୍ତର୍ପଣରେ ଅଭିବୃଦ୍ଧି, ରୋଜଗାର ଓ ପୁନର୍ବଣ୍ଟନ ନାମରେ ଘରୋଇକରଣ ପ୍ରକ୍ରିୟାକୁ ଖୋଲାଖୋଲି ଭାବେ ଏ.ଏନ୍.ସି ଆମନ୍ତ୍ରଣ କରିଥିଲା । ୧୯୯୯ ମସିହାରେ ଔପଚାରିକ ଭାବେ ଘରୋଇକରଣକୁ ପ୍ରଶାସନ ସମର୍ଥନ କରିଥିଲା । ଇଗୋଲି ୨୦୦୨ ଅର୍ଥାତ୍ ଜୋହାନସ୍‌ବର୍ଗ ୨୦୦୨ ନାମରେ ଏକ ନୂଆ ଯୋଜନା ଆରମ୍ଭ କରାଗଲା ଯାହାଦ୍ୱାରା ସବୁ ଲୋକାଭିମୁଖୀ କାର୍ଯ୍ୟକ୍ରମ ହ୍ରାସ କରାଯିବ, କୋଡ଼ିଏ ହଜାର ବ୍ୟକ୍ତିଙ୍କୁ ଚାକିରିରୁ ହଟାଇ ଦିଆଯିବ ଓ ଟେଣ୍ଡର ଜରିଆରେ ପାଣି, ବିଜୁଳି, ବର୍ଜ୍ୟବସ୍ତୁ ନିଷ୍କାସନ ପରିଚାଳନା କରାଯିବ । ଏହା ଘରୋଇକରଣର ଚରମପଦକ୍ଷେପ ଥିଲା ଦକ୍ଷିଣ ଆଫ୍ରିକାରେ । ଟ୍ରେଭର୍ ଏଥିରେ ଉତ୍କ୍ଷିପ୍ତ ହୋଇ ଖବରକାଗଜରେ ଏକ ବିଶ୍ଳେଷଣାତ୍ମକ ପ୍ରବନ୍ଧ ଲେଖିଥିଲେ ଯାହାର ନାଁ ଥିଲା 'ଲୋକେ କହି ନାହାନ୍ତି' । ଏହାର ଫଳାଫଳ ହେଲା ଟ୍ରେଭରଙ୍କୁ ଏ.ଏନ୍.ସିରୁ ବହିଷ୍କାର ।

ଘରୋଇକରଣର ସବୁ ଦିଗକୁ ଆଲୋଚନା କରି ଦକ୍ଷିଣ ଆଫ୍ରିକାବାସୀଙ୍କୁ ସଚେତନ କରିବା ଦାୟିତ୍ୱ ଟ୍ରେଭର ଓ ତାଙ୍କର ସଂସ୍ଥା ଏ.ପି.ଏମ୍ ହାତକୁ ନେଇଥିଲେ ।

ଘରୋଇକରଣ ପ୍ରକ୍ରିୟାର ପ୍ରଭାବ ଫଳରେ ଦକ୍ଷିଣ ଆଫ୍ରିକାରେ ଅନେକ ପରିବାର ପାଣି ଓ ବିଜୁଳି ପାଇବାରୁ ବଞ୍ଚିତ ହୋଇଛନ୍ତି । ଆନ୍ଦୋଳନର ନିଆଁ ଅନେକ ଯାଗାରେ ଜଳୁଛି । ଯଦିଓ ଏ.ଏନ୍.ସି ଶ୍ରମିକ ସଂଗଠନମାନଙ୍କୁ ରାଜନୈତିକ ଦୃଷ୍ଟିକୋଣରୁ ନିୟନ୍ତ୍ରଣ କରି ଲକ୍ଷ ଲକ୍ଷ ଶ୍ରମିକଙ୍କୁ ନିଜ କବ୍‌ଜାରେ ରଖିଥାଏ ତଥାପି ଅନେକ ଶ୍ରମିକ ଘରୋଇକରଣ ପ୍ରକ୍ରିୟା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଯେଉଁ ଶ୍ରମିକ ସଂଗଠନମାନେ ଏ.ଏନ୍.ସି ଦ୍ୱାରା ପ୍ରଭାବିତ ହୋଇନଥିଲେ ସେଗୁଡ଼ିକ ହେଲା ଏୟାରପୋର୍ଟରେ ଶ୍ରମିକ ସଂଗଠନ, ସେୱେଟୋ ଇଲେକ୍ଟ୍ରିସିଟି କ୍ରାଇସିସ୍ କମିଟି, ଜମିହୀନଙ୍କ ସଂଗଠନ, ଜୁବ୍‌ଲି ସାଉଥ୍ ଆଫ୍ରିକା ଓ ଦି ଟ୍ରିଟ୍‌ମେଣ୍ଟ ଆକ୍ସନ୍ କମିଟି । ସରକାର ଓ ଘରୋଇକରଣ ପ୍ରକ୍ରିୟାର ଏଜେଣ୍ଟମାନଙ୍କ ବିରୁଦ୍ଧରେ ଏମାନେ ଗଣ ଆନ୍ଦୋଳନ ଜାରି ରଖିଥିଲେ ।

ଟ୍ରେଭର ନ୍ୟାନେଙ୍କ ରଣନୀତି ଥିଲା ସ୍ପଷ୍ଟ । ଯେଉଁମାନଙ୍କର ପାଣି ଓ ବିଜୁଳି କାଟି ଦିଆଯିବ, ସେମାନେ ଯେନ ତେନ ପ୍ରକାରେ କୌଶଳକ୍ରମେ ତାହା ପୁନରୁଦ୍ଧାର କରିବେ । ସମ୍ବିଧାନରେ ସର୍ବନିମ୍ନ ମୌଳିକ ସୁବିଧା ପାଇଁ ଯେଉଁ ବ୍ୟବସ୍ଥା କରାଯାଇଛି, ତାହା କେତେକ କର୍ପୋରେଟ୍ ଚାହୁଁନାହାନ୍ତି । ତେଣୁ କିଛିମାତ୍ରାରେ ସଂଘର୍ଷର ସହାୟତା ନେବାକୁ ହେବ । ର୍‌ୟାଲି ମାର୍ଚ୍ଚ ଆଦି କରିବାକୁ ହେବ । ସ୍ମାରକପତ୍ର ଦେବାକୁ ହେବ, ଦାବୀ ଉପସ୍ଥାପନା କରିବାକୁ ହେବ ।

ଯେତେସବୁ କ୍ୟାମ୍ପେନ୍ ବା ଚେତନା ଅଭିଯାନ କରାଯାଇଛି ଟ୍ରେଭରଙ୍କ ନେତୃତ୍ୱରେ ତାହାର ମୂଳ ଉଦ୍ଦେଶ୍ୟ ହେଲା ଯେ ଘରୋଇକରଣ ବିରୁଦ୍ଧରେ ସଂଗ୍ରାମକୁ ଉଦ୍‌ଜୀବିତ କରି ରଖିବା । ଥରକୁ ଗୋଟିଏ ସମସ୍ୟାକୁ ନିଆଯାଇଛି ଓ ସେଥିରେ ସଫଳତା ମିଳିଛି । ସମସ୍ତ ଏଡ଼ସ ରୋଗୀଙ୍କୁ ମାଗଣା ଔଷଧ ମିଳୁ ବୋଲି ଏକ ଚେତନା ଅଭିଯାନ ସଫଳତାର ସହ କରାଯାଇପାରିଛି । ସେୱେଟୋରେ ବିଜୁଳି କାଟିବା ବନ୍ଦ କରାଯାଇ ପାରିଛି ଏବଂ ସବୁ ବିଜୁଳି କମ୍ପାନୀର ବକେୟାକୁ ବାତିଲ୍ କରାଯାଇଛି । ଘରୋଇକରଣ ପଛରେ ଯେଉଁ ରାଜନୀତି ଅଛି ତାହା ବୁଝିବା ନିତାନ୍ତ ଆବଶ୍ୟକ ବୋଲି ଟ୍ରେଭର ବିଚାର କରନ୍ତି ।

୨୦୦୭ ମସିହାରେ ଆଫ୍ରିକାର ବିଶ୍ୱ ସାମାଜିକ ସଂଗଠନର ମହାଅଧିବେଶନ ହେବ ବୋଲି ଏବେଠୁ ସେଠାରେ ଚହଲ ପଡ଼ିଛି ଓ ବିଭିନ୍ନ ପ୍ରକାରରର ପ୍ରସ୍ତୁତି ଚାଲିଛି । ଆଜି ପର୍ଯ୍ୟନ୍ତ ବିଶ୍ୱ ସାମାଜିକ ସଂଗଠନ ବା ୱାର୍ଲ୍ଡ ସୋସିଆଲ୍ ଫୋରମ୍‌ର ସବୁ ମିଟିଂରେ ଟ୍ରେଭର ଭାଗ ନେଇ ଅନୁଭବ କରନ୍ତି ଯେ ଆଫ୍ରିକାର ନାଗରିକ ସମାଜ ଓ ଆକ୍ଟିଭିଷ୍ଟମାନେ ଲାଟିନ୍ ଆମେରିକାର ନାଗରିକ ସମାଜ ଓ ଆକ୍ଟିଭିଷ୍ଟଙ୍କ ଭଳି ସେତେ କ୍ଷମତାଶାଳୀ ବା ବିଭବଶାଳୀ ନୁହନ୍ତି । ତଥାପି ସେ ବିଶ୍ୱାସ କରନ୍ତି ଯେ ଆଫ୍ରିକାରେ ଗଣସଂଗଠନ ଓ ଲୋକସଂଗ୍ରାମ ଧୀରେ ଧୀରେ ଆରମ୍ଭ ହୋଇଛି ଉଦାରୀକରଣ, ଘରୋଇକରଣ ଓ ଜଗତୀକରଣ ବିରୁଦ୍ଧରେ । ଜନସମୂହଙ୍କୁ ସବୁରି ମୂଳରେ ରଖି ସ୍ୱେଚ୍ଛାସେବୀ ସଂଗଠନ, ବୁଦ୍ଧିଜୀବୀ, ବିଭିନ୍ନ ଗବେଷଣା ପ୍ରତିଷ୍ଠାନ ଯଦି ଆବଶ୍ୟକ ସମର୍ଥନ ଦେବେ, ତାହାହେଲେ ଆଫ୍ରିକାର ଜନଆନ୍ଦୋଳନ ସାରା ପୃଥିବୀକୁ ଚମକାଇ ଦେବ । ଟ୍ରେଭର ନ୍ୱାନେ ବିଶ୍ୱାସ କରନ୍ତି ଯେ ପିଞ୍ଜରାବଦ୍ଧ ପକ୍ଷୀମାନଙ୍କୁ ମୁକ୍ତ କରିବାକୁ ହେଲେ ଟଙ୍କା ଦେଇ ଗୋଟିଏ ଗୋଟିଏ ପକ୍ଷୀକୁ କିଣିବା ଠିକ୍ ବାଟ ନୁହେଁ । ଅସଲ ବାଟ ହେଉଛି ପିଞ୍ଜରାକୁ ଭାଙ୍ଗି ଚୁରମାର କରିବା । ତେଣୁ ଆଫ୍ରିକାକୁ କେବଳ ନୁହେଁ ସାରା ମଣିଷ ସମାଜକୁ ଯେଉଁ ପୁଞ୍ଜିପତିମାନେ କବଳିତ କରିଛନ୍ତି ଓ ଶୃଙ୍ଖଳରେ ବାନ୍ଧିଛନ୍ତି, ସେମାନଙ୍କୁ ଧ୍ୱଂସ କରିବା ଆମ ସମସ୍ତଙ୍କର ଲକ୍ଷ୍ୟ ହେଉ । ❑

# ଜଗତୀକରଣ ଓ ଚୀନ୍‌ର କୃଷକଙ୍କ ପ୍ରତିବାଦ

## (୧)

ସ୍ୱପ୍ନାବିଷ୍ଟ ମଣିଷମାନଙ୍କର ସ୍ୱପ୍ନ ଭାଙ୍ଗିଗଲେ ହୃଦୟରେ କୋହ ଓ ମାନସିକ ସ୍ତରରେ ଦୁଃଖ ଯେ ଅପରିମିତ ଓ ଅବାରିତ ହୋଇଯାଏ ତାହା ଯଦି କେହି ଜାଣିବାକୁ ଚାହେଁ ତା ହେଲେ ସେମାନେ ଚୀନ୍ ଦେଶକୁ ସର୍ବାଙ୍ଗଭାବେ ଭଲପାଉଥିବା ଓ ମତବାଦରେ ଅନ୍ଧ ହୋଇଥିବା ଚୀନା ପ୍ରେମୀମାନଙ୍କ ସହ କଥାବାର୍ତ୍ତା କରିପାରନ୍ତି । ମୋର କହିବାର ଉଦ୍ଦେଶ୍ୟ ଚୀନ୍ ଦେଶରେ ମାଓବାଦକୁ ପ୍ରସାରିତ କରିଥିବା ମାଓସେ ତୁଙ୍ଗ୍ ଓ ତାଙ୍କର ସମର୍ଥକ ଗୋଷ୍ଠୀଙ୍କର ଅନେକ ଅନୁଗାମୀ ଥିଲେ ସାରା ପୃଥିବୀସାରା । ସେମାନେ ପଢ଼ିଥିଲେ ମାଓ ସେ ତୁଙ୍ଗ୍‌ଙ୍କ ଲିଖିତ ସୁମାଚାର ଯାହାକୁ କୁହାଯାଏ 'ରେଡ୍‌ବୁକ୍' । ସେମାନେ ପ୍ରଶଂସା କରୁଥିଲେ ମାଓଙ୍କ 'ଲଙ୍ଗ ମାର୍ଚ୍ଚ'କୁ । କାୟ, ମନ ଓ ବାକ୍ୟରେ ସଶସ୍ତ୍ର ବପ୍ଲବକୁ ସମର୍ଥନ କରୁଥିଲେ । 'ଗରିଲା' ଯୁଦ୍ଧରେ ବିଶ୍ୱାସ କରି ସେମାନଙ୍କର ଦେଶର ସତ୍ତାକୁ ବଦଳେଇବାକୁ ଚାହିଁଥିଲେ ଓ ଅସ୍ତ୍ରଶସ୍ତ୍ର ଚଳାଇବାକୁ ଶିଖୁଥିଲେ । 'ସାଂସ୍କୃତିକ ବିପ୍ଳବ' ବା 'କଲ୍‌ଚରାଲ୍ ରିଭୋଲ୍ୟୁସନ'ର ସ୍ତୁତିଗାନ କରୁଥିଲେ । କୃଷି ଓ କୃଷକମାନଙ୍କର ବିକାଶ କିପରି ସାର୍ବଜନୀନ ଓ ଲୋକପ୍ରିୟ ତାହା ଚୀନ୍ ଦେଶର ମଡ଼େଲକୁ ଅଙ୍ଗୁଳି ନିର୍ଦ୍ଦେଶ କରାଯାଇଥିଲା । 'ଚୀନ୍' ଦେଶର 'କମ୍ୟୁନ୍' ବ୍ୟବସ୍ଥା ସାରା ପୃଥିବୀରେ ବିକାଶ ଓ ପରିବର୍ତ୍ତନର ସଫଳ ଉଦାହରଣ ବୋଲି ସେମାନେ ଉତ୍‌ଫୁଲିତ ହେଉଥିଲେ । ରାତିରେ 'ରେଡ଼ିଓ ବେଜିଂ' ଶୁଣୁଥିଲେ । ବେଳେବେଳେ ନିଜ ଦେଶ ପ୍ରେମ ପରିତ୍ୟାଗ କରି ଚୀନ୍ ପ୍ରେମର ଦୃଢ଼ ସମର୍ଥନ କରୁଥିଲେ । ଆଜି ଯଦି ସେମାନଙ୍କୁ ପଚାରିବ ଯେ ଚୀନ୍ ଦେଶରେ କ'ଣ ଚାଲିଛି ସେମାନେ ଏବେ ଉତ୍ତର ଦେବାକୁ ସାହସ କରିବେ ନାହିଁ । କାରଣ ବର୍ତ୍ତମାନ 'ମାଓବାଦ'ର ସମ୍ପ୍ରସାରଣର ମୂଳ ମଞ୍ଜିଟି ମରିହଜି ଯାଇ ଧ୍ୱଂସ ପାଇଛି ଅନେକାଂଶରେ । ସେମାନଙ୍କର ପ୍ରିୟ ଚୀନ୍ ଦେଶରେ ଏକଥା ବାସ୍ତବରେ ରୂପାୟିତ ହୋଇଛି ସେମାନେ ଜାଣି ସାରିଛନ୍ତି ଓ ସମ୍ଭବତଃ ମୁହଁ ଲୁଚାଇ ନିଜର ବିଷାଦ ଓ ବ୍ୟର୍ଥତାକୁ ଅନ୍ତଃସ୍ଥ କରୁଛନ୍ତି ।

ମୁଁ ଏକଦା ମଧ୍ୟ ଚୀନ୍‌ର ମାଓଙ୍କ ନେତୃତ୍ୱରେ ପରିଚାଳିତ ବିପ୍ଳବକୁ ଅଧ୍ୟୟନ କରୁଥିଲି । ଏଡ଼ଗାର୍ ସ୍ନୋଙ୍କ ଲିଖିତ 'ରେଡ଼ଷ୍ଟାର ଓଭର ଚାଇନା' ବହି ଅତି ଗୁରୁତ୍ୱର

ସହ ମୁଁ ପଢ଼ିଛି ଓ ଅନେକଙ୍କ ସହ ଆଲୋଚନା କରିଛି । ଚୀନ୍‌ର ଗ୍ରାମ୍ୟ ବିକାଶକୁ ନେଇ ଲେଖାଯାଇଥିବା ବିଶ୍ୱ କୃଷି ଓ ଖାଦ୍ୟ ସଂଗଠନ ବହି ପଢ଼ି ଆମ ଦେଶରେ ଗ୍ରାମ୍ୟ ଯୋଜନା ଓ ତତ୍‌ସଂଲଗ୍ନ ବିଭିନ୍ନ କାର୍ଯ୍ୟକ୍ରମକୁ ତୁଳନା କରିଛି । ଚୀନ୍‌ରେ ହୋଇଥିବା ଭୂସଂସ୍କାରକୁ ନେଇ ଦୁଇଟି ପ୍ରସିଦ୍ଧ ବହି 'ଫାନ୍‌ସେନ୍ ଓ ସେନଫାନ୍' ପଢ଼ିଥିଲି ଯାହା ଆଧୁନିକ ବିକାଶ ଇତିହାସରେ ଯଥେଷ୍ଟ ଖ୍ୟାତି ଅର୍ଜନ କରିଛି । ଏହାର ଲେଖକ ଉଇଲିୟମ୍ ହିଣ୍ଟନ୍ । ଚୀନ୍‌ର ଗୋଟିଏ ଗାଁରେ ମାଓଙ୍କ ଅମଳରେ ହୋଇଥିବା ଭୂସଂସ୍କାରର ଇତିହାସ, ଭୂଗୋଳ, ରାଜନୀତି ଉପରେ ଚମତ୍କାର ବିଶ୍ଳେଷଣ । ଖାଦ୍ୟ ନିରାପତ୍ତାକୁ ନେଇ ଚୀନ୍ ଦେଶ କିପରି ଉଲ୍ଲେଖନୀୟ ସଫଳତା ଅର୍ଜନ କରିଛି ତାହା ଆମେରିକାର ମିଚିଗାନ୍ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ 'ଫିଡ଼ିଙ୍ଗ୍ ଏ ବିଲିୟନ୍'ରେ ଲିପିବଦ୍ଧ କରାଯାଇଛି । ପାରମ୍ପରିକ କୃଷି ଓ ଅତ୍ୟାଧୁନିକ ଯାନ୍ତ୍ରିକରଣର ସମନ୍ୱୟ ଦ୍ୱାରା ଯେଉଁଭଳି ଖାଦ୍ୟ ଉତ୍ପାଦନ କରାଯାଇଛି, ତାହା ଚୀନ୍‌ରୁ ଅନାହାର ସମ୍ପୂର୍ଣ୍ଣ ଦୂର କରାଯାଇଛି ବୋଲି ଦାବୀ କରାଯାଇଛି । ଏହାଛଡ଼ା ଆଶୀଦଶକରେ ଶିକ୍ଷା, ସ୍ୱାସ୍ଥ୍ୟ, କର୍ମଯୋଗାଣ, ପରିବେଶ ଓ ପରିମଳ, ଜନସଂଖ୍ୟା ନିୟନ୍ତ୍ରଣ, ବାସଗୃହ, କୁଟୀରଶିଳ୍ପ ଓ ଖାଦ୍ୟର ପ୍ରକ୍ରିୟାକରଣ ଆଦି କ୍ଷେତ୍ରରେ କିଏ ସଫଳତା ଓ ଉତ୍‌କର୍ଷତା ପ୍ରମାଣିତ କରିଛି କହିଲେ ଚୀନ୍‌କୁ ତାଲିକାରେ ଆଗରେ ରଖାଯାଇଛି । ଚୀନ୍‌ରେ କମ୍ୟୁନ୍ ବ୍ୟବସ୍ଥା ଉପରେ ବିଭିନ୍ନ ଅଧ୍ୟୟନ କରାଯାଇ ଚମତ୍କାର ଗବେଷଣାମୂଳକ ବହି ପ୍ରକାଶିତ ହୋଇଛି । ଜନସହଯୋଗ ଓ ରାଷ୍ଟ୍ରର ଆଦର୍ଶବାଦୀ ନିୟନ୍ତ୍ରଣ ଦ୍ୱାରା କିପରି ଅସାଧ ସାଧିତ ହୋଇପାରିଛି, ଚୀନ୍ ତାହାର ଉଦାହରଣ ହୋଇଛି । ମରୁଭୂମିକୁ ବନୀକରଣ କରାଯାଇ କିପରି ଚିରସବୁଜିମାରେ ପରିଣତ କରାଯାଇପାରିଛି ତାହା ଦେଖିଲେ ବିଶ୍ୱାସ କରି ହେବ ନାହିଁ ବୋଲି ପ୍ରଚାର କରାଯାଇଛି । ପଶୁପାଳନରେ କୁକୁଡ଼ା, ବତକ, ଘୁଷୁରି ଓ ଠେକୁଆକୁ ମୁଖ୍ୟ ଅଂଶ ଭାବେ ଗ୍ରହଣ କରାଯାଇଛି । ମତ୍ସ୍ୟ ଚାଷକୁ ସୁଦୂରପ୍ରସାରୀ କରାଯାଇଛି । ସାମଗ୍ରୀକ ଭାବେ କହିଲେ ବିପ୍ଳବୋତ୍ତର ଚୀନ୍‌ରେ ସାଧାରଣ ମଣିଷଙ୍କ ଖାଦ୍ୟ ଓ ଜୀବିକା ନିରାପତ୍ତା ଏବଂ ଗୁଣାତ୍ମକ ଜୀବନର ଅଭିବୃଦ୍ଧି ପାଇଁ ଚୀନ୍‌ବାସୀ ନିଜକୁ ଉତ୍ସର୍ଗ କରିଛନ୍ତି ଓ ମାଓ ସେତୁଙ୍ଗ୍‌ଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଦେଶର ଅଭିନବ ଅଭିବୃଦ୍ଧି ସମ୍ଭବ କରାଇ ପାରିଛନ୍ତି । କିନ୍ତୁ ମାଓସେତୁଙ୍ଗ୍‌ଙ୍କ ମୃତ୍ୟୁପରେ ଚୀନ୍‌ର ଅବସ୍ଥା କ'ଣ ଓ ବିକାଶର ପ୍ରକ୍ରିୟା ଓ ଗତି କିପରି ହୋଇଛି ତାହା ଖାଲି ଐତିହାସିକ ଦୃଷ୍ଟିକୋଣ ନୁହେଁ; ରାଜନୈତିକ, ଅର୍ଥନୈତିକ କେଉଁ ରୂପ ନେଇଛି ସେ ସବୁ ପ୍ରଶ୍ନର ପାହାଡ଼ ସୃଷ୍ଟି କରିଛି ?

ଚୀନ୍‌ରେ ମାଓଙ୍କ ପରେ ଘୋର ପରିବର୍ତ୍ତନ ହୋଇଛି ବୋଲି ପୃଥିବୀର ସବୁଲୋକ ଜାଣିଛନ୍ତି ଯଦିଓ ମିଡ଼ିଆ / ଗଣମାଧ୍ୟମରେ ଏ ବିଷୟରେ ଯଥେଷ୍ଟ କିଛି ପ୍ରକାଶିତ ହୋଇନାହିଁ । ଚୀନ୍‌ରେ ଗଣମାଧ୍ୟମ ଏବେ ମଧ୍ୟ ରାଷ୍ଟ୍ରର ପ୍ରବଳ ନିୟନ୍ତ୍ରଣ ଭିତରେ ରହିଛି । ଆଜିର ଯେଉଁ ପରିବର୍ତ୍ତନ ସେଠାରେ ହୋଇଛି ତାହା ଆରମ୍ଭ ହୋଇଛି ଯେଉଁଦିନ ମଣିଷ ଚନ୍ଦ୍ରରେ ପଦାର୍ପଣ କରିଥିଲା ଓ ସାରା ପୃଥିବୀରେ ବିଜ୍ଞାନର ଓ ମଣିଷର ବିଜୟ ଉତ୍ସବ ପାଳିତ ହୋଇଥିଲା । ସେଦିନ ସାରା ଚୀନ୍ ଏ ବିଷୟକୁ ନେଇ ଅନ୍ଧକାରରେ ଥିଲା । ଅର୍ଥାତ୍ ମଣିଷର ଏ ଐତିହାସିକ ସଫଳତା ଚୀନ୍‌ବାସୀଙ୍କୁ ଲୁଚାଇ ରଖାଯାଇଥିଲା ଓ ଅନ୍ୟ ପକ୍ଷରେ ସେ ଦିନ ମାଓସେତୁଙ୍ଗ୍ ନଦୀରେ ପହଁରୁଥିବାର ଚିତ୍ର 'ପିପୁଲସ୍ ଡେ଼ଲି' ଖବରକାଗଜର ପ୍ରଥମ ପୃଷ୍ଠାରେ ଛପାଯାଇଥିଲା । ତା'ପରେ ଆସିଥିଲା ଟେବୁଲ ଟେନିସ୍ ଖେଳରୁ 'ପିଙ୍ଗ ପିଙ୍ଗ' କୁଟନୀତି । ତା'ପରେ ୧୯୭୨ ମସିହାରେ ଡେ଼ଙ୍ଗସିଆଓପିଙ୍ଗଙ୍କ ସହ ସାକ୍ଷାତ କରିଥିଲେ ଆମେରିକାର ରାଷ୍ଟ୍ରପତି ତାଙ୍କର ଚୀନ୍ ଗସ୍ତବେଳେ ।

ସମ୍ଭବତଃ ଜଗତୀକରଣ ପ୍ରକ୍ରିୟା ଓ ବିଶ୍ୱପୁଞ୍ଜି ଚୀନ୍ ଦେଶର ବାଉଁଶ ବାଡ଼କୁ ଡେ଼ଇଁ ଅନୁପ୍ରବେଶ କରିଛି ଯେଉଁଦିନଠାରୁ ଆମେରିକାର ରାଷ୍ଟ୍ରପତି ରିଚାର୍ଡ଼ ନିକ୍‌ସନ ଓ ବୈଦେଶିକ ମନ୍ତ୍ରୀ ହେନ୍‌ରୀ କିସିଞ୍ଜର୍ ଚୀନ୍ ପ୍ରତି ଅହେତୁକ ଆଗ୍ରହ ଦେଖାଇ ବନ୍ଧୁତାର ଡ଼ୋରି ବାନ୍ଧିଛନ୍ତି । ଏସବୁ ପଛରେ ଯେଉଁ କୁଟନୀତି ଚାଲିଛି ତାହା ଚୀନ୍‌ବାସୀ ଜାଣିଛନ୍ତି କି ନାହିଁ, କିନ୍ତୁ ଚୀନ୍‌ର ସର୍ବଶକ୍ତିମାନ୍ ଡେ଼ଙ୍ଗସିଆଓ ପିଙ୍ଗ୍ ନିଶ୍ଚିତ ଜାଣିଥିଲେ । କାରଣ ୧୯୭୮ ମସିହାରେ ସେ ଘୋଷଣା କରିଥିଲେ ଯେ ମାଓଙ୍କ ଚୀନ୍‌କୁ ପୁଞ୍ଜିବାଦ ବ୍ୟବହାର କରି ସମାଜବାଦ ବିକାଶ କରିହେବ ଏବଂ ଏହାଦ୍ୱାରା ଦ୍ରୁତ ବିକାଶ ଓ ଅଭିବୃଦ୍ଧି ସମ୍ଭବ ହେବ । ତଥାକଥିତ ସମାଜବାଦରେ ଚୀନ୍‌ର ଛାପ ରହିବ ଏହାଦ୍ୱାରା ଘରୋଇ ଉଦ୍ୟୋଗ ଓ ବଜାର ସହ ଚୀନ୍‌ର କ୍ଷୟବର୍ଦ୍ଧିଷ୍ଣୁ ରାଷ୍ଟ୍ରାୟତ ଶିଳ୍ପର ସମନ୍ୱୟ ବଢ଼ିବ । ଏହି ପ୍ରକାର ମାନସିକତା ପରୋକ୍ଷଭାବରେ ଚୀନ୍‌ରେ ଜଗତୀକରଣ, ଘରୋଇକରଣ ଓ ବଜାରୀକରଣ ପ୍ରକ୍ରିୟାକୁ ଅହେତୁକ ଓ ଅପରିକଳ୍ପିତ ପ୍ରୋତ୍ସାହନ ଦେଇଛି । ଏହାର ପ୍ରଭାବରେ କେତେ ଯେ ନକରାତ୍ମକ ଓ ଜନବିରୋଧୀ ପ୍ରଭାବ ପଡ଼ିଛି ତାହାର ପ୍ରକୃତ ଅଟକଳ କରିବା ସମ୍ଭବ ନୁହେଁ । କାରଣ ଚୀନ୍‌ରେ ବିଭିନ୍ନ ନିୟନ୍ତ୍ରଣ ସ ସେନ୍‌ସରସିପ୍ ହେତୁ ଅସଲ ଖବର ବାହର ଦୁନିଆକୁ ଆସୁନାହିଁ । ଏହା ମଧ୍ୟ ସତକଥା ଯେ ଚୀନ୍ ଦେଶସାରା

ପ୍ରତିବାଦର ଢ଼େଉ ଖେଳିଯାଇଛି କିନ୍ତୁ ସେ ପ୍ରତିବାଦ ଓ ବିରୋଧାଭାସର ବିବରଣୀ ମଧ୍ୟ ସଠିକ୍ ରଖାଯାଇନାହିଁ । ଚୀନ୍ ଦେଶ ଆଉ ବିପ୍ଳବ ଓ ସାହାସୀ ବିପ୍ଳବୀମାନଙ୍କର ଦେଶ ହୋଇ ରହିଛି କି ନାହିଁ କିଏ କରିବ ? ଚୀନ୍ ଦେଶରେ 'ମାଓବାଦ'ର ମୃତ୍ୟୁ ହୋଇଛି କି ନାହିଁ କିଏ ଜାଣିବ ? ଚୀନ୍‌ର ବିକାଶଧାରା ଚୀନ୍‌ବାସୀଙ୍କ ହିତ ପାଇଁ ବୋହୁଛି କି ସର୍ବଗ୍ରାସୀ ଜଗତୀକରଣ ପ୍ରକ୍ରିୟାରେ ମିଶି ଯାଇଛି କିଏ ନିରପେକ୍ଷ ଭାବେ ସମୀକ୍ଷା କରିବ ? 'ଗ୍ୟାଙ୍ଗଷ୍ଟର ପୁଞ୍ଜିବାଦ' କିପରି ଦାନା ବାନ୍ଧିଛି ସବୁକ୍ଷେତ୍ରରେ ଏହା ସ୍ପଷ୍ଟ ଦେଖାଯାଉଥିଲେ ମଧ୍ୟ ଚୀନ୍‌ବାସୀ ଚୁପ୍ ରହିଛନ୍ତି କି ସ୍ୱର ଉତ୍ତୋଳନ କରୁଛନ୍ତି କିଏ ଏହାର ଗବେଷଣା କରିବ ? ଚୀନ୍ କାହିଁକି ବାଣିଜ୍ୟ ଓ ବେପାର ଦୃଷ୍ଟିରୁ ଆମେରିକାର ସବୁଠାରୁ ପ୍ରିୟପାତ୍ର (ମୋଷ୍ଟ ଫେଭରଡ଼୍ ନେସନ୍) ହେଲା ତାହା କିଏ କହିବ ? ବିଶ୍ୱ ରାଜନୀତି ପରିପ୍ରେକ୍ଷୀରେ ସବୁ କେମିତି ଖାପଛଡ଼ା ଲାଗୁଛି । ମତବାଦ ହିସାବରେ ଆମେରିକା ଭଳି ପୁଞ୍ଜିବାଦ ରାଷ୍ଟ୍ର ଓ ଚୀନ୍ ଭଳି କମ୍ୟୁନିଷ୍ଟ ରାଷ୍ଟ୍ରଙ୍କ ଭିତରେ ଅହିନକୁଳ ସମ୍ପର୍କ ରହିବା କଥା । ସେମାନେ ମିତ୍ର ହେବାଟା ବିପଦଜନକ ବୋଲି ଶଙ୍କା ସୃଷ୍ଟି ହୋଇଛି ।

ଜଗତୀକରଣ ପ୍ରକ୍ରିୟା ଚୀନ୍‌ରେ ଗୁରୁତର ସମସ୍ୟା ସୃଷ୍ଟି କରିସାରିଲାଣି ବୋଲି ବିଭିନ୍ନ ଗବେଷକ ଏ ଭିତରେ ତଥ୍ୟ ସମ୍ୱଳିତ ପୁସ୍ତକ ପ୍ରକାଶ କରିସାରିଛନ୍ତି । ଯେତେ ଲୁଚାଇଲେ ବି ଅପ୍ରିୟ ସତ୍ୟ କଥା ବିଶ୍ୱଜନତା ଜାଣିସାରିଲେଣି । ଚୀନ୍‌ରେ କମ୍ୟୁନିଷ୍ଟ ଶାସନ ଏବେ ମଧ୍ୟ ଚାଲିଛି । ଏବେ ମଧ୍ୟ ମାଓସେ ତୁଙ୍ଗ୍‌ଙ୍କ ସମାଧି ପୀଠ ଲକ୍ଷ ଲକ୍ଷ ପର୍ଯ୍ୟଟକଙ୍କୁ ଆକର୍ଷଣ କରୁଛି । ଚୀନ୍‌ରେ କ'ଣ ଘଟୁଛି ଓ ଘଟିବାକୁ ଯାଉଛି ଏ ଗ୍ରନ୍ଥର ସଂକ୍ଷିପ୍ତ ପରିସରରେ ପ୍ରକାଶ କରିବା ସମ୍ଭବ ନୁହେଁ । ତଥାପି କେତୋଟି ମୂଳପ୍ରଶ୍ନ ଉପରେ ଆମେ ଦୃଷ୍ଟିନିକ୍ଷେପ କରିବା ଓ ଚୀନ୍ ଦେଶ ଜଗତୀକରଣ ଜାଲରେ ଛନ୍ଦି ହୋଇଥିବା ଦୁଃଖଦ ବିଷୟ ସବୁ ଦୃଷ୍ଟିରୁ ବିଚାର କରି ଜାଣିବା ଓ ପାଠକମାନଙ୍କୁ ଜଣାଇବା ।

ଚୀନ୍‌ର ଆର୍ଥିକ ଅଭ୍ୟୁଦୟ ଅଶୀ ଦଶକରୁ ଆରମ୍ଭ ହୋଇଛି ଏବଂ ଏହାଦ୍ୱାରା ବାର୍ଷିକ ଜାତୀୟ ଅଭିବୃଦ୍ଧି ଶତକଡ଼ା ଦଶଭାଗରୁ ଅଧିକ ବୋଲି ଦୁନିଆସାରା ପ୍ରଚାର କରାଯାଇଛି । ମୁଣ୍ଡପିଛା ଆୟ ମଧ୍ୟ ଏହାଦ୍ୱାରା ଯଥେଷ୍ଟ ବଢ଼ିଛି ବୋଲି ପଶ୍ଚିମ ଓ ବିକଶିତ ଦେଶରେ ଖୁବ୍ ଚହଳ ପକାଇଛି । କିନ୍ତୁ ଏହା କିପରି ସମ୍ଭବ ହୋଇଛି ଯଦି

ଚୀନ୍‌ରେ ମାଓଙ୍କ ପରେ ଘୋର ପରିବର୍ତ୍ତନ ହୋଇଛି ବୋଲି ପୃଥିବୀର ସବୁଲୋକ ଜାଣିଛନ୍ତି ଯଦିଓ ମିଡ଼ିଆ / ଗଣମାଧ୍ୟମରେ ଏ ବିଷୟରେ ଯଥେଷ୍ଟ କିଛି ପ୍ରକାଶିତ ହୋଇନାହିଁ । ଚୀନ୍‌ରେ ଗଣମାଧ୍ୟମ ଏବେ ମଧ୍ୟ ରାଷ୍ଟ୍ରର ପ୍ରବଳ ନିୟନ୍ତ୍ରଣ ଭିତରେ ରହିଛି । ଆଜିର ଯେଉଁ ପରିବର୍ତ୍ତନ ସେଠାରେ ହୋଇଛି ତାହା ଆରମ୍ଭ ହୋଇଛି ଯେଉଁଦିନ ମଣିଷ ଚନ୍ଦ୍ରରେ ପଦାର୍ପଣ କରିଥିଲା ଓ ସାରା ପୃଥିବୀରେ ବିଜ୍ଞାନର ଓ ମଣିଷର ବିଜୟ ଉତ୍ସବ ପାଳିତ ହୋଇଥିଲା । ସେଦିନ ସାରା ଚୀନ୍ ଏ ବିଷୟକୁ ନେଇ ଅନ୍ଧକାରରେ ଥିଲା । ଅର୍ଥାତ୍ ମଣିଷର ଏ ଐତିହାସିକ ସଫଳତା ଚୀନ୍‌ବାସୀଙ୍କୁ ଲୁଚାଇ ରଖାଯାଇଥିଲା ଓ ଅନ୍ୟ ପକ୍ଷରେ ସେ ଦିନ ମାଓସେତୁଙ୍ଗ୍ ନଦୀରେ ପହଁରୁଥିବାର ଚିତ୍ର 'ପିପୁଲସ୍ ଡ଼େଲି' ଖବରକାଗଜର ପ୍ରଥମ ପୃଷ୍ଠାରେ ଛପାଯାଇଥିଲା । ତା'ପରେ ଆସିଥିଲା ଟେବୁଲ ଟେନିସ୍ ଖେଳରୁ 'ପିଙ୍ଗ ପିଙ୍ଗ' କୂଟନୀତି । ତା'ପରେ ୧୯୭୨ ମସିହାରେ ଡ଼େଙ୍ଗସିଆଓପିଙ୍ଗଙ୍କ ସହ ସାକ୍ଷାତ କରିଥିଲେ ଆମେରିକାର ରାଷ୍ଟ୍ରପତି ତାଙ୍କର ଚୀନ୍ ଗସ୍ତବେଳେ ।

ସମ୍ଭବତଃ ଜଗତୀକରଣ ପ୍ରକ୍ରିୟା ଓ ବିଶ୍ୱପୁଞ୍ଜି ଚୀନ୍ ଦେଶର ବାଉଁଶ ବାଡ଼କୁ ଡ଼େଇଁ ଅନୁପ୍ରବେଶ କରିଛି ଯେଉଁଦିନଠାରୁ ଆମେରିକାର ରାଷ୍ଟ୍ରପତି ରିଚାର୍ଡ଼ ନିକ୍ସନ ଓ ବୈଦେଶିକ ମନ୍ତ୍ରୀ ହେନ୍‌ରୀ କିସିଞ୍ଜର୍ ଚୀନ୍ ପ୍ରତି ଅହେତୁକ ଆଗ୍ରହ ଦେଖାଇ ବନ୍ଧୁତାର ଡ଼ୋରି ବାନ୍ଧିଛନ୍ତି । ଏସବୁ ପଛରେ ଯେଉଁ କୂଟନୀତି ଚାଲିଛି ତାହା ଚୀନ୍‌ବାସୀ ଜାଣିଛନ୍ତି କି ନାହିଁ, କିନ୍ତୁ ଚୀନ୍‌ର ସର୍ବଶକ୍ତିମାନ୍ ଡ଼େଙ୍ଗସିଆଓ ପିଙ୍ଗ୍ ନିଶ୍ଚିତ ଜାଣିଥିଲେ । କାରଣ ୧୯୭୮ ମସିହାରେ ସେ ଘୋଷଣା କରିଥିଲେ ଯେ ମାଓଙ୍କ ଚୀନ୍‌କୁ ପୁଞ୍ଜିବାଦ ବ୍ୟବହାର କରି ସମାଜବାଦ ବିକାଶ କରିହେବ ଏବଂ ଏହାଦ୍ୱାରା ଦ୍ରୁତ ବିକାଶ ଓ ଅଭିବୃଦ୍ଧି ସମ୍ଭବ ହେବ । ତଥାକଥିତ ସମାଜବାଦରେ ଚୀନ୍‌ର ଛାପ ରହିବ ଏହାଦ୍ୱାରା ଘରୋଇ ଉଦ୍ୟୋଗ ଓ ବଜାର ସହ ଚୀନ୍‌ର କ୍ଷୟବର୍ଦ୍ଧିଷ୍ଣୁ ରାଷ୍ଟ୍ରାୟତ ଶିଳ୍ପର ସମନ୍ୱୟ ବଢ଼ିବ । ଏହି ପ୍ରକାର ମାନସିକତା ପରୋକ୍ଷଭାବରେ ଚୀନ୍‌ରେ ଜଗତୀକରଣ, ଘରୋଇକରଣ ଓ ବଜାରୀକରଣ ପ୍ରକ୍ରିୟାକୁ ଅହେତୁକ ଓ ଅପରିକଳ୍ପିତ ପ୍ରୋତ୍ସାହନ ଦେଇଛି । ଏହାର ପ୍ରଭାବରେ କେତେ ଯେ ନକରାତ୍ମକ ଓ ଜନବିରୋଧୀ ପ୍ରଭାବ ପଡ଼ିଛି ତାହାର ପ୍ରକୃତ ଅଟକଳ କରିବା ସମ୍ଭବ ନୁହେଁ । କାରଣ ଚୀନ୍‌ରେ ବିଭିନ୍ନ ନିୟନ୍ତ୍ରଣ ସ ସେନ୍‌ସରସିପ୍ ହେତୁ ଅସଲ ଖବର ବାହର ଦୁନିଆକୁ ଆସୁନାହିଁ । ଏହା ମଧ୍ୟ ସତକଥା ଯେ ଚୀନ୍ ଦେଶସାରା

ପ୍ରତିବାଦର ଢ଼େଉ ଖେଳିଯାଇଛି କିନ୍ତୁ ସେ ପ୍ରତିବାଦ ଓ ବିରୋଧାଭାସର ବିବରଣୀ ମଧ୍ୟ ସଠିକ୍ ରଖାଯାଇନାହିଁ । ଚୀନ୍ ଦେଶ ଆଉ ବିପ୍ଲବ ଓ ସାହାସୀ ବିପ୍ଲବୀମାନଙ୍କର ଦେଶ ହୋଇ ରହିଛି କି ନାହିଁ କିଏ କରିବ ? ଚୀନ୍ ଦେଶରେ 'ମାଓବାଦ'ର ମୃତ୍ୟୁ ହୋଇଛି କି ନାହିଁ କିଏ ଜାଣିବ ? ଚୀନ୍‌ର ବିକାଶଧାରା ଚୀନ୍‌ବାସୀଙ୍କ ହିତ ପାଇଁ ବୋହୁଛି କି ସର୍ବଗ୍ରାସୀ ଜଗତୀକରଣ ପ୍ରକ୍ରିୟାରେ ମିଶି ଯାଇଛି କିଏ ନିରପେକ୍ଷ ଭାବେ ସମୀକ୍ଷା କରିବ ? 'ଗ୍ୟାଙ୍ଗଷ୍ଟର ପୁଞ୍ଜିବାଦ' କିପରି ଦାନା ବାନ୍ଧିଛି ସବୁକ୍ଷେତ୍ରରେ ଏହା ସ୍ପଷ୍ଟ ଦେଖାଯାଉଥିଲେ ମଧ୍ୟ ଚୀନ୍‌ବାସୀ ଚୁପ୍ ରହିଛନ୍ତି କି ସ୍ୱର ଉତ୍ତୋଳନ କରୁଛନ୍ତି କିଏ ଏହାର ଗବେଷଣା କରିବ ? ଚୀନ୍ କାହିଁକି ବାଣିଜ୍ୟ ଓ ବେପାର ଦୃଷ୍ଟିରୁ ଆମେରିକାର ସବୁଠାରୁ ପ୍ରିୟପାତ୍ର (ମୋଷ୍ଟ ଫେଭରଡ଼୍ ନେସନ୍) ହେଲା ତାହା କିଏ କହିବ ? ବିଶ୍ୱ ରାଜନୀତି ପରିପ୍ରେକ୍ଷୀରେ ସବୁ କେମିତି ଖାପଛଡ଼ା ଲାଗୁଛି । ମତବାଦ ହିସାବରେ ଆମେରିକା ଭଳି ପୁଞ୍ଜିବାଦ ରାଷ୍ଟ୍ର ଓ ଚୀନ୍ ଭଳି କମ୍ୟୁନିଷ୍ଟ ରାଷ୍ଟ୍ରଙ୍କ ଭିତରେ ଅହିନକୁଳ ସମ୍ପର୍କ ରହିବା କଥା । ସେମାନେ ମିତ୍ର ହେବାଟା ବିପଦଜନକ ବୋଲି ଶଙ୍କା ସୃଷ୍ଟି ହୋଇଛି ।

ଜଗତୀକରଣ ପ୍ରକ୍ରିୟା ଚୀନ୍‌ରେ ଗୁରୁତର ସମସ୍ୟା ସୃଷ୍ଟି କରିସାରିଲାଣି ବୋଲି ବିଭିନ୍ନ ଗବେଷକ ଏ ଭିତରେ ତଥ୍ୟ ସମ୍ବଳିତ ପୁସ୍ତକ ପ୍ରକାଶ କରିସାରିଛନ୍ତି । ଯେତେ ଲୁଚାଇଲେ ବି ଅପ୍ରିୟ ସତ୍ୟ କଥା ବିଶ୍ୱଜନତା ଜାଣିସାରିଲେଣି । ଚୀନ୍‌ରେ କମ୍ୟୁନିଷ୍ଟ ଶାସନ ଏବେ ମଧ୍ୟ ଚାଲିଛି । ଏବେ ମଧ୍ୟ ମାଓସେ ତୁଙ୍ଗ୍‌ଙ୍କ ସମାଧି ପୀଠ ଲକ୍ଷ ଲକ୍ଷ ପର୍ଯ୍ୟଟକଙ୍କୁ ଆକର୍ଷଣ କରୁଛି । ଚୀନ୍‌ରେ କ'ଣ ଘଟୁଛି ଓ ଘଟିବାକୁ ଯାଉଛି ଏ ଗ୍ରନ୍ଥର ସଂକ୍ଷିପ୍ତ ପରିସରରେ ପ୍ରକାଶ କରିବା ସମ୍ଭବ ନୁହେଁ । ତଥାପି କେତୋଟି ମୂଳପ୍ରଶ୍ନ ଉପରେ ଆମେ ଦୃଷ୍ଟିନିକ୍ଷେପ କରିବା ଓ ଚୀନ୍ ଦେଶ ଜଗତୀକରଣ ଜାଲରେ ଛନ୍ଦି ହୋଇଥିବା ଦୁଃଖଦ ବିଷୟ ସବୁ ଦୃଷ୍ଟିରୁ ବିଚାର କରି ଜାଣିବା ଓ ପାଠକମାନଙ୍କୁ ଜଣାଇବା ।

ଚୀନ୍‌ର ଆର୍ଥିକ ଅଭ୍ୟୁଦୟ ଅଶୀ ଦଶକରୁ ଆରମ୍ଭ ହୋଇଛି ଏବଂ ଏହାଦ୍ୱାରା ବାର୍ଷିକ ଜାତୀୟ ଅଭିବୃଦ୍ଧି ଶତକଡ଼ା ଦଶଭାଗରୁ ଅଧିକ ବୋଲି ଦୁନିଆସାରା ପ୍ରଚାର କରାଯାଇଛି । ମୁଣ୍ଡପିଛା ଆୟ ମଧ୍ୟ ଏହାଦ୍ୱାରା ଯଥେଷ୍ଟ ବଢ଼ିଛି ବୋଲି ପଶ୍ଚିମ ଓ ବିକଶିତ ଦେଶରେ ଖୁବ୍ ଚହଳ ପକାଇଛି । କିନ୍ତୁ ଏହା କିପରି ସମ୍ଭବ ହୋଇଛି ଯଦି

ଜଣେ ଜାଣିବ, ସେ ଚମକି ପଡ଼ିବ ଯେ ଗ୍ରାମାଞ୍ଚଳରେ ଥିବା କମ୍ୟୁନ୍‌ଗୁଡ଼ିକ ଭାଙ୍ଗିଦିଆଯାଇ ସବୁ ଉତ୍ପାଦନ ପ୍ରକ୍ରିୟାକୁ ଧିରେଧିରେ ଘରୋଇକରଣ କରାଯାଇଛି । ଏପରି ଏକ ବ୍ୟବସ୍ଥା କରାଯାଇଛି ଯେ ଚୀନ୍‌ର କୃଷକମାନେ ବ୍ୟକ୍ତିଗତଭାବେ ଉତ୍ପାଦନ କରିବେ ଓ ସ୍ୱାଧୀନଭାବେ ବିକାକିଣା କରି ଲାଭ ପାଇବେ । ଗ୍ରାମାଞ୍ଚଳରେ କମ୍ୟୁନ୍ ଭିତରେ ଯେଉଁ ଶିଳ୍ପ ପ୍ରତିଷ୍ଠା ହୋଇଥିଲା, ସରକାର ତାହାକୁ ନିୟନ୍ତ୍ରଣକୁ ନେଇ ବସ୍ତ୍ରଶିଳ୍ପ ଓ ଖାଦ୍ୟ ପ୍ରକ୍ରିୟାକରଣ ଶିଳ୍ପ ବସାଇଛନ୍ତି । କାରଣ ଏଗୁଡ଼ିକ ଆନ୍ତର୍ଜାତିକ ବଜାରରେ ମାନ୍ୟତା ପାଇଛି । ହଠାତ୍ ଗୋଟିଏ ଶିଳ୍ପରେ କାମ କରୁଥିବା ଶ୍ରମିକମାନେ ନିଜର ଜୀବନ ଜୀବିକା ପରିବର୍ତ୍ତନ କରି ବସ୍ତ୍ରଶିଳ୍ପ ଓ ଖାଦ୍ୟ ପ୍ରକ୍ରିୟା ଶିଳ୍ପକୁ ଲମ୍ଫ ଦେଲା ଫଳରେ ଏଥିରେ ନିୟୋଜିତ ହୋଇଥିବା ୧୨କୋଟି ଶ୍ରମିକଙ୍କ ଭବିଷ୍ୟତ ଆନ୍ତର୍ଜାତିକ ବଜାର ଉପରେ ନିର୍ଭର କରୁଛି । ନବେଦେଶକର ବଜାରର ଅନିଶ୍ଚିତତା ଏହି ୧୨କୋଟି ଶ୍ରମିକଙ୍କ ଜୀବନ ଜୀବିକାକୁ ଅନିଶ୍ଚିତତା ଭିତକୁ ଟାଣି ନେଉଛି । ଗ୍ରାମ୍ୟ ଅର୍ଥନୀତି କ୍ରମଶଃ ଭୁଶୁଡ଼ି ପଡ଼ିବା ହେତୁ ଉତ୍ପାଦନ ହ୍ରାସ ପାଇଛି ଓ ବାର୍ଷିକ ଆୟ ମଧ ସୀମାତୀତ ଭାବେ କମିଛି । ଫଳରେ ପ୍ରାୟ ୧୨କୋଟି ଗ୍ରାମ୍ୟ ଶ୍ରମିକ ବାସ୍ତୁହରା ହୋଇ ସହରାଭିମୁଖୀ ହୋଇଛନ୍ତି । ସହରରେ ମଧ ବେକାର ଶ୍ରମିକଙ୍କ ସଂଖ୍ୟା କମ୍ ନୁହେଁ । ୨୦୦୩ ମସିହା ବେଳକୁ ବେକାର ଓ ବେସାହାରା ହୋଇ ଭାସୁଥିବା ଅସହାୟ ଶ୍ରମିକଙ୍କ ସଂଖ୍ୟା ୧୫କୋଟିରେ ପହଞ୍ଚିଛି । ଚୀନ୍‌ର କମ୍ୟୁନ୍ ଧ୍ୱଂସ ହୋଇଯିବା ପରେ ଏ ଦୁଃଖଦ ବ୍ୟବସ୍ଥା ସୃଷ୍ଟି ହୋଇଥିବା କଥା ବଡ଼ ଅବାକ୍ ଲାଗୁଛି । ଦିନେ ଯେଉଁଠି କେହି ବେକାର ନଥିଲେ, କ୍ଷୁଧା ଓ ଅନାହାର ପ୍ରପୀଡ଼ିତ ନ ଥିଲେ, ଆଶ୍ରୟହୀନ ନଥିଲେ ଓ ସବୁଦୃଷ୍ଟିରୁ ସୁରକ୍ଷିତ ଥିଲେ ଅଚାନକ ଭାସମାନ ଶ୍ରମିକ ଗୋଷ୍ଠୀରୂପେ ପରିଗଣିତ ହୋଇ ଅଜଣା ଓ ଅଲୋଡ଼ା ହୋଇଗଲେ । ଏହି ସମୟ ଭିତରେ ପ୍ରଗତିର ଚକ୍ର ଅନ୍ୟବାଟରେ ଘୂରୁଥିଲା । ବିଦେଶୀପୁଞ୍ଜି ନିବେଶ ସହ ଅନେକ ଚୀନ୍-ବିଦେଶୀ ସହଯୋଗରେ ସ୍ଥାପିତ ଦ୍ୱୈତ ଉଦ୍ୟୋଗମାନ ଗଢ଼ି ଉଠିଲା । ମୂଳ ଉଦ୍ଦେଶ୍ୟ ହେଲା ଦେଶର ସାଧାରଣ ସମ୍ପତ୍ତିକୁ ଲୁଣ୍ଠନ କରିବା ଓ ଅସହାୟ ଶ୍ରମିକ ଗୋଷ୍ଠୀକୁ ଶୋଷଣ କରିବା ।

ଆଜି ଆମ ଦେଶର ସ୍ୱତନ୍ତ୍ର ଆର୍ଥିକ ଜୋନ୍ ପ୍ରତିଷ୍ଠା ନେଇ ବହୁ ପ୍ରଦେଶରେ ମୂଲ୍ୟବାନ ଜମି ହଡ଼ପ କରିବାକୁ ଶିଳ୍ପପତି, ପୁଞ୍ଜିପତିମାନେ ଓ ବହୁରାଷ୍ଟ୍ରୀୟ କମ୍ପାନୀମାନେ ତତ୍ପର ହୋଇଛନ୍ତି । ଦେଶ ସେମାନଙ୍କ ସପକ୍ଷରେ ଆଇନ୍ ତିଆରି କରୁଛି । ଓଡ଼ିଶା ସମେତ ପ୍ରଦେଶମାନେ ପ୍ରତିଯୋଗିତା କରୁଛନ୍ତି କେଉଁଠି କେତୋଟି ସ୍ୱତନ୍ତ୍ର ଆର୍ଥିକ

ଜୋନ୍ ପ୍ରତିଷ୍ଠା ହେବ । କିନ୍ତୁ ପାଠକମାନେ ଆଶ୍ଚର୍ଯ୍ୟ ହେବେ ଏହି ପ୍ରକ୍ରିୟା ଚୀନ୍‌ରୁ ଅଶୀଦଶକରୁ ଆରମ୍ଭ ହୋଇଛି । ସମ୍ପତ୍ତି ଉପରେ ମାଲିକାନା ସମ୍ପର୍କିତ ଆଇନ୍ ଚୀନରେ ବିନା ପ୍ରତିବାଦରେ ବଦଳିଯାଇଛି । ଆମର ଚିଲିକା ହ୍ରଦରେ 'ଘେରି' ଜବରଦଖଲଭଳି ଚୀନ୍‌ରେ 'ଜମି ଜବରଦଖଲ ଓ 'ଘେରି' ପ୍ରକ୍ରିୟା ଆରମ୍ଭ ହୋଇଛି । ଶକ୍ତିଶାଳୀ ଗୋଷ୍ଠୀ ଓ ମାଫିଆମାନେ ଲକ୍ଷ ଲକ୍ଷ ଏକର ଜମି ସବୁ ମାଡ଼ିବସିଛନ୍ତି । ଏହାଛଡ଼ା ବିଦେଶୀ ପୁଞ୍ଜିନିବେଶ ପାଇଁ ଓ ବିଦେଶୀପୁଞ୍ଜିପତିଙ୍କୁ ଆକର୍ଷଣ କରିବା ପାଇଁ ବିଭିନ୍ନ ସହର 'ସ୍ୱତନ୍ତ୍ର ଆର୍ଥିକ ବିକାଶ ଜୋନ୍' ଘୋଷଣା କରିଛନ୍ତି । ଜମିର ଯେଉଁ ନୂତନ ବଜାର ଓ ବେପାର ଆରମ୍ଭ ହୋଇଛି ଏଥିରେ ବିଦେଶୀ ପୁଞ୍ଜିର ଶତକଡ଼ା ନବେଭାଗ ନିବେଶ କରାଯାଇଛି । ଏଥିରୁ ଅନୁମାନ କରାଯାଇପାରେ ଯେ ଜଗତୀକରଣ ଓ ଘରୋଇକରଣ କେତେ ମାତ୍ରାରେ ଚୀନ୍‌ରେ ପ୍ରବେଶ କରିସାରିଛି ।

(୨)

ଚୀନ୍‌ର ଗ୍ରାମାଞ୍ଚଳ ତଥା ସହରାଞ୍ଚଳରେ ଯେଉଁଭଳି ଅସନ୍ତୋଷର ଝଡ଼ ବହୁଛି ଓ ପ୍ରତିବାଦର ଢ଼େଉ ପରେ ଢ଼େଉ ଆସୁଛି, ତାହା ଧୀରେ ଧୀରେ ସାରା ପୃଥିବୀବାସୀଙ୍କ ପାଖରେ ପହଞ୍ଚୁଛି ଓ ସମସ୍ତଙ୍କୁ ଅବାକ୍ କରି ଦେଉଛି । ଚୀନ୍‌ରେ ମାନବାଧିକାର ଉଲଂଘନ ମାତ୍ରାଧିକ ବୋଲି ଅଭିଯୋଗ ଆସୁଛି । କିନ୍ତୁ ଏହାକୁ ପାଶ୍ଚାତ୍ୟ ଓ ପୁଞ୍ଜିବାଦୀ ଦେଶଙ୍କ ଅପପ୍ରଚାର ବା ପ୍ରୋପାଗଣ୍ଡା ବୋଲି କହି ହେବ କି ? ଚୀନ୍‌ରେ ଏବେ ଜଗତୀକରଣ ପ୍ରକ୍ରିୟା ମୋଟାମୋଟି ସମ୍ପୂର୍ଣ୍ଣ ହେବାକୁ ବସିଛି । ଚୀନ୍ ବିଶ୍ୱବାଣିଜ୍ୟ ସଂଗଠନର ସକ୍ରିୟ ସଦସ୍ୟ ହୋଇ ବିଶ୍ୱବାଣିଜ୍ୟ ବେପାରରେ ପ୍ରମୁଖ ସ୍ଥାନ ଗ୍ରହଣ କରିଛି । ପାଶ୍ଚାତ୍ୟ ଦେଶ ହେଉ ବା ତୃତୀୟ ବିଶ୍ୱ ହେଉ, ବଡ଼ବଡ଼ ସୁପରମାର୍କେଟ ଓ ମାଲ୍ ମାନଙ୍କରେ ଚୀନ୍ ଦେଶ ତିଆରି ଜିନିଷ ଭରିଯାଇଛି । ଶସ୍ତା ଓ ସୁନ୍ଦର ଦେଖାଯାଉଥିବା ବିଭିନ୍ନ ନିତିଦିନିଆ କାମରେ ଆସୁଥିବା ବସ୍ତୁଗୁଡ଼ିକ ତିଆରିରେ ଚୀନ୍ ଯେମିତି ଅଗ୍ରଣୀ ଦେଶ ହୋଇ ସାରିଛି । ଭାରତରେ ଚୀନ୍ ତିଆରି ବିଭିନ୍ନ ଜିନିଷରେ ବନ୍ୟା ଛୁଟିଛି । ଖେଳନାରୁ ଆରମ୍ଭ କରି ଖାଦ୍ୟ ପର୍ଯ୍ୟନ୍ତ, ସାଇକେଲ୍‌ରୁ ଆରମ୍ଭ କରି ଶୀତବସ୍ତ୍ର ପର୍ଯ୍ୟନ୍ତ ସବୁକିଛି 'ମେଡ୍ ଇନ୍ ଚାଇନା' ବୋଲି ଜଣାପଡୁଛି । ଚୀନ୍ ସାରା ପୃଥିବୀର ବିଭିନ୍ନ ଉପଭୋକ୍ତାମାନଙ୍କ ସନ୍ତୁଷ୍ଟି ପାଇଁ ଯେମିତି ଠିକା ନେଇ ସାରିଛି । ଏହାର ଅର୍ଥ ହେଲା

ଯେ ଚୀନ୍‌ର ସହରାଞ୍ଚଳରେ ଏବଂ ବିଭିନ୍ନ ସ୍ୱତନ୍ତ୍ର ଆର୍ଥିକ ଜୋନ୍‌ରେ ଯେମିତି କଳକାରଖାନା, ଫ୍ୟାକ୍ଟ୍ରି ସବୁ ବସାଯାଇଛି ଓ ଏଥିରେ କାମ କରୁଥିବା ଶ୍ରମିକମାନେ ହିଁ ଗାଁ ଗହଳିରୁ ଆସୁଛନ୍ତି ନିଜର ଚାଷବାସ ଛାଡ଼ି, ଜୀବନ ଜୀବିକା ପରିତ୍ୟାଗ କରି । ଚୀନ୍‌ରେ କମ୍ୟୁନ୍ ବ୍ୟବସ୍ଥା ଭାଙ୍ଗି ଯିବା ପରେ ଓ ଗ୍ୟାଙ୍ଗଷ୍ଟର ପୁଞ୍ଜିବାଦ ବ୍ୟବସ୍ଥା ପ୍ରସାରିତ ହେବା ପରେ ଏବେ ଯେଉଁ କୋଟି କୋଟି କୃଷକ ତାଙ୍କର' ନିଜ ଜୀବନ ଜୀବିକାରୁ ବାସଚ୍ୟୁତ ହୋଇଛନ୍ତି, ତାହାର ଏକମାତ୍ର ପ୍ରଭାବ ହେଉଛି ଚୀନ୍‌ରେ ବ୍ୟାପକ ପ୍ରତିବାଦ ଓ ପ୍ରତିରୋଧ । କୃଷକ ଆନ୍ଦୋଳନ କରୁଛି ଓ ଶ୍ରମିକ ବି । ମାଓ ସେତୁଙ୍ଗଙ୍କୁ ମନେ ପକାଇ ଏବେ କେତେକ ସଂଗଠିତ ହେବା ଆରମ୍ଭ କଲେଣି । 'ସମାଜବାଦ'ର ଗୌରବମୟ ଅଧ୍ୟାୟକୁ ମନେ ପକାଇ ଲେଖା ହେଲାଣି ନୂଆ କବିତା ଓ ସୃଷ୍ଟି ହେଲାଣି ନୂତନ ବିପ୍ଲବାତ୍ମକ ସାହିତ୍ୟ, ଯାହା ବର୍ତ୍ତମାନର ଶାସନ ନିଷିଦ୍ଧ ଘୋଷଣା କରି ସାରିଛି । ଜଣେ ବିଦ୍ରୋହୀ କବି ଲେଖିଛନ୍ତି ନିମ୍ନ କବିତା:

"ଆମେ ଜନସଂଖ୍ୟା ଭିତରେ ସଂଖ୍ୟା ଗରିଷ୍ଠ,
ଆମେ କୃଷକ, ଏ ମାଟି ମାଆର ସନ୍ତାନ ।
ଆମେ ସମସ୍ତଙ୍କ ପାଇଁ ଖାଦ୍ୟ ଓ ସମ୍ପତି ଯୋଗାଡ଼ କରୁ,
ଆମେ ଏ ପୃଥିବୀର ପରିଶ୍ରମୀ ମଜଦୁର୍ ।"

(ଦି ପିଜାଣ୍ଟ କ୍ରାଇଜ୍)

ଚୀନ୍‌ରେ କୃଷକମାନଙ୍କ ଅସନ୍ତୋଷର ପାଞ୍ଚୋଟି ମୁଖ୍ୟ କାରଣ ଅଛି । ସେଗୁଡ଼ିକ ହେଲା: *କ)* ଚାଷୀଙ୍କ ଫସଲର ଉଚିତ୍ ମୂଲ୍ୟ ନମିଳିବା, *ଖ)* ଜବରଦସ୍ତ ଓ ଅନ୍ୟାୟ ଜମି ଦଖଲ କରି ଶିଳ୍ପ ପ୍ରତିଷ୍ଠା ପାଇଁ ଦେବା, *ଗ)* କୃଷକମାନଙ୍କୁ ନିମ୍ନମାନର ବିହନ, ସାର ଆଦି ଯୋଗାଇବା, *ଘ)* ଶିଳ୍ପ ଦ୍ୱାରା ଜଳ ସମ୍ପଦ ପ୍ରଦୂଷଣ, *ଙ)* କୃଷିଜାତ ଦ୍ରବ୍ୟର କ୍ରମକ୍ଷୟିଷ୍ଣୁ ଦର ଓ କୃଷିପାଇଁ ଆବଶ୍ୟକ ସାମଗ୍ରୀର କ୍ରମବର୍ଦ୍ଧିଷ୍ଣୁ ମୂଲ୍ୟ ।

ଏସବୁର ଅର୍ଥ ହେଲା ଯେ କୃଷକ ଓ କୃଷି ଚୀନ୍‌ରେ ଏବେ ଆଉ ମୁଖ୍ୟ ହୋଇ ନାହାନ୍ତି । ଚୀନ୍‌ର ବିପ୍ଲବ କୃଷକମାନଙ୍କର ବିପ୍ଲବ ଥିଲା । ମାଓ ସେତୁଙ୍ଗଙ୍କ ବିପ୍ଲବୀ ସୈନ୍ୟବାହିନୀ ଥିଲା କୃଷକମାନଙ୍କର । କୃଷିପ୍ରଧାନ ଦେଶ ହିସାବରେ ଚୀନ୍‌ର ବିପ୍ଲବ କୃଷି, ଜମି ଓ ପ୍ରାକୃତିକ ସମ୍ପଦ ଉପରେ ଆଧାରିତ ଥିଲା । କିନ୍ତୁ ଏବେ ସବୁ ବଦଳି ଯାଇଛି । କୃଷକ ଉତ୍ପାଦନ କରୁଥିବା କୃଷିଜାତ ଦ୍ରବ୍ୟକୁ ସ୍ଥାନୀୟ ନେତୃସ୍ଥାନୀୟ

ବ୍ୟକ୍ତିମାନେ କିଣୁଥିଲେ ମଧ୍ୟ ଅର୍ଥ ଆକାରରେ ନଦେଇ ବଣ୍ଡ ଆକାରରେ ଅଥବା ଆଇ:ଓ:ୟୁ: ହିସାବରେ ଦେଉଛନ୍ତି । ପରେ ନେତୃସ୍ଥାନୀୟ ବ୍ୟକ୍ତିମାନେ ଯେଉଁମାନେ ପାର୍ଟିର କର୍ମକର୍ତ୍ତା ବା ସରକାରୀ କର୍ମଚାରୀ ଅର୍ଥକୁ ହଡ଼ପ କରୁଛନ୍ତି । ପ୍ରଥମେ ଯେତେବେଳେ ଅଶୀଦଶକରେ ଏ ପ୍ରତିବାଦ ଆରମ୍ଭ ହେଲା ତାହା ପ୍ରତିଶୋଧମୂଳକ ହିସାବରେ ଗ୍ରାମ୍ୟ ସ୍ତରୀୟ ପାର୍ଟି କର୍ମକର୍ତ୍ତା, ଟିକସ୍ ଆଦାୟକାରୀ ଅଫିସର ଏବଂ ନୂଆ ହୋଇ ପ୍ରତିଷ୍ଠିତ ହୋଇଥିବା ଧନୀକ ଗୋଷ୍ଠୀ ଉପରେ ହିଂସ୍ରକ ଆକ୍ରମଣ ହୋଇଥିଲା । ନବେ ଦଶକରେ ଏବଂ ଏ ଶତାବ୍ଦୀର ଆରମ୍ଭରେ ଏ ପ୍ରତିବାଦ ବର୍ତ୍ତମାନ ବ୍ୟାପକ ହିଂସାରେ ପରିଣତ ହୋଇଛି, ଏହାର ଏକ ତାଲିକା ମଧ୍ୟ ପ୍ରସ୍ତୁତ କରାଯାଇଛି ।

୧୯୯୭ ମସିହା- ଆନ୍‌ହୁଇ( ୭୦,୦୦୦), ହୁନାନ୍, ହୁବେଇ(୧୨୦,୦୦୦), ଜିଆଙ୍ଗେସି(୧୦୦,୦୦୦) ପ୍ରଦେଶରେ କୃଷକ ଆନ୍ଦୋଳନ (ବନ୍ଧନୀ ଭିତରେ ଆନ୍ଦୋଳନକାରୀଙ୍କ ସଂଖ୍ୟା)

୧୯୯୮ ମସିହା- ହୁନାନ୍ ପ୍ରଦେଶ(୬୦,୦୦୦) କୃଷକଙ୍କ ମାତ୍ରାଧିକ ଟାକ୍‌ସ ବିରୋଧରେ ଆନ୍ଦୋଳନ

୧୯୯୯ ମସିହା- ହନାନ୍ ପ୍ରଦେଶ(୧୦୦,୦୦୦) କୃଷକଙ୍କ ଟାକ୍‌ସ ବୃଦ୍ଧି ବିରୋଧରେ ଆନ୍ଦୋଳନ

୨୦୦୨ ମସିହା- ଗୁଆଙ୍ଗିସ ପ୍ରଦେଶ (୬,୦୦୦) ଆଖୁ ଚାଷୀଙ୍କ ଆନ୍ଦୋଳନ

୨୦୦୪ ମସିହା- ସିଚୁଆନ୍ ପ୍ରଦେଶ (୧୦୦,୦୦୦) କୃଷକଙ୍କ ଚାଷ ଜମି ଅଧିଗ୍ରହଣ ପାଇଁ ଆନ୍ଦୋଳନ

ସମଗ୍ର ଚୀନ୍‌ରେ ୨୯୨୭୨୯ଟି ପ୍ରତିବାଦ । କ୍ରମାଗତ ଭାବେ ଚୀନର କୃଷକ ଯେଉଁ ଆନ୍ଦୋଳନ କରି ଆସୁଛି ସେଥିରେ ଅତି ସଂଘବଦ୍ଧଭାବେ କେତୋଟି ଦାବୀ ପ୍ରସ୍ତାବ ଅଛି । ସେଗୁଡିକ ହେଲା:

କ) କୃଷକମାନଙ୍କୁ ସେମାନଙ୍କ ଜମି ଫେରାଇ ଦିଆଯାଉ, ଖ) ଗ୍ରାମାଞ୍ଚଳର ଧନୀଙ୍କ ସମ୍ପତ୍ତି ବଣ୍ଟନ କରାଯାଉ, ଗ) କୃଷକମାନଙ୍କର ଶୋଷଣ ବନ୍ଦ ହେଉ ।

ଏହା ଛଡ଼ା ଚୀନ୍‌ରେ ଯେଉଁ ସହରୀକରଣ ଚାଲିଛି ଓ ସବୁ ନୀତିନିୟମ ଯେମିତି ଗ୍ରାମାଞ୍ଚଳର କୃଷକମାନଙ୍କୁ ସହରାଭିମୁଖୀ ହେବାରେ ବାଧ କରୁଛି ତାହାକୁ ଲକ୍ଷ୍ୟକରି

କୃଷକମାନେ ଆଜି ଖୁବ୍ ଅତିଷ୍ଠ ହୋଇ ପଡୁଛନ୍ତି । ଚୀନ୍‌ରେ ସମାଜବାଦର ସମୟକୁ ସହରଭିତିକ ସମୟ କୁହାଯାଉଛି । ଏହା ଫଳରେ ଗ୍ରାମାଞ୍ଚଳ ଓ ସହର ଭିତରେ ବ୍ୟାପକ ଖାଇ ସୃଷ୍ଟି ହୋଇଛି । କୃଷକର କୃଷକପଣିଆକୁ ହତ୍ୟା କରାଯାଉଛି । ଆଧୁନିକବାଦର ଦୁହାଇଦେଇ କୃଷକ ବିରୋଧୀ ଶକ୍ତିମାନଙ୍କୁ ପ୍ରୋତ୍ସାହନ ଦିଆଯାଇଛି । ସହରରେ ରହୁଥିବା ବାସିନ୍ଦାମାନଙ୍କୁ ସବୁ ସୁବିଧା ଯୋଗାଇ ଦିଆଯାଉଛି । କୃଷକମାନେ ଗ୍ରାମାଞ୍ଚଳରୁ ସହରକୁ ଆସିବାକୁ ନିଷେଧାଜ୍ଞା ଜାରି କରାଯାଇଛି । ଏବେ କୃଷକମାନେ ନିଜର ସହରରେ ଥିବା ଆତ୍ମୀୟମାନଙ୍କ ପାଖରେ ରହିବାକୁ ହେଲେ କର୍ତ୍ତୃପକ୍ଷଙ୍କଠାରୁ ଅନୁମତିପତ୍ର ବା ପରମିଟ୍ ଆଣିବାକୁ ହେଉଛି । ସହରବାସୀଙ୍କ ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ସବୁ ବ୍ୟବସ୍ଥା କରାଯାଇଛି ଓ ସେଠାରେ ସମସ୍ତଙ୍କ ମାସିକ ଦରମା ବଢ଼ିବାରେ ଲାଗିଛି ଅଥଚ ଗ୍ରାମାଞ୍ଚଳର କୃଷକମାନଙ୍କ ଉପରେ ବିଭିନ୍ନ ପ୍ରକାରର କର ବା ଟାକ୍‌ସ ଲଦି ଦିଆଯାଉଛି । ଚୀନ୍ ସରକାରଙ୍କ ବିଭିନ୍ନ ନୀତି କୃଷକ ବିରୋଧୀ ବୋଲି ପ୍ରମାଣିତ ହୋଇ ସାରିଛି । ଯେଉଁ କୃଷକମାନେ ସହର ଭିତରକୁ ପ୍ରବେଶ କରି ପାରୁଛନ୍ତି, ସେମାନଙ୍କୁ ଝୁଗୀଝୋପଡ଼ି ବା ବସ୍ତିବାସିନ୍ଦାଙ୍କ ଭଳି ବ୍ୟବହାର କରାଯାଉଛି ଓ ସେମାନଙ୍କ ପାଇଁ ସେମିତି ବସ୍ତି ତିଆରି କରାଯାଉଛି ସହରର ଉପକଣ୍ଠକୁ । ସେମାନଙ୍କୁ ଅଛୁଆଁ ଭଳି ଦୃଷ୍ଟିରେ ଦେଖାଯାଉଛି । ଚୀନ୍‌ରେ ସହରାଞ୍ଚଳ ଓ ଗ୍ରାମାଞ୍ଚଳ ଯେମିତି ମୁହାଁମୁହିଁ ହୋଇଛନ୍ତି ।

ଚୀନ୍‌ରେ କୃଷକମାନଙ୍କର ଆନ୍ଦୋଳନ କରିବାର ଅନ୍ୟ ଏକ କାରଣ ହେଉଛି ସରକାରଙ୍କ ବନ୍ୟା ନିୟନ୍ତ୍ରଣ କରିବାରେ ଅସମର୍ଥତା ଓ ବ୍ୟର୍ଥତା । ନଦୀବନ୍ଧ, କେନାଲ ଓ ବନ୍ୟା ନିୟନ୍ତ୍ରଣ କରିବା ପାଇଁ ନିର୍ମାଣ କରାଯାଉଥିବା ବିଭିନ୍ନ ଷ୍ଟ୍ରକଚର ସବୁ ମରାମତି ଅଭାବରୁ ଭୁଶୁଡ଼ି ପଡ଼ିଛି ଓ କୃଷକମାନେ ବାରମ୍ବାର ବନ୍ୟା ପ୍ରପୀଡିତ ହେଉଛନ୍ତି । ସବୁଠାରୁ କ୍ଷୋଭର ବିଷୟ ହେଉଛି ଯେ ୧୯୯୮ ମସିହାରେ ସରକାର ୟାଙ୍ଗ୍‌ସୀ ନଦୀର ବନ୍ୟାରୁ ସହରମାନଙ୍କୁ ରକ୍ଷା କରିବା ପାଇଁ ନଦୀବନ୍ଧରେ ଘାଇ କରିଦେଲେ । ଏଥିରେ ଗ୍ରାମାଞ୍ଚଳର ହଜାର ହଜାର ଗାଁର ଲକ୍ଷ ଲକ୍ଷ ଲୋକ ଘୋର କଷ୍ଟ ପାଇଲେ । ୪୦୦୦ ଚୀନବାସୀ ମରିଥିଲେ । ୪ହଜାର କୋଟି ଡ଼ଲାରର ଫସଲ ନଷ୍ଟ ହୋଇଥିଲା । ପ୍ରତିକ୍ରିୟା ସ୍ୱରୂପ ସେ ବର୍ଷ ପ୍ରାୟ ୧୩୦ଟି ଜନଆନ୍ଦୋଳନ ମୁଣ୍ଡ ଟେକିଥିଲା ଚୀନ୍ ଦେଶସାରା ଓ ହିଂସାର ଏକ ବାତାବରଣ ସୃଷ୍ଟି ହୋଇଥିଲା । ସରକାରୀ ଗୋଦାମ, ଅଫିସ ଘର, ଗାଡ଼ିଘୋଡ଼ା ଆଦିକୁ ଆକ୍ରମଣ କରାଯାଇଥିଲା । ଅନେକ ଅଫିସରଙ୍କ ଘରକୁ କୃଷକମାନେ ଦଖଲ କରିନେଇଥିଲେ । ଚୀନ୍‌ର ଇତିହାସରେ ଆଉ ଏକ ଅଧ୍ୟାୟ ଲେଖାଯାଇଥିଲା ।

କୃଷକମାନଙ୍କର ଅନ୍ୟ ଏକ ଆନ୍ଦୋଳନର କାରଣ ହେଲା ଯେ ସରକାର ସାରସ୍ ରୋଗ ମହାମାରୀ ଭଳି ବ୍ୟାପିଥିବା ବେଳେ ସେମାନଙ୍କ ସୁରକ୍ଷା ପାଇଁ କୌଣସି ପଦକ୍ଷେପ ନେଇ ନଥିଲେ । ହେବେଇ, ଝେଜାଙ୍ଗ୍, ହେନାନ୍ ଆଦି ପ୍ରଦେଶରେ କୃଷକମାନେ ଯଦିଓ ନିଜର ସୁରକ୍ଷା ପାଇଁ ପଦକ୍ଷେପ ନେଇଥିଲେ, ସରକାରୀ ସାହାଯ୍ୟ ଅନେକ ଡ଼େରିରେ ଆସିଥିଲା । ଗାଁଲୋକ ନିଜ ଅଞ୍ଚଳକୁ ସୁରକ୍ଷିତ ରଖିବା ପାଇଁ ପଦକ୍ଷେପ ନେଇଥିଲେ କିନ୍ତୁ ସରକାର ସହରର ରୋଗ ପ୍ରପୀଡ଼ିତ ଲୋକଙ୍କୁ ଗାଁର କଥାକୁ ଆଣିବାକୁ ଚେଷ୍ଟା କରିଥିଲେ । ଫଳସ୍ୱରୂପ, ଏକ ମୁକାବିଲା ହୋଇଥିଲା । କୃଷକମାନଙ୍କର ମନରେ ଏପରି ଏକ ଭାବନା ସୃଷ୍ଟି ହୋଇଥିଲା ଯେ ସରକାର ସହରର ସମସ୍ୟା ସମାଧାନ ପାଇଁ ଗାଁକୁ ବଳିଦେବାକୁ ଚେଷ୍ଟା କରୁଛନ୍ତି । ସହରବାସୀଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ଗ୍ରାମବାସୀଙ୍କୁ ବହୁମୂଲ୍ୟ ଦେବାକୁ ପଡୁଛି । ଗ୍ରାମବାସୀମାନେ ପଛୁଆ ଓ ସହରବାସୀମାନେ ଆଗୁଆ ଓ ଆଧୁନିକ ଏହା ଯେମିତି ସରକାର ତାଙ୍କ ନୀତି ଜରିଆରେ ପ୍ରମାଣ କରିବାକୁ ଚାହୁଁଛନ୍ତି । ସାଂସ୍କୃତିକ କ୍ଷେତ୍ରରେ ଏହା ମଧ ପ୍ରମାଣ କରିବାକୁ ଯେମିତି ସରକାର ଚେଷ୍ଟାରତ ଅଛନ୍ତି । ସବୁକ୍ଷେତ୍ରରେ ସହରବାସୀଙ୍କୁ ସରକାର ମୁଣ୍ଡରେ ବସାଇଛନ୍ତି । କୃଷକମାନଙ୍କୁ ଗୋଇଠା ମାରୁଛନ୍ତି । କମ୍ୟୁନିଷ୍ଟ ପାର୍ଟି ଏଥିପାଇଁ ଜାତୀୟ ସ୍ତରରେ କେତେଥର ମିଟିଂ କରି ସାରିଛି ଓ କୃଷକମାନଙ୍କର ବିଶ୍ୱାସର ପାତ୍ର ହେବାକୁ ଚେଷ୍ଟା କରିଛି । କିନ୍ତୁ ଏହା ସଫଳ ହୋଇନାହିଁ ।

ଏବେ ମାଓ ସେତୁଙ୍ଗଙ୍କ ଆଦର୍ଶ ଓ ନୀତିକୁ ସ୍ମରଣ କରି ଅନେକ ଚୀନ୍‌ବାସୀ ଖୁବ୍ ତତ୍‌ପର ହୋଇ ଉଠିଛନ୍ତି । ସେମାନେ ପୁଣି ମାଓଙ୍କ ପଦାଙ୍କ ଅନୁସରଣ କରି ନୂତନ ସ୍ଲୋଗାନ ଦେବାକୁ ଆରମ୍ଭ କରିଛନ୍ତି । କୃଷକର କୃଷକତ୍ୱକୁ ମାନ୍ୟତା ଦେବା ପାଇଁ ସମାଜବାଦୀ ଚିନ୍ତା ପୁଣି ମୁଣ୍ଡ ଟେକିଛି । ଜଗତୀକରଣ, ମୁକ୍ତବଜାର ଅର୍ଥନୀତି, ଗ୍ୟାଙ୍ଗଷ୍ଟର ପୁଞ୍ଜିବାଦକୁ ନିନ୍ଦାକରି ମାଓ ସେତୁଙ୍ଗ୍‌ଙ୍କ ସମୟର ସମାଜବାଦୀ ପରିବେଶ କଥା ମନେ ପକାଇବାକୁ ଆହ୍ୱାନ ଦିଆଯାଉଛି ।

ଚୀନ୍ ଇତିହାସରେ କୃଷକ ଆନ୍ଦୋଳନର ଆରମ୍ଭ ଓ ଶେଷ ଓ ପୁଣି ନବାରମ୍ଭ ଅପରିହାର୍ଯ୍ୟ ହୋଇପଡ଼ିଛି । ସମ୍ଭବତଃ ମାଓ ସେତୁଙ୍ଗ୍‌କୁ ଆମର ମହାତ୍ମାଗାନ୍ଧୀଙ୍କ ଭଳି ଲୋକେ ଭୂଲି ଗଲେଣି କିନ୍ତୁ ଜଗତୀକରଣ ପରିପ୍ରେକ୍ଷୀରେ ମାଓବାଦର ପୁନଃଜନ୍ମ ଅବଶ୍ୟମ୍ଭାବୀ ହୋଇପଡ଼ିଛି ।

ଭାରତରେ ଗାନ୍ଧୀବାଦ ଯେମିତି ମରିନାହିଁ, ଚୀନ୍‌ରେ ମାଓବାଦ ମରିନାହିଁ କି ମରିବନାହିଁ । ଜଗତୀକରଣକୁ ଭାରତରେ ବିରୋଧ କରିବାର ଏକମାତ୍ର ରାସ୍ତା ହେଉଛି

ଗାନ୍ଧୀବାଦ । ଜଗତୀକରଣକୁ ଚୀନ୍‌ରେ ବିରୋଧ କରିବାର ଏକମାତ୍ର ରାସ୍ତା ମାଓବାଦ କି ନାହିଁ ଚୀନ୍ ଦେଶର ଲୋକେ କହିବେ । ମୁଁ ମାଓବାଦରେ ବିଶ୍ୱାସ କରେ ନାହିଁ । କଠୋରପନ୍ଥୀ ମାଓବାଦୀଙ୍କୁ ମୋର ଅନେକ ପ୍ରଶ୍ନ ଅଛି । କିନ୍ତୁ ଜଗତୀକରଣ ବିରୋଧରେ ମାଓବାଦ ଯଦି ଆମୋଘଅସ୍ତ୍ର ହୁଏ ଓ ମୋତେ ଏଦୁଇଟିରୁ ଗୋଟିଏ ବାଛିବାକୁ ପଡ଼େ, ତେବେ ମୁଁ ମାଓବାଦରେ ଆସ୍ଥା ରଖିବି । ଚୀନ୍‌ରେ ମଧ୍ୟ ଗଣତନ୍ତ୍ର ପାଇଁ କେତେ କ'ଣ ଆନ୍ଦୋଳନ ଚାଲିଛି । ଟିଏନାମିନ୍ ସ୍କୋୟାର୍‌ରେ ଏବଂ ସେନାବାହୀନି ଦ୍ୱାରା ଅନେକ ଛାତ୍ରଙ୍କୁ ହତ୍ୟା କରାଯାଇଛି । କିନ୍ତୁ ଗଣତନ୍ତ୍ର ପ୍ରତିଷ୍ଠା ଏକ ଭିନ୍ନ ରାଜନୀତି । ମୁଁ କିନ୍ତୁ ଚାହିଁବି ନାହିଁ ଯେ ଚୀନ୍‌ରେ ଗଣତନ୍ତ୍ର ନାମରେ ଗ୍ୟାଙ୍ଗଷ୍ଟର ପୁଞ୍ଜିବାଦ ମଜ୍‌ଭୁତ୍ ହେଉ ।

ଚୀନ୍‌ରେ ଜନସଂଖ୍ୟା ବଢୁଛି । ବିକାଶର ଅନେକ ରାସ୍ତା ଉନ୍ମୁକ୍ତ ହେଉଛି । ଚୀନ୍‌ରେ ଲୋକେ ଅନାହାରରେ ରହିବେ, ବେକାର ଜୀବନ କାଟିବେ, ସହର ଓ ଗାଁ ଭିତରେ ଦୂରତ୍ୱ ବଢ଼ିବ ଓ କୃଷକମାନେ କୃଷିଜୀବୀ ନ ହୋଇ ସହରର ରାସ୍ତାକଡ଼ର ମଣିଷ ହେବେ ଏକଥା ଚୀନ୍‌କୁ ବୁଝୁଥିବା ଓ ସମ୍ମାନ ଦେଉଥିବା ମଣିଷମାନେ କେବେହେଲେ ଚାହିଁବେ ନାହିଁ । ମୁଁ ଆଶା କରୁଛି ଗ୍ୟାଙ୍ଗଷ୍ଟର ପୁଞ୍ଜିବାଦ ଓ ଅମାନୁଷିକ ଜଗତୀକରଣ ଦିନେ ନା ଦିନେ ଚୀନ୍‌ରୁ ହଟିଯିବ । ଚୀନା କୃଷକ ସେମାନଙ୍କର ଆତ୍ମସମ୍ମାନ ଫେରିପାଇବେ । ❑

# ଜଗତୀକରଣ, ଓଡ଼ିଶା ଓ ପ୍ରଫେସର ଭଗବତ ପ୍ରସାଦ ରଥ

ଜଗତୀକରଣ, ଓଡ଼ିଶାର ବିକାଶ ଓ ତହିଁରେ ଆମ ସମସ୍ତଙ୍କ ସ୍ଥାନ ଏବେ ନିରୂପଣ ହେବାର ସମୟ ଆସିଛି । ପ୍ରାୟତଃ ସମସ୍ତ ମଧ୍ୟବିତ୍ତ ଓ ଉଚ୍ଚବର୍ଗ ନତମସ୍ତକ ହୋଇ ଯେ ଜଗତୀକରଣକୁ ସ୍ୱାଗତ କରୁଛନ୍ତି ତାହା ସ୍ପଷ୍ଟ ଅନୁଭବ କରି ହେଉଛି । ଏ ଭିତରେ ମୁଖ୍ୟ ଭୂମିକା ନେଇଛନ୍ତି ମୁଖ୍ୟମନ୍ତ୍ରୀ, ଭୂତପୂର୍ବ ମୁଖ୍ୟମନ୍ତ୍ରୀ, ଅମଲା ଓ ଭୂତପୂର୍ବ ଅମଲା, ରାଜନୈତିକ ନେତା ଓ ସାମାଜିକ ଅର୍ଥନୀତିଜ୍ଞ ଓ ପେଶାଦାର ଗୋଷ୍ଠୀ, ସାହିତ୍ୟିକ ଓ ବୁଦ୍ଧିଜୀବୀ । କେତେକ ସ୍ୱେଚ୍ଛାସେବୀ ସଂଗଠନ ମଧ୍ୟ ଲାଭ ଉଠାଇବାରେ ବ୍ୟସ୍ତ ଅଛନ୍ତି । ଓଡ଼ିଶାର ପ୍ରାକୃତିକ ସମ୍ପଦ, ମାନ ଓ ସ୍ୱାଭିମାନ, ଐତିହ୍ୟ ଓ ଏକତା ଏମାନେ ନିଜର ଓ ନିଜ ପରିବାରର ସମୃଦ୍ଧିକରଣ ପାଇଁ ବିକ୍ରୀ କରିଦେବାକୁ ତିଳେମାତ୍ର ପଛଘୁଞ୍ଚା ଦେଉନାହାନ୍ତି । ବହୁରାଷ୍ଟ୍ରୀୟ କମ୍ପାନୀ ଓ ସେମାନଙ୍କର ଏଜେଣ୍ଟମାନଙ୍କର ଏମାନେ ହାତବାରସୀ ହେବାକୁ ପ୍ରତିଯୋଗୀତା କରୁଛନ୍ତି । ସାଧାରଣ ମଣିଷମାନଙ୍କୁ ଏମାନେ ଗୋଲାମୀ ମୁହଁକୁ ଠେଲି ଦେଉଛନ୍ତି । ଆଦିବାସୀମାନଙ୍କର ଶବ ଉପରେ ଏମାନେ ନିଜକୁ ପ୍ରତିଷ୍ଠା କରିବାକୁ ଚାହୁଁଛନ୍ତି । ବାସଚ୍ୟୁତ ଓ ସ୍ଥାନଚ୍ୟୁତମାନଙ୍କ ପାଇଁ ମୃତ୍ୟୁଦଣ୍ଡର ପରୱାନା ଜାରି କରୁଛନ୍ତି । କହିବାର ତାତ୍ପର୍ଯ୍ୟ ହେଉଛି ଯେ ଏକ ପରାକ୍ରମଶାଳୀ ଗୋଷ୍ଠୀ ଏବେ ଜଗତୀକରଣକୁ ଅସ୍ତ୍ରକରି ନିଜର ସ୍ୱାର୍ଥ ଓ ଲାଭ ହାସଲ କରିବାକୁ ତତ୍ପର ହୋଇଉଠିଛନ୍ତି । ସମସାମୟିକ ଇତିହାସରେ ଏ ଗୋଷ୍ଠୀ କେଉଁଭଳି ସ୍ଥାନପାଇବ ଓ ସାଧୁ ହେବ କି ସଇତାନ ହେବ ତାହା ଏବେ ଦେଖିବାକୁ ଅପେକ୍ଷା କରିବାର ଅଛି ।

ଅନ୍ୟପକ୍ଷରେ ରାଷ୍ଟ୍ର ଓ ବଜାରକୁ ବିରୋଧ କରୁଥିବା ଏବଂ ଜଗତୀକରଣର ଅସଲରୂପକୁ ଜନତାର ଅଦାଲତରେ ଉନ୍ମୋଚିତ କରୁଥିବା ବ୍ୟକ୍ତିଙ୍କ ସଂଖ୍ୟା ଓଡ଼ିଶାରେ କମିବାରେ ଲାଗିଛି । ଯେଉଁ କେତେଜଣ ଉତ୍ସର୍ଗୀକୃତ ଓ ନିଃସ୍ୱାର୍ଥପର ଭାବେ ଜଗତୀକରଣ ବିରୁଦ୍ଧରେ ଜନମତ ସୃଷ୍ଟି କରୁଛନ୍ତି, ଜନଆନ୍ଦୋଳନର ନେତୃତ୍ୱ ନେଇଛନ୍ତି, ଜନସାଧାରଣଙ୍କୁ ଆନ୍ଦୋଳିତ କରୁଛନ୍ତି । ସେମାନଙ୍କୁ ଓଡ଼ିଶାବାସୀ ଉଚିତ୍ ସମ୍ମାନ ଦେବାକୁ ଆଗ୍ରହ ପ୍ରକାଶ କରି ନାହାଁନ୍ତି । ଅବଶ୍ୟ ସରକାରଙ୍କ ଗୁପ୍ତଚର ବିଭାଗ ଓ ଶାସନକଳ

ଏମାନଙ୍କ ଉପରେ ତୀକ୍ଷ୍ଣ ନଜର ରଖିଛି । ଜଗତୀକରଣର ସମର୍ଥକ ଗୋଷ୍ଠୀ ଓ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଏଜେଣ୍ଟମାନେ ଏ ବ୍ୟକ୍ତିମାନଙ୍କର ଚରିତ୍ର ସଂହାର ପାଇଁ ସମସ୍ତ ଉଦ୍ୟମ କରୁଛନ୍ତି । ଜଗତୀକରଣ ରାସ୍ତାରେ କଣ୍ଟାବାଡ଼ ସୃଷ୍ଟି କରୁଥିବା ଏଇ କେତେଜଣ ମଣିଷଙ୍କୁ ସବୁଦିନ ପାଇଁ ହଟାଇ ଦେବାକୁ ମଧ ଉଦ୍ୟମ ହୋଇସାରିଛି ବୋଲି ଅସମର୍ଥିତ ସମ୍ବାଦ ବେଳେବେଳେ ପ୍ରକାଶିତ ହୋଇଛି । ଯେତେବେଳେ ରାଷ୍ଟ୍ର ଜଗତୀକରଣ ଜାଲରେ ପଡିଯାଏ, ନାଗରିକମାନଙ୍କ ସ୍ୱାଧୀନତା ଓ ସାର୍ବଭୌମତ୍ୱ ଯେ ସମ୍ପୂର୍ଣ୍ଣ ଧ୍ୱଂସ ପାଏ, ତାହାର ଅନେକ ଉଦାହରଣ ଅଛି । ମାନବାଧିକାର ଉଲଂଘନ କ୍ଷେତ୍ରରେ ଓଡ଼ିଶା ଅନେକ ଆଗୁଆ ଅଛି । ନାଗରିକମାନଙ୍କୁ ଗୁଳିକରି ହତ୍ୟାକରିବା ଓ ସେମାନଙ୍କର ଜୀବନଜୀବିକା ବିପନ୍ନ କରିବା କ୍ଷେତ୍ରରେ ଓଡ଼ିଶା ଏକ ଭୟଙ୍କର ଇତିହାସ ସୃଷ୍ଟି କରି ସାରିଛି ।

ଉଦାରୀକରଣ, ଘରୋଇକରଣ, ଜଗତୀକରଣ, ବିଶ୍ୱବାଣିଜ୍ୟ ସଂଗଠନ, ନୂତନ ଅର୍ଥନୈତିକ ବ୍ୟବସ୍ଥା ଓ ଢ଼ାଞ୍ଚାଗତ ପୁନର୍ବିନ୍ୟାସ ଆଦି ପ୍ରକ୍ରିୟାକୁ ଓଡ଼ିଶାରେ ଯଦି କିଏ ସ୍ପଷ୍ଟ ବୁଝିଥାଏ ଓ କାୟ,ମନ ଓ ବାକ୍ୟରେ ବିରୋଧ କରୁଥାଏ ଏବଂ ଯଦି ଦଶଜଣଙ୍କ ତାଲିକା ପ୍ରସ୍ତୁତ କରାଯାଏ ତେବେ ସେଥିରେ ପ୍ରମୁଖ ସ୍ଥାନ ଗ୍ରହଣ କରିବେ ପ୍ରଫେସର ଭଗବତ ପ୍ରସାଦ ରଥ । ଓଡ଼ିଶାରେ ବୌଦ୍ଧିକ କ୍ଷେତ୍ରରେ ମୌଳିକ ଚିନ୍ତନ ଥିବା ବ୍ୟକ୍ତିଙ୍କର ଏକ ତାଲିକାରେ ପ୍ରଫେସର ରଥଙ୍କୁ ନିଶ୍ଚିତ ସ୍ଥାନ ଦେବି । ୧୯୮୦ ମସିହାର ଏପ୍ରିଲ୍ ମାସ କଥା । ସର୍ବେକ୍ଷଣ ପାଇଁ ମୁଁ ପଶ୍ଚିମ ଓଡ଼ିଶା ଗସ୍ତକରି ଦକ୍ଷିଣ ଓଡ଼ିଶାକୁ ମୁନିଗୁଡ଼ା ଦେଇ ପ୍ରବେଶ କରୁଥାଏ । ସେଦିନ ସନ୍ଧ୍ୟାରେ କେତେଜଣ ବନ୍ଧୁ କହିଲେ ଯେ ମୁନିଗୁଡ଼ା ସ୍କୁଲର ବାର୍ଷିକ ଉତ୍ସବରେ ମୋତେ ଭାଗନେବାକୁ । ବଭିନ୍ନ ବକ୍ତା ସବୁ କୁଆଡ଼େ ଆସିଛନ୍ତି ଓ ଦକ୍ଷିଣ ଓଡ଼ିଶା, ବିଶେଷକରି କୋରାପୁଟର ଆଦିବାସୀଙ୍କ ଉପରେ ସାରଗର୍ଭକ ଭାଷଣ ଦିଆଯିବ । ମୁଁ ଶୁଣିଲେ ଅନେକ ଉପାଦେୟ ତଥ୍ୟ ପାଇ ପାରିବି । ସେ ସନ୍ଧ୍ୟାର କଥା ମୋର ମନେ ଅଛି । ପ୍ରଫେସର ରଥ ମୁଖ୍ୟବକ୍ତା ହୋଇ ଆସିଥାଆନ୍ତି । ସାହିତ୍ୟ, ସଂସ୍କୃତି ଓ ରାଜନୀତିର ଏକ ଚିତ୍ର କୋରାପୁଟ ପରିପ୍ରେକ୍ଷୀରେ ସେ ଦେଉଥାଆନ୍ତି । ବିଭିନ୍ନ ପ୍ରସିଦ୍ଧ ବହିରୁ ଉଦ୍ଧାର କରିଥାଆନ୍ତି ବିଶ୍ୱବିଖ୍ୟାତ ଲେଖକ ଓ ଦାର୍ଶନିକଙ୍କ ବାଣୀ ଓ ବକ୍ତବ୍ୟସବୁକୁ । ମୋ ଭଳି ଜଣେ ବ୍ୟକ୍ତି ଯିଏ ଜ୍ଞାନଗାରିମା ପ୍ରତି ଉଦାସୀନ ସେଦିନ କାହିଁକି ଏ ମଣିଷଟି ପ୍ରତି ଖୁବ୍ ଆକର୍ଷିତ ହୋଇଥିଲା !

ରାୟଗଡ଼ା କଲେଜର ଜଣେ ଅଧ୍ୟାପକ ୧୯୮୦ ମସିହାରେ ଗାନ୍ଧୀ ଓ ମାର୍କସ, ସାର୍ତ୍ତ ଓ କାମ୍ୟୁ, ଦର୍ଶନ ଓ ବିଜ୍ଞାନର ବିଭିନ୍ନ ଦିଗକୁ ସ୍କୁଲ ପିଲାଙ୍କୁ କହି ପ୍ରଭାବିତ କରିବ ମୋତେ ଅବାକ୍ ଲାଗିଲା । ପରେ ପରିଚୟ ଆଦାନପ୍ରଦାନ ପରେ ମୁଁ ତାଙ୍କ ସହ ମୋର କୋରାପୁଟ ଆସିବାର ଉଦ୍ଦେଶ୍ୟ ଓ ଏକ ପ୍ରକଳ୍ପ ଆରମ୍ଭର ପରିକଳ୍ପନାର ସୂଚନା ଦେଇଥିଲି ଓ ସାହାଯ୍ୟକାମନା କରିଥିଲି । ସେଦିନଠାରୁ ତାଙ୍କ ସହ ସମ୍ପର୍କ, ବନ୍ଧୁତ୍ୱ ଓ ଭାବବିନିମୟ ଆଜି ପର୍ଯ୍ୟନ୍ତ ଲାଗିରହିଛି । ଜଗତୀକରଣ ସମ୍ପର୍କରେ ତାଙ୍କର ପାଠାଗାରରୁ ମିଳିଛି ଅନେକ ଉପାଦେୟ ପୁସ୍ତକ ଓ ପ୍ରବନ୍ଧ । ତାଙ୍କ ସହ ତର୍କବିତର୍କରୁ ମିଳିଛି ଏକ ଭିନ୍ନ ବୌଦ୍ଧିକତାର ସନ୍ଧାନ ।

ପ୍ରଫେସର ଭଗବତ ପ୍ରସାଦ ରଥ ହେଉଛନ୍ତି ଇଂରାଜୀ ସାହିତ୍ୟର ଛାତ୍ର । କିନ୍ତୁ ଅବତୀର୍ଣ୍ଣ ହୁଅନ୍ତି ରାଜନୀତିରେ । ୧୯୬୮ ମସିହାରେ ନିର୍ବାଚନରେ ଲଢ଼ି ହୁଅନ୍ତି ଚେୟାରମ୍ୟାନ, କୋଦଳା ପଞ୍ଚାୟତସମିତିର । ଜନସେବା ପାଇଁ ନିଜକୁ ଉତ୍ସର୍ଗ କରନ୍ତି । କିନ୍ତୁ କଳୁଷିତ ରାଜନୀତିରେ ଅଣବିଶ୍ୱାସୀ ହୋଇ ଆସନ୍ତି ୧୯୭୦ ମସିହାରେ ଅଧ୍ୟାପନାକୁ ଓ ରାୟଗଡ଼ା କଲେଜରେ ଇଂରାଜୀ ପଢ଼ାଇ ଛାତ୍ରମାନଙ୍କ ଦ୍ୱାରା ଆଦୃତ ହୁଅନ୍ତି । ପ୍ରଭାବିତ ହୁଅନ୍ତି ଛାତ୍ର ଅଧ୍ୟାପକ, ନାଗରିକ ଓ ପେଶାଦର ବ୍ୟକ୍ତିମାନେ । କିନ୍ତୁ ଅଧ୍ୟାପନା ଛଡ଼ା ସେ ସାଧାରଣ ଲୋକଙ୍କ ସ୍ୱାର୍ଥରକ୍ଷା ପାଇଁ ସଂଘର୍ଷ ଆରମ୍ଭ କରନ୍ତି । ରାୟଗଡ଼ାରେ ସର୍ବସାଧାରଣଙ୍କ ଆଗରେ ଶାସକବର୍ଗଙ୍କ ଦୁର୍ନୀତି ଓ ପାପାଚାର ଓ ରାଜନୈତିକ ନେତାମାନଙ୍କର ଶୋଷଣ ଓ ଅତ୍ୟାଚାର ବିରୁଦ୍ଧରେ ସେ ସର୍ବସାଧାରଣରେ ଦିଅନ୍ତି ଭାଷଣ ଓ ଉପସ୍ଥାପନା କରନ୍ତି ସମାଲୋଚନା । ଏଥିରେ କ୍ଷୁବ୍‌ଧ ହୁଅନ୍ତି ମନ୍ତ୍ରୀ ଓ ଅମଲାମାନେ । ତାଙ୍କୁ ବଦଳି କରନ୍ତି ରାୟଗଡ଼ାରୁ ରାଇରଙ୍ଗପୁର ଏବଂ ସେଠାରୁ ଗଞ୍ଜାମ କଲେଜକୁ । ସେଠାରେ ମଧ୍ୟ ତାଙ୍କର ସର୍ବସାଧାରଣଙ୍କ ସ୍ୱାର୍ଥ ପାଇଁ ହୁଏ ବିଭିନ୍ନ ପ୍ରକାରର ଲଢ଼େଇ । ଗଞ୍ଜାମରେ ଥିବାବେଳେ ଜୟଶ୍ରୀ କେମିକାଲର ପ୍ରଦୂଷଣ ବିରୁଦ୍ଧରେ ୧୯୮୪ ମସିହାଠାରୁ ଚାଲିଥିବା ଜନଆନ୍ଦୋଳନକୁ ପ୍ରତ୍ୟକ୍ଷ ସମର୍ଥନ ସେ ଦିଅନ୍ତି । ସେ ଦିନଠାରୁ ପ୍ରତ୍ୟେକ ଜନଆନ୍ଦୋଳନ ସହ ସେ ସମ୍ପୃକ୍ତ ହୋଇ ଆସୁଛନ୍ତି ।

ଗୋଟିଏ ବିଦ୍ରୋହ ଓ ବିପ୍ଳବର ପ୍ରତୀକ ରୂପେ ସେ ସୃଷ୍ଟି କରିଛନ୍ତି ସାହିତ୍ୟ । ସେ ଲେଖି ଚାଲିଛନ୍ତି ଓ ସୃଷ୍ଟି ହୋଇଛି 'ମୋ କବିତା ଛୁଅଁ ନାହିଁ' ଓ 'ମୋ ଦେଶ ନୁହେଁ ଭୁବନେଶ୍ୱର' ଜଣେ କବିର ଉଚ୍ଛ୍ୱାସ ଏହା । ଅନ୍ତରଙ୍ଗ ବିରୋଧାଭାସ ମଧ୍ୟ ବିଭିନ୍ନ

ପତ୍ରପତ୍ରିକାରେ ସେ ପ୍ରକାଶ କରିଛନ୍ତି ପ୍ରବନ୍ଧ । ବିଭିନ୍ନ ଆଲୋଚନା ଚକ୍ରରେ ସେ ଦେଇଛନ୍ତି ଓଜସ୍ୱିନୀ ଭାଷଣ । କବି ଓ ଲେଖକଙ୍କ ଭିତରେ ସେ ନିଜକୁ ପ୍ରତିଷ୍ଠା କରିଛନ୍ତି ସ୍ୱତନ୍ତ୍ର ଭାବେ । 'ସର୍ବୋଦୟ' ପତ୍ରିକାର ସମ୍ପାଦକ ଭାବେ ସେ ଲେଖିଛନ୍ତି ଅତି ଗଭୀର ଓ ବେଶ୍ଳେଷଣାତ୍ମକ ସମ୍ପାଦକୀୟମାନ । ଓଡ଼ିଶା ଭିତରେ ଓ ବାହାରେ ତାଙ୍କର ଚିନ୍ତା ଓ ଚେତନା ସମାହିତ ପ୍ରବନ୍ଧ ଆଦୃତ ହୋଇଛି ଓ ଆଲୋଚନା ହୋଇଛି । ମାର୍କସ୍‌ବାଦ ଓ ଗାନ୍ଧୀବାଦ, ଧର୍ମ ଓ ଦର୍ଶନ, ସଂସ୍କୃତି ଓ ସମାଜର ବିଭିନ୍ନ ଗତିଶୀଳତାକୁ ସେ ଆଧାର କରି ଏ ପୃଥିବୀରେ ଜୀବନ ତତ୍ତ୍ୱର ଏକ ନୂତନ ସଂଜ୍ଞା ଦେବାକୁ ସେ ଯେମିତି ଅଣ୍ଟା ଭିଡ଼ିଛନ୍ତି । ନିଜର ସ୍ୱଚ୍ଛ ଆୟରୁ ସେ ସୃଷ୍ଟି କରିଛନ୍ତି ଏକ ବିଶାଳ ପାଠାଗାର । ବାସ୍ତବ ପୃଥିବୀର ଆହ୍ୱାନ ଓ ଜ୍ଞାନବିଜ୍ଞାନର ଅପରିମିତ ବ୍ୟାପ୍ତି ଭିତରେ ସେ ଏକ ସମନ୍ୱୟ ପ୍ରତିଷ୍ଠା କରିଛନ୍ତି । ସେଇଥିପାଇଁ ସେ ଜଣେ ସ୍ୱତନ୍ତ୍ର ମଣିଷ ହିସାବରେ ଆମ ସମସ୍ତଙ୍କଠାରେ ସମ୍ମାନର ବିଶାଳ ସ୍ତମ୍ଭ ହୋଇ ସାରିଛନ୍ତି ।

ପ୍ରଫେସର ଭଗବତ ପ୍ରସାଦ ରଥ ଖାଲି ସାହିତ୍ୟ, ଅଧ୍ୟାପନା ଓ ବୌଦ୍ଧିକ ଅନ୍ୱେଷଣ ଭିତରେ ନିଜକୁ ସିମୀତ କରିନାହାନ୍ତି । ସାମାଜିକ ଆନ୍ଦୋଳନ ଓ ରାଜନୈତିକ ବିଶ୍ଳେଷଣ ତାଙ୍କ ପାଇଁ ସବୁବେଳେ କର୍ମଚିନ୍ତନର ଏକ ପରିପ୍ରକାଶ ହୋଇଛି । ବିଶିଷ୍ଟ ବିପ୍ଳବୀ ଓ ସମାଜସେବୀ ସ୍ୱର୍ଗତ ପାନ୍ନାଲାଲ ଦାସଗୁପ୍ତଙ୍କ ସଂସ୍ପର୍ଶରେ ଆସି ଆଦିବାସୀ ବିକାଶ ପ୍ରତି ଆକର୍ଷିତ ହୋଇଛନ୍ତି ଓ ନିଜକୁ ନିୟୋଜିତ କରିଛନ୍ତି ମଧ୍ୟ । ନିଜକୁ ସାମିଲ କରିଛନ୍ତି ବିଭିନ୍ନ ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ସହ । ଗରୀବ ମଣିଷ, ଚାଷୀ ମୂଲିଆ, ଆଦିବାସୀ ଓ ଦଳିତଙ୍କ ସମସ୍ୟା କପରି ଆନ୍ଦୋଳନ ମାଧ୍ୟମରେ ଓ ଗାନ୍ଧୀଙ୍କ ମାର୍ଗରେ ସମାଧାନ ହୋଇ ପାରିବ ତାହା ସେ ବାରମ୍ବାର ଚେଷ୍ଟା କରିଛନ୍ତି । ଅଶୀଦଶକର ଶେଷ ଆଡ଼କୁ ଯେତେବେଳେ ଆମଦେଶରେ ନୂତନ ଆର୍ଥିକ ନୀତିଲାଗୁ ହେଲା ଓ ଢ଼ାଞ୍ଚାଗତ ପରିବର୍ତ୍ତନରେ ଭିତ୍ତିଭୂମି ପ୍ରତିଷ୍ଠା କରାଗଲା, ସେତେବେଳେ ଓଡ଼ିଶାରେ ଯେଉଁକିଛି ବିରୋଧାଭାସ ସୃଷ୍ଟି ହୋଇଥିଲା ସେଥିରେ ସ୍ୱତନ୍ତ୍ର ନେତୃତ୍ୱ ଦେଇଥିଲେ ପ୍ରଫେସର ରଥ । ଓଡ଼ିଶାର ଅନ୍ୟ ଯେଉଁମାନେ ଏ ବିରୋଧାଭାସରେ ମୁଖ୍ୟ ଭୂମିକା ନେଇଥିଲେ ସେମାନେ ହେଲେ ସ୍ୱର୍ଗତ ଶ୍ରୀ ମନମୋହନ ଚୌଧୁରୀ, ସ୍ୱର୍ଗତ ଶ୍ରୀ କିଶନ ପଟ୍ଟନାୟକ, ଶ୍ରୀ ରବିରାୟ । ମୋର ମନେ ଅଛି ମେଗାଫୋନ୍‌ର ସାହାଯ୍ୟ ନେଇ ରାସ୍ତାକଡ଼ରେ ଭାଷଣ ଦେବା, ଛୋଟ ସହରଠାରୁ ଆରମ୍ଭ କରି ଗ୍ରାମାଞ୍ଚଳକୁ ଯାଇ

ସାଧାରଣ ଜନତା ଗହଣରେ ନୂତନ ଅର୍ଥନୀତି ଓ ଆରମ୍ଭ ହୋଇଥିବା ଉଦାରୀକରଣ ଏବଂ ସରକାରଙ୍କ ଭୂମିକାକୁ ବୁଝାଇବାରେ ପ୍ରଫେସର ରଥ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଉଦ୍ଦେଶ୍ୟ ଓ ଲକ୍ଷ୍ୟ ଗୋଟିଏ । ସାଧାରଣ ନିରୀହ ଦେଶବାସୀ ଉଦାରୀକରଣ, ଘରୋଇକରଣ ଓ ଜଗତୀକରଣର ଜାଲରେ ଯେପରି ନପଡ଼ନ୍ତୁ । ଛାତ୍ରମାନଙ୍କୁ ଓ ଯୁବଗୋଷ୍ଠୀଙ୍କୁ ସେ ବାରମ୍ବାର ଆହ୍ୱାନ ଦେଇ କହୁଥିଲେ ସଂଗ୍ରାମୀ ହେବା ପାଇଁ । ସ୍ୱାବଲମ୍ବନର ବାଟ ସେ ପ୍ରଦର୍ଶନ କରୁଥିଲେ । ରାୟଗଡ଼ାରେ ତାଙ୍କ ବାଡ଼ିବଗିଚାର ସ୍ୱଳ୍ପ ଆୟତନ ଭିତରେ ସେ ଓ ତାଙ୍କର ସ୍ତ୍ରୀ ବର୍ଷକ ପାଇଁ ପ୍ରାୟ ଖାଦ୍ୟ ସାମଗ୍ରୀ ଉତ୍ପାଦନ କରିବାକୁ ଦିନରାତି ପରିଶ୍ରମ କରୁଥିଲେ । ଗାନ୍ଧୀବାଦୀ ହିସାବରେ ସେ ଏହା ପ୍ରମାଣ କରିବାକୁ ଚାହୁଁଥିଲେ ଓ ଅନେକ ମାତ୍ରାରେ ସଫଳ ହୋଇଥିଲେ । ପାଠାଗାରରେ ବହି ଓ ପତ୍ରପତ୍ରିକା ଭିତରେ ନିଜକୁ ଆବଦ୍ଧ ନକରି ବା କେବଳ ଭାଷଣବାଜିରେ ନିଜକୁ ନିୟୋଜିତ ନକରି ସେ ଏକ ନୂତନ ଜୀବନ ପଥ ଯେମିତି ଯୁବଗୋଷ୍ଠୀଙ୍କ ପାଇଁ ତିଆରି କରୁଥିଲେ । ଏହି ସଚ୍ଚୋଟ ବୌଦ୍ଧିକତା ହିଁ ନିଶ୍ଚିତଭାବେ ହିଁ ପ୍ରଫେସର ରଥଙ୍କୁ ପରିଚିତ କରାଇଥିଲା ଏ ଦେଶର ଅଗଣିତ ଜନଆନ୍ଦୋଳନ ସହ । ମେଧାପାଟ୍‌କର୍ ହୁଅନ୍ତୁ ବା ଅରୁନ୍ଧତୀ ରାୟ ହୁଅନ୍ତୁ, ବନ୍ଦନା ଶିବା ହୁଅନ୍ତୁ ବା କିଶନ ପଟ୍ଟନାୟକ ହୁଅନ୍ତୁ, ଯିଏ ବି ରାୟଗଡ଼ା ଆସିବେ, ପ୍ରଫେସର ରଥଙ୍କ ସହ ସମୟ କାଟିବେ ଓ ଏକା ମଞ୍ଚରେ ମଞ୍ଚାସୀନ ହେବେ । କାଶୀପୁର ବା ଲାଞ୍ଜିଗଡ଼ର ଜନଆନ୍ଦୋଳନକୁ ଅକୁଣ୍ଠିତ ସାହାଯ୍ୟ କରିବା ଯେମିତି ତାଙ୍କର ଧର୍ମ ହୋଇଯାଇଛି । ଏଥିପାଇଁ ସେ ଅନେକ ଧମକଚମକର ସାମ୍ନା କରିଛନ୍ତି । ସରକାର ତାଙ୍କ ଉପରେ ଅନ୍ୟାୟ ଭାବେ କେଶ୍ କରିଛି ଓ ସେ ଅଦାଲତରେ ଛିଡ଼ା ହୋଇ ଘୋଷଣା କରିଛନ୍ତି ଯେ ମୋତେ ଜେଲକୁ ପଠାଅ । ସେ ଡ଼ରିଯାଇନାହାନ୍ତି । ସରକାର ଓ କୋର୍ଟ ତାଙ୍କୁ ଡ଼ରୁଛି ବୋଲି ସ୍ପଷ୍ଟ ଜଣାପଡ଼ିଛି । ଜଣେ ସାହସୀ ବୀରଭଳି ସେ ଯେମିତି ଆଜି ଛିଡ଼ା ହୋଇଛନ୍ତି ଜଗତୀକରଣ ସହ ଲଢ଼ିବାକୁ । ବୟସ ହୋଇଯାଇଛି କିନ୍ତୁ ଆତ୍ମବିଶ୍ୱାସ କମି ନାହିଁ ।

'ସର୍ବୋଦୟ' ପତ୍ରିକାର ସମ୍ପାଦକୀୟ ଓ ଅନ୍ୟ ସନ୍ଦର୍ଭରେ ସେ ଯାହାକିଛି ଉପସ୍ଥାପନା କରିଛନ୍ତି ତାହାର କିଛି ଅଂଶ ପାଠକଙ୍କ ସାମ୍ନାରେ ଉପସ୍ଥାପନା କରିବା ମୁଁ ଉଚିତ୍ ମନେ କରୁଛି ।

'ବିଂଶ ଶତାବ୍ଦୀ ବର୍ତ୍ତମାନ ଏକ ସନ୍ଧିକ୍ଷଣରେ ଉପନୀତ । ସାମ୍ୟବାଦୀ ଶିବିରରେ ପ୍ରଚଣ୍ଡ ନିରାଶା ଓ କ୍ଷୋଭ । ପୁଞ୍ଜିବାଦୀ ଶିବିରରେ ଉଲ୍ଲାସର ଚିତ୍କାର ।

ସୋଭିଏତ୍ ୟୁନିଅନ ଭାଙ୍ଗି ଯାଇଛି । ଲାଲ ପତାକା ଆଜି ଭୂମିରେ ଲୋଟୁଛି । ଚୀନ୍‌ରେ ମାଓଙ୍କ ସିଂହାସନରେ ଆସୀନ ବଜାର ଅର୍ଥନୀତି । ଦୃଢ଼ ସମର୍ଥକ ଦେଖି ଏକଦା ଆମେରିକାକୁ ନାକରେ ଦଉଡି ଲଗାଇ ଘୋଷାଡିଥିବା ଭିଏଟ୍‌ନାମ୍ ଆଜି ପୁଞ୍ଜିବାଦର ଦ୍ୱାର ଦେଶରେ 'ଭିକ୍ଷାଂ ଦେହି' ବେଶରେ । କେବଳ କ୍ୟୁବାକୁ ଛାଡିଦେଲେ ଅନ୍ୟ ସମସ୍ତ କମ୍ୟୁନିଷ୍ଟ ଦେଶ ଆମେରିକାର ନତଜାନୁ ।' (ସର୍ବୋଦୟ, ୨ଅକ୍ଟୋବର୧୯୯୨)

'ଏକବିଂଶ ଶତାବ୍ଦୀରେ ମାନବ ସଭ୍ୟତା ବିକଳ୍ପ ସଭ୍ୟତାର ନୂଆ ଦିଗନ୍ତକୁ ସ୍ପର୍ଶ କରିପାରିବ । ଏ ତିନୋଟି ଉତ୍କଳ ସଂସ୍କୃତିର (ଅହିଂସା, ସତ୍ୟ, ଅସ୍ତେୟ) ଉପାଦାନଗୁଡ଼ିକ ଆହରଣ କରି । ବ୍ୟକ୍ତିଗତ ସ୍ୱାଧୀନତା ଆମର କାମ୍ୟ ଓ ସ୍ୱାଧୀନତା ଭୋଗ କରୁଥିବା ବ୍ୟକ୍ତି ପାଇଁ ଆଦର୍ଶପୁରୁଷ ଗୌତମବୁଦ୍ଧ, ଯୋଗ ଓ କରୁଣା ମିଶ୍ରିତ ବୌଦ୍ଧୀୟ ବ୍ୟକ୍ତିତ୍ୱକୁ ଏ ସମାଜ ଦେବ ସର୍ବୋଚ୍ଚ ସମ୍ମାନ୍ । ସମାଜକୁ ନିୟନ୍ତିତ କରିବ ଗାନ୍ଧୀୟ ପ୍ରାକ୍‌ବୈଦିକ ଆଦର୍ଶ ଓ ମୂଲ୍ୟବୋଧ ଗୁଡିକ । ରାଷ୍ଟ୍ର କିମ୍ୱା ସମାଜ ଯେତେବେଳେ ଅନ୍ୟାୟକୁ ପ୍ରତିରୋଧ କରିବ, ସେ ପ୍ରୟୋଗ କରିବ ଗାନ୍ଧୀଙ୍କ ସତ୍ୟାଗ୍ରହ ଅସ୍ତ୍ରକୁ ।' (ସର୍ବୋଦୟ ୧୫ଜୁଲାଇ ୨୦୦୫)

'ଆମେରିକା ନେତୃତ୍ୱରେ ତୃତୀୟ ବିଶ୍ୱର ପ୍ରାକୃତିକ ସମ୍ପଦ ବହୁରାଷ୍ଟ୍ରୀୟମାନଙ୍କ ଜରିଆରେ ଲୁଣ୍ଠନ କରିବା ପାଇଁ ଧନୀଦେଶମାନେ କିଭଳି ସଫଳ ଚକ୍ରାନ୍ତ ଚଳାଇଛନ୍ତି ତାହା ଆପଣ ଚମସ୍କି, ମୁଶାନ ଜର୍ଜ କିମ୍ୱା ଡ଼େଭିଡ୍ କର୍ଟନଙ୍କ ଲେଖା ପଢ଼ିଲେ ଜାଣିପାରିବେ । ଲକ୍ଷ୍ମୀପୁର, କାଶୀପୁର, ଲାଞ୍ଜିଗଡ଼ ଅଞ୍ଚଳର ହଜାର ହଜାର ଆଦିବାସୀ ଦଳିତ ନିଜର ଜୀବନ ଜୀବିକା ପାଇଁ ସଂଗ୍ରାମ ଚଳାଇଛନ୍ତି । ଚିଲିକା ଆନ୍ଦୋଳନ, ବାଲିଆପାଲ ଆନ୍ଦୋଳନ, ଗନ୍ଧମାର୍ଦ୍ଦନ ଆନ୍ଦୋଳନ, ଗୋପାଳପୁର ଆନ୍ଦୋଳନ, ସବୁଠି ଲୋକମାନଙ୍କ ଭିତରେ ନେତାମାନେ ସୃଷ୍ଟି ହୋଇଛନ୍ତି ଓ ଆନ୍ଦୋଳନକୁ ସଫଳ କରିଛନ୍ତି ।' ସଚ୍ଚା ମଣିଷମାନେ ନେତାତନ୍ତ୍ରକୁ କବର ଦେବେ । ମାନ୍ୟବର ଶିକ୍ଷମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନଙ୍କୁ ଖୋଲା ଚିଠି । (ସର୍ବୋଦୟ ୧ଅଗଷ୍ଟ ୨୦୦୪)

'ମାଓବାଦୀ ଓ ତାଙ୍କର ବିଭିନ୍ନ ସଂଗଠନ ଗୁଡିକର ନିଷିଦ୍ଧ ଘୋଷଣା ବାତିଲ୍ କରି ସେମାନଙ୍କ ସହ ଆଲୋଚନାର ଦ୍ୱାର ଉନ୍ମୁକ୍ତ କରିବାକୁ ମୁଁ ଅନୁରୋଧ କରୁଛି । ଓଡ଼ିଶାର କୃତୀ ବୁଦ୍ଧିଜୀବୀଙ୍କ ସଂଖ୍ୟା ଜିଲ୍ଲାରେ ବି କମ୍ ନୁହେଁ । ଓଡ଼ିଶାର ତଥା ବାହାରର

ବଛାବଛା ଦେଶପ୍ରେମୀ ବୁଦ୍ଧିଜୀବୀଙ୍କୁ ତାଙ୍କ ଆଲୋଚନା ମାଧ୍ୟମରେ ମାଓବାଦୀଙ୍କ ସମସ୍ୟାର ସମାଧାନ କରାଯାଉ । ଧୃଷ୍ଟତା ମନେ ନକଲେ ଆପଣ ବିରୋଧୀଦଳର ନେତା ଓ ମନ୍ତ୍ରୀମାନଙ୍କୁ ଅନୁରୋଧ କରିବେ । ବର୍ତ୍ତମାନ ପୃଥିବୀର ଶ୍ରେଷ୍ଠ ବୁଦ୍ଧିଜୀବୀ ନୋଆମ୍ ଚମ୍‌ସ୍କି । ଆପଣଙ୍କ ଭଳି ପ୍ରଜ୍ଞାଦୀପ୍ତ ପୁରୁଷ ତାଙ୍କୁ ପଢ଼ିଥିବେ ନିଶ୍ଚୟ । ଯଦି ପଢ଼ିଛନ୍ତି, ତାକୁ କାମରେ ପ୍ରତିଫଳିତ କରାନ୍ତୁ । ଯଦି ପଢ଼ିନାହାନ୍ତି, ତାହାହେଲେ ପଢ଼ନ୍ତୁ । 'ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କୁ ଖୋଲା ଚିଠି ।'( ସର୍ବୋଦୟ ୧, ସେପ୍ଟମ୍ବର ୨୦୦୬)

ପ୍ରଫେସର ଭଗବତ ପ୍ରସାଦ ରଥଙ୍କ ପାଖକୁ ଆସନ୍ତି ଗାନ୍ଧୀବାଦୀ, ଅରାଜକତାବାଦୀ, ବାମପନ୍ଥୀ ଓ ମାଓବାଦୀ । ଆଉ ଆସନ୍ତି ପୁଲିସ ଓ ଗୁପ୍ତଚର ବିଭାଗର କର୍ମକର୍ତ୍ତାମାନେ । ସେ ଜଣେ ଖୋଲା ନିର୍ମଳ ମଣିଷ । ଜଣେ ଦରଦୀ ହୃଦୟ । ଜନଆନ୍ଦୋଳନର ଜଣେ ସକ୍ରୀୟ ସମର୍ଥକ ହିସାବରେ ସେ କାହା ପକ୍ଷରେ ରହିବେ ତାହା ନିଷ୍ପତ୍ତି ସେ ନେଇଛନ୍ତି । ଜଗତୀକରଣ ଓ ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ବିରୋଧରେ ସେ ଖୋଲାଖୋଲି ସମାଲୋଚନା କରନ୍ତି । ଡରନ୍ତି ନାହିଁ ମରିବାକୁ ବା ଜେଲ ଯିବାକୁ । ପଛଘୁଞ୍ଚା ସେ ଦେଇନାହାଁନ୍ତି । କିନ୍ତୁ ମନେହୁଏ ସେ ଯେମିତି ନିଃସଙ୍ଗ । ରାୟଗଡ଼ା ଓ ଅନ୍ୟାନ୍ୟ ସହରର ପରିବେଶ ବିଷାକ୍ତ ଓ ବୌଦ୍ଧିକ ସଚ୍ଚୋଟପଣିଆର ଘୋର ଅଭାବ । ମୋତେ ଲାଗେ ସେ ଜୀବନର ଶେଷଭାଗରେ ଏକଲା ଯେମିତି ଚାଲିଛନ୍ତି । ଏକଦା ଲେଖିକା ଅରୁନ୍ଧତୀ ରାୟ, ନୋଆମ୍ ଚମ୍‌ସ୍କିଙ୍କ ଉପରେ ତାଙ୍କର ନିଃସଙ୍ଗତା ଓ ଅସହାୟତାକୁ ଲକ୍ଷ୍ୟ କରି ଲେଖିଥିଲେ 'ଦି ଲୋନ୍‌ଲିନେସ୍ ଅଫ ନୋଆମ ଚ୍‌ମସ୍କି' ଓ ବର୍ଣ୍ଣନା କରିଥିଲେ ଯେ ଏତେ ସମାଲୋଚନା ସତ୍ତ୍ୱେ ଆମେରିକାର ନବ ଉପନିବେଶବାଦ କମିନାହିଁ । ପ୍ରଫେସର ରଥଙ୍କ ସହ କଥା ହେଲେ ମୁଁ ଅନୁଭବ କରେ ଯେ ସେ ଅନେକ ମାର୍ଗଦର୍ଶୀ ଓ ନୂତନ ସମାଜ ନିର୍ମାଣ ପରିକଳ୍ପନାରେ ମନ୍ତ୍ରମୁଗ୍ଧ । କିନ୍ତୁ ତାଙ୍କୁ ଶୁଣିବାକୁ ଓ ତାଙ୍କ ଦ୍ୱାରା ପ୍ରଭାବିତ ହେବାକୁ ଯେମିତି ଏ ରାଜ୍ୟରେ ଯଥେଷ୍ଟ ଲୋକ ନାହାନ୍ତି । ❑

# ଜଗତୀକରଣ ଓ ନାୟକ ଆମ ସମୟର

(୧)

ପୁରାଣରେ ଅବା ଇତିହାସରେ, ନାୟକମାନେ ସବୁକିଛିରେ ଆଧିପତ୍ୟ ବିସ୍ତାର କରିଛନ୍ତି ବୋଲି ଆପଣ ଦ୍ୱିମତ ହେବେନାହିଁ । ରାମାୟଣରେ ରାବଣକୁ ବଧକରି ରାମ ଯେମିତି ନାୟକ ହୋଇଛନ୍ତି, ଭାଗବତରେ କଂସକୁ ବିନାଶ କରି କୃଷ୍ଣ ଓ ମହାଭାରତରେ କୌରବମାନଙ୍କୁ ଧ୍ୱଂସକରି ଅର୍ଜୁନ ସେମିତି ହୋଇଛନ୍ତି ବୀର ପୁରୁଷ । ଆଲେକ୍‌ଜାଣ୍ଡାର, ସିଜର, ଚେଙ୍ଗିସ୍ ଖାଁ, ନେପୋଲିଅନ୍, ଗାରିବାଲ୍‌ଡି ଆଦି ବିଭିନ୍ନ ଯୁଦ୍ଧରେ ସେନାପତି ହୋଇ ଇତିହାସ ସୃଷ୍ଟି କରିଛନ୍ତି । 'ମହାବୀର' ବୁଦ୍ଧ, ଯୀଶୁ, ମହମ୍ମଦ ଆଦି ଧର୍ମକ୍ଷେତ୍ରରେ ଲଢ଼େଇକରି ନୂତନ ଯୁଗ ସୃଷ୍ଟି କରିଛନ୍ତି । ବିଂଶ ଶତାବ୍ଦୀରେ ମହାଯୁଦ୍ଧ କେତେ ଯେ ସାହାସୀ ବୀର ସୃଷ୍ଟି କରିଛି ତାଙ୍କର ତାଲିକା ସରିବ ନାହିଁ । କିନ୍ତୁ ନିଜ ନିଜ ଦେଶରେ ଉପନିବେଶବାଦ, ଅନ୍ୟାୟ, ଶୋଷଣ ବିରୁଦ୍ଧରେ ଲଢି ନାୟକ ସାଜିଥିବା ଓ ସ୍ୱାଧୀନତା ଆଣିଥିବା ପୁରୁଷମାନଙ୍କ ଭିତରେ ଅଛନ୍ତି ଲେନିନ୍, ଗାନ୍ଧୀ, ମାଓ, ହୋଚିମିନ୍ । ଆଫ୍ରିକାର ହିରୋ ଜୁଲିୟସ ନିୟେରେର ମରିଗଲେଣି ସତ ଏବେ ମଧ ଦକ୍ଷିଣ ଆଫ୍ରିକାର ସ୍ୱାଧୀନତା ସଂଗ୍ରାମୀ ନେଲସନ ମାଣ୍ଡେଲା ବଞ୍ଚିଛନ୍ତି । ଦକ୍ଷିଣ ଆମେରିକାର ସେ ଗୁଏଭେରା, ସାଇମନ୍ ବଲିଭାର ମରିଗଲେଣି । କିନ୍ତୁ ବଞ୍ଚିଛନ୍ତି ଫିଡ଼େଲ କାଷ୍ଟ୍ରୋ କ୍ୟୁବାରେ । ଆମ ସମୟରେ ନାୟକମାନଙ୍କୁ ସବୁବେଳେ ସେମାନଙ୍କର ଦେଶ ଓ କାଳକୁ ଅତିକ୍ରମ କରାଯାଇଛି । ହିରୋମାନେ ଆମ ପାଇଁ ଚିରନ୍ତନ ହୋଇଛନ୍ତି । ସେଇଥିପାଇଁ ଲରମଣ୍ଟୋଭ୍ ଲେଖିଛନ୍ତି 'ଏ ହିରୋ ଅଫ ଆୱାର ଟାଇମ' (A Hero of Our Time) ଏବଂ 'ଥମାସ୍ କାରଲାଇଲ' (Thomas Carlyle) ଲେଖିଛନ୍ତି 'ହିରୋ ଏଣ୍ଡ ହିରୋ ୱାରସିପ୍' (Hero and Hero Worship) । ନାୟକ ହୁଅନ୍ତୁ କି ବିକଳ୍ପ ନାୟକ ହୁଅନ୍ତୁ, ହିରୋ ହୁଅନ୍ତୁ କି ଆଣ୍ଟି ହିରୋ ହୁଅନ୍ତୁ ସେମାନେ ସବୁବେଳେ ମନେ ପଡନ୍ତି । ସେମାନେ କିମ୍ବଦନ୍ତୀ ପୁରୁଷ ହୋଇଯାଆନ୍ତି ।

ଜଗତୀକରଣ ଏକ ମହାଯୁଦ୍ଧ, ଏକ ସମୟ ସାପେକ୍ଷିକ ମହାସମର ବୋଲି ସମସ୍ତେ ଅନୁଭବ କରିସାରିଲେଣି । ଏହି ମହାଯୁଦ୍ଧରେ ଯେଉଁ କେତେଜଣ ହିରୋ

ବୋଲି ଆଖ୍ୟାୟିତ ହୋଇ ସାରିଲେଣି ସେମାନଙ୍କ ଭିତରେ ଅନ୍ୟତମ ହେଉଛନ୍ତି ଫିଡେଲ କାଷ୍ଟ୍ରୋ । ସେ ଜଣେ ବିପ୍ଲବୀ, ରାଜନୀତିଜ୍ଞ ଓ ତୃତୀୟ ବିଶ୍ୱର ନେତା, ରାଷ୍ଟ୍ରପତି ଓ କ୍ୟୁବାର ଜନନାୟକ ହିସାବରେ ଆଜି ସବୁଆଡେ ପରିଚିତ । ମୋ ଦୃଷ୍ଟିରେ ସେ ଅଦ୍ୱିତୀୟ ଓ ଅପ୍ରତିଦ୍ୱନ୍ଦୀ । ତାଙ୍କର ସଂକ୍ଷିପ୍ତ ପରିଚୟ ପାଠକମାନଙ୍କ ଆଗରେ ଉପସ୍ଥାପନା କରିବା ନିତାନ୍ତ ଆବଶ୍ୟକ । ଜନ୍ମ ଅଗଷ୍ଟ ୧୯୨୬ମସିହାରେ ଏକ ଧନାଢ୍ୟ ଜମିଦାର ପରିବାରରେ । ଗାଁର ନାମ ବିରାନ୍ । ହାଭାନା ବିଶ୍ୱବିଦ୍ୟାଳୟରେ ପଢ଼ନ୍ତି ଆଇନ୍ ଓ ଲଢ଼ନ୍ତି ଗରିବଙ୍କ କେଶ୍, ପ୍ରଭାବିତ ହୁଅନ୍ତି ଉନ୍‌ବିଂଶ ଶତାବ୍ଦୀର ଲେଖକ ହୋସେ ମାର୍ଟିଙ୍କ ବହିଗୁଡ଼ିକୁ ପଢ଼ି । କ୍ୟୁବାର ନିର୍ବାଚନ ଲଢ଼ିବା ପାଇଁ ମନସ୍ଥ କରିଥିଲା ବେଳେ ବାଟିଷ୍ଟାଙ୍କ ଏକଛତ୍ରବାଦୀ ଶାସନ ଆରମ୍ଭ ହୁଏ ୧୯୫୨ ମସିହାରେ । ଏହା ବିରୋଧରେ ଫିଡ଼େଲ କାଷ୍ଟ୍ରୋ ଏକ ବିଦ୍ରୋହର ନେତୃତ୍ୱ ନିଅନ୍ତି ଓ ଭପରାଜିତ ହୁଅନ୍ତି । ଧରାପଡି ଜେଲ୍ ଯାଆନ୍ତି । ଅଚାନକ ଜେଲ୍‌ରୁ ମୁକୁଳି ମେକ୍ସିକୋରେ ୧୯୫୬ ମସିହାରେ ସେ ଗୁଏଭେରାଙ୍କ ସହ ଏକ ସାମରିକ ଅଭିଯାନର ଯୋଜନା କରନ୍ତି । ୧୯୫୮ ମସିହାରେ ବାଟିଷ୍ଟା କ୍ୟୁବାରୁ ପଳାୟନ କରନ୍ତି କାଷ୍ଟ୍ରୋ ଓ ଗୁଏଭେରାଙ୍କ ଗରିଲା ବାହିନୀରେ ମୁକାବିଲା ନକରିପାରି । ଶାସନର ଡୋର ଫିଡେଲ୍ କାଷ୍ଟ୍ରୋଙ୍କ ହାତକୁ ଆସେ । ଜାନୁୟାରୀ ୧୯୫୯ରେ ଫିଡ଼େଲ୍ କାଷ୍ଟ୍ରୋଙ୍କ ଉପରେ ଏକ ଚଳଚ୍ଚିତ୍ର କରାଯାଇଛି ଯାହା ଗରିଲା ବାହିନୀର ସଂଗ୍ରାମ ଓ ସଫଳତା ଉପରେ ପର୍ଯ୍ୟବେସିତ । ଚଳଚ୍ଚିତ୍ର ଜଗତରେ ତାହା ଆଜି ଏକ କ୍ଲାସିକ୍ ।

କ୍ୟୁବା ଏକ ସମାଜବାଦୀ ରାଷ୍ଟ୍ରରୂପେ ମୁଣ୍ଡଟେକେ ୧୯୫୯ ମସିହାରେ । ତାଙ୍କର ନେତୃତ୍ୱରେ କୃଷି, ଶିକ୍ଷ ଆଦିକ୍ଷେତ୍ରରେ ସଂସ୍କାର ଅଣାଯାଏ । ମାର୍କ୍ସିଷ୍ଟ-ଲେନିନିଷ୍ଟ ଢ଼ାଞ୍ଚାରେ ସଂସ୍କାର ଆରମ୍ଭ ହୋଇଥିବାରୁ ଧନୀ ଓ ପୁଞ୍ଜିପତି ବର୍ଗ କୁବ୍ୟାରୁ ଆମେରିକାକୁ ପଳାୟନ କରନ୍ତି, ରାଜନୈତିକ ଶରଣ ନିଅନ୍ତି । କ୍ୟୁବା ସୋଭିଏତ୍ ୟୁନିଅନ୍ ଆଡକୁ ଢ଼ଳି ପଡେ । ଏହା ଆମେରିକା ସହିପାରେ ନାହିଁ । ୧୯୬୧ ମସିହାରେ ଆମେରିକା ପ୍ରେସିଡେଣ୍ଟ କେନେଡିଙ୍କ ନେତୃତ୍ୱରେ ବେ ଅଫ୍ ପିଗ୍‌ସ୍ (Bay of Pigs) ଯୁଦ୍ଧ ଅଭିଯାନ ଆରମ୍ଭ ହୁଏ । ଆମେରିକା ଓ ସୋଭିଏତ ୟୁନିଅନ ଭିତରେ ସାମରିକ ଯୁଦ୍ଧ ହେବାର ଆଶଙ୍କା ସାରା ପୃଥିବୀକୁ ଭୟାଛନ୍ନ

କରିଦିଏ କାରଣ ସୋଭିଏତ ୟୁନିଅନ୍ କ୍ୟୁବାର କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା କରିବସେ । କିନ୍ତୁ ଆଲୋଚନା ଏବଂ ବିଶ୍ୱର ମିଳିତ ଉଦ୍ୟମରେ ଏକ ଆଣବିକଯୁଦ୍ଧ ଏଡାଇ ଦିଆଯାଏ ଓ କ୍ୟୁବାରୁ କ୍ଷେପଣାସ୍ତ୍ର ସବୁ ହଟାଇ ନିଆଯାଏ । ସେ ଗୁଏଭେରାଙ୍କ ମୃତ୍ୟୁ ପରେ ସାରା ଲାଟିନ୍ ଆମେରିକା ପାଇଁ କଳ୍ପିତ କାଷ୍ଟ୍ରୋଙ୍କ ସାମରିକ ବିପ୍ଲବର ସ୍ୱପ୍ନ କିନ୍ତୁ ସଫଳ ହୁଏ ନାହିଁ । କ୍ୟୁବାର ଅବସ୍ଥିତି ଯୁକ୍ତରାଷ୍ଟ୍ର ଆମେରିକାକୁ ଲାଗି ଯେମିତି ହାତ ବଢ଼ାଇ ଦେଲେ ପାଇଯିବ । ପୁଣି କମ୍ୟୁନିଜିମ୍ ଓ ସୋସାଲିଜିମ୍‌ରେ ବିଶ୍ୱାସ ରଖୁଥିବା ଦେଶ । ଏଇଥିପାଇଁ ପ୍ରତ୍ୟେକ ମୁହୂର୍ତ୍ତରେ କ୍ୟୁବାକୁ ଆମେରିକାର ଆକ୍ରୋଶର ମୁକାବିଲା କରିବାକୁ ପଡେ ଓ ଆମେରିକା ପୁଞ୍ଜିର ବିଷ ଦୃଷ୍ଟି ମାଡି ଆସିଥାଏ । ଆମେରିକାର ବୈଦେଶିକ ନୀତି ଓ ତୃତୀୟ ବିଶ୍ୱ ବିଶେଷ କରି ଲାଟିନ୍ ଆମେରିକୀୟ ଦେଶ ପାଇଁ ଉଦ୍ଦିଷ୍ଟ ନୀତି ସବୁ କ୍ୟୁବା ଯୋଗୁଁ ନିଶ୍ଚିତ ଭାବେ ବାଧା ପ୍ରାପ୍ତ ହୋଇଥାଏ । ଏଥିପାଇଁ କ୍ୟୁବାକୁ ସୋଭିଏତ୍ ୟୁନିୟନ ପ୍ରତି ଢଳିବାକୁ ହୁଏ । ସୋଭିଏତ୍ ୟୁନିଅନ ଭାଙ୍ଗିଗଲାପରେ କ୍ୟୁବାର ଆର୍ଥିକ ଓ ରାଜନୈତିକ ସ୍ଥିରତା ପ୍ରଭାବିତ ହୋଇଛି ସତ । କିନ୍ତୁ କ୍ୟୁବା ପୁଣି ନିଜ ଗୋଡରେ ଛିଡା ହେବାକୁ ଚେଷ୍ଟା କରିଛି । ଖାଦ୍ୟାଭାବ ଯେମିତି ନହେବ ଓ କୃଷି ଯେମିତି ନିରନ୍ତର ଓ ସ୍ୱୟଂ ସଂଚାଳିତ ହେବ ତାହାପାଇଁ ବ୍ୟାପକ ଚେଷ୍ଟା କରାଯାଇଛି । ଶିକ୍ଷା ଓ ସ୍ୱାସ୍ଥ୍ୟ ଦିଗରେ କ୍ୟୁବା ସାରା ପୃଥିବୀରେ ଅନେକ ଦେଶଠାରୁ ଆଗୁଆ ରହି ବିକାଶଶୀଳ ଦେଶକୁ ନେତୃତ୍ୱ ଦେଇଛି । ଯୁକ୍ତରାଷ୍ଟ୍ର ଆମେରିକା ସବୁବେଳେ ଚେଷ୍ଟା କରିଛି କ୍ୟୁବାକୁ ଏକ ଘରକିଆ କରିବାକୁ ଓ ସବୁପ୍ରକାର ବାସନ୍ଦ ଲାଗୁ କରିବାକୁ । କିନ୍ତୁ ବିଶ୍ୱ ଜନମତ କ୍ୟୁବାର ସପକ୍ଷରେ ଯାଇଛି । ୨୦୦୬ ମସିହା ନଭେମ୍ବର ମାସରେ କ୍ୟୁବାକୁ ବାସନ୍ଦ କରିବା ପାଇଁ ଆମେରିକା-ଜାତିସଂଘରେ ଯେଉଁ ପ୍ରସ୍ତାବ ଆଣିଥିଲା, ଚାରୋଟି ଦେଶକୁ ଛାଡିଦେଲେ ସମସ୍ତେ ବିରୋଧ କରିଛନ୍ତି । ଗୋଟାଏ ଦେଶର ସାର୍ବଭୌମତ୍ୱ ଉପରେ ଆକ୍ରମଣ ପ୍ରତିହତ ହୋଇଯାଇଛି । ଫିଡେଲ୍ କାଷ୍ଟ୍ରୋଙ୍କୁ ହତ୍ୟା କରିବା ପାଇଁ ୬୩୮ ଥର ଉଦ୍ୟମ ହୋଇ ସାରିଛି । ଆମେରିକାର ସି.ଆଇ.ଏ. ଦ୍ୱାରା ପ୍ରେରିତ ଓ ସଂଚାଳିତ ବିଭିନ୍ନ ପ୍ରକାରର ହତ୍ୟା ଉଦ୍ୟମ ଏକ ଡକ୍ୟୁମେଣ୍ଟାରି ଫିଲ୍ମ କରାଯାଇଛି ଯାହାର ନାମ ହେଉଛି ସିକ୍ସ ହଣ୍ଡ୍ରେଡ୍ ଥାର୍ଟି ଏଇଟ୍ ୱେଜ୍ ଟୁ କିଲ୍ କାଷ୍ଟ୍ରୋ (638 Ways to Kill Castro) । କିଛି ଦିନ ତଳେ ଅସୁସ୍ଥ

କାଷ୍ଟ୍ରୋ ଏକ ଦୁରାରୋଗ୍ୟ ରୋଗରେ ମରିଯିବ ବୋଲି ଆମେରିକା ତରଫରୁ ସି.ଏନ୍.ଏନ୍., ଭଏସ୍ ଅଫ ଆମେରିକା, ବିଶ୍ୱର ମୁଖ୍ୟ ଗଣମାଧ୍ୟମରେ ପ୍ରଚାରିତ ହୋଇଥିଲା । ଏଇଭଳି ଗୁଜବ ସବୁ ସମୟରେ ପ୍ରଚାରିତ ହେଉଛି ଓ ଶେଷଗୁଜବ ଡ଼ିସେମ୍ବର ୧୩ତାରିଖରେ ହୋଇଥିଲା ବୋଲି ଜଣା ପଡୁଛି । କାଷ୍ଟ୍ରୋ ମରିନାହାନ୍ତି ଯଦିଓ ଗୁରୁତର ଭାବେ ଅସୁସ୍ଥ ଅଛନ୍ତି ଓ ତାଙ୍କ ସାନଭାଇ ରାଉଲ୍ କାଷ୍ଟ୍ରୋଙ୍କୁ କ୍ଷମତା ହସ୍ତାନ୍ତର କରିଛନ୍ତି । କ୍ୟୁବାର ପ୍ରଗତି ଓ ଗ୍ରାମ୍ୟ ବିକାଶ ଆଜି ସାରା ପୃଥିବୀରେ ଉଦାହରଣ ହୋଇଛି । କ୍ୟୁବାର ନେତୃତ୍ୱ ଖାଲି ଲାଟିନ୍ ଆମେରିକାରେ ନୁହେଁ ଆଫ୍ରିକା ଓ ଏସିଆର ବିଭିନ୍ନ ଅନୁନ୍ନତ ଦେଶମାନଙ୍କୁ ପ୍ରସାରିତ ହୋଇଛି ।

ଫିଡେଲ କାଷ୍ଟ୍ରୋ ଓ କ୍ୟୁବା ଜଗତୀକରଣ କେତେ ମାତ୍ରାରେ ବିରୋଧି ମୁଁ ୨୦୦୩ ମସିହାରେ ବ୍ରାଜିଲ୍‌ର ପୋର୍ଟୋ ଆଲେଗ୍ର ଠାରେ ଅନୁଷ୍ଠିତ ହୋଇଥିବା ବିଶ୍ୱ ସାମାଜିକ ମଞ୍ଚ ବା ୱାର୍‌ଲଡ଼୍ ସୋସିଆଲ୍ ଫୋରମ୍ (World Social Forum) ଠାରେ ଅନୁଭବ କରିଥିଲି । ହଜାର ହଜାର ସଂଖ୍ୟାରେ କ୍ୟୁବାବାସୀ ପୋର୍ଟୋ ଆଲେଗ୍ରେକୁ ଆସିଥିଲେ ନିଜ ଖର୍ଚ୍ଚରେ ସମର୍ଥନ ଓ ସହଯୋଗର ସଙ୍କେତ ନେଇ । ଜଗତୀକରଣ ବିରୋଧରେ ସ୍ଲୋଗାନ୍ ଦେଇ ମୁଖରିତ କରିଥିଲେ ସାରା ସହରକୁ । ଫିଡେଲ୍ କାଷ୍ଟ୍ରୋଙ୍କ ଭାଷଣର ପୁନରାବୃତ୍ତି କରିଥିଲେ । ଆଭାସ ଦେଇଥିଲେ ଯେ କ୍ୟୁବାବାସୀ ଜଗତୀକରଣ, ବଜାରୀକରଣ ଓ ଘରୋଇକରଣ ପ୍ରକ୍ରିୟାକୁ କାୟ, ମନ, ବାକ୍ୟରେ ବିରୋଧ କରୁଛନ୍ତି । ଜଗତୀକରଣ ପ୍ରକ୍ରିୟାକୁ ବିରୋଧକରି ଯେଉଁ ବିକଳ୍ପ ପ୍ରକ୍ରିୟା ମଧ୍ୟ ଆରମ୍ଭ କରିଛନ୍ତି ତାହା ମଧ୍ୟ ବର୍ଣ୍ଣନା କରିଥିଲେ । ସୋଭିଏତ୍ ୟୁନିଅନ୍ ଭାଙ୍ଗିଲା ପରେ ଏବଂ ଆମେରିକାର ବାସନ୍ଦ ଖୁବ୍ ବ୍ୟାପକ ହେବା ପରେ ଡରଥିଲା ଯେ କ୍ୟୁବାରେ ଖାଦ୍ୟ ସଂକଟ ଦେଖାଦେବ । କିନ୍ତୁ କ୍ୟୁବାରେ ଆରମ୍ଭ ହେଲା ଆତ୍ମନିର୍ଭରଶୀଳତାର ଅଧ୍ୟାୟ । ନିରନ୍ତର କୃଷିର ବିଭିନ୍ନ ଦିଗକୁ ତ୍ୱରାନ୍ୱିତ କରାଗଲା ଓ ଜୈବିକ ଚାଷକୁ ପ୍ରାଧାନ୍ୟ ଦିଆଗଲା । ସହରରେ ମଧ୍ୟ ଫଳବଗିଚା ସବୁ ଆରମ୍ଭ ହେଲା । ଆଗରୁ ଭୂସଂସ୍କାର କରାଯାଇଥିବା ହେତୁ ଛୋଟ ଛୋଟ ଜମିକୁ ପ୍ରାଧାନ୍ୟ ଦିଆଗଲା । କୃଷି ପାଇଁ ଟ୍ରାକଟ୍‌ର ପରିବର୍ତ୍ତେ ବଳଦ ବ୍ୟବହାର କରାଗଲା । ଜୈବିକ ଉପାୟରେ କୀଟ ଆକ୍ରମଣରୁ ଫସଲକୁ ରକ୍ଷା କରାଗଲା । ସ୍ୱାସ୍ଥ୍ୟ ଦିଗରେ କ୍ୟୁବା ଅଭୂତପୂର୍ବ ସଫଳତା ହାସଲ କରିଛି । ବର୍ତ୍ତମାନ ସେ ଦେଶରେ ଏତେ ଡାକ୍ତର ବାହାରିଲେଣି ଯେ ଏପରିକି ଆମେରିକାକୁ

ମହାବାତ୍ୟାବେଳେ ଡାକ୍ତର ପଠାଇବା ପାଇଁ ପ୍ରସ୍ତାବ ଦେଇଛି । ଶିକ୍ଷା ଦିଗରେ କ୍ୟୁବା ଏତେ ଅଗ୍ରଗତି କରିଛି ଯେ ଏଠାରେ ବର୍ତ୍ତମାନ ସାକ୍ଷରତାର ହାର ଶତକଡ଼ା ୯୬ ଯାହା ଜାପାନ, ଫ୍ରାନସ୍, ସୁଇଜରଲ୍ୟାଣ୍ଡ ସହ ତୁଳନୀୟ । ୧୯୫୮ରେ ବିପ୍ଳବ ପୂର୍ବ ଓ ପର ଭିତରେ ଏହା ଏକ ଉଲ୍ଲେଖନୀୟ ସଫଳତା ବୋଲି ସାରାପୃଥିବୀ ସ୍ୱୀକାର କରିଛି । ୧୯୫୯ ମସିହାରେ ବେକାରିହାର ଥିଲା ଶତକଡ଼ା ୨୪ । ସୋଭିଏତ୍ ୟୁନିଅନ୍‌ର ପତନ ଓ ଆମେରିକାର ବାସନ୍ଦ ପରେ ଏହା ବଢ଼ି ହୋଇଥିଲା ଶତକଡ଼ା ୩୫ । କିନ୍ତୁ ଏହା ଏବେ ଦ୍ରୁତଗତିରେ ଖସିବାକୁ ଲାଗିଛି । ସମସ୍ତଙ୍କ ପାଇଁ ବିଶେଷ କରି ମହିଳାମାନଙ୍କ ପାଇଁ ନିଯୁକ୍ତିର ସୁଯୋଗ ସୃଷ୍ଟିକରାଯାଇଛି । ୨୦୦୩ ମସିହାରେ ଚକୋରୀ ୨-୩%କୁ ଖସିଛି । ଅନ୍ୟ ଦିଗରୁ ବିଚାର କରିଲେ କ୍ୟୁବାରେ ବେରୋଜଗାରୀ ନାହିଁ ଓ ସମସ୍ତଙ୍କ ପାଇଁ ସମ୍ପୂର୍ଣ୍ଣ ରୋଜଗାର ବ୍ୟବସ୍ଥା କରାଯାଇଛି । ସମସ୍ତଙ୍କୁ ବାସଗୃହ ଯୋଗାଇ ଦିଆଯାଇଛି । ସରକାରଙ୍କ ନିୟନ୍ତ୍ରଣ ଥିବାରୁ ଘରୋଇ ଗୃହନିର୍ମାଣ ଓ ବିକାକିଣା ପ୍ରକ୍ରିୟା ସେଠାରେ ନାହିଁ । ମାନବ ବିକାଶ କ୍ଷେତ୍ରରେ କ୍ୟୁବା ଆଜି ଅନେକ ଐତିହାସିକ ସଫଳତା ଦେଖାଇ ସାରିଛି । ମୋର ଜଣେ ବନ୍ଧୁ ଯିଏ କି କ୍ୟୁବା ଗତ ବର୍ଷ ଯାଇଥିଲେ ଓ କହୁଥିଲେ ଯେ ଯଦିଓ ସ୍ୱାଧୀନ ମତାମତ ଦେବା କ୍ୟୁବାରେ ସମ୍ଭବ ନୁହେଁ ଓ ମାନବାଧିକାର ଉଲଂଘନ ମଧ୍ୟ ହେବାର ଉଦାହରଣ ଅନେକ, କିନ୍ତୁ ନାଗରିକଙ୍କ ମୌଳିକ ସୁବିଧା ସେଠାରେ ସମସ୍ତଙ୍କୁ ପ୍ରାପ୍ତ ହୋଇଛି । ବିପ୍ଳବୋତ୍ତର କ୍ୟୁବା ସାରା ଦକ୍ଷିଣ ଆଫ୍ରିକାରେ ସ୍ୱାଧୀନତା ଓ ସ୍ୱାବଲମ୍ବନଶୀଳତାର ଏକ ପ୍ରଦୀପ ଜଳାଇଛି । କ୍ୟୁବା ଓ କାଷ୍ଟ୍ରୋଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଆଜି ଭେନେଜୁଏଲା, ବଲିଭିଆ, ନିକାରାଗୁଆ, ମେକ୍ସିକୋ, ଆର୍ଜେଣ୍ଟିନା ଆଦି ଦେଶ ଓ ସେମାନଙ୍କ ନେତୃବର୍ଗ ଜଗତୀକରଣ ବିରୁଦ୍ଧରେ ଏକ ଦୃଢ଼ ଓ ସଶକ୍ତ ମଞ୍ଚ ଗଢ଼ି ସାରିଲେଣି । ଆଫ୍ରିକା ଓ ଏସିଆରେ ଏ ରଶ୍ମିରେଖା ମଧ୍ୟ ଆଲୋକିତ କରିବାକୁ ଆରମ୍ଭ କରିଛି ।

ଜଗତୀକରଣକୁ ବିରୋଧ କରି କାଷ୍ଟ୍ରୋ ବିଭିନ୍ନ ସ୍ଥାନରେ ଓ ବିଭିନ୍ନ ସମୟରେ ଯେଉଁ ଭାଷଣ ଦେଉଛନ୍ତି ତାହା ଆଜି ଅନେକଙ୍କୁ ପ୍ରେରଣା ଦେଇଛି ଓ ଭବିଷ୍ୟତରେ ଦେବ । ସେଥିରୁ କିଛି ମୁଁ ପାଠକଙ୍କ ଦରକାରର ଆସିବ ବୋଲି ଉଦ୍ଧାର କରୁଛି । 'ମୁଁ ଭାବୁଛି ଏବଂ ମୋର ଆଜି ହୃଦ୍‌ବୋଧ ହୋଇଛି ଯେ ନବ ଉଦାରୀକରଣ ଦ୍ୱାର ପରିପୁଷ୍ଟ ଜଗତୀକରଣ ଆଜି ସମସ୍ତ ଦେଶଙ୍କ ସ୍ଥିତି ପ୍ରତି ବିପଦ

ସୃଷ୍ଟି କରିଛି । ଉତ୍ତରର ସମସ୍ତ ଧନୀ ଦେଶ ଓ ଦକ୍ଷିଣର ସମସ୍ତ ଗରୀବ ଦେଶଙ୍କ ଭିତରେ ଖାଇ ବଢ଼ିବାରେ ଲାଗିଛି ଯାହା ପୃଥିବୀରେ ନିରାପତ୍ତା ଓ ସ୍ଥାୟୀତ୍ୱ ବିପନ୍ନ ହୋଇଛି । ସବୁ ସଂଘର୍ଷ ପଛରେ ଅନ୍ୟାୟ ଯୁଦ୍ଧ ଓ ଲୁଣ୍ଠନ, ପରିବେଶର ବିନାଶ, ପ୍ରାକୃତିକ ସମ୍ପଦର ଅବକ୍ଷୟ, ଆତଙ୍କବାଦ, ଦେଶାନ୍ତରୀକରଣ, ଡ୍ରଗବେପାର ଆଦିର ପ୍ରତ୍ୟେକ୍ଷ ଭୂମିକା ରହିଛି । ଦକ୍ଷିଣା ଦେଶମାନଙ୍କରେ ଦାରିଦ୍ର୍ୟ ସହ ଉତ୍ତର ଏବଂ ବିକଶିତ ଦେଶମାନଙ୍କର ଲୋଭ ଓ ଲାଭ ମିଶା ନୀତିଗୁଡ଼ିକର ନିବିଡ ସମ୍ପର୍କ ରହିଛି ।'

(ଫିଡ଼େଲ କାଷ୍ଟ୍ରୋଙ୍କ ବକ୍ତବ୍ୟ- ସ୍ଥାନ: ବାର୍ବାଡସ୍, ତାରିଖ: ୮-୧୨-୨୦୦୫)

"ଜଗତୀକରଣ ରୂପକ ଜାହାଜରେ ଭରି ରହିଛି ଅନ୍ୟାୟ ଓ ଅସମାନତା ।"

(ନାମ କନଫରେନ୍‌ସ ପାଇଁ କାଷ୍ଟ୍ରୋଙ୍କ ଉଦ୍ଦିଷ୍ଟ ବାର୍ତ୍ତା- ସ୍ଥାନ: ହାଭାନା, ତାରିଖ: ସେପ୍ଟେମ୍ବର ୨୦୦୬)

ଜଗତୀକରଣ ବିରୁଦ୍ଧରେ ଚାଲିଥିବା ଯୁଦ୍ଧର ଅନ୍ୟତମ ସେନାପତି ହେଉଛନ୍ତି ଫିଡେଲ କାଷ୍ଟ୍ରୋ । ବୟସ ହୋଇଯାଇଛି । ରୋଗଗ୍ରସ୍ତ ହୋଇଛନ୍ତି । କିନ୍ତୁ ସଂଗ୍ରାମ ସରିନାହିଁ । ତାଙ୍କ ବିଷୟରେ ବିଖ୍ୟାତ ଲେଖକ ଓ ନୋବେଲ ପ୍ରାଇଜ୍ ପ୍ରାପ୍ତ ଔପନ୍ୟାସିକ ଗ୍ରାବିଏଲ୍ ଗାର୍ସିଆ ମାରକ୍ୱେଜ୍ ଲେଖିଛନ୍ତି ।

'ଏକଥା ନିଶ୍ଚିତ । ..କାଷ୍ଟ୍ରୋ ଯେଉଁଠି ଥାଆନ୍ତୁ ନା କାହିଁକି ଓ ଯାହା ସାଙ୍ଗରେ ଥାଆନ୍ତୁ ନିଶ୍ଚିୟ ଜିତିବେ । ସେ ହାରି ନାହାନ୍ତି କେଉଁଠି, ପରାଜୟ ସମ୍ମୁଖରେ ଛିଡ଼ା ହୋଇ ମଧ୍ୟ ସେ ବିଜୟର ସ୍ୱପ୍ନ ଦେଖୁଥାଆନ୍ତି ।"

(ଆନ୍ ଏନ୍‌କାଉଣ୍ଟର୍ ଉଇଥ ଫିଡେଲ -୧୯୯୧)

ଜଗତୀକରଣ ବିରୁଦ୍ଧରେ ଫିଡେଲ୍ କାଷ୍ଟ୍ରୋ ବିଜୟର ସ୍ୱପ୍ନ ଦେଖିଆସୁଛନ୍ତି ।

(୨)

ଲୁଇ ଇନାସିଓ 'ଲୁଲା' ଦା ସିଲ୍‌ଭା ବା ସଂକ୍ଷେପରେ ଲୁଲା । ଖାଲି ବ୍ରାଜିଲ୍ ବା ଦକ୍ଷିଣ ଆମେରିକା ତାଙ୍କୁ କେବଳ ଜାଣିନାହିଁ, ସାରା ପୃଥିବୀ ଜାଣିଛି ଓ

ଚିହ୍ନିଛି । ଲୁଲା ସାମ୍ପ୍ରତିକ ରାଜନୈତିକ ରଙ୍ଗମଞ୍ଚରେ ଜଣେ ନାୟକ । ଇତିହାସର ସେ ଏକ ଅଧ୍ୟାୟ ହେବେ ନିଶ୍ଚିତ । ଜଗତୀକରଣ ପରିପ୍ରେକ୍ଷୀରେ ସେ ନିଶ୍ଚିତ ମନେ ରହିବେ । ତାଙ୍କ ବିଷୟରେ ମୁଁ ଲେଖିବା କଥା ଜାଣି କେଇ ଜଣେ ବନ୍ଧୁ କହିଥିଲେ ସେ ନାୟକ ରୂପେ ପରିଗଣିତ ହେବାକୁ ଯୋଗ୍ୟ କି ? ଅସଲ ନାୟକ ହେଉଛନ୍ତି କାଷ୍ଟ୍ରୋ(Castro), ସାଭେଜ୍(Chavez), ମୋରାଲେସ୍(Morales) । ଲୁଲା ନାୟକ ପଦବାଚ୍ୟ ନୁହନ୍ତି । ସମାଲୋଚକମାନଙ୍କ ମତରେ ବ୍ରାଜିଲ୍‌ରେ ସଂସ୍କାର ସପକ୍ଷରେ ବିଭିନ୍ନ ନୀତି ନିର୍ଦ୍ଧାରଣ କରି ଓ ଜଗତୀକରଣ ସପକ୍ଷରେ ବିଭିନ୍ନ ବକ୍ତବ୍ୟ ପ୍ରଦାନ କରି ସେ ନିଜକୁ ବିଭିନ୍ନ ବିବାଦୀୟ ପରିସ୍ଥିତିରେ ପକାଇ ସାରିଛନ୍ତି । ମୁକ୍ତ ଓ ଅବାଧ ବାଣିଜ୍ୟ ବେପାରର ସପକ୍ଷବାଦୀ ହୋଇ ସେ ବାରମ୍ବାର କହିଛନ୍ତି ଯେ ବିଶ୍ୱର ଅଗଣିତ ଦରିଦ୍ରଙ୍କ ବଞ୍ଚିବାର ସ୍ତର ବଢ଼ାଇବାର ଏହା ହେଉଛି ଏକମାତ୍ର ବାଟ । ଜଗତୀକରଣକୁ ନିନ୍ଦା ନକରି କିପରି ଏହାକୁ ହିତକାରୀ କରାଯାଇ ପାରିବ ସବୁ ବିକାଶଶୀଳ ଦେଶ ଚେଷ୍ଟା କରିବା ଆବଶ୍ୟକ । ଜଗତୀକରଣର ଅର୍ଥ ନୁହେଁ ବିକାଶ ଅଥବା ଜଗତୀକରଣ ବିକାଶର ବିକଳ୍ପ ନୁହେଁ । ଲୁଲାଙ୍କ ମତ ହେଲା ଯେ ଜଗତୀକରଣ ବିକାଶ ଦିଗରେ ଏକ ଅସ୍ତ୍ର । ଏ ମତାମତ କୁ ନେଇ ଆଜି ବିଶ୍ୱରେ ଚାଲିଛି ତର୍କ ବିତର୍କ । ଜଗତୀକରଣ କେଉଁଭଳି ବିକାଶର ପଥ ଉନ୍ମୋଚନ କରିବ ? କେଉଁଭଳି ଅସ୍ତ୍ର ହେବ ?

୨୦୦୩ ଜାନୁୟାରୀ ମାସରେ ବିଶ୍ୱ ସାମାଜିକ ସଂଗଠନ ଆୟୋଜିତ ହୋଇଥାଏ ବ୍ରାଜିଲ୍‌ର ପୋର୍ଟୋ ଆଲେଗ୍ରେ ସହରରେ ଓ ମୋତେ ଭାଗନେବାକୁ ଏକ ବିରଳ ସୁଯୋଗ ମିଳିଥାଏ । ବ୍ରାଜିଲ୍‌ର ନିର୍ବାଚନ ନିକଟରେ ଶେଷ ହୋଇଥାଏ ଓ ଲୁଲା ନିର୍ବାଚିତ ହୋଇ ଥାଆନ୍ତି ରାଷ୍ଟ୍ରପତି ଭାବେ । ବାମପନ୍ଥୀ ଚିନ୍ତାଧାରା ଓ ଶ୍ରମିକ ସଂଗଠନମାନଙ୍କ ପ୍ରତ୍ୟକ୍ଷ ସମର୍ଥନରେ ଲୁଲା ରାଷ୍ଟ୍ରପତି ଭାବେ ନିର୍ବାଚିତ ହୋଇଥିଲେ ବୋଲି ଦେଶସାରା ଏକ ଅଭିନବ ଓ ନୂତନ ପରିବେଶ ବ୍ୟାପି ଯାଇଥିଲା । ସବୁଆଡେ ସ୍ୱାଗତ ସମାରୋହ କରାଯାଇ 'ଲୁଲା ଲୁଲା...'ବୋଲି ସ୍ଲୋଗାନ ଦିଆଯାଉଥିଲା । ସହରରର କାନ୍ଥବାଡରେ ଓ ରାସ୍ତା ଉପରେ ଲୁଲାଙ୍କ ପ୍ରତିଛବି- ଉଜ୍ଜ୍ୱଳ ଗୋଲାକାର ମୁହଁ ସହିତ ଦାଢ଼ିର ଶୋଭା । ବିଶ୍ୱ ସାମାଜିକ ସଂଗଠନର ଉଦ୍‌ଘାଟନ ପର ଦିନ ନଦୀ କୂଳସ୍ଥ ସନ୍‌ସେଟ୍ ପାର୍କ(Sunset Park) ।

ଦେଢ଼ ଲକ୍ଷ ଲୋକଙ୍କ ସମାଗମ ଓ କୋଳାହଳ । ଲୁଲା ଭାଷଣ ଦେବାକୁ ଆସିବେ ବୋଲି ଲୁଲାଙ୍କ ନିର୍ବାଚନ ବିଷୟରେ ମଧ ଏହା ଏକ ଖୋଲା ସମର୍ଥନ । ଲୁଲା ବ୍ରାଜିଲ୍‌ର ଶ୍ରମିକ, କୃଷକ ଓ ଗରିବଙ୍କ ରାଷ୍ଟ୍ରପତି, ଧନୀ, ପୁଞ୍ଜିପତି, ଉପନିବେଶବାଦୀଙ୍କ ରାଷ୍ଟ୍ରପତି ନୁହନ୍ତି । ଏହା ପ୍ରମାଣ କରିବାକୁ ସମସ୍ତେ ବ୍ୟଗ୍ର ବ୍ରାଜିଲ୍ ସାରା । ମୁଁ ପଚାରିଥିଲି ହୋଟେଲ୍‌ର ପରସୁଥିବା ବ୍ୟକ୍ତିମାନଙ୍କୁ ଅଥବା ଟାକ୍‌ସି ଚଳାଉଥିବା ଡ୍ରାଇଭରମାନଙ୍କୁ । ସେମାନେ କେବଳ ପର୍ତ୍ତୁଗୀଜ ଭାଷା ବୁଝୁଥିଲେ । ଇଂରେଜୀ ଭାଷାର କେଇଟି ଶବ୍ଦ କେବଳ ପରିଚିତ ଥିଲା ସେମାନଙ୍କର । କିନ୍ତୁ ଲୁଲା ନାଁ ମୁଁ ଉଚ୍ଚାରଣ କରିବା ମାତ୍ରେ ସେମାନଙ୍କର ମୁଖମଣ୍ଡଳ ଉଜ୍ୱଳମୟ ହୋଇ ଯାଉଥିଲା । ସେମାନ କହିବାକୁ ଓ ବାର୍ତ୍ତାଳାପ କରିବାକୁ ବ୍ୟଗ୍ର ହୋଇ ପଡୁଥିଲେ । ପୋର୍ଟୋ ଆଲେଗ୍ରେ ସହରରେ ନବାଗତ ଅଜଣା ଓ ଭାଷା ନଜାଣିବା ମଣିଷ ହିସାବରେ ଲୁଲାଙ୍କ ନାମଧରି ମୁଁ ଯେମିତି ଖୁବ୍ ପରିଚିତ ହୋଇଯାଇଥିଲି । ଅଗଣିତ ମଣିଷଙ୍କ ଭିତରେ ଲୁଲା ସେ ଦିନ ଅପରାହ୍ଣରେ ଏକ ଚମତ୍କାର ଭାଷଣ ଦେଇ ଥିଲେ ଓ ସାରା ପୃଥିବୀର ସମସ୍ତ ରେଡ଼ିଓ ଓ ଟେଲିଭିଜନ ଚ୍ୟାନେଲ୍ ତାହାର ପ୍ରସାରଣ କରିଥିଲେ । ଲୁଲା କହୁଥିଲେ ସେ ବ୍ରାଜିଲ୍‌ର ପୁଞ୍ଜିବାଦୀ, ଏକଛତ୍ରବାଦୀ, ସାମରିକ ବାହିନୀ ସମର୍ଥିତ ରାଜନୈତିକ ବ୍ୟକ୍ତିକୁ ପରାସ୍ତ କରିବା ପାଇଁ ସେ କେଉଁ ଟେଲିଭିଜନ୍‌ର ସାହାଯ୍ୟ ନେଇନାହାନ୍ତି ଅଥବା କୌଣସି ଅର୍ଥନୈତିକ ଶକ୍ତିର ସାହାଯ୍ୟ ନେଇନାହାନ୍ତି । ସେ ଶ୍ରମିକ ପାର୍ଟିର ସଦସ୍ୟ ହିସାବରେ ଜନ ସଚେତନତାକୁ ମାଧ୍ୟମ କରି ନିର୍ବାଚନ ଲଢ଼ିଛନ୍ତି ଓ ଜିତିଛନ୍ତି । ବ୍ରାଜିଲ୍‌ର ସର୍ବସାଧାରଣ ଭୋଟର ହିସାବରେ ତାଙ୍କୁ ଜିତାଇଛନ୍ତି । ସେ ଗଠନ କରିଛନ୍ତି ଏକ ସରକାର ଯାହା ଗରିବଙ୍କ ପାଇଁ ଅଙ୍ଗୀକାରବଦ୍ଧ । ଏହା ଏକ ଦୀର୍ଘଦିନର ସଂଘର୍ଷ । ଧନୀଙ୍କର ଗରିବଙ୍କ ସହ, କ୍ଷମତାଶାଳୀଙ୍କ କ୍ଷମତାହୀନଙ୍କ ସହ । ସେ ଜୀବନ ସାରା ଦାବୀ କରିଆସିଛନ୍ତି କୃଷକଙ୍କ ଉନ୍ନତି ଓ କୃଷି କ୍ଷେତ୍ରରେ ସଂସ୍କାର । ଆଶା କରିଛନ୍ତି ସମସ୍ତଙ୍କ ପାଇଁ ଶିକ୍ଷା ଓ ଉତ୍ତମ ସ୍ୱାସ୍ଥ୍ୟ । ପରିକଳ୍ପନା କରିଛନ୍ତି ଯେ ବିଶ୍ୱବିଦ୍ୟାଳୟ କେବଳ ଶତକଡ଼ା ଆଠ ଭାଗ ଛାତ୍ରଙ୍କ ପାଇଁ ଯେମିତି ସୀମିତ ନରୁହେ । ସ୍ୱପ୍ନ ଦେଖିଛନ୍ତି ସମ୍ପତିର ନ୍ୟାୟୋଚିତ ବଣ୍ଟନ । ବିଖ୍ୟାତ ଶିକ୍ଷାବିତ୍ ପାଉଲୋ ଫ୍ରେଏରେଙ୍କ ସହ କାମ କରିଛନ୍ତି ଓ ଉଦ୍‌ବୁଦ୍ଧ ହୋଇଛନ୍ତି ।

ବ୍ରାଜିଲ୍‌ର ସ୍ୱପ୍ନ, ସାର୍ବଭୌମତ୍ୱ, ସ୍ୱାଧୀନତା ଓ ପ୍ରଗତି ସବୁ ପାଇଁ ଲୁଲା ଯେମିତି ପ୍ରତୀକ ହୋଇଛନ୍ତି । ଗୋଟାଏ ଦେଶ ଓ ଗୋଟାଏ ଜାତି ପାଇଁ ଲୁଲା ଯେମିତି ହୋଇ ପଡିଛନ୍ତି ଏକ ନାୟକ, ସେ ଦିନ ସନ୍ଧ୍ୟାରେ ହୋଟେଲ୍ ରୁମ୍‌କୁ ମୁଁ ଫେରି ଏଇକଥା ଅନୁଭବ କରିଥିଲି । ମୋର ଯିଏ ଅନୁବାଦକ ଥିଲେ ସେ ଏକଥା ମୋତେ ଭଲ ଭାବେ ବୁଝାଇବାକୁ ଚେଷ୍ଟା କରିଥିଲେ । ଲୁଲାଙ୍କ ଭାଷଣ ସେ ଦିନ ସବୁ ଟିଭି ଚ୍ୟାନେଲ୍‌ରେ ବାରମ୍ବାର ପ୍ରସାରିତ ହୋଇଥିଲା ଓ ବିଶ୍ୱ ସାମାଜିକ ସଂଗଠନ ପରିପ୍ରେକ୍ଷୀରେ ଲୁଲାଙ୍କ ଭାଷଣର ତାତ୍ପର୍ଯ୍ୟ ସ୍ପଷ୍ଟ ବୁଝି ହୋଇଥିଲା ।

ମୁଁ ଲୁଲାଙ୍କ ଜୀବନ, ସଂଘର୍ଷ ଓ ରାଜନୀତି ଉପରେ କିଛି ଅଧ୍ୟୟନ କରିବାକୁ ବହି ପୋର୍ଟୋ ଆଲେଗ୍ରେ ସହରର ବିଭିନ୍ନ ବହି ଦୋକାନରେ ଖୋଜିଥିଲି । କିନ୍ତୁ ଯାହା କିଛି ମିଳିଥିଲା ତାହା ପର୍ତ୍ତୁଗୀଜ୍ ଭାଷାରେ ହିଁ ଥିଲା । କ୍ରମେ ତାଙ୍କ ବିଷୟରେ ଅଧିକ ସୂଚନା ବିଭିନ୍ନ ସୂତ୍ରରୁ ମିଳିଥିଲା । ଲୁଲାଙ୍କ ଜନ୍ମ ୧୯୪୫ ମସିହା ଅକ୍ଟୋବର ୨୭ ତାରିଖରେ । ଜନ୍ମସ୍ଥାନ ଉତ୍ତରପୂର୍ବ ବ୍ରାଜିଲ୍‌ର ଗାରାନୁହନ୍‌ସ(Garanhuns) ବୋଲି ଏକ ଛୋଟିଆ ସହରରେ । ବାପା ମାଆଙ୍କ ଆଠୋଟି ସନ୍ତାନରୁ ତାଙ୍କର କ୍ରମିକ ସଂଖ୍ୟା ସପ୍ତମ । ଜନ୍ମ ହେବା ମାତ୍ରେ ଲୁଲାଙ୍କ ବାପା କର୍ମ ଅନ୍ୱେଷଣରେ ଯାଆନ୍ତି ସାଓପାଓଲେ ସହରକୁ ଓ ବାପ ପୁଅଙ୍କ ଦେଖା ହୁଏ ପାଞ୍ଚ ବର୍ଷ ପରେ । ୧୯୫୨ ମସିହାରେ ଲୁଲାଙ୍କ ମାଆ ସମସ୍ତ ସନ୍ତାନସନ୍ତତିଙ୍କ ସହ ଏକ ଟ୍ରକ୍ ଡାଲାରେ ବସି ଦେଶାନ୍ତରୀ ହୁଅନ୍ତି ଓ ପହଞ୍ଚନ୍ତି ଗୁଆରାଜା(Guaraja) ନାମକ ସମୁଦ୍ର କୂଳର ଏକ ସହରରେ । ସେଇଠି ମଧ୍ୟ ସେ ସ୍କୁଲକୁ ଯାଆନ୍ତି ପ୍ରାଥମିକ ଶିକ୍ଷା ପାଇଁ । ୧୯୫୬ ମସିହାରେ ଲୁଲାଙ୍କ ପ୍ରଥମ ଚାକିରୀ କରନ୍ତି ଏକ ଡ୍ରାଇକ୍ଲିନିଙ୍ଗ ଦୋକାନରେ । ବେଳେବେଳେ ବି ଯୋତା ପାଲିସ୍ କରିବା ଅଥବା ଅଫିସରେ ପିଅନ କାମ କରିବାକୁ ପଡିଥିଲା ତାଙ୍କୁ । ଚଉଦବର୍ଷ ବୟସରେ ସେ ଜଣେ ଶ୍ରମିକ ହିସାବରେ ପଞ୍ଜିକୃତ ହୋଇ ଏକ ଗୋଦାମରେ କାମ କରିଥିଲେ । ତା'ପରେ ଏକ ସ୍କୃ ଫାକ୍ଟ୍ରିରେ ସେ କାମ କରୁଥିଲେ ଓ ଭଲ କାମ କରୁଥିବାରୁ ଏକ ଟେକ୍‌ନିକାଲ୍ ସ୍କୁଲରେ ପାଠ ପଢ଼ିବାକୁ ସୁଯୋଗ ପାଇଥିଲେ । ଦକ୍ଷତା ହିସାବରେ ସେ ଜଣେ ମେକାନିକ୍ ଓ ଲେଜ୍ ଅପରେଟର ଯୋଗ୍ୟତା ହାସଲ କରିଥିଲେ ।

୧୯୬୪ ମସିହାରେ ବ୍ରାଜିଲ୍‌ରେ ସାମରିକ ବିଦ୍ରୋହ ହୋଇଥିଲା ଓ ଲୁଲାଙ୍କ ଚାକିରୀ ଖୋଜିବାକୁ ଗୋଟାଏ ଫାକ୍ଟ୍ରିରୁ ଆଉ ଗୋଟାଏ ଫାକ୍ଟ୍ରିକୁ ଘୁରିବାକୁ

ପଡିଥିଲା । ୧୯୬୬ ମସିହାରେ ଏକ ଧାତବଶିଳ୍ପରେ ସେ ଶ୍ରମିକ ହେବାର ସୁଯୋଗ ପାଇଥିଲେ । ନିଜର ଭାଇଠାରୁ ପ୍ରେରଣା ପାଇ ଲୁଲା ଶ୍ରମିକ ସଂଗଠନ ସହ ପରିଚିତ ହୋଇଥିଲେ ଓ ୧୯୬୯ ମସିହାରେ ଶ୍ରମିକ ସଂଗଠନର ବୋର୍ଡ଼କୁ ପ୍ରତିନିଧି ହିସାବରେ ନିର୍ବାଚିତ ହୋଇଥିଲେ । ୧୯୭୫ ମସିହା ବେଳକୁ ଏକ ଲକ୍ଷରୁ ଅଧିକ ଶ୍ରମିକଙ୍କର ସେ ପ୍ରତିନିଧି ହୋଇ ପାରିଥିଲେ । ୧୯୮୦ ମସିହା ମାର୍ଚ୍ଚ ମାସରେ ଲୁଲା ଅନ୍ୟ ଶ୍ରମିକ ସଂଗଠନମାନଙ୍କ ସହାୟତାରେ ଗଠନ କରିଥିଲେ ଓ୍ୱାର୍କରସ୍ ପାର୍ଟି (Workers Party) । ଏଥିରେ ସାମିଲ୍ ହୋଇଥିଲେ ବୁଦ୍ଧିଜୀବୀ, ରାଜନୈତିକ କର୍ମୀ, ସାମାଜିକ ଆନ୍ଦୋଳନର କର୍ମକର୍ତ୍ତା ଓ ଧାର୍ମିକ ନେତୃତ୍ୱ । ମୋଟର ଗାଡି ଶିଳ୍ପ ଅଞ୍ଚଳରେ ଓ୍ୱାର୍କରସ୍ ପାର୍ଟି ଗ୍ରୀନ୍ ପ୍ରଭାବଶାଳୀ ହୋଇଥିଲା ଓ ୧୯୮୨ ମସିହାରେ ଏହାର ସଦସ୍ୟ ସଂଖ୍ୟା ୪ଲକ୍ଷରୁ ଅଧିକ ହୋଇଥିଲା । ସାଓ ପାଓଲୋ ପ୍ରଦେଶର ଗଭର୍ଣ୍ଣର ପଦବୀ ପାଇଁ ଲୁଲା ନିର୍ବାଚନ ଲଢ଼ିଥିଲେ ଓ ପରାଜିତ ହୋଇଥିଲେ । କିନ୍ତୁ ଓ୍ୱାକରସ୍ ପାର୍ଟି ଅନେକ ଗୁଡିଏ ସିଟ୍‌ରେ ବିଜୟ ଲାଭ କରି ନିଜର ଶକ୍ତି ପଦର୍ଶନ କରିଥିଲା ।

୧୯୮୬ ମସିହାରେ ସାଓ ପାଓଲୋ ପ୍ରଦେଶର ଫେଡେରାଲ ରିପ୍ରେଜେଣ୍ଟେଟିଭ୍ ହିସାବରେ ଲୁଲା ନିର୍ବାଚନ ଜିତି ଥିଲେ ଓ ଦେଶର ସର୍ବାଧିକ ଭୋଟ୍ ପାଇଁ ରେକର୍ଡ କରିଥିଲେ । ୧୯୮୮ ମସିହାରେ ଲୁଲାଙ୍କ ଓ୍ୱାର୍କରସ୍ ପାର୍ଟି ଦେଶସାରା ନିର୍ବାଚନ ଲଢ଼ି ବିଭିନ୍ନ କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ହାସଲ କରିଥିଲା ଓ ୩୬ଟି ସହରରେ ତାଙ୍କ ପାର୍ଟି ମେୟର ଆସନ ଅଳଙ୍କୃତ କରିଥିଲା । ୧୯୯୪ ଓ ୧୯୯୮ ମସିହାରେ ଲୁଲା ବ୍ରାଜିଲ୍‌ର ସଭାପତି ପାଇଁ ନିର୍ବାଚିନ ଲଢ଼ି ହାରିଯାଇଥିଲେ । କିନ୍ତୁ ଅବଶେଷରେ ୨୦୦୨ ମସିହାରେ ନଭେମ୍ବର ମାସର ନିର୍ବାଚନରେ ଶତକଡ଼ା ଏକଷଠି (୬୧%)ରୁ ଅଧିକ ଭୋଟ ପାଇ ସେ ବ୍ରାଜିଲ୍‌ର ସଭାପତି ହୋଇଥିଲେ । ଏହା ପୂର୍ବରୁ ସିଟିଜେନ୍‌ସିପ୍ ଇନ୍‌ଷ୍ଟିଚ୍ୟୁଟ୍ (Citizen-ship Institute) ନାମକ ଏକ ସାମାଜିକ ଅନୁଷ୍ଠାନ ପ୍ରତିଷ୍ଠା କରି ଲୁଲା ବିଭିନ୍ନ ଗବେଷଣା କାମ ହାତକୁ ନେଇଥିଲେ ଓ ଅନେକ ପୁସ୍ତକ ପ୍ରକାଶିତ କରିଥିଲେ । ଏକାଧାରରେ ଶ୍ରମିକ ନେତା, ସାମାଜିକ ଅନୁଷ୍ଠାନ ଓ ନାଗରିକ ସମାଜର ସକ୍ରିୟ କର୍ମୀ ହିସାବରେ ଲୁଲା ଏକ ବହୁମୁଖୀ ପ୍ରତିଭା ଥିଲେ ।

ଜଗତୀକରଣ ପ୍ରକ୍ରିୟାକୁ ସମର୍ଥନ କରି ଯେତେବେଳେ ବିଶ୍ୱ ଆର୍ଥିକ ସଂଗଠନ ବା ୱାର୍ଲ୍ଡ ଇକୋନୋମିକି ଫୋରମ୍(World Economic Forum) ଜନ୍ମଲାଭ ନେଲା ଓ ଉଦାରୀକରଣ ତଥା ବିଶ୍ୱ ପୁଞ୍ଜିବାଦର ପ୍ରଭାବ ଚର୍ତ୍ତୁଦିଗକୁ ବିସ୍ତାର କରିବାର ପ୍ରମୁଖ ଭୂମିକା ଗ୍ରହଣ କରିଥିଲା, ସେତେବେଳେ ବିଶ୍ୱ ସାମାଜିକ ସଂଗଠନ ବା ୱାର୍ଲ୍ଡ ସୋସିଆଲ ଫୋରମ୍ (World Social Forum) ଗରିବ ଓ ଶୋଷିତଙ୍କ ସ୍ୱାର୍ଥରକ୍ଷା ପାଇଁ ଗଠନ କରାଯାଇଥିଲା । ଏହି ବିଶ୍ୱ ସାମାଜିକ ସଂଗଠନ ଗଠନ କରିବାରେ ଲୁଲା ଓ ତାଙ୍କର ୱାର୍କରସ୍ ପାର୍ଟି ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲା । ଲୁଲା ରାଷ୍ଟ୍ରପତି ହେବା ପର୍ଯ୍ୟନ୍ତ ଜଗତୀକରଣ ପ୍ରକ୍ରିୟାକୁ ଘୋର ବିରୁଦ୍ଧ ଯେ କରୁଥିଲେ ଏ କଥା ଅତି ନିର୍ଭୁଲ ଭାବେ କୁହାଯାଇ ପାରେ । କିନ୍ତୁ ରାଷ୍ଟ୍ରପତି ହେବା ପରଠାରୁ ଜଗତୀକରଣ ଓ ଉଦାରୀକରଣ ପ୍ରକ୍ରିୟା ପ୍ରତି ମନୋଭାବ ବଦଳିଛି ବୋଲି ତାଙ୍କର ସମର୍ଥକମାନେ ସମାଲୋଚନା କରିଛନ୍ତି । ଲୁଲାଙ୍କ ସରକାର ଓ ତାଙ୍କର ଦୃଷ୍ଟିକୋଣ ଓ ଆଦର୍ଶବାଦର କ୍ରମ ପରିବର୍ତ୍ତନକୁ ଏକ ରାଜନୈତିକ ଦୃଷ୍ଟିକୋଣରୁ ବିଚାର କରାଯାଇ ପାରେ । ବ୍ରାଜିଲ୍‌ରେ ବହୁଭାଗ ଲୋକଙ୍କ ଦାରିଦ୍ର୍ୟ ଓ ଅନାହାରର ବାସ୍ତବ ସମାଧାନ କ'ଣ ? ଗୋଟାଏ ପାର୍ଶ୍ୱରେ ବିଶ୍ୱ ସାମାଜିକ ମଞ୍ଚ ଓ ଅନ୍ୟ ପାର୍ଶ୍ୱରେ ବିଶ୍ୱ ଆର୍ଥିକ ମଞ୍ଚ- ଲୁଲା ଯେମିତି ଉଭୟ ପାର୍ଶ୍ୱରୁ ଲାଭ ନେବା ପାଇଁ ଚାହିଁଛନ୍ତି । ଜଣେ ବାମପନ୍ଥୀ ରାଷ୍ଟ୍ରପତି ଓ ଜଣେ ବଜାର ବାଣିଜ୍ୟ ପ୍ରତି ଆକର୍ଷିତ ରାଷ୍ଟ୍ରନୀତିଜ୍ଞ, ବ୍ରାଜିଲ୍‌କୁ ବିଶ୍ୱ ଦରବାରରେ ପ୍ରତିଷ୍ଠିତ କରାଇବାକୁ ସଂକଳ୍ପବଦ୍ଧ ଓ ଭ୍ରଷ୍ଟାଚାର ପାଇଁ ନିନ୍ଦିତ ହୋଇଥିବା ଲୁଲାଙ୍କୁ ବ୍ରାଜିଲ୍‌ର ସାମାଜିକ, ଆର୍ଥିକ ଓ ରାଜନୈତିକ ପରିବେଶରୁ ଦେଖିବାକୁ ହେବ । ୨୦୦୩ ମସିହାରେ ସରକାରୀ କର୍ମଚାରୀଙ୍କ ସାମାଜିକ ସୁରକ୍ଷା ପାଇଁ ସଂସ୍କାର କରି ଲୁଲା ଅବସର ଗ୍ରହଣ ପରେ ବିଭିନ୍ନ ପ୍ରକାରର ନିରାପତ୍ତା ବ୍ୟବସ୍ଥା କରିଥିଲେ । ଏଥିପାଇଁ ସେ ସମାଲୋଚିତ ମଧ୍ୟ ହୋଇଥିଲେ । ଏବେ ତାଙ୍କର ବ୍ୟବସ୍ଥାଗତ ସଂସ୍କାରର ଏକ ତାଲିକା କରାଯାଉ ।

- ୨୦୦୩ ମସିହାରେ ଟିକସ୍ ନୀତିରେ ସେ ସଂସ୍କାର ଆଣିଥିଲେ ।
- ୨୦୦୪ ମସିହାରେ ନ୍ୟାୟ ବ୍ୟବସ୍ଥାରେ ସଂସ୍କାର ଅଣାଯାଇଥିଲା ବ୍ରାଜିଲ୍‌ରେ ।
- ୨୦୦୪ ଜୈବନିରାପତ୍ତା ଆଇନ୍ କରି ସେ ବିହନ ଆଦି ଉପରେ ଗବେଷଣାକୁ

ନିୟନ୍ତ୍ରଣ କରାଯାଇଥିଲା ।

- ୨୦୦୪ରେ ଅସ୍ତ୍ରଶସ୍ତ୍ର ନିୟନ୍ତ୍ରଣ ଆଇନ୍ ପ୍ରଣୟନ କରାଯାଇଥିଲା ।

ସବୁ ସମାଲୋଚନା ସତ୍ତ୍ୱେ ଲୁଲା ୨୦୦୬ ମସିହାରେ ନିର୍ବାଚନ ପୁନର୍ବାର ଲଢ଼ି ଜିତିଛନ୍ତି । ଲୁଲାଙ୍କ ସମର୍ଥକ ଏଥର କିନ୍ତୁ ସାମାଜିକ ଆନ୍ଦୋଳନମାନେ ନ ହୋଇ ରକ୍ଷଣପନ୍ଥୀମାନେ ହୋଇଛନ୍ତି ଯାହା ଅନେକ ସନ୍ଦେହ ସୃଷ୍ଟି କରିଛି । ବିଲ୍ ଗେଟ୍ସ ହୁଅନ୍ତୁ ବା ଜର୍ଜ ବୁଶ ହୁଅନ୍ତୁ, ମନମୋହନ ସିଂ ହୁଅନ୍ତୁ କି କୋଫି ଆନନ୍ ହୁଅନ୍ତୁ, ଲୁଲା ସବୁଠାରେ ବ୍ରାଜିଲ୍‌ର ହିତ ଓ ସ୍ୱାର୍ଥକୁ ଜଗିଛନ୍ତି ଓ ବ୍ରାଜିଲ୍‌କୁ ଏକ ବିଶ୍ୱ ଶକ୍ତି ହିସାବରେ ଛିଡ଼ା କରାଇବାକୁ ଉଦ୍ୟମରତ ଅଛନ୍ତି । ଆପଣମାନେ ଜାଣିଥିବେ ଯେ ଭାରତ, ବ୍ରାଜିଲ୍ ଓ ଦକ୍ଷିଣ ଆଫ୍ରିକା ଭିତରେ ଏକ ନେଟ୍‌ୱାର୍କ ପ୍ରତିଷ୍ଠା କରାଯାଇଛି ସହଯୋଗର । ବିଶ୍ୱ ରାଜନୀତିରେ ଏହା କ୍ରମେ ବିଶେଷ ସ୍ଥାନ ଅର୍ଜନ କରିଛି । ଲୁଲା ଏଥିପାଇଁ ମଧ୍ୟ ଇତିହାସରେ ସ୍ଥାନ ଗ୍ରହଣ କରିଛନ୍ତି ।

କିନ୍ତୁ ଅସଲ କଥା ହେଉଛି ଲୁଲା ଓ ୱାର୍କରସ୍ ପାର୍ଟି ଭିତରେ ସମ୍ପନ୍ଧ । ୱାର୍କରସ୍ ପାର୍ଟି ବା ପି.ଟି.(P.T.)ଙ୍କ ଅନ୍ୟତମ ପ୍ରତିଷ୍ଠାତା ହେଉଛନ୍ତି ବିଶ୍ୱ ବିଖ୍ୟାତ ଶିକ୍ଷାବିତ୍ ପାଉଲେ ଫ୍ରାଏରେ । ୧୯୮୯ ମସିହାରେ ଯେତେବେଳେ ଲୁଲା ପ୍ରଥମେ ରାଷ୍ଟ୍ରପତି ପାଇଁ ପାର୍ଥୀ ହୋଇଥିଲେ ପାଉଲେ ପ୍ରାଏରେ ତାଙ୍କୁ ସମର୍ଥନ ଜଣାଇଥିଲେ । ବ୍ରାଜିଲ୍‌ର ସାମରିକ ଶାସନର ପର୍ଯ୍ୟାୟ ଶେଷ ହୋଇ ଏକ ଗଣତାନ୍ତ୍ରିକ ପର୍ଯ୍ୟାୟ ଆରମ୍ଭ ହେବ ବୋଲି ପାଓଲୋ ଫ୍ରାଏର ସ୍ୱପ୍ନ ଦେଖିଥିଲେ ଓ ତାଙ୍କର ଶିକ୍ଷା ଆନ୍ଦୋଳନ ଏଥିପ୍ରତି ଉଦ୍ଦିଷ୍ଟ ଥିଲା । ଲୁଲା ଜଣେ ଶ୍ରମିକରୁ ଆରମ୍ଭ କରି ରାଷ୍ଟ୍ରପତି ହେଲେ ଓ ବ୍ରାଜିଲ୍‌ର ବିକାଶ ଓ ରାଜନୀତିର ଧାରା ବଦଳେଇଲେ ଏହା କମ୍ କଥା ନୁହେଁ । ୧୯୯୩ ମସିହାରେ ଫ୍ରାଏରେ ଏକ ଚିଠି ଲୁଲାଙ୍କ ପାଖକୁ ଲେଖିଥିଲେ ଯାହାକୁ ମୁଁ ନିମ୍ନରେ ଉଦ୍ଧାର କରୁଛି ।

ସ୍ନେହର ଲୁଲା,

ମୋର ଏ ଭାଇର ଆଲିଙ୍ଗନ ଗ୍ରହଣ କରିବ ଏବଂ ଏହା ସହ ନେବ ବନ୍ଧୁତ୍ୱ ଓ ସଦିଚ୍ଛାର ଭାବନା । ତମର ସାହସ ଓ ଶକ୍ତି ପାଇଁ ବହୁତ ଧନ୍ୟବାଦ । ତମେ ଗଣତନ୍ତ୍ର ପାଇଁ ଲଢ଼ିଛ ଓ ଆମ ସମସ୍ତଙ୍କ ଭଲ ପାଇଁ ଉତ୍ସର୍ଗ କରିଛ । ଆମର ଜଣେ ପୁତ୍ର ବର୍ତ୍ତମାନ ଯେ ମିଛ, ଲୋଭ,

ପ୍ରବଞ୍ଚନା ବିରୁଦ୍ଧରେ ଲଢ଼ିପାରୁଛି ମୁଁ ତାକୁ ଦେଖିବା ପାଇଁ ଯେମିତି ବଞ୍ଚି ରହିଛି ।

ପାଉଲୋ ଫ୍ରାଏରେ( ୨ ।୧୨ ।୮୯)

ଆପଣ କୁହନ୍ତୁ ଲୁଲା ଆମ ସମୟର ଜଣେ ନାୟକ ନୁହନ୍ତି କି ନାହିଁ ।

(୩)

ହ୍ୟୁଗୋ ସାଭେଜ (Hugo Chavez)ଙ୍କ ବ୍ୟକ୍ତିତ୍ୱ ଓ ବୀରତ୍ୱକୁ ପନ୍ଦରଶହ ଶବ୍ଦରେ ପ୍ରକାଶ କରି ହେବ ନାହିଁ ବୋଲି ମୁଁ ପ୍ରଥମେ ପାଠକଙ୍କ ଆଗରେ କ୍ଷମା ପ୍ରାର୍ଥନା କରୁଛି । ମୁଁ ଯଦି ଏଯୁଗର ଲରମଣ୍ଟୋଭ ହୋଇଥାଆନ୍ତି ଓ ଏ ହିରୋ ଅଫ୍ ଆୱାର ଟାଇମ୍ (A Hero of Our Time) ଭଳି ଉପନ୍ୟାସ ଲେଖିଥାଆନ୍ତି ତାହା ହେଲେ ତାହା ନିଶ୍ଚୟ କେତେ ଖଣ୍ଡ କରି ହୋଇଥାଆନ୍ତା । ସମ୍ବାଦପତ୍ରର ସ୍ତମ୍ଭ ପାଇଁ ଓ ସାଧାରଣ ପାଠକଙ୍କ ଅବଗତି ନିମନ୍ତେ ମୋତେ ସବୁ କଥା ସଂକ୍ଷେପରୁ ସଂକ୍ଷେପତର କରିବାକୁ ହେବ । ଆମ ସମସ୍ତଙ୍କ ପାଇଁ ହ୍ୟୁଗୋ ରାଫାଏଲ୍ ସାଭେଜ୍ ଫ୍ରିଆସ୍ ଏକ ମହାନ୍ ନାୟକ ନିଃସନ୍ଦେହରେ । ସାରା ଆମେରିକା ଓ ପଶ୍ଚିମ ପୃଥିବୀର ପୁଞ୍ଜିବାଦୀ ଶକ୍ତି ଯଦି ସର୍ବପ୍ରଥମେ କାହାର ପତନ ଚାହୁଁଥାଆନ୍ତି, ତା'ହେଲେ ସାଭେଜ୍ ସେ ତାଲିକାର ସର୍ବୋଚ୍ଚ ସ୍ଥାନ ଅଧିକାର କରିବେ । ଜଗତୀକରଣର ସମର୍ଥକମାନେ ଯଦି କାହାର ବିଲୟର ସ୍ୱପ୍ନ ଦେଖୁଥାଆନ୍ତି, ସାଭେଜ୍ ତାହାର ମୂଳକେନ୍ଦ୍ର ହେବେ । ଆମେରିକାର ପାଦ୍ରୀମାନେ ସାଭେଜ୍‌ଙ୍କୁ ହତ୍ୟା କରାଗଲେ ଖୁସି ହେବେ ବୋଲି ପ୍ରକାଶ୍ୟ ମତ ଦେଇଛନ୍ତି । ଆମେରିକାର ସି:ଆଇ:ଏ(C.I.A) ସାଭେଜ୍‌ଙ୍କୁ ମାରିବା ପାଇଁ ଅଥବା ଗାଦିଚ୍ୟୁତ କରିବା ପାଇଁ ଯେତେ ପ୍ରକାର ଉଦ୍ୟମ କରିବା ଆବଶ୍ୟକ କରି ସାରିଲାଣି । ଭେନେଜୁଏଲାର ଗଣତାନ୍ତ୍ରିକ ପ୍ରକ୍ରିୟା, ମୁକ୍ତ ନିର୍ବାଚନ ଓ ବହୁ ଜନମତ ଏକଥା ପ୍ରମାଣିତ କରିଛି ବାରମ୍ବାର ଯେ ସାଭେଜ୍‌ଙ୍କୁ ରାଜନୀତିରେ, ଲୋକପ୍ରିୟତାରେ, ଆଦର୍ଶବାଦୀ ମତାମତରେ ଅଥବା ଦାମ୍ଭିକତାରେ ସାରାବିଶ୍ୱର ପୁଞ୍ଜି ପରାସ୍ତ କରିପାରିବ ନାହିଁ । ସେଇଥିପାଇଁ ତୃତୀୟ ବିଶ୍ୱର ଉଦୟମାନ ଓ ତେଜସ୍ୱୀ ନେତା ହିସାବରେ ସାଭେଜ୍ ଆଜି ନିଜକୁ ପ୍ରତିଷ୍ଠା କରିସାରିଛନ୍ତି । ମୋ

ଦୃଷ୍ଟିରେ ଜଗତୀକରଣ ପ୍ରକ୍ରିୟା ସହ ଯେଉଁ ତୁମୂଳ ଲଢ଼ାଇ ଚାଲିଛି ସେଥିରେ ସେନାପତିର ମୁକୁଟ ବର୍ତ୍ତମାନ ସାଭେଜ୍ ପିନ୍ଧିଛନ୍ତି ।

ସାଭେଜ୍‌ଙ୍କୁ ଚିହ୍ନିବାକୁ ହେଲେ ଭେନେଜୁଏଲା ସହ ପରିଚିତ ହେବାକୁ ହେବ । ଦକ୍ଷିଣ ଆମେରିକାର ଦେଶ ଭେନେଜୁଏଲା ଯେଉଁଠି ଜନ୍ମ ନିଅନ୍ତି ବିଶ୍ୱସୁନ୍ଦରୀମାନେ । ଦେଶରେ ଗଚ୍ଛିତ ଅଛି ପେଟ୍ରୋଲିଅମ ସମ୍ପଦ ଓ ତୈଳ । ସାଭେଜ୍‌ଙ୍କ ଜନ୍ମ ୧୯୫୪ମସିହା ଜୁଲାଇ ୨୮ତାରିଖରେ । ଜନ୍ମସ୍ଥାନ ସାବାନେଟା । ଆଣ୍ଡିଜ୍ ପର୍ବତ ଘେରି ରହିଛି ପଶ୍ଚିମ ଓ ଉତ୍ତର ଦିଗରେ । ବାପାମାଆ ସ୍କୁଲ ଶିକ୍ଷକ । ଜେଜେବାପା ପେଡ୍ରୋ ପେରେଜ୍ ଡେଲ୍‌ଗାଡୋ (Pedro Ferez Delgado) ଜଣେ ବିପ୍ଳବୀ । ସେ ଏତେ ଲୋକ ପ୍ରିୟଥିଲେ ଯେ ସାଭେଜ୍‌ଙ୍କ ବେଳେ ବାପାଙ୍କୁ ସମସ୍ତେ ମାଇସାନ୍ତା ବୋଲି ଡାକୁ ଥିଲେ । ପରିବାର ଥିଲା ବିଶାଳ ଭୂସମ୍ପଦର ଅଧିକାରୀ କିନ୍ତୁ ପେଡ୍ରୋ ଡେଲ୍‌ଗାଡୋ ବିପ୍ଳବୀ ଥିବାରୁ ସରକାର ଜମିକୁ ଜବତ କରିଥିଲେ । ଅଶୀବର୍ଷ ପରେ ସାଭେଜ୍ ତାହାକୁ ପୁଣି ନିଜର କର୍ତ୍ତୃତ୍ୱକୁ ନେଇଥିଲେ । ଏ ଜମିକୁ ନେଇ ନାନା କଥା, ସ୍ୱପ୍ନ ଓ ସମ୍ଭାବନାର ବିଭିନ୍ନ ତରଙ୍ଗ ସୃଷ୍ଟି ହୋଇଥିଲା ସାଭେଜ୍‌ଙ୍କ ମାନସପଟରେ । ସାଭେଜ୍‌ଙ୍କ ଛୋଟ ଗାଁ ସାବାନେଟା ଓ ପ୍ରଦେଶ ବାରିନାସ୍ ଭେନେଜୁଏଲାର ଆଭ୍ୟନ୍ତରୀଣ ଇଲାକାରେ ଅବସ୍ଥିତ ଥିବାରୁ ସହରୀ ସଭ୍ୟତା ଓ ଜଟିଳତାରୁ ବହୁତ ଦୂରରେ ଥିଲା । ବାପାମାଆ ଶିକ୍ଷା ମାଧମରେ ନିଜକୁ ଆଧୁନିକ କରିବା ଓ ଗ୍ରାମ୍ୟଜୀବନର ସୀମିତ ପରିସୀମାକୁ ଅତିକ୍ରମ କରିବାକୁ ସାଭେଜ ଓ ତାଙ୍କର ଭାଇଭଉଣୀଙ୍କୁ ପ୍ରୋତ୍ସାହନା ଦେଇଥିଲେ । ଅବଶ୍ୟ ମାଆ ଚାହିଁଥିଲେ ସାଭେଜ ଦେଶ ଚର୍ଚ୍ଚର ପାଦ୍ରୀ ହେବାକୁ । କିନ୍ତୁ ଚର୍ଚ୍ଚର ଦୃଷ୍ଟିକୋଣ ଓ ଯୀଶୁଖ୍ରୀଷ୍ଟଙ୍କୁ ଏକ ନିର୍ବୋଧଭାବେ ଚିତ୍ରଣ କରିବାକୁ ସାଭେଜ୍ ଘୃଣା କରିଥିଲେ । ତାଙ୍କ ମତରେ ଯୀଶୁ ଥିଲେ ଜଣେ ବିଦ୍ରୋହୀ । ଚର୍ଚ୍ଚ ପ୍ରତି ତାଙ୍କର ଅବିଶ୍ୱାସ ବଢ଼ିଥିଲା ପିଲାଟି ଦିନରୁ । ସାବାନେଟାରେ ରହୁଥିଲେ ଜେଜେମାଆ ଓ ତାଙ୍କ ପାଖରେ ରହି ସାଭେଜ୍ ପିଲାଦିନ କାଟିଥିଲେ । ଏଣୁ ମାଆଙ୍କଠାରୁ ଜେଜେମାଆ ଥିଲେ ବେଶୀ ନିଜର । ସାଭେଜ୍ ଦିନରେ ପ୍ରାଥମିକ ସ୍କୁଲକୁ ଯାଉଥିଲେ କିନ୍ତୁ ସନ୍ଧ୍ୟାରେ ଜେଜେମାଆଙ୍କ ତିଆରି ଚକୋଲେଟ୍ ସେ ବୁଲି ବୁଲି ବିକୁଥିଲେ । ସାଭେଜ୍ ଗୀତ ବୋଲିବାକୁ ଭଲ ପାଉଥିଲେ ଓ ଚିତ୍ରାଙ୍କନ ପ୍ରତି ମଧ୍ୟ । ବେସ୍ ବଲ୍ ଖେଳିବାକୁ ଆଗ୍ରହ ତାଙ୍କର ବି କମ୍ ନଥିଲା ।

ଗୁଆନାରେ ନଦୀର ପ୍ରାକୃତିକ ଦୃଶ୍ୟ ତାକୁ ପରିବେଶପ୍ରେମୀ କରିଥିଲା ସାରା ଜୀବନ ପାଇଁ । ଭେନେଜୁଏଲାର ବେସ୍ ବଲ୍ ଖେଳାଳୀ ଇସିଆସ୍ ଲାଟିଗୋ ସାଭେଜ୍ ତାଙ୍କର ପିଲାଦିନର ହିରୋ ଥିଲେ । ଲାଟିଗୋ ସାଭେଜ୍ଙ୍କ ସମ୍ପର୍କୀୟ ନଥିଲେ ସତ କିନ୍ତୁ ତାଙ୍କର କଥା ସବୁବେଳେ ଭାବୁଥିଲେ । ଲାଟିଗୋ ଏକ ବିମାନ ଦୁର୍ଘଟଣାରେ ତେଇସ ବର୍ଷ ବୟସରେ ୧୯୬୯ ମସିହାରେ ମରିଯିବା ପରେ ସାଭେଜ୍ ତାଙ୍କ କଥା ବାରମ୍ବାର ମନେ କରାଉଥିଲେ । ବୌଦ୍ଧିକ ସ୍ତରରେ ସାଭେଜ୍ଙ୍କ ଅସଲ ହିରୋଥିଲେ ସାଇମନ୍ ବଲିଭାର୍ । ଯିଏ ଥିଲେ ଜଣେ ବିପ୍ଳବୀ ଓ ଦକ୍ଷିଣ ଆମେରିକାର ସବୁ ବିପ୍ଳବର ସେଥିଲେ ମହାନ୍ ପ୍ରେରଣା । ସାଭେଜ୍ ସାଇମନ୍ ବଲିଭାରଙ୍କ ଜୀବନ, ଆଦର୍ଶ ଓ ଲେଖନୀ ଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ । ସତର ବର୍ଷ ବୟସରେ ସାଭେଜ୍ ଜଣେ ଆର୍ମି କ୍ୟାଡେଟ୍ ଭାବେ ଯୋଗ ଦେଇଥିଲେ । ମିଲିଟାରୀ ବେସ୍‌ବଲ୍ ଟିମ୍‌ରେ ତାଙ୍କୁ କୁଆଡେ ସହଜରେ ଯାଗା ମିଳିଯିବ ଏହା ତାଙ୍କ ପାଇଁ ଥିଲା ମୁଖ୍ୟ ଆକର୍ଷଣ । ମିଲିଟାରୀ ଏକାଡେମୀର କ୍ୟାଡେଟ୍ ସମୟରେ ସେ ନିର୍ଦ୍ଦିଷ୍ଟ ମତବାଦ ପ୍ରତି ଆକୃଷ୍ଟ ହୋଇଥିଲେ ଓ ତାଙ୍କର ଏକ ରାଜନୈତିକ ଚିନ୍ତାଧାରା ବିକଶିତ ହୋଇଥିଲା । ଇତିହାସ ବହି ପଢ଼ିବା ଓ ରାଜନୈତିକ ବିତର୍କ କରିବା ଥିଲା ତାଙ୍କର ଏକ ଅଭ୍ୟାସ । ପ୍ରଥମେ ପାନାମା ଦେଶର ବିପ୍ଳବୀ ରାଷ୍ଟ୍ରନେତା ଓମାର ଟୋରିଜୋଙ୍କୁ ସେ ନିଜର ଆଦର୍ଶ ବୋଲି ଗ୍ରହଣ କରିଥିଲେ । ଆମେରିକାର ନିୟନ୍ତ୍ରଣରୁ ପାନାମା କେନାଲ୍ ଓ ନିଜର ଦେଶକୁ କିପରି ଉଦ୍ଧାର କରିବେ ଓ ଟୋରିଜୋଙ୍କ ପ୍ରଚେଷ୍ଟା ସାଭେଜ୍ଙ୍କୁ ଖୁବ୍ ପ୍ରଭାବିତ କରିଥିଲା । ପରେ ପରେ ସେ ପେରୁର ବିପ୍ଳବୀ ରାଷ୍ଟ୍ରପତି ହୁଆନ୍ ଭେଲାସ୍କୋ ଆଲ୍‌ଭାରାଡୋଙ୍କ ସଂସ୍ପର୍ଶରେ ଆସିଥିଲେ ୧୯୭୪ ମସିହାରେ ଓ ବାମପନ୍ଥୀ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇଥିଲେ । ଜନସାଧାରଣ ଓ ମିଲିଟାରୀ ଉଭୟେ କେମିତି ବିପ୍ଳବରେ ସାମିଲ୍ ହୋଇଥିଲେ, ଏ କଥାର ପେରୁର ବିପ୍ଳବୀ ଇତିହାସରୁ ଶିଖିଥିଲେ । କ୍ରମେ କ୍ରମେ ବାମପନ୍ଥୀ ଚିନ୍ତାଧାରା ଦ୍ୱାରା ବେଶୀ ଆକର୍ଷିତ ହୋଇଥିଲେ । ସାଇମନ୍ ବଲିଭାର୍ଙ୍କ ଠାରୁ ଫିଡେଲ୍ କାଷ୍ଟ୍ରୋ ପର୍ଯ୍ୟନ୍ତ ଅନେକ ତାଙ୍କୁ ବାମପନ୍ଥୀ ଚିନ୍ତା ଦ୍ୱାରା ପ୍ରଭାବିତ କରିଥିଲେ । ନିର୍ବାଚନ ହେଉ କି ରାଜନୀତି ହେଉ, ଆଦର୍ଶବାଦ ହେଉ କି ସାମ୍ୟବାଦୀ ଚିନ୍ତାଧାରା ହେଉ, ବାମପନ୍ଥୀ ଚିନ୍ତାଧାରାର ଆଭାସ ମିଳୁଥିଲା ସାଭେଜ୍ଙ୍କ ମାନସିକତାରେ ।

ରାଷ୍ଟ୍ରପତି ହ୍ୟୁଗୋ ସାଭେଜ୍‌ଙ୍କୁ ଟିକିଏ ଦୂରରୁ ମୁଁ ଦେଖିଥିଲି ୨୦୦୩ ମସିହାରେ ବ୍ରାଜିଲର ପୋର୍ଟୋ ଆଲେଗ୍ରେ ଠାରେ ଆୟୋଜିତ ହୋଇଥିବା ବିଶ୍ୱ ସାମାଜିକ ସଂଗଠନର ଏକ ମିଟିଂରେ । ଏକ ଓଜସ୍ୱୀନି ଭାଷଣ ଶୁଣିବାକୁ ମିଳିଥିଲା । ଆମେରିକା ବିରୁଦ୍ଧରେ ସେ ବିଷୋଦ୍‌ଗାର କରିଥିଲେ । ୧୯୯୮ ମସିହାରେ ସେ ନିର୍ବାଚନରେ ଜିତି ଭେନଜୁଏଲାର ରାଷ୍ଟ୍ରପତି ହିସାବରେ ନିର୍ବାଚିତ ହୋଇଥିଲେ । ପାଇଥିଲେ ଶତକଡ଼ା ୫୬ଭାଗ ଭୋଟ । ଗୋଟାଏ ଦେଶ ଯେଉଁଠି ଶତକଡ଼ା ୮୦ଭାଗ ଲୋକ ଗରିବ ଏବଂ ଯେଉଁଠି ଶ୍ରେଣୀ ବିଭାଜନ ସ୍ପଷ୍ଟ ଏବଂ ଗରିବ ଓ ଧନୀଙ୍କ ଭିତରେ ଖାଇ ବ୍ୟାପକ, ସେଠାରେ ସାଭେଜ୍ ସୃଷ୍ଟି କରିଥିଲେ ଏକ ସ୍ପନ୍ଦନ । ପେଟ୍ରୋଲିୟମ ପଦାର୍ଥ ଓ ତେଲର ରପ୍ତାନୀରୁ ଯେଉଁ ଲାଭ ହୋଇଥିଲା । ସେଥିରେ ବିଭିନ୍ନ ବିକାଶମୂଳକ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ ସାଭେଜ୍ । କ୍ୟୁବା ଆଦି ଦେଶର ସାହାଯ୍ୟ ମଧ୍ୟ ନେଇଥିଲେ । ଦଶଲକ୍ଷ ଗରିବ ପିଲା ପାଇଲେ ମୁକ୍ତ ପ୍ରାଥମିକ ଶିକ୍ଷା । ବାରଲକ୍ଷ ଲୋକ ପୌଢ଼ଶିକ୍ଷା ଦ୍ୱାରା ସାକ୍ଷରତା । ଅଢ଼େଇ ଲକ୍ଷ ତରୁଣ ସେକାଣ୍ଡାରୀ ସ୍କୁଲରେ ନାମ ଲେଖାଇଲେ । ୨୦୦୩ରେ ତିନୋଟି ନୂତନ ବିଶ୍ୱ ବିଦ୍ୟାଳୟ ସ୍ଥାପିତ ହେଲା । ୨୦୦୬ ସୁଦ୍ଧା ତିନୋଟି ସହ ଆଉ ଛଅଟି ବିଶ୍ୱବିଦ୍ୟାଳୟ ମିଶିଲା । କ୍ୟୁବାରୁ ଆସିଲେ ଦଶହଜାର ଡାକ୍ତର ଓ ଭେନେଜୁଏଲାର ପ୍ରାଥମିକ ସ୍ୱାସ୍ଥ୍ୟର ସ୍ତର ବହୁଗୁଣରେ ବଢ଼ିଲା । ବିଭିନ୍ନ ବାଧାବିଘ୍ନ ସତ୍ତ୍ୱେ ୨୨ଲକ୍ଷ ହେକ୍ଟର ଜମି ଲକ୍ଷେ ଷୋହଳ ହଜାର ପରିବାରଙ୍କୁ ବଣ୍ଟାଗଲା । ଏହାଦ୍ୱାରା ସାଭେଜ୍‌ଙ୍କ ଲୋକପ୍ରିୟତା ଏତେ ବଢ଼ିଗଲା ଯେ ଆମେରିକାର ପ୍ରତିରୋଧ ସତ୍ତ୍ୱେ ସେ ନିର୍ବାଚନ ବାରମ୍ବାର ଜିତି ଚତୁର୍ଥଥର ଜିତିଲେ । ଏବେ ପଞ୍ଚମଥର ଜିତିବା ନିଶ୍ଚିତ ବୋଲି ଜଣା ପଡିଛି । ନିର୍ବାଚନ ପଦ୍ଧତିରେ ସ୍ୱଚ୍ଛତା ଅଛି ବୋଲି ଜାତିସଂଘ ଓ ଆର୍ନ୍ତଜାତିକ ଦଳ ବାରମ୍ବାର ଘୋଷଣା କରି ଆମେରିକାର ଅପପ୍ରଚାରକୁ ମିଥ୍ୟା ବୋଲି ପ୍ରମାଣିତ କରିଥିଲେ । ଜଗତୀକରଣ ବିରୁଦ୍ଧରେ ସାଭେଜ୍ ଗୋଟିଏ କଥା ପ୍ରମାଣ କରିଛନ୍ତି । ତାଙ୍କର ଭାଷାରେ "ପ୍ରତିଦିନ ମୁଁ ଗୋଟିଏ କଥାରେ ନିଃସନ୍ଦେହରେ ଦୃଢ଼ ନିଶ୍ଚିତ ହେଉଛି ଯେ ପୁଞ୍ଜିବାଦର ସୀମା ଆମକୁ ଡେଇଁବାକୁ ହେବ । କିନ୍ତୁ ପୁଞ୍ଜିବାଦକୁ ଅତିକ୍ରମ କରିବାକୁ ହେଲେ ପୁଞ୍ଜିବାଦର ସହାୟତା ନେବା ଠିକ୍ ହେବନାହିଁ । ଲୋଡା ହେବ ସମାଜବାଦ ଓ ସାମ୍ୟବାଦ । ଆହୁରି ମଧ୍ୟ ଲୋଡା ହେବ ଗଣତନ୍ତ୍ର ।

କିନ୍ତୁ ଏ ଗଣତନ୍ତ୍ର ୱାସିଂଟନ୍‌ରୁ ଜବରଦସ୍ତ ଲଦି ଦିଆଯିବ ନାହିଁ । ଆମକୁ ସମାଜବାଦକୁ ଆଉଥରେ ଆବିଷ୍କାର କରିବାକୁ ହେବ । ସୋଭିଏତ୍ ଋଷିଆ ଢ଼ାଞ୍ଚାର ସମାଜବାଦ ଏବେ ଯଥାର୍ଥ ନୁହେଁ । ଏକ ନୂତନ ବ୍ୟବସ୍ଥା ଗଢ଼ିବାକୁ ହେବ ଯେଉଁଥିରେ ନଥିବ ପ୍ରତିଯୋଗିତା ଏବଂ ରହିଥିବ ସହଯୋଗ ।"

ଏହା ସେ ଭେନେଜୁଏଲାରେ ପ୍ରମାଣିତ କରିଛନ୍ତି । ସେ କହିଛନ୍ତି ଯେ ପେଟ୍ରୋଲିୟମ ଓ ତୈଳ ବ୍ୟବସାୟରୁ ଉପଲବ୍‌ଧ ଚାରିଶହ କୋଟି ଡଲାର ସେ ଖର୍ଚ୍ଚ କରିଛନ୍ତି । ଶିକ୍ଷା, ସ୍ୱାସ୍ଥ୍ୟ, ଗୃହ ଯୋଗାଣ, ମାଇକ୍ରୋକ୍ରେଡିଟ୍ ଆଦିରେ ସବୁଠାରେ ଗରିବତମ ବ୍ୟକ୍ତି ଏଥିରେ ଉପକୃତ ହୋଇଛନ୍ତି । ଏହାକୁ ଜଗତୀକରଣ ଓ ଉଦାରୀକରଣର ସମର୍ଥକମାନେ ଭୁଲ ଖର୍ଚ୍ଚ ବୋଲି କହିଆସିଛନ୍ତି । କାରଣ ଗରିବମାନଙ୍କ ବିକାଶ ଓ ଅଭ୍ୟୁଦୟ ହୋଇ, ଦାରିଦ୍ର୍ୟ ଦୂରୀକରଣ ହେଲେ ଜଗତୀକରଣ ପରାସ୍ତ ହେବ । ଘରୋଇକରଣକୁ ସେ ବିରୋଧ କରନ୍ତି । ଶିକ୍ଷା, ସ୍ୱାସ୍ଥ୍ୟ, ଜଳଯୋଗାଣ, ଗୃହନିର୍ମାଣ କଦାପି ଘରୋଇକର୍ରଣ ନହେଉ ବୋଲି ସେ କହି ଆସିଛନ୍ତି । ଯେଉଁ ବ୍ୟକ୍ତିକୈନ୍ଦ୍ରିକ ପୁଞ୍ଜି ମଣିଷମାନଙ୍କ ଅଧିକାର ଛିନ୍ନ କରୁଛି ସେ କେବେହେଲେ ମୌଳିକ ସୁବିଧାକୁ ଯେପରି ନିୟନ୍ତ୍ରଣ ନକରୁ ତାହାଁହି ସାଭେଜ୍ ଚାହାଁନ୍ତି । ଭାରତ ସେ ଆସିଛନ୍ତି ଓ ଏ ଦେଶର ଅଗଣିତ ଗରିବ ଚାଷୀ କୃଷକ ଓ ଶ୍ରମିକମାନଙ୍କ ସହ ସମ୍ବନ୍ଧ ସ୍ଥାପନ କରିଛନ୍ତି ।

ଚାରିଦିନିଆ ଭାରତ ଗସ୍ତରେ ସାଭେଜ୍ ରାଜିନାମା ଚୁକ୍ତି କରିଛନ୍ତି- ସେ ଦୀର୍ଘସ୍ଥାୟୀ ଭାବରେ ଭାରତକୁ ପେଟ୍ରୋଲିୟମ ପଦାର୍ଥ ଯୋଗାଇ ଦେବେ ଯେମିତି ଆମେରିକାକୁ ଯୋଗାଉଛନ୍ତି । ଏବେ ଭେନେଜୁଏଲା ପୃଥିବୀର ୫ମ ବୃହତ୍ତମ ତୈଳ ଉତ୍ପାଦନକାରୀ ଦେଶ ହିସାବରେ ଚାହୁଁଛି ତାର ରପ୍ତାନୀକୁ ବଢ଼ାଇବ ଓ ଆମେରିକା ବଜାର ଉପରେ ଆଉ ବେଶୀ ନିର୍ଭର କରିବ ନାହିଁ । ସେ ଭାରତ ଗସ୍ତରେ ଆସି ଉଭୟ ବାଇଓଟେକ୍‌ନୋଲୋଜି ଏବଂ ରେଳଶିଳ୍ପ ଚୁକ୍ତିନାମାକୁ ଦୋହରାଇଥିଲେ । ସାଭେଜ୍ ରାଷ୍ଟ୍ରପତି ହେବା ଦିନଠାରୁ ଭେନେଜୁଏଲା ଏବଂ ଆମେରିକା ମଧ୍ୟରେ ସମ୍ପର୍କ ହ୍ରାସ ପାଉଛି । ଏବଂ ସାଭେଜ୍ ମଧ୍ୟ ଦୋଷାରପ କରିଛନ୍ତି କିପରି ଆମେରିକା ତାଙ୍କୁ ମାରିଦେବା ପାଇଁ ଚକ୍ରାନ୍ତ ଚଳାଇଛି । ଯଦିଓ ୱାସିଂଟନ ପୋଷ୍ଟ ଏହି ବିବୃତିକୁ 'ହାସ୍ୟାସ୍ପଦ ଏବଂ ଅସତ୍ୟ' ବୋଲି ପ୍ରତ୍ୟାଖାନ

କରିଛି । ଭାରତ ମିଳିତ ଜାତିସଂଘରେ ନିରାପତ୍ତା ପରିଷଦର ସଭ୍ୟ ପଦ ନେଇ ସାଭେଜ୍ କହିଛନ୍ତି ଏହା ମିଳିତ ଜାତିସଂଘକୁ ଅଧିକ ମଜଭୂତ ଏବଂ ଗଣତାନ୍ତ୍ରୀକ କରି ଗଢ଼ି ତୋଳିବ ।

ଭେନେଜୁଏଲା ରାଷ୍ଟ୍ରର ଅଧିକାରଭୁକ୍ତ ତୈଳ କମ୍ପାନୀ ପେଟ୍ରୋଲିୟମ୍ ଦେ ଭେନେଜୁଏଲା (PDVSA) ଭାରତରେ ରାଜସ୍ଥାନ ଭଳି ଉତ୍ତର ପଶ୍ଚିମ ରାଜ୍ୟର ପରିଚାଳିତ କ୍ଷେତ୍ର କମ୍ପାନୀକୁ ମଧ୍ୟ ଆବଶ୍ୟକ ପରାମର୍ଶ ଦେଉଛି କପରି ତୈଳ ଉତ୍ତୋଳିତ କରାଯାଇପାରିବ । ପରୋକ୍ଷରେ ସାଭେଜ୍ କହିଛନ୍ତି ଆମେରିକା ସେମାନଙ୍କୁ ଆଘାତ କଲେ ବି ସେମାନେ ତୈଳ ରପ୍ତାନୀ ବନ୍ଦ କରିବେ ନାହିଁ । ଫେବୃୟାରି ୧୪-୨୦୦୫ରେ ଭେନେଜୁଏଲା ଏବଂ ବ୍ରାଜିଲର 'କୌଶଳପୂର୍ଣ୍ଣ ସଂଯୁକ୍ତ ମେଣ୍ଟ'ରେ ୨୦ ଗୋଟି ରାଜିନାମା ଯଥା- ଶକ୍ତି, ପେଟ୍ରୋଲିୟମ, କୃଷି, ଖଣି ଓ ଯୋଗାଯୋଗ ଆଦି ବିଷୟକୁ ନେଇ ଭାରତ, ବ୍ରାଜିଲ ଓ ଦକ୍ଷିଣ ଆଫ୍ରିକା ମଧ୍ୟରେ ସୂତ୍ରପାତ ଆରମ୍ଭ ହୋଇଛି ।

(୪)

ସଂକ୍ଷେପରେ ଓ ସ୍ନେହରେ ତାଙ୍କୁ ସମସ୍ତେ ଡାକନ୍ତି ଇଭୋ ମୋରାଲେସ୍ । ପୁରାନାମ ଇଭୋ ମୋରାଲେସ୍ ଆଇମା । ଘର ବଲିଭିଆର ଅରିନୋକା ପ୍ରଦେଶର ଇଶାଲାଭ ଗ୍ରାମରେ । ପଦବୀ ତାଙ୍କର ରାଷ୍ଟ୍ରପତି । ସ୍ୱତନ୍ତ୍ର ପରିଚୟ ହେଉଛି ସେ ଜଣେ ସ୍ଥାନୀୟ ଆମେରିକୀଭାରତୀୟ (ଆମେରିଣ୍ଡିଆନ୍) ବା ଜଣେ ମୂଳ ଆଦିବାସୀ । ମୋ ଆଗରେ ବର୍ତ୍ତମାନର ବଦଳୁଥିବା ବିଶ୍ୱ ରଙ୍ଗମଞ୍ଚରେ ସେ ଜଣେ ଇତିହାସ ସୃଷ୍ଟି କରିଥିବା ହିରୋ । ନିଶ୍ଚିତ ଭାବେ ନାୟକ ଆମ ସମୟର । ମହାତ୍ମାଗାନ୍ଧୀ ଧୋତି, ଚଦର ଓ ଚପଲ ପିନ୍ଧି ବର୍କିଙ୍ଗ୍ ହାମ୍ ରାଜପ୍ରସାଦକୁ ଯାଇ ଇଂଲଣ୍ଡର ସମ୍ରାଟଙ୍କୁ ଭେଟିବା ଭଳି ସେ ୨୦୦୬ ମସିହାରେ ସ୍ପେନର ରାଜାଙ୍କୁ ଭେଟିଥିଲେ ଦକ୍ଷିଣ ଆମେରିକାର ଆଦିବାସୀର ପୋଷାକ ପିନ୍ଧି । ନା ଥିଲା ସୁଟ୍, ଟାଇ ଅଥବା ଜଣେ ରାଷ୍ଟ୍ରପତିର ବେଶଭୂଷା । ଚହଲ ସୃଷ୍ଟି କରିଥିଲା ପାଶ୍ଚାତ୍ୟ ଜଗତରେ ଯେ, ଗୋଟାଏ ଦେଶର ସର୍ବୋଚ୍ଚ ଶାସନ ଅଧିକାର କରିଥିବା ଜଣେ ବ୍ୟକ୍ତି ସବୁ ପରମ୍ପରା ଭାଙ୍ଗି ଦେଇପାରେ । ଇଭୋ ମୋରାଲେସ୍ ବର୍ତ୍ତମାନ

ଆମେରିକା ଦ୍ୱାରା ଚିହ୍ନଟ ହୋଇଥିବା ଶତ୍ରୁ ତାଲିକାର ଶୀର୍ଷ ସ୍ଥାନରେ ଅଛନ୍ତି । ତାଙ୍କୁ ନିଶ୍ଚିହ୍ନ କରିଦେବା ପାଇଁ ସବୁପ୍ରକାର ଉଦ୍ୟମ ହୋଇ ସାରିଛି । ନିର୍ବାଚନରେ ପରାସ୍ତ କରିବାର ଚକ୍ରାନ୍ତ କରାଯାଇଛି । ଚରିତ୍ର ହନନ କରାଯାଇଛି ଗଣମାଧ୍ୟମରେ । କିନ୍ତୁ ଇଭୋ ମୋରାଲେସ୍ ବର୍ତ୍ତମାନ ଜଣେ ପ୍ରତିଷ୍ଠିତ ନେତୃତ୍ୱ । ଶେ ଗୁଏଭେରା ମରି ଗଲେଣି । ଫିଡେଲ କାଷ୍ଟ୍ରୋ ବର୍ତ୍ତମାନ ଜରାଗ୍ରସ୍ତ । ବ୍ରାଜିଲ୍‌ର ଲୁଲା, ଭେନେଜୁଏଲାର ହ୍ୟୁଗୋ ସାଭେଜ୍‌ଙ୍କ ସହ ଇଭୋ ମୋରାଲେସ୍ ବର୍ତ୍ତମାନ ଜଗତୀକରଣର ଗୋଟିଏ ଦୃଢ଼ ବିରୋଧୀ ଭାବେ ଠିଆ ହୋଇଛନ୍ତି ।

ଇଭୋ ମୋରାଲେସ୍‌ଙ୍କ ଭଲକରି ଚିହ୍ନିବାକୁ ହେଲେ ବଲିଭିଆର ସାମାଜିକ-ଅର୍ଥନୈତିକ-ରାଜନୈତିକ ପରିସ୍ଥିତିକୁ ବୁଝିବାକୁ ହେବ । ଆଉ ମଧ୍ୟ ବୁଝିବାକୁ ହେବ, ବଲିଭିଆର ୫୦୦ବର୍ଷର ଇତିହାସ । ସ୍ପେନୀୟ ଉପନିବେଶବାଦୀମାନେ ଯେବେଠୁ ସ୍ଥାନୀୟ ଆମେରିକୀୟ ଆଦିବାସୀମାନଙ୍କୁ ଲୁଣ୍ଠନ ଓ ଶୋଷଣକରି ଉପନିବେଶ ବସାଇଲେ । ବଲିଭିଆର ତୈଳ ଓ ପ୍ରାକୃତିକ ଗ୍ୟାସ୍ ଉପରେ ଆମେରିକା, ଫ୍ରାନ୍‌ସ, ବ୍ରାଜିଲ୍ ଭଳି ଦେଶଗୁଡିକରୁ ବ୍ରାଜିଲ୍‌ର ପେଟ୍ରୋବ୍ରାସ୍, ଇଂଲଣ୍ଡର ବିଜିଗ୍ରୁପ୍, ଆମେରିକାର ଏକ୍‌ସନ ମୋବିଲ୍ ଏବଂ ଫ୍ରାନ୍‌ସର ଟୋଟାଲ୍ ଭଳି ତୈଳ କମ୍ପାନୀ ବଲିଭିଆର ପ୍ରଚୁର ପ୍ରାକୃତିକ ଗ୍ୟାସକୁ ନିଜନିଜ ଦେଶକୁ ରପ୍ତାନୀ କରିବା ସହ ବଲିଭିଆର ଅର୍ଥନୀତି ଓ ରାଜନୀତିକୁ ନିୟନ୍ତ୍ରଣ କରୁଛନ୍ତି । କିନ୍ତୁ ସବୁଠାରୁ ଭୟାନକ ଓ ହିଂସାତ୍ମକ ବ୍ୟବସାୟ ହେଉଛି ନିଶା ବେପାରୀଙ୍କ କୋକେନ୍‌ର ବେଆଇନ୍ ଉତ୍ପାଦନ ଓ ଚୋରାବେପାର । କୋକେନ୍ ତିଆରି ହୁଏ କୋକୋ ନାମକ ଏକ ଗଛରୁ । ଆମେରିକୀୟ ଭାରତୀୟମାନେ ବଲିଭିଆର ମୂଳ ଅଧିବାସୀ ଓ ଆଦିବାସୀ । କୋକା ଚାଷ ତାଙ୍କର ପାରମ୍ପରିକ ବୃତ୍ତି । କୋକୋ ପତ୍ରକୁ ଚୋବାଇବା ଓ କୋକୋ ପତ୍ରକୁ ଚା କରି ପିଇବା ଏକ ସାଂସ୍କୃତିକ ଓ ପୌଷ୍ଟିକ ଅଭ୍ୟାସ । ଯାହା ଘରକୁ ଯିବ, ସିଏ ଆତିଥ୍ୟ ଚର୍ଚ୍ଚା କରିବ କୋକା ପତ୍ର ଜରିଆରେ । କିନ୍ତୁ ନିଶାବେପାରୀମାନେ କୋକାରୁ ତିଆରି କରନ୍ତି କୋକେନ୍ ଓ ଯୁକ୍ତରାଷ୍ଟ୍ର ଆମେରିକା ସମେତ ସାରାବିଶ୍ୱକୁ ରପ୍ତାନୀ କରନ୍ତି ଗୋପନରେ । ଯୁକ୍ତରାଷ୍ଟ୍ର ଆମେରିକାର ଡ୍ରଗ୍ ଭିତରେ କୋକେନ୍ ହେଉଛି ସବୁଠାରୁ ମାରାତ୍ମକ । ଏଇଥିପାଇଁ ଯୁକ୍ତରାଷ୍ଟ୍ର ଆମେରିକାର ମୁଣ୍ଡ ବ୍ୟଥା । କେମିତି ବନ୍ଦ ହେବ ହଜାର ହଜାର କୋଟି

ଡ଼ଲାରର ଚୋରା ବ୍ୟବସାୟ । ଯୁକ୍ତରାଷ୍ଟ୍ର ଏଇଥିପାଇଁ ବଲିଭିଆକୁ ପଠାଇଛି ତା'ର ସୈନ୍ୟବାହିନୀ ଓ ହସ୍ତକ୍ଷେପ କରିଛି ବଲିଭିଆର ପ୍ରଶାସନରେ । ତିଆରି କରିଛି ବିଭିନ୍ନ ରଣନୀତି । ବଲିଭିଆରେ ସୃଷ୍ଟି ହୋଇଛି ହିଂସା ଓ ପ୍ରତିହିଂସାର ବାତାବରଣ । ସୈନ୍ୟବାହିନୀ ଯେତିକି ଚାଷୀଙ୍କୁ ହତ୍ୟା କରିଛି, ଗରିଲା ବାହିନୀ ଓ ଚୋରାବ୍ୟବସାୟୀଙ୍କ ଦ୍ୱାରା ମଧ୍ୟ ସେତିକି ସୈନିକ ନିହିତ ହୋଇଛନ୍ତି । କୋକା ଚାଷ ଓ କୋକେନ୍ ତିଆରି ସରିନାହିଁ । ଅଥଚ ହଜାର ହଜାର ବଲିଭିଆ ଅଧିବାସୀ ନିଖୋଜ ହୋଇଯାଇଛନ୍ତି । ଡ୍ରଗ୍ କାର୍ଟେଲ୍‌କୁ ନିପାତ କରିବାକୁ ଆମେରିକାର ସୈନ୍ୟବାହିନୀ ଓ ସି.ଆଇ.ଏ. ଗତ କେତେ ଦଶକ ଧରି ଚେଷ୍ଟା କରି ବିଫଳ ହୋଇଛି । କୋକା ଚାଷ ବଲିଭିଆର ସାଂସ୍କୃତିକ ମୂଲ୍ୟବୋଧକୁ ଅକ୍ଷୁର୍ଣ୍ଣ ରଖିଛି । ଆଇମାରା ଓ କ୍ୱେଚୁଆ ଆଦିବାସୀ କୋକା ଚାଷ କରିଆରେ ନିଜର ଆଦିବାସୀ ପରିଚୟ ବଜାୟ ରଖିଛନ୍ତି ।

ଇଭୋ ମୋରାଲେସ୍ ଜଣେ ଆଇମାରା ଆଦିବାସୀ ଓ ଜଣେ କୋକା ଚାଷୀ । କୋକା ଚାଷୀମାନଙ୍କୁ ସଂଗଠିତ କରିବା ପ୍ରକ୍ରିୟାରେ ତାଙ୍କର ରାଜନୈତିକ ଜୀବନ ଆରମ୍ଭ ହୁଏ । ଯୁକ୍ତରାଷ୍ଟ୍ର ଆମେରିକା ଯେଉଁ ଢ଼ଙ୍ଗରେ କୋକା ଚାଷୀମାନଙ୍କୁ ନିୟନ୍ତ୍ରଣ କରିବା ଓ ଏହି ଚାଷର ମୂଳୋତ୍ପାଟନ କରିବାକୁ ଉଦ୍ୟମ କରିଆସୁଥିଲା, ତାକୁ ବିରୋଧ କରୁଥିଲେ ଇଭୋ ମୋରାଲେସ୍ । ପ୍ରତିଷ୍ଠା କରିଥିଲେ ଏକ ସମାଜବାଦୀ ରାଜନୈତିକ ପାର୍ଟି ଯାହାର ନାମଥିଲା 'ମାସ୍' । ଏହାର ସ୍ପେନୀୟ ଅର୍ଥ ଥିଲା 'ଅଧିକ' । ପ୍ରାକୃତିକ ବାଷ୍ପ ଓ ତୈଳ ବ୍ୟବସାୟକୁ ନେଇ ଯେଉଁ ବଲିଭିଆରେ ଯୁଦ୍ଧ ଚାଲିଥିଲା, ମାସ୍ ପାର୍ଟି ସେଥିରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ୨୦୦୨ ମସିହାରେ ରାଷ୍ଟ୍ରପତି ନିର୍ବାଚନରେ ପ୍ରଥମଥର ପାଇଁ ଇଭୋ ଅବତୀର୍ଣ୍ଣ ହୋଇ ଦ୍ୱିତୀୟସ୍ଥାନ ଅଧିକାର କରିଥିଲେ । ବଲିଭିଆର ପାରମ୍ପରିକ ରାଜନୈତିକ ଦଳ ଯେଉଁମାନେ ଶାସନ ଗାଦୀରେ କେତେଶହ ବର୍ଷଧରି ନିଜକୁ ପ୍ରତିଷ୍ଠା କରିଥିଲେ ଓ ଅଣଆଦିବାସୀ ଥିଲେ, ଇଭୋ ମୋରାଲେସ୍‌ଙ୍କ ରାଜନୈତିକ ଅଭ୍ୟୁଦୟ ଦ୍ୱାରା ବିଚଳିତ ହୋଇ ପଡିଥିଲେ । କିନ୍ତୁ ସାରା ଦକ୍ଷିଣ ଆମେରିକାରେ ଜଣେ ସ୍ଥାନୀୟ ଆଦିବାସୀ ରାଜନୀତି କ୍ଷେତ୍ରରେ ନିଜକୁ ପ୍ରତିଷ୍ଠା କରିବା ହେଉଛି ବିଶ୍ୱ ଇତିହାସରେ ଏକ ବଡ ଘଟଣା । ସମସ୍ତେ ଇଭୋ ମୋରାଲେସ୍‌ଙ୍କ ପ୍ରତି

ସମର୍ଥନ ଓ ସମ୍ମାନ ପ୍ରଦର୍ଶନ କରି ଆସିଛନ୍ତି । ସେତେବେଳେ ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରଦୂତ ବଲିଭିଆର ଜନତାଙ୍କୁ ଅନୁରୋଧ କରିଥିଲେ ଇଭୋଙ୍କୁ ଭୋଟ୍ ନଦେବାକୁ । ମୋରାଲେସ୍‌ଙ୍କ ବିରୋଧରେ ଯୁକ୍ତରାଷ୍ଟ୍ର ଆମେରିକାରେ ସମ୍ମାନ କ୍ଷୁର୍ଣ୍ଣ ହେଲାଭଳି ପ୍ରଚାର କରାଯାଇଥିଲା । କିନ୍ତୁ ଇଭୋ ମୋରାଲେସ୍‌ଙ୍କ ରାଜନୈତିକ ଜୀବନର ମୂଳଦୂଆ ସୁଦୃଢ଼ ହୋଇସାରିଥିଲା । ଅବଶେଷରେ ୨୦୦୫ ମସିହାରେ ସେ ନିର୍ବାଚନ ଜିତି ଚାଳିଶତମ ରାଷ୍ଟ୍ରପତି ଭାବେ ଶପଥ ଗ୍ରହଣ କଲେ । ବଲିଭିଆର ରାଜନୈତିକ ଇତିହାସରେ ଏକ ନୂତନ ଅଧ୍ୟାୟ ଯୋଡା ହୋଇଗଲା । ନିଜେ ଇଭୋ ମୋରାଲେସ୍ କହିଛନ୍ତି "ଗତ ୫୦୦ ବର୍ଷର ଆମେରିକୀଭାରତୀୟଙ୍କ ବିରୋଧାଭାସ ବୃଥା ହୋଇନାହିଁ । ବିରୋଧାଭାସର ଅଧ୍ୟାୟ ଶେଷ ହୋଇ ଆଉ ଏକ ୫୦୦ ବର୍ଷର ସ୍ଥାନୀୟ ଲୋକଙ୍କ କ୍ଷମତା ଓ ଶକ୍ତିର ଅଧ୍ୟାୟ ଆରମ୍ଭ ହୋଇଛି । ଆମକୁ ଶୋଷଣ ଓ ଲୁଣ୍ଠନର ଶିକାର ହେବାକୁ ପଡିଛି ଓ ଅନେକ ଅପମାନ ସହିବାକୁ ପଡିଛି । ଆମକୁ ମଣିଷ ହିସାବରେ ଗ୍ରହଣ କରାଯାଇନାହିଁ । କିନ୍ତୁ ବର୍ତ୍ତମାନ ଆମେ ଆସିଛୁ କ୍ଷମତାକୁ  ଯେଉଁ ଅନ୍ୟାୟ, ଶୋଷଣ ଓ ଅତ୍ୟାଚାର ଶହ ଶହ ବର୍ଷଧରି ଆମକୁ ଚାପି ଧରି ଥିଲା, ତାହା ଏବେ ଶେଷ ହୋଇଛି ।" ମୁଁ ୨୦୦୩ ମସିହାରେ ବ୍ରାଜିଲ୍‌ର ପୋର୍ଟୋ ଆଲେଗ୍ରେଠାରେ ଆୟୋଜିତ ହୋଇଥିବା ବିଶ୍ୱ ସାମାଜିକ ସଂଗଠନର ଏକ ଅଧିବେଶନରେ ଇଭୋ ମୋରାଲେସ୍‌ଙ୍କୁ ଶୁଣିବାକୁ ପାଇଥିଲି । ଜଣେ ଆଦିବାସୀ ନେତା ଓ ଆମେରିକାର ପୁଞ୍ଜିବାଦ ଓ ଉପନିବେଶବାଦର ବିରୋଧୀ ହିସାବରେ ସେ ଖୁବ୍ ଲୋକପ୍ରିୟ ଥିଲେ । ଜଗତୀକରଣ ପ୍ରକ୍ରିୟା ବିରୋଧରେ ସେ ସ୍ୱରଉତ୍ତୋଳନ କରିବାରେ ଅନ୍ୟତମ ନେତୃତ୍ୱ ନେଇଥିଲେ । ବ୍ରାଜିଲ୍‌ର ଲୁଲା, ଭେନେଜୁଏଲାର ସାଭେଜଙ୍କ ସହ ସେ ଜଗତୀକରଣ ବିରୋଧରେ ଚାଲିଥିବା ସାମାଜିକ ଆନ୍ଦୋଳନର ମୂଳଧାଡିରେ ଥିଲେ । ୨୦୦୫ ମସିହାରେ ସେ ରାଷ୍ଟ୍ରପତି ଭାବେ ନିର୍ବାଚିତ ହେବା ପରେ ଜଗତୀକରଣ ବିରୋଧରେ ତାଙ୍କର ରାଜନୀତି ଓ ରଣନୀତିକୁ ସେ ଆହୁରି ସ୍ପଷ୍ଟ କରିଥିଲେ । ଏସବୁକୁ ବିଶଦ ଭାବେ ଆଲୋଚନା କରିବାର ଯଥାର୍ଥତା ନିହିତ ରହିଛି ।

ଇଭୋ ମୋରାଲେସ୍ କ୍ଷମତାକୁ ଆସିଲା ମାତ୍ରକେ ତୈଳ ଓ ପେଟ୍ରୋଲିୟମ ବାଷ୍ପ ବ୍ୟବସାୟର ଜାତୀୟକରଣ କରିଥିଲେ । ତୈଳ କମ୍ପାନୀମାନେ ଲାଭଖୋର

ନହୋଇ ବିକାଶ ପ୍ରକ୍ରିୟାରେ ସହଭାଗିତା ବଢ଼ାଇବାକୁ ସେ ଆହ୍ୱାନ ଦେଇଥିଲେ । ତୈଳ କମ୍ପାନୀମାନଙ୍କୁ ସେ ତାଗିଦ୍ କରିଥିଲେ ଯେ ବଲିଭିଆର ସେମାନେ ମାଲିକ ନୁହନ୍ତି । ଏହା ତୈଳ କମ୍ପାନୀମାନଙ୍କୁ କ୍ଷୁବ୍ଧ କରିଥିଲା । କିନ୍ତୁ ଭେନେଜୁଏଲାର ହ୍ୟୁଗୋ ସାଭେଜ୍‌ଙ୍କ ଭଳି ଯେ ତୈଳ ଓ ପେଟ୍ରୋଲିୟମ ବାଷ୍ପର ରପ୍ତାନୀର ଲାଭାଂଶକୁ ଶିକ୍ଷା, ସ୍ୱାସ୍ଥ୍ୟ ଓ କୃଷି ଆଦି ସାମାଜିକ ଓ ଅର୍ଥନୈତିକ ବିକାଶମୂଳକ କାର୍ଯ୍ୟରେ ବିନିଯୋଗ କରିଥିଲେ । କ୍ୟୁବାରୁ ଆସିଥିଲେ ଡାକ୍ତର ଓ ଶିକ୍ଷକ । ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କୁ ସେ ଆହ୍ୱାନ ଦେଇଥିଲେ ଗ୍ରାମାଞ୍ଚଳକୁ ଯାଇ ପ୍ରୌଢ଼ ଶିକ୍ଷା ଓ ସାକ୍ଷରତା କାର୍ଯ୍ୟକ୍ରମକୁ ସଫଳ କରିବା ପାଇଁ । ଭୂସଂସ୍କାର କାର୍ଯ୍ୟକ୍ରମ ଜରିଆରେ ୨୩୦୦ ପରିବାରକୁ ନୂଆ ଜମି ସ୍ୱତ୍ୱ ଦେଇଥିଲେ ଏବଂ ଏହାଦ୍ୱାରା ୯୬୦୦ ବର୍ଗ ମାଇଲ୍ ଜମି ବଣ୍ଟା ଯାଇଥିଲା । ବଲିଭିଆର ଜନସଂଖ୍ୟାର ଶତକଡ଼ା ଅଶୀଭାଗ ଲୋକ ଗରିବ ଆଦିବାସୀ । ସେଇମାନଙ୍କ ବିକାଶ ଓ ପ୍ରଗତି ହିଁ ଇଭୋ ମୋରାଲେସ୍‌ଙ୍କ ମୂଳ ଲକ୍ଷ୍ୟ ଥିଲା । ବଲିଭିଆର ପ୍ରାକୃତିକ ସମ୍ପଦ ଉପରେ ବଲିଭିଆର ଆଦିବାସୀଙ୍କ ସମ୍ପୂର୍ଣ୍ଣ ଅଧିକାର ଅଛି ବୋଲି ସେ ବାରମ୍ବାର ଜାହିର କରିଥିଲେ । ଯୁକ୍ତରାଷ୍ଟ୍ର ଆମେରିକାର ମୁକ୍ତ ବାଣିଜ୍ୟ ନୀତି ଓ ଉପନିବେଶବାଦୀ ମାନସିକତାକୁ ସେ ଖୋଲାଖୋଲି ସମାଲୋଚନା କରୁଥିଲେ । ନବ ଉଦାରୀକରଣ ଚିନ୍ତାଧାରା ଯେ ବଲିଭିଆ ପାଇଁ ଗ୍ରହଣ ଯୋଗ୍ୟ ନୁହେଁ ତାହାକୁ ସେ ଆଚରଣରେ, ଉଚ୍ଚାରଣରେ, ଆଉ କାମରେ ଓ କଥାରେ ଦେଖାଇ ଦେଇଥିଲେ । କୋକା ଚାଷ ସପକ୍ଷରେ ଇଭୋ ମୋରାଲେସ୍ ଦୃଢଯୁକ୍ତି ବାଢିଥିଲେ । ସେ କହୁଥିଲେ ଶୂନ୍ୟ କୋକେନ୍, ଶୂନ୍ୟ ନିଶାବେପାର, କିନ୍ତୁ ମୁକ୍ତ କୋକା ଚାଷ । କାରଣ କୋକା ହେଉଛି ବଲିଭିଆ ଆଦିବାସୀ ଓ ତଥା ମୂଳ ଆଦିବାସୀଙ୍କ ସାଂସ୍କୃତିକ ଅଧିକାର । କୋକା ଚାଷୀଙ୍କୁ ସଂଗଠିତ କରିଥିଲା ସେ ଅନେକବାର ଜେଲ୍ ଯାଇଛନ୍ତି । ବଲିଭିଆନ୍ ଆର୍ମି ତାଙ୍କୁ ଖୁବ୍ ପିଟି ଅତ୍ୟାଚାର କରି ଓ ମୃତବୋଲି ଭାବି ଜଙ୍ଗଲରେ ଫୋପାଡି ଦେଇଥିଲା । ଭାଗ୍ୟକୁ ଇଭୋ ମୋରାଲେସ୍ ବଞ୍ଚିଗଲେ ଏବଂ ବଞ୍ଚିରହି ରାଷ୍ଟ୍ରପତି ହେଲେ । କୋକା ପତ୍ର ଖାଇଖାଇ ଆଇମାରା ଓ କ୍ୱେଚୁଆ ଆଦିବାସୀମାନେ ଶହ ଶହ ବର୍ଷର ଉପନିବେଶବାଦ ସହି ପାରିଛନ୍ତି ଏବଂ ଏହାକୁ କଦାପି ବନ୍ଦ କରିହେବ ନାହିଁ ବୋଲି ସେ କହୁଥିଲେ । ଗୋରା ଲୋକମାନେ ବଲିଭିଆକୁ ଆସିବା ଦିନଠାରୁ କୋକାର ଅପବ୍ୟବହାର କରିଆସିଛନ୍ତି । କୋକେନ୍‌ର ବ୍ୟବସାୟରୁ ଲାଭ ଉଠାଇଛନ୍ତି ।

କୋକେନ୍ ବେପାରକୁ ବନ୍ଦ କରିବା ପାଇଁ ମଧ ହିଂସା ଓ ହତ୍ୟାର ବାତାବରଣ ସୃଷ୍ଟି କରିଛନ୍ତି । ସେ କୋକେନ୍ ବ୍ୟବସାୟକୁ ବନ୍ଦ କରିବା ଓ ନିଶା ବେପାରୀମାନଙ୍କୁ ଜବତ କରିବାର ସପକ୍ଷରେ ମେଣ୍ଟ ସୃଷ୍ଟି କରିବାକୁ ପ୍ରସ୍ତାବ ଦେଇଥିଲେ କିନ୍ତୁ ଏହାକୁ ଆଳକରି ଆମେରିକା ଯେ ଦକ୍ଷିଣ ଆମେରିକାର ରାଜନୀତିକୁ ନିଜ ନିୟନ୍ତ୍ରଣରେ ରଖିବ ସେ ଏହାର ଖୁବ୍ ବିରୋଧୀ ଥିଲେ ।

ଶହ ଶହ ବର୍ଷର ଉପନିବେଶବାଦ, ଏକଛତ୍ରବାଦ, ସାମରିକ ବାହିନୀର ଅକଥନୀୟ ଅତ୍ୟାଚାର ଓ ତୈଳକମ୍ପାନୀଙ୍କ ଲାଭଖୋରନୀତିକୁ ସମାପ୍ତ କରି ଇଭୋ ମୋରାଲେସ୍ ସ୍ଥାନୀୟ ଲୋକଙ୍କ ଆଶା ଓ ଆକାଂକ୍ଷା ପୂରଣ କରିଥିଲେ ରାଷ୍ଟ୍ରପତି ଭାବେ ନିର୍ବାଚନ ଲଢ଼ି ଓ ଶେଷରେ ବିଜୟ ଲାଭ କରି । ସାମାଜିକ ଆନ୍ଦୋଳନ ଓ ସମାଜବାଦୀ ଚିନ୍ତାଧାରାରୁ ମୋରାଲେସ୍‌ଙ୍କ ଗଣତନ୍ତ୍ରଧର୍ମୀ ଚିନ୍ତାଧାରା ରୂପନେଇଥିଲା । ସେ କହୁଥିଲେ ଯେ ବଲିଭିଆର ଶାସନ ଢ଼ାଞ୍ଚା ପ୍ରାଚୀନ ଆଦିବାସୀଙ୍କ ମୂଲ୍ୟବୋଧ ଉପରେ ଆଧାରିତ ହେବ । କାରଣ ଏଥିରେ ଭରି ରହିଛି ସହଭାଗିତା, ସାମାଜିକ ଭ୍ରାତୃତ୍ୱ ଓ ନିଷ୍ଠାପରତା । ସେ ସମସ୍ତ ବିପ୍ଳବର ସମର୍ଥନ କରୁନଥିଲେ ଯଦିଓ ଶେ ଗୁଏଭେରା ତାଙ୍କର ଆଦର୍ଶ ଥିଲେ । ଗଣତାନ୍ତ୍ରିକ ବିପ୍ଳବ ଥିଲା ତାଙ୍କର ବିଶ୍ୱାସ ଓ ଜଗତୀକରଣର ପ୍ରଭାବକୁ ସେ ପ୍ରତିହତ କରିବାକୁ ଏହାକୁ ଅସ୍ତ୍ର କରିଥିଲେ । କ୍ଷମତାକୁ ଆସିବା ପୂର୍ବରୁ ଓ ପରଠାରୁ ସେ ଗୋଟିଏ କଥା ପ୍ରକାଶ କରୁଥିଲେ ଓ ତାହା ହେଉଛି ପୁଞ୍ଜିବାଦ ମଣିଷର ସର୍ବଶ୍ରେଷ୍ଠ ଶତ୍ରୁ । ସେ ଆହୁରି ମଧ କହୁଥିଲେ ଯେ ଊନବିଂଶ ଶତାବ୍ଦୀ ଥିଲା ୟୁରୋପର ଓ ବିଂଶ ଶତାବ୍ଦୀ ଥିଲା ଆମେରିକାର କିନ୍ତୁ ଏକବିଂଶ ଶତାବ୍ଦୀ ଏବେ ଦକ୍ଷିଣ ଆମେରିକାର । ୟୁରୋପିଆନ୍ ଇୟୁନିଅନ୍ ଭଳି ଲାଟିନ୍ ଆମେରିକାରେ ଏକ ସଂଘ ପ୍ରତିଷ୍ଠା ତାଙ୍କର ଲକ୍ଷ୍ୟ । ସେ ସ୍ୱପ୍ନ ଦେଖୁଛନ୍ତି ସାରା ମହାଦେଶ ପାଇଁ ଗୋଟିଏ ବଜାର ଓ ଗୋଟିଏ ମୁଦ୍ରା । ତାଙ୍କର ବିଶ୍ୱାସ ଯେ ଜଗତୀକରଣର ସ୍ତମ୍ଭ ହିସାବରେ ବିରାଜମାନ କରିଥିବା କର୍ପୋରେଟ୍ ଓ ବ୍ୟବସାୟୀ ସଂସ୍ଥାମାନେ ରାଷ୍ଟ୍ରର ନିୟନ୍ତ୍ରଣରେ ରହିବେ । ରାଷ୍ଟ୍ରକୁ ଦବାଇପାରିବେ ନାହିଁ ।

ଏ ପୃଥିବୀର ଅନେକ ଦେଶରେ ଆଦିମ ଅଧିବାସୀ ଏବଂ ମୂଳବଂଶଜ ଆଦିବାସୀ ରହିଛନ୍ତି । ଆଦିବାସୀ ଅଞ୍ଚଳରେ ପ୍ରାକୃତିକ ସମ୍ପଦର ପ୍ରାଚୁର୍ଯ୍ୟ ଭରି ରହିଛି । ଏଇଥି ପାଇଁ ସବୁ ପୁଞ୍ଜିପତି ଏବଂ କର୍ପୋରେଟ୍‌ମାନଙ୍କର ବିଷ ଦୃଷ୍ଟି

ପଡ଼ିଛି । ସବୁଆଡେ ଆଦିବାସୀମାନେ ଆପଣାର ସ୍ଥିତି ଓ ପରିଚୟ କ୍ରମାଗତଭାବେ ହରାଇ ବସୁଛନ୍ତି । ବିଭିନ୍ନ ଦେଶରେ ଆଦିବାସୀମାନେ ଶାସନ ଗାଦିରେ ବସିବାକୁ ସୁଯୋଗ ପାଉଛନ୍ତି, ଯେମିତି ଭାରତରେ ଆଦିବାସୀମାନେ ସରପଞ୍ଚଠାରୁ ଆରମ୍ଭକରି ମୁଖ୍ୟମନ୍ତ୍ରୀ ଓ କେନ୍ଦ୍ରମନ୍ତ୍ରୀ ହେବାକୁ ସୁଯୋଗ ପାଉଛନ୍ତି । କିନ୍ତୁ ବାସ୍ତବତା ହେଉଛି ଥରେ କ୍ଷମତାକୁ ଆସିଲେ ସେମାନେ ଅନେକ କ୍ଷେତ୍ରରେ ନିଜତ୍ୱ ହରାଇ ବସୁଛନ୍ତି । କିନ୍ତୁ ଆଜିକାର ପୃଥିବୀରେ ଇଭୋ ମୋରାଲେସ୍ ଏକ ଉଦାହରଣ ହୋଇ ସବୁ ଆଦିବାସୀଙ୍କ ଗର୍ବ ଓ ଗୌରବର ପାତ୍ର ହୋଇ ସାରିଛନ୍ତି । ସେ କୃଷକ ସଂଗଠନରେ ଥାଆନ୍ତୁ କି ରାଷ୍ଟ୍ରପତି ହୁଅନ୍ତୁ, ବା ବିଭିନ୍ନ ରାଷ୍ଟ୍ର ମୁଖ୍ୟଙ୍କୁ ଭେଟନ୍ତୁ ବା କଲମ୍ବିଆ ବିଶ୍ୱ ବିଦ୍ୟାଳୟରେ ବକ୍ତୃତା ଦିଅନ୍ତୁ, ସେ କେବେହେଲେ ନିଜର ଆଦିବାସୀତ୍ୱ ହରାଇ ନାହାନ୍ତି । ସେ ସୁଟ୍ କୋର୍ଟ ପିନ୍ଧି ନାହାନ୍ତି କି ଗଳାଲେଙ୍ଗୁଟି ବାନ୍ଧି ନାହାନ୍ତି । ରାଷ୍ଟ୍ରପତି ହିସାବରେ ତାଙ୍କ ମୁଣ୍ଡ ଉପରେ କିଏ ଛତା ଧରିବାକୁ ସେ ସୁଯୋଗ ଦେଇନାହାନ୍ତି । ମୂଳତଃ ସେ ଜଣେ ଆଦିବାସୀ ଓ ଜଣେ ଚାଷୀର ପୁଅ । ସେ ଏକାଧାରରେ ଜଣେ ପଶୁପାଳକ, ବଂଶୀବାଦକ, ମାରାଥନ୍‌ଧାବକ, ଇଟା ଗଢିବା ମିସ୍ତ୍ରୀ, ଫୁଟବଲ କୋଚ୍ ଏବଂ କୋକା ଚାଷୀ । ସେ ଆଦିବାସୀ ହିସାବରେ ବିଶ୍ୱାସ କରନ୍ତି ଧରିତ୍ରୀମାଆକୁ । ସେ ଆହୁରି ବିଶ୍ୱାସ କରନ୍ତି ଆଇମାରା ଆଦିବାସୀଙ୍କ ଚାରୋଟି ନିୟମ- ଚୋରୀ କରିବେ ନାହିଁ, ମିଛ କହିବେ ନାହିଁ, ଅଳସୁଆ ହେବେ ନାହିଁ ଓ ନ୍ୟାୟକୁ ସମର୍ପଣ କରିବେ ନାହିଁ । ବର୍ତ୍ତମାନର ଜଗତୀକରଣର ବିଷମ ସମୟ ଭିତରେ ଏ ନିୟମକୁ ମାନୁଥିବା ଇଭୋମୋରାଲେସ୍ ଆଜି ଜଣେ ବିପ୍ଳବୀ ରୂପରେ ଅବତୀର୍ଣ୍ଣ ହୋଇ ସାରିଛନ୍ତି ।

ବଲିଭିଆରେ ଯେଉଁ ଯୁଦ୍ଧ ଚାଲିଛି ସେଗୁଡିକ ତିନି ଭାଗରେ ବିଭକ୍ତ । ପ୍ରଥଟି- 'ପାଣି ପାଇଁ ଯୁଦ୍ଧ' ଯାହାକୁ ନେଇ କୋଚବାମ୍ବା ଜନଆନ୍ଦୋଳନ ଜଗତୀକରଣ ଏବଂ ଜଳର ଘରୋଇକରଣ ବିରୋଧରେ ଏହା ଏକ ସଫଳତମ ସଂଗ୍ରାମ ରୂପେ ପ୍ରମାଣିତ ହୋଇସାରିଛି । ଦ୍ୱିତୀୟଟି- 'ଗ୍ୟାସ୍ ଯୁଦ୍ଧ' ଯାହାକୁ ନେଇ ବଲିଭିଆ ଆଜି ବିଭିନ୍ନ ତୈଳକମ୍ପାନୀକୁ ଅନୈତିକ କାର୍ଯ୍ୟକୁ ନିୟନ୍ତ୍ରଣ କରିପାରିଛି । ତୃତୀୟଟି ହେଲା- 'କୋକା ଯୁଦ୍ଧ ଅଥବା କୋକେନ୍‌କୁ ନେଇ ଯୁଦ୍ଧ' । ଯୁଦ୍ଧରେ ଏବେ ବଲିଭିଆ ମଧ୍ୟ ନିଜର ଦୃଢ ମତାମତ ଉପସ୍ଥାପନା କରିଛି । ଏଇ

ତିନୋଟି ଯୁଦ୍ଧ ସହ ଇଭୋ ମୋରାଲେସ୍ ବ୍ୟକ୍ତିଗତ ଭାବେ ସମ୍ପୃକ୍ତ ହୋଇଛନ୍ତି । ଜଣେ ଆଦିବାସୀ ହିସାବରେ କେବଳ ନୁହେଁ, ଜଗତୀକରଣର ଚରମ ବିରୋଧୀ ଭାବେ ସେ ଆଜି ପୃଥିବୀର ବିଭିନ୍ନ ଅଞ୍ଚଳରେ ପରିଚିତ । ଆଗାମୀ ଦିନରେ ସମୟ କହିବ ତାଙ୍କୁ ବିଶ୍ୱବାସୀ କିଭଳି ଗ୍ରହଣ କରୁଛି ।

(୪)

ଡ଼ାନିଏଲ୍ ଓର୍ଟେଗା ୨୦୦୭ ମସିହାରେ ପ୍ରାରମ୍ଭରୁ ହିରୋ ହିସାବର ପ୍ରତିଷ୍ଠିତ ହୋଇ ସାରିଲେଣି । ଦୁଇ ଦିନ ତଳେ ଗତ ଜାନୁୟାରୀ ୧୨ତାରିଖରେ ସେ ନିକାରାଗୁଆର ରାଷ୍ଟ୍ରପତି ଭାବେ ପୁଣି ଶପଥ ଗ୍ରହଣ କରିଛନ୍ତି । ଷୋହଳ ବର୍ଷପରେ କ୍ଷମତାକୁ ଫେରିଛନ୍ତି । ନିକାରାଗୁଆ ହେଉଛି ଯୁକ୍ତରାଷ୍ଟ୍ର ଆମେରିକାର କ୍ଷମତା ବିସ୍ତାରର ଇଲାକା । ଡ଼ାନିଏଲ୍ ଓର୍ଟେଗା ହେଉଛନ୍ତି ବିପ୍ଳବୀ ଓ ସମାଜବାଦୀ । ଆପଣ ଅନୁମାନ କରୁଥିବେ ଯେ ନିକାରାଗୁଆର ଯୁକ୍ତରାଷ୍ଟ୍ର ଆମେରିକା ବିରୋଧୀ ଶାସନ ପ୍ରତିଷ୍ଠା ହେବା ଦ୍ୱାରା ବିଶ୍ୱର ପୁଞ୍ଜିବାଦ ଓ ଜଗତୀକରଣ ସମର୍ଥିତ କର୍ପୋରେଟ୍ ରାଜ୍ କିପରି ବିପଦଗ୍ରସ୍ତ ହେବ । ନିକାରାଗୁଆର ରାଜଧାନୀ ମାନାଗୁଆରେ ହଜାର ହଜାର ସମବେତ ଜନତାଙ୍କ ଆଗରେ ଜାନୁୟାରୀ ୧୨ତାରିଖରେ ଡ଼ାନିଏଲ୍ ଓର୍ଟେଗା କ୍ଷମତାସୀନ ହେଲେ । ୨୦୦୬ ମସିହା ନଭେମ୍ବର ମାସ ଜାତୀୟ ନିର୍ବାଚନରେ ସେ ରାଷ୍ଟ୍ରପତି ହିସାବରେ ପ୍ରାର୍ଥୀ ହୋଇଥିଲେ ଓ ସଂଖ୍ୟାଗରିଷ୍ଠ ଭୋଟ୍ ପାଇ ଜିତିଥିଲେ । ଆମେରିକା ସମର୍ଥିତ ପ୍ରାର୍ଥୀଙ୍କୁ ହରାଇଥିଲେ । ଶପଥଗ୍ରହଣ କରିବା ଦିନ ତାଙ୍କ ସାଙ୍ଗରେ ଥିଲେ ଭେନେଜୁଏଲାର ରାଷ୍ଟ୍ରପତି ହ୍ୟୁଗୋ ସାଭେଜ୍ ଓ ବଲିଭିଆର ରାଷ୍ଟ୍ରପତି ଇଭୋ ମୋରାଲେସ୍ । କ୍ୟୁବାର ରାଷ୍ଟ୍ରପତି ଫିଡେଲ କାଷ୍ଟ୍ରୋ ଆସିପାରି ନଥିଲେ ଅସୁସ୍ଥତା ହେତୁ । ବ୍ରାଜିଲ୍‌ର ରାଷ୍ଟ୍ରପତି ଲୁଲାଙ୍କୁ ଡକାଯାଇଥିଲା କି ନାହିଁ ସ୍ପଷ୍ଟ ଜଣାପଡି ନାହିଁ । ଯୁକ୍ତରାଷ୍ଟ୍ର ଆମେରିକାର ବାଡିପଟେ ତାହାର ଶତ୍ରୁମାନେ ଏକାଠି ହୋଇଥିଲେ ଏହା ଏବେ ସାରା ପୃଥିବୀରେ ଚର୍ଚ୍ଚା ଚାଲିଛି ଓ ଆଗାମୀ ଦିନର ବିଶ୍ୱ ରାଜନୈତିକ ରଙ୍ଗମଞ୍ଚ କିପରି ରୋମାଂଚ ଓ ଘଟଣାପ୍ରବାହରେ ଚମକିତ ହେବ ତାହାର ସୂଚନା ଦେଇଛି ।

୧୯୮୪ ମସିହାରେ ଦି ହେଗ୍ ସହରରେ ଏକ ପ୍ରତିଷ୍ଠିତ ଶିକ୍ଷାନୁଷ୍ଠାନରେ ମୁଁ ସନ୍ତ୍ରୀଙ୍କ ମାନବାଧିକାର ଉପରେ ଅଧ୍ୟୟନ ରତ ଥିବାବେଳେ ଆମର ସହାଧ୍ୟାୟୀ

ଥିଲେ ମାଟିଓ ନାମରେ ଜଣେ ନିକାରାଗୁଆର ଓକିଲ । ଆଦୌ ଇଂରେଜୀ ସେ କହିପାରୁନଥିଲେ ବି ଆମ ଇନ୍‌ଷ୍ଟିଚ୍ୟୁଟ ଜଣେ ଇଂରାଜୀ ଅନୁବାଦକ ତାଙ୍କ ପାଇଁ ନିଯୁକ୍ତି କରିଥିଲା । ସେ ସାଣ୍ଡିନିଷ୍ଟା ବିପ୍ଳବୀ ଥିଲେ । ନିର୍ବାଚନରେ କ୍ଷମତାସୀନ ହୋଇଥିବା ସାଣ୍ଡନିଷ୍ଟାମାନଙ୍କର ନେତାଥିଲେ ଡାନିଏଲ୍ ଓର୍ଟେଗା । ମାଟିଓ ଅସଲ ବିପ୍ଳବ ବେଳେ ସ୍ୱୟଂ ଚାଳିତ ଅସ୍ତ୍ରଶସ୍ତ୍ର ସହ ଏକଚ୍ଛତ୍ରବାଦୀ ସାମୋଜା ସମର୍ଥିତ ସେନାବାହିନୀ ସହିତ କୁଆଡେ ଲଢିଥିଲେ । ଆମେ ସମସ୍ତେ ତାଙ୍କୁ ଘେରିଥିଲୁ ସାଣ୍ଡିନିଷ୍ଟଙ୍କ ବିଷୟରେ ଜାଣିବା ପାଇଁ । ବିପ୍ଳୋବତ୍ତର ନିକାରାଗୁଆରେ ବିକାଶ ପ୍ରକ୍ରିୟା କିପିରି ତ୍ୱରାନ୍ୱିତ ହୋଇଛି ତାହା ଜାଣିବାକୁ ଚାହିଁଥିଲୁ । କେନ୍ଦ୍ରିୟ ଆମେରିକା / ସେଣ୍ଟ୍ରାଲ୍ ଆମେରିକାରେ ନିକାରାଗୁଆ ଏକ ଦରିଦ୍ର ପ୍ରପୀଡ଼ିତ ଦେଶ ଓ ଯୁକ୍ତରାଷ୍ଟ୍ର ଆମେରିକାର ସାହାଯ୍ୟ ବିନା ତାହାର ସ୍ଥିତି ଦୋଦୁଲ୍ୟମାନ । ଏଇଥିପାଇଁ ଗତ ଶହେବର୍ଷଧରି ଯୁକ୍ତରାଷ୍ଟ୍ର ଆମେରିକା ତାହାର ପତିଆରା ବିସ୍ତାର କରିଆସିଅଛି । ୧୯୧୧ ମସିହାରେ ଆମେରିକାର ନୈବାହିନୀ ନିକାରାଗୁଆ ଦଖଲ କରି ନେଇଥିଲେ ଓ ଆମେରିକୀୟ ସ୍ୱାର୍ଥରକ୍ଷା ଦିଗରେ ବିଭିନ୍ନ ପଦକ୍ଷେପ ନେଇଥିଲେ । ୧୯୨୫ ସେ ଆମେରିକୀୟ ନୌବାହିନୀ ଫେରି ଯାଇଥିଲା । କିନ୍ତୁ ଅଗଷ୍ଟୋ ସାଣ୍ଡିନୋଙ୍କ ନେତୃତ୍ୱରେ ଯେଉଁ ବିଦ୍ରୋହ ନିକାରାଗୁଆରେ ଆରମ୍ଭ ହୋଇଥିଲା ତା'କୁ ଦମନ କରିବାକୁ ପୁଣି ଆମେରିକୀୟ ନୌବାହିନୀ ୧୯୨୬ ମସିହାରେ ନିକାରାଗୁଆକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ବୋମାମାଡ଼ ଓ ୧୨୦୦୦ ନୌବାହିନୀର ସୈନ୍ୟଙ୍କ ଆକ୍ରମଣ ସତ୍ତ୍ୱେ ଆମେରିକା ସାଣ୍ଡିନୋଙ୍କୁ ଦବାଇ ପାରିନଥିଲା । କିନ୍ତୁ ଆମେରିକୀୟ ସୈନ୍ୟବାହିନୀ ନିକାରାଗୁଆରେ ଗୋଟାଏ ସମାନ୍ତରାଳ ସୈନ୍ୟବାହିନୀକୁ ପ୍ରଶିକ୍ଷଣ ଦେଇଥିଲା ଯାହାର ନାମଥିଲା ଦି ନାସ୍‌ନାଲ୍ ଗାର୍ଡ଼ । ୧୯୩୩ ମସିହାରେ ଆମେରିକୀୟ ନୌବାହିନୀ ପୁଣି ଫେରି ଯାଇଥିଲା । ଆନାଷ୍ଟାସି ସମୋଜା ଗାର୍ସିଆ ଯିଏ ଆମେରିକାରେ ସାମରିକ ପ୍ରଶିକ୍ଷଣ ନେଇଥିଲେ ସାଣ୍ଡିନୋଙ୍କୁ ହତ୍ୟା କରିଥିଲେ । ସମୋଜାଙ୍କ ନେତୃତ୍ୱରେ ସାଣ୍ଡିନୋଙ୍କ ସମର୍ଥିତ ଶହ ଶହ ବିପ୍ଳବୀଙ୍କୁ ମଧ୍ୟ ହତ୍ୟା କରାଯାଇଥିଲା । ଏହାପରେ ଅତିଜଘନ୍ୟ ଓ ଅମାନୁଷିକ ଭାବେ ସମୋଜାଙ୍କ ପରିବାରର ଏକଚ୍ଛତ୍ରବାଦୀ ଶାସନ ଆରମ୍ଭ ହୋଇଥିଲା ଓ ୧୯୭୯ ମସିହା ପର୍ଯ୍ୟନ୍ତ ତାହା ଆମେରିକାର ସମର୍ଥନରେ ତିଷ୍ଠି ରହିଥିଲା । ସମୋଜା ପରିବାର ଚାଳିଶ ବର୍ଷ ଭିତରେ ନିକାରାଗୁଆର ଏକ ପଞ୍ଚମାଂଶ ଜମିର

ମାଲିକ ହୋଇଥିଲେ ଏବଂ ବିଶାଳ ସମ୍ପତିର ଅଧିକାରୀ ହୋଇଥିଲେ । ସମୋଜାଙ୍କ ଅସଲ ସମର୍ଥକ ଥିଲେ ଦି ନାସ୍‌ନାଲ୍ ଗାର୍ଡ୍ ଯେଉଁମାନେ ଭୟଙ୍କର ଅତ୍ୟାଚାରୀ ଥିଲେ । ଯିଏ ସମୋଜାଙ୍କ ଶାସନର ସମାଲୋଚକ ଥିଲା, ସେମାନେ ତାକୁ ହତ୍ୟା କରୁଥିଲେ । ଆମେରିକା ସମୋଜା ପରିବାରର ମାନବାଧିକାର ଉଲଘନ ସବୁ ସହୁଥିଲା କାରଣ ସମୋଜା ଆମେରିକୀୟ ସ୍ୱାର୍ଥର ବ୍ୟାପକ ସୁରକ୍ଷା ଦେଇଥିଲେ । କିନ୍ତୁ ଧୀରେ ଧୀରେ ୧୯୬୧ ମସିହାରେ ସମୋଜା ସରକାରଙ୍କୁ ବିରୋଧ କରି ସାଣ୍ଡିନୋଙ୍କ ନାମରେ କାର୍ଲୋସ ଫୋନସେକାଙ୍କ ନେତୃତ୍ୱରେ ସାଣ୍ଡିନିଷ୍ଟା ଦଳ ଗଠିତ ହୋଇଥିଲା । ଯଦିଓ କାର୍ଲୋସ ଫୋନ୍‌ସେକା ସମୋଜାଙ୍କ ସମର୍ଥିତ ସୈନ୍ୟବାହିନୀ ସହ ଲଢ଼ି ପ୍ରାଣ ହରାଇଥିଲେ, ସାଣ୍ଡିନିଷ୍ଟା ଦଳ କିନ୍ତୁ ବ୍ୟାପକ ଜନ ସମର୍ଥନ ଲାଭ କରିଥିଲା ଓ ସାଣ୍ଡିନିଷ୍ଟାମାନେ ସଶସ୍ତ୍ର ବିପ୍ଳବ କରି ୧୯୭୯ ମସିହାରେ ସମୋଜାଙ୍କୁ ଗାଦିଚ୍ୟୁତ କରିଥିଲେ ଏବଂ ଗୋଟିଏ ବିପ୍ଳବୀ ଜୁଣ୍ଟା ଶାସନ୍‌ଗାଦୀରେ ପ୍ରତିଷ୍ଠିତ ହୋଇଥିଲେ । ଏହି ଜୁଣ୍ଟାରେ ଅନ୍ୟତମ ସଦସ୍ୟ ଥିଲେ ଡାନିଏଲ୍ ଓର୍ଟେଗା । ଜୁଣ୍ଟାରେ ଅନ୍ୟ କେତେଜଣ ଆଭିଜାତ୍ୟ ପରିବାରର ଲୋକ ଥିଲେ ଓ କୋଟିପତି ଧନୀ ମଧ । ସାରା ପୃଥିବୀ ଅବାକ୍ ହେଉଥିଲା ଯେ ବିପ୍ଳବୀମାନଙ୍କ ହିତରେ କିପରି ଧନାଢ଼୍ୟ ପରିବାରର ଲୋକମାନେ ସାମିଲ୍ ହେଲେ । ଅସଲ କଥା ସମୋଜାଙ୍କ ଏକଚ୍ଛତ୍ରବାଦୀ ଶାସନ ପାଇଁ ସାରା ନିକାରାଗୁଆ ବିମୁଖ ହୋଇ ପଡିଥିଲା ।

ସାଣ୍ଡିନିଷ୍ଟା ସରକାର ଆସିବା ମାତ୍ରକେ ନିକାରାଗୁଆର ଲକ୍ଷଲକ୍ଷ ଗରିବଙ୍କ ବିକାଶ ପାଇଁ ଡାନିଏଲ୍ ଓର୍ଟେଗା ଧ୍ୟାନ ଦେଇଥିଲେ । ସାକ୍ଷରତା କାର୍ଯ୍ୟକ୍ରମକୁ ବ୍ୟାପକ କରାଯାଉଥିଲା ଓ ତାହା ସହ ମଧ ସ୍ୱାସ୍ଥ୍ୟ ସେବାକୁ । ଆମର ବଂଧୁ ମାଟିଓ ଅଟୋମ୍ୟାଟିକ୍ ବନ୍ଧୁକ ଚଳାଇବା ସହ ଶିକ୍ଷା ଓ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ ଚଳାଇବାକୁ ସାଣ୍ଡିନିଷ୍ଟାମାନଙ୍କୁ କିପରି ପ୍ରଶିକ୍ଷଣ ଦିଆଯାଉଥିଲା ତାହା ଆମକୁ ବୁଝାଉଥିଲେ ୧୯୮୪ ମସିହାରେ । ସାରା ପୃଥିବୀ ଓ ଜାତିସଂଘରେ ନିକାରାଗୁଆର ବିକାଶମୂଳକ କାର୍ଯ୍ୟ ପ୍ରଶଂସିତ ହୋଇଥିଲା । ବିଭିନ୍ନ ପତ୍ରପତ୍ରିକା ଓ ଗବେଷଣାରେ ଏହାସବୁ ବିସ୍ତୃତ ଭାବେ ଉଲ୍ଲେଖିତ ହୋଇଥିଲା । କିନ୍ତୁ ଯୁକ୍ତରାଷ୍ଟ୍ର ଆମେରିକାର ତତ୍କାଳୀନ ରାଷ୍ଟ୍ରପତି ରୋନାଲଡ୍ ରେଗାନ୍ ନିକାରାଗୁଆ ଆମେରିକାର ପ୍ରଭାବରୁ ମୁକ୍ତ ରହିବାକୁ ଚାହିଁ ନଥିଲେ । ଏଇଥିପାଇଁ ତାଙ୍କ ନିର୍ଦ୍ଦେଶରେ ସି.ଆଇ.ଏ ନିକାରାଗୁଆରେ ପୂର୍ବତନ

ନ୍ୟାସ୍‌ନାଲ୍ ଗାର୍ଡ଼ମାନଙ୍କୁ ଏକତ୍ରିତ କରି କୋଣ୍ଟ୍ରା ନାମକ ଏକ ସଶସ୍ତ୍ର ସେନାବାହିନୀ ଗଠନ କରିଥିଲେ । ମିଳିଥିଲା ପ୍ରଚୁର ଅସ୍ତ୍ରଶସ୍ତ୍ର ଓ ଅର୍ଥ । ଲକ୍ଷ୍ୟ ଡାନିଏଲ୍ ଓର୍ଟେଗାଙ୍କୁ ଗାଦିଚ୍ୟୁତ କରିବା । ୧୯୮୪ ମସିହାରେ ନିକାରାଗୁଆରେ ଗଣତାନ୍ତ୍ରିକ ନିର୍ବାଚନ ହୋଉଥିଲା ଓ ଡାନିଏଲ୍ ଓର୍ଟେଗା ଶତକଡ଼ା ୬୭ଭାଗ ଭୋଟ ପାଇ ରାଷ୍ଟ୍ରପତି ଭାବେ ନିର୍ବାଚିତ ହୋଇଥିଲେ । ଓର୍ଟେଗାଙ୍କର ନିଆଁଗିଳା ଭାଷଣ ଓ ଆମେରିକା ବିରୋଧୀ ମନ୍ତବ୍ୟ ସେତେବେଳେ ଆମଭଳି ଲୋକଙ୍କୁ ମଧ୍ୟ ଅଭିଭୂତ କରୁଥିଲା । ଯୁକ୍ତରାଷ୍ଟ୍ର ଆମେରିକା ନିକାରାଗୁଆକୁ ଯେଉଁଭଳି ବୈମାତୃକ ଭାବେ ଦେଖାଇଛି ଓ ଏକ ଗଣତାନ୍ତ୍ରୀକ ସରକାରକୁ ଧ୍ୱଂସ କରିବାକୁ କୋଣ୍ଟ୍ରାମାନଙ୍କୁ ଯେଉଁଭଳି ସଶସ୍ତ୍ର ସାହାଯ୍ୟ ଦେଇଛି ତାହା ଆଜି ବିଶ୍ୱଇତିହାସରେ ଏକ ନିନ୍ଦନୀୟ ପରିଚ୍ଛେଦ ହିସାବରେ ଗ୍ରହଣ କରାଯାଇଛି । ଆମେରିକାର କଳ,ବଳ,କୌଶଳ ଦ୍ୱାରା ଡାନିଏଲ ଓର୍ଟେଗା ୧୯୯୦ ମସିହାରେ ନିର୍ବାଚନ ହାରି ଯାଇଥିଲେ । ଏବେ ୨୦୦୬ ମସିହାରେ ନିର୍ବାଚନରେ ଜିତିବା ଏକ ବିପ୍ଳବୀର ପ୍ରତ୍ୟାବର୍ତ୍ତନ ବୋଲି ଏବେ ପୃଥିବୀ ଅନୁଭବ କରୁଛି । ଯୁକ୍ତରାଷ୍ଟ୍ର ଆମେରିକାର ରାଜନୈତିକ ଶକ୍ତି, ସି.ଆଇ.ଏ(C.I.A)ରୁ ରଣନୀତି, ବିଶ୍ୱପୁଞ୍ଜିର ଜଗତୀକରଣ ସମର୍ଥିତ ଆର୍ଥିକ କାର୍ଯ୍ୟକ୍ରମ ସତ୍ତ୍ୱେ ଡାନିଏଲ୍ ଓର୍ଟେଗା ନିବାଚନ ଜିତିବା କମ୍ କଥା ନୁହଁ । ତେଣୁ ସେ ଆଜି ନିଜକୁ ଆମ ସମୟର ନାୟକ ଭାବେ ଉପସ୍ଥାପନା କରିଛନ୍ତି ।

ଡାନିଏଲ୍ ଓର୍ଟେଗାଙ୍କ ଜନ୍ମ ୧୯୪୬ ମସିହାରେ ଏକ ବିପ୍ଳବୀ ପରିବାରରେ ତାଙ୍କର ବାପାମାଆଙ୍କ ଭିତରେ ପ୍ରେମପତ୍ରକୁ ନ୍ୟାସନାଲ୍ ଗାର୍ଡମାନେ ବିପ୍ଳବୀଙ୍କ ଗୋପନୀୟ ଓ ସାଙ୍କେତିକ ଭାଷା ବୋଲି ଧରି ଗିରଫ କରିଥିଲେ । ଡାନିଏଲ୍‌ଙ୍କ ଭାଇ ସାଣ୍ଡିନିଷ୍ଟା ବିପ୍ଳବୀ ଭାବେ ମୃତ୍ୟୁ ବରଣ କରିଥିଲେ । ଡାନିଏଲ୍ ଏସବୁକୁ ନେଇ ଜଣେ ଦୁଃସାହାସୀ ସହରୀ ଗରିଲା ଭାବେ ନିଜକୁ ତିଆରି କରିଥିଲେ । ତାଙ୍କର ପ୍ରଥମ କାମ ଥିଲା ବ୍ୟାଙ୍କ ଅଫ ଆମେରିକାକୁ ଲୁଣ୍ଠନ କରି ସାଣ୍ଡିନିଷ୍ଟାଙ୍କ ପାଇଁ ଅର୍ଥ ଯୋଗାଡ କରିବା । ଯଦିଓ ସେ ବନ୍ଧୁକ ହାତରେ ଧରି ବ୍ୟାଙ୍କ ଡକାୟତି କରିଥିଲେ, କିନ୍ତୁ ଧରାପଡି ଜେଲ୍ ଯାଇଥିଲେ । ଜେଲ୍‌ରେ ତାଙ୍କର ଆରମ୍ଭ ହୋଇଥିଲା କବିତା ଲେଖା । ତାଙ୍କ କବିତା ପଢ଼ି ନିକାରାଗୁଆରା ନାରୀ କବି ରୋଜାରିଓ ମୁରିଲୋ ଆକର୍ଷିତ ହୋଇଥିଲେ ଓ କାରାଗାରକୁ ନିୟମିତ ଯାଇ

ଡ଼ାନିଏଲ୍‌ଙ୍କୁ ଭେଟିଥିଲେ । ଆରମ୍ଭ ହୋଇଥିଲା ପ୍ରେମ ଓ ଶେଷ ହେଲା ପ୍ରଣୟରେ । ଜଣେ ବାଗ୍ମୀ ଓ ଅଗ୍ନି ସଂଯୋଗିତ ବକ୍ତା ଓ କବି ସହିତ ସାଣ୍ଡିନିଷ୍ଟାର ଜଣେ ବିପ୍ଳବୀ ହିସାବରେ ସେ ନିକାରାଗୁଆରେ ଲୋକପ୍ରିୟ ହୋଇଗଲେ । ୧୯୪୭ ମସିହାରେ ସେ ଜେଲ୍‌ରୁ ମୁକୁଳି ଥିଲେ ୭ବର୍ଷ ବନ୍ଦୀର ଜୀବନ କାଟି, ଅନେକ ଜେଲ୍ ସାଥୀଙ୍କୁ ମୃତ୍ୟୁ ଦଣ୍ଡ ଦିଆଯାଇଥିଲା କିନ୍ତୁ ଭାଗ୍ୟ ତେଜ୍ ଥିବାରୁ ସେ ବର୍ତ୍ତିଗଲେ । ସେ ବର୍ଷ ତାଙ୍କୁ ଚିଲି ଓ କ୍ୟୁବା ନିଆଯାଇଥିଲା ଓ ତାଙ୍କ ବଦଳରେ ସମୋଜାଙ୍କ ପ୍ରିୟ ଜଣେ କୂଟନୀତିଜ୍ଞ ଯାହାଙ୍କୁ ସାଣ୍ଡିନିଷ୍ଟାମାନେ ଅପହରଣ କରି ପରେ ମୁକ୍ତ କରିଥିଲେ । ଚାରିବର୍ଷ ପରେ ସସ୍ତ୍ରୀକ କୋଷ୍ଟାରିକା ଯାଇଥିଲେ ଓର୍ତ୍ତେଗା । ସେଇଠାରୁ ସମୋଜାଙ୍କ ବିରୋଧରେ ବିପ୍ଳବର ଆୟୋଜନ ସେ କରିଥିଲେ । ଯୁକ୍ତରାଷ୍ଟ୍ର ଆମେରିକାର ସମସ୍ତ ରଣନୀତି ଖଣ୍ଡନ କରି ସମୋଜାଙ୍କୁ ପଳାୟନ କରିବାକୁ ବାଧ କରିଥିଲେ । ଏକଥା ସତ ଯେ ନିକାରାଗୁଆରେ ଭୟଙ୍କର ଗୃହଯୁଦ୍ଧ ଆରମ୍ଭ ହୋଇଥିଲା ଯାହା ଅନେକ ଦିନ ଧରି ଚାଲିଥିଲା । ଆମେରିକୀୟ କୋଣ୍ଟ୍ରାମାନଙ୍କ ପ୍ରତି ସାହାଯ୍ୟର ପରିମାଣ ବଢ଼ି ଚାଲିଥିଲା ଓ ଓର୍ତ୍ତେଗାଙ୍କ ଶାସନ କିପରି ପତନ ହେବ ସେଥିପାଇଁ ସବୁପ୍ରକାର ଷଡ଼ଯନ୍ତ୍ର କରାଗଲା । କିନ୍ତୁ ଓର୍ତ୍ତେଗା ବିଶ୍ୱ ଦରବାରରେ ନିକାରାଗୁଆର ଦୁରବସ୍ଥା ଓ ଆମେରିକାର ଭୂମିକାକୁ ଉପସ୍ଥାପନ କରି ରାମ୍ବୋ ଭଳି ନହେବାକୁ ଦୃଢ଼ ମତ ସାବ୍ୟସ୍ତ କରିଥିଲେ । କିନ୍ତୁ ଆର୍ନ୍ତଜାତିକ ପର୍ଯ୍ୟବେକ୍ଷକଙ୍କ ତତ୍ୱାବଧାନରେ ହୋଇଥିବା ୧୯୯୦ ମସିହାରେ ନିର୍ବାଚନରେ ସେ ଅଚାନକ ଓ ଅପ୍ରତ୍ୟାଶିତ ଭାବେ ପରାଜିତ ହୋଇଥିଲେ । ଭାଇଲେଟ୍ ଚାମୋରା ନାମକ ଜଣେ ମହିଳା ନୂଆ ରାଷ୍ଟ୍ରପତି ଭାବେ ନିର୍ବାଚିତ ହେଲେ । ନିକାରାଗୁଆରେ ପୁଣି ଆମେରିକାର ପ୍ରଭାବରେ ଆଉ ଏକ ଅଧ୍ୟାୟ ଆରମ୍ଭ ହେଲା । ଓର୍ତ୍ତେଗା ବିପ୍ଳବର ଯେଉଁ ମୁରାଲ୍ ମାନ ନିକାରାଗୁଆର କାନ୍ଥବାଡ଼ରେ ସୃଷ୍ଟି କରିଥିଲେ ତାକୁ ଲିଭା ଯାଇ ତା'ଉପରେ କୋକ, ପେପ୍‌ସୀମାନଙ୍କ ବିଜ୍ଞାପନ ଦିଆଗଲା । ଓର୍ତ୍ତେଗା ତାଙ୍କର ସ୍ତ୍ରୀଙ୍କର ପ୍ରଥମ ବିବାହରୁ ଜନ୍ମିଥିବା ସାବତ ଝିଅଙ୍କ ସହ ଅବୈଧ ଯୌନ ସମ୍ପର୍କ ଅଛି ବୋଲି ନିନ୍ଦା କରାଗଲା । ଓର୍ତ୍ତେଗା ତଥାପି ରାଜନୀତିରୁ ଓହରି ନଥିଲେ ଓ ଦୁଇଥର ପୁନର୍ବାର ନିର୍ବାଚନରେ ହାରି ଯାଇଥିଲେ । ତଥାପି ନିକାରାଗୁଆର ଚତୁଃପାର୍ଶ୍ୱରେ ଜଗତୀକରଣ ବିରୋଧରେ ଶ୍ରେଣୀ ସଂଘର୍ଷ ଆରମ୍ଭ ହୋଇ ହୁଗୋ ସାଭେଜ୍‌ଙ୍କ ଭେନେଜୁଏଲାରେ, ଜାପାଟିଷ୍ଟାମାନଙ୍କ ମେକ୍ସିକୋସେ, ଆଲାନ୍ ପାର୍ସିଆଙ୍କୁ ପେରୁରେ, ଇଭୋ

ମୋରାଲେସ୍‌ଙ୍କୁ ବଲିଭିଆରେ, ତାଙ୍କ ସମଭାବାପନ୍ନ ବନ୍ଧୁମାନଙ୍କୁ ଏଲ୍ ସାଲ୍‌ଭାଡୋରରେ ଶାସନ ଗାଦିରେ ପ୍ରତିଷ୍ଠିତ କରାଇଥିଲା । ଏହି ଭଳି ବାତାବରଣ ସମ୍ଭବତଃ ଡାନିଏଲ୍ ଓର୍ଟେଗାଙ୍କୁ ପୁଣି ରାଷ୍ଟ୍ରପତି ଭାବେ ନିର୍ବାଚିତ କରିବାରେ ସାହାଯ୍ୟ କରଥିଲା ।

ନିକାରାଗୁଆରେ ଦାରିଦ୍ର୍ୟ ଓ ନିକାରାଗୁଆ ବାସୀଙ୍କ ଶୋଚନୀୟ ଅବସ୍ଥା ଦୂର କରିବାର ରାସ୍ତା କ'ଣ ? ଡାନିଏଲ୍ ଓର୍ଟେଗା ସମାଜବାଦ ଓ ପୁଞ୍ଜିବାଦ ଭିତରେ ଏକ ମଧ୍ୟମ ପନ୍ଥା ଗ୍ରହଣ କରିବେ କି ? ଯେଉଁଠି ପାଣି ଓ ପରିମଳ ବ୍ୟବସ୍ଥା ନାହିଁ, ରାସ୍ତା ନାହିଁ କି ଘାଟ ନାହିଁ, ଯେଉଁଠି ପିଲାମାନେ ଆବର୍ଜ୍ଜନା ସ୍ଥାନରେ ଖାଦ୍ୟ ଖୋଜୁଛନ୍ତି, ଯେଉଁଠି କଫିଚାଷ ଲାଭଜନକ ନୁହେଁ, ସେଇଠି ଶାସନ ବ୍ୟବସ୍ଥା କ'ଣ ହେବ ? ଜଗତୀକରଣ ଓ ଆମେରିକାର ଗୋଲାମ ହୋଇ ? ଏକଥା ଡାନିଏଲ୍ ଓର୍ଟେଗା ଭାବିନାହାନ୍ତି କି କରିବେ ନାହିଁ ବୋଲି ପ୍ରମାଣିତ ହୋଇଯାଇଛି । ଗତ ଜାନୁୟାରୀ ୧୨ ତାରିଖରେ ଦୁଇଦିନ ତଳେ ସେ ଶପଥ ନେଲାବେଳେ ହ୍ୟୁଗୋ ସାଭେଜ୍, ଇଭୋ ମୋରାଲେସ୍‌ଙ୍କ ସହ ଏକମତ ହୋଇଥିଲେ । ସାଭେଜ୍ ଘୋଷଣା କରିଥିଲେ 'ସମାଜବାଦ ଅଥବା ମୃତ୍ୟୁ' । ଏହା ସତକଥା ନୁହେଁକି ଆଜିର ପରିପ୍ରେକ୍ଷୀରେ । ସେମାନେ କ୍ୟୁବାର ଫିଡେଲ କାଷ୍ଟ୍ରୋଙ୍କୁ ସମ୍ମାନ ଦେଇ ଫିଡେଲ କାଷ୍ଟ୍ରୋଙ୍କୁ ମନେ ପକାଉଥିଲେ । ଓର୍ଟେଗା କହିଥିଲେ ଏକତା ହିଁ ଶକ୍ତି ଓ ଏକତା ଆଣି ଦିଏ ବିଜୟ ।

ପାଠକ ଗଣ ! ଗତ ପାଞ୍ଚ ସପ୍ତାହ ଧରି ମୁଁ ଜଗତୀକରଣର ପରିବେଶରେ ଆମ ସମୟର ନାୟକମାନଙ୍କର ସଂକ୍ଷିପ୍ତ ପରିଚୟ ଓ ତାଙ୍କର ସଂଗ୍ରାମକୁ ଉପସ୍ଥାପନ କରିଛି । ମୁଁ ଅହିଂସାରେ ବିଶ୍ୱାସ କରୁଥିବା ସାଧାରଣ ମଣିଷଟିଏ । ତଥାପି ବିପ୍ଳବ ଓ ବିଦ୍ରୋହ ଭିତରେ ଯେମିତି ହିଂସା ଅନିବାର୍ଯ୍ୟ ଓ ତାହାର ସକାରାତ୍ମକ ଆଲୋଚନା ମଧ୍ୟ ଯଥାର୍ଥ । ଯୁକ୍ତରାଷ୍ଟ୍ର ଆମେରିକା ଓ ବିଶ୍ୱର କର୍ପୋରେଟ୍‌ମାନେ ଦକ୍ଷିଣ ଓ କେନ୍ଦ୍ରିୟ ଆମେରିକାକୁ କବଳିତ କରିବା ପାଇଁ ଯେଉଁ ହିଂସାତ୍ମକ ପନ୍ଥା ଅବଲମ୍ବନ କରିଛନ୍ତି ତାହାର ମୁକାବିଲା ଅହିଂସାତ୍ମକ ଉପାୟରେ ହୋଇଥାଆନ୍ତା କି ନାହିଁ ସେ କଥା ମଧ୍ୟ ବିଚାରକୁ ନେବାର ଅଛି । ଦକ୍ଷିଣ ଓ କେନ୍ଦ୍ରିୟ ଆମେରିକାର ଦୀର୍ଘ ୫୦୦ ବର୍ଷର ଉପନିବେଶବାଦ ଶେଷ ହୋଇଛି । ଭାରତରେ ମଧ୍ୟ ଉପନିବେଶବାଦ ଏଇମିତି ଶେଷ ହୋଇଥିଲା କିନ୍ତୁ ନବଉପନିବେଶବାଦର ପୁଣି ଯେମିତି ଆଉ ଏକ

ଅଧ୍ୟାୟ ଆରମ୍ଭ ହୋଇଛି ଆମ ଦେଶରେ । ଏହା ଖାଲି ଆଚାର ବିଚାରରେ ନୁହଁ, ଆମର ମାନସିକତାରେ ମଧ୍ୟ । ଲାଟିନ୍ ଆମେରିକାର ପ୍ରତ୍ୟେକ ଦେଶରେ ଅଭିନବ ଆନ୍ଦୋଳନ ଓ ପରିବର୍ତ୍ତନର ଏକ ଝଡ଼ ବୋହୁଛି । ଆଜି ଖୁବ୍ ମନେ ପଡୁଛି ରେଜିସ୍ ଡ଼ିବ୍ରେ(Regis Debray)ଙ୍କ 'ରିଭୋଲ୍ୟୁସନ୍ ଇନ୍ ରିଭୋଲ୍ୟୁସନ୍ ?' ଏବଂ ଶେ ଗୁଏଭେରା(Che Guevera) ଙ୍କ 'ଦି ମୋଟର ସାଇକେଲ୍ ଡାଏରୀ'(The Motor Cycle Diary) । ଆଉ ମନେ ପଡୁଛି ଡାଭିଡ ଆର୍ଚର(David Archer)ଙ୍କ 'ଲିଟେରାସି ଫର୍ ଏମ୍‌ପାଓ୍ୱାରମେଣ୍ଟ' (Literacy for Empowerment) ଏବଂ ପାଉଲୋ ଫ୍ରାଏରଙ୍କ 'ପେଡାଗଜି ଅଫ ଦି ଅପ୍ରେଶ୍‌ଡ୍' । ବିପ୍ଳବ ସରି ଯାଏ ନାହିଁ କି ମରି ଯାଏ ନାହିଁ । ଏହା ଇତିହାସ ହୁଏ ସତ ପୁଣି ଇତିହାସକୁ ମନେ ପକାଇ ନୂଆ ବିପ୍ଳବ ଆରମ୍ଭ ହୁଏ । ସାଧାରଣ ଗରିବ ଲୋକ ବିପ୍ଳବକୁ ବଞ୍ଚାଇ ରଖିଥାଆନ୍ତି କାମରେ ଓ କଥାରେ, କାହାଣୀରେ ଓ ଦାର୍ଶନିକ ମତବାଦରେ । ଦକ୍ଷିଣ ଓ କେନ୍ଦ୍ରୀୟ ଆମେରିକାରେ ଲୋକେ ଆଜି ମନେରଖିଛନ୍ତି ଶେ ଗୁଏଭେରାଙ୍କୁ । ବିପ୍ଳବ, ବିଦ୍ରୋହ ଓ ପରିବର୍ତ୍ତନର ସେମାନେ ହେଉଛନ୍ତି ଜ୍ୱଳନ୍ତ ପ୍ରତିମୂର୍ତ୍ତୀ (ଆଇକନ୍) । ବିପ୍ଳବାତ୍ମକ ଲେଖନୀର ସେ ଅନ୍ୟ ଏକ ପରିଚୟ । ସେଇଥିପାଇଁ ଆଜି କାଷ୍ଟ୍ରୋ ହୁଅନ୍ତୁ କି ସାଭେଜ୍ ହୁଅନ୍ତୁ, ମୋରାଲେସ୍ ହୁଅନ୍ତୁ କି ଡ଼ାନିଏଲ୍ ଓର୍ଟେଗା ହୁଅନ୍ତୁ ପ୍ରଥମେ ଯାଆନ୍ତି ଶେ ଗୁଏଭେରାଙ୍କ ସମାଧୀ ଉପରେ ଫୁଲ ତୋଡ଼ା ଦେବାପାଇଁ । କଥାବର୍ତ୍ତା ହୁଅନ୍ତି ଶେ' ଙ୍କ ଝିଅ ସହ । ବିଦ୍ରୋହ ଓ ବିପ୍ଳବର ଅଗ୍ନି କଣିକା କେଉଁଠି ନା କେଉଁଠି ଲୁଚି ରହିଛି ଆମ ସମସ୍ତଙ୍କ ଭିତରେ । ଡାନିଏଲ୍ ଓର୍ଟେଗା, ହ୍ୟୁଗୋ ସାଭେଜ୍, ଇଭୋ ମୋରାଲେସ୍ ଏକଥା ଆଜି ଅକାଟ୍ୟ ଭାବେ ପ୍ରମାଣିତ କରିଛନ୍ତି । ନାୟକଙ୍କ ଭିତରେ ମହାନାୟକମାନେ ଜନ୍ମ ନେଇସାରିଛନ୍ତି । ❑

# ଜଗତୀକରଣ ଓ ଭୂସଂସ୍କାର

## (୧)

ନବେ ଦଶକରେ ଯେତେବେଳେ ଜଗତୀକରଣ ଭାରତରେ ନୂତନ ରୂପରେ ଓ ନୂତନ ଢଙ୍ଗରେ ପ୍ରବେଶ କରୁଥିଲା, ସେତେବେଳେ ତତ୍‌କାଳୀନ ଅର୍ଥମନ୍ତ୍ରୀଙ୍କ ସହ ବଜେଟ ସମ୍ବନ୍ଧରେ କଥାବାର୍ତ୍ତା କରିବାକୁ ମୋତେ ସୁଯୋଗ ମିଳିଥିଲା । ସ୍ୱେଚ୍ଛାସେବୀ ସଂଗଠନର କର୍ମକର୍ତ୍ତାମାନେ ବଜେଟ୍‌ରେ ଗରିବ ଓ ଅବହେଳିତମାନଙ୍କ ପ୍ରତି କ'ଣ ବ୍ୟବସ୍ଥା କରାଯାଇପାରନ୍ତା ସେ ବିଷୟରେ ସୁଚିନ୍ତିତ ମତାମତ ଓ ପରାମର୍ଶ ଅର୍ଥମନ୍ତ୍ରୀଙ୍କୁ ଦେଇଥିଲେ । ସେତେବେଳେ ସେ କହିଥିଲେ ଯେ ସରକାର ଅବହେଳିତ ଓ ଅନୁନ୍ନତମାନଙ୍କ ପାଇଁ କିଛି କରିବାକୁ ଚାହୁଁଛନ୍ତି ତା' ହେଲେ ଭୂସଂସ୍କାରକୁ କଡାକଡି ଭାବେ ଲାଗୁ କରନ୍ତୁ । ସ୍ୱାଧୀନତା ପରଠାରୁ ଯେଉଁ କେତୋଟି ଐତିହାସିକ ଭୁଲ ହୋଇଛି ତାକୁ ସୁଧାରିବାକୁ ତଥା ଜୀବନ ଜୀବିକାର ନିରାପତ୍ତା ଗରିବ ଲୋକଙ୍କୁ ଦେବା ପାଇଁ ଯଦି ନିଷ୍ପତ୍ତି ନିଆଯାଏ, ତେବେ ତା'ହେଲେ ସବୁ ଜମିହୀନଙ୍କୁ ଜମି ଦିଆଯିବା ଦରକାର । ମୋ ପ୍ରସ୍ତାବରେ ଏକ ହାସ୍ୟରୋଳ ସୃଷ୍ଟି ହୋଇଥିଲା ମାନ୍ୟବର ଅର୍ଥମନ୍ତ୍ରୀଙ୍କ ସମ୍ମିଳନୀ କକ୍ଷରେ । ସେମାନେ ବକ୍ତବ୍ୟ ଦେଉଥିଲେ ବର୍ତ୍ତମାନର ଜଗତୀକରଣ ଯୁଗରେ ମୋ ଭଳି ଏକ ନିର୍ବୋଧ ଏବଂ ଅଜ୍ଞ ବ୍ୟକ୍ତି ଭୂସଂସ୍କାର ପ୍ରଶ୍ନ ଉଠାଉଛି । ଭୂସଂସ୍କାର ଓ ଇତିହାସର ପୂର୍ଣ୍ଣଚ୍ଛେଦ କେବେଠାରୁ ପଡିଗଲାଣି ତାହା ମୁଁ ଯେମିତି ଜାଣି ନାହିଁ । ଆଉ ମଧ ମୁଁ ଜାଣି ନାହିଁ ରାଜନୈତିକ ଦଳମାନଙ୍କର ନିର୍ବାଚିତ ଇସ୍ତାହାରରେ ଜମିହୀନଙ୍କୁ ଜମି ଦେବା ଓ ଭୂସଂସ୍କାର ପାଇଁ ପଦକ୍ଷେପ ନେବା ସ୍ପଷ୍ଟଭାବରେ ଉଲ୍ଲେଖ କରାଯାଉନାହିଁ । ବାମପନ୍ଥୀ ହୁଅନ୍ତୁ କି ଗାନ୍ଧୀବାଦୀ ହୁଅନ୍ତୁ ଭୂଦାନ, ଗ୍ରାମଦାନ ଅଥବା 'ତେଲେଙ୍ଗାନା' 'ତେଭାଗା' ବା 'ଅପରେସନ ବର୍ଗା' ଭଳି ଜନ ଆନ୍ଦୋଳନ ରାଜନୈତିକ ଧ୍ୱଂସ ସ୍ତୂପତଳେ ପୋତି ହୋଇପଡିଛି । ନିଛକ ସତକଥା ଅଥଚ ମୁଁ ସମ୍ପୂର୍ଣ୍ଣ ଅନ୍ଧାରରେ ଅଛି ।

ହେ ବନ୍ଧୁ, ଆପଣମାନେ ଜାଣିଛନ୍ତି ଭୂସଂସ୍କାର କଳ୍ପନା ଓ ପରିକଳ୍ପନା ପ୍ରକୃତରେ ଭାରତ ବର୍ଷର ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ପୃଷ୍ଠଭୂମିରୁ ଲୋପପାଇ ଯାଇଅଛି । କିନ୍ତୁ ଏହା ପରିବର୍ତ୍ତେ ସାଂପ୍ରତିକ ସଂସ୍କାରର ପ୍ରହେଳିକା ସମସ୍ତଙ୍କୁ ଆଚ୍ଛାନ୍ନ କରି ରଖିଛି । ଅସଲ ବାସ୍ତବ କ୍ଷେତ୍ରରେ ବିଚାର କଲେ ଏକ ବିପରୀତଧର୍ମୀ ଭୂସଂସ୍କାର (Reverse of Land Reform) ଦେଶର ସବୁଆଡେ ବ୍ୟାପିଯାଇଛି । ବିଶିଷ୍ଟ ଅର୍ଥନୀତିଜ୍ଞ ଡ଼.ଉଷା ପଟ୍ଟନାୟକ କଥା ଛଳରେ କହୁଥିଲେ ଏହି ବିପରୀତଧର୍ମୀ ଭୂସଂସ୍କାର ଆମ କୃଷି ଓ ସାମାଜିକ ଢାଞ୍ଚରେ ଏକ ଗୁରୁତର ସମସ୍ୟା ସୃଷ୍ଟି କରିଛି । ବ୍ୟାଙ୍କରୁ ଗରିବ, କ୍ଷୁଦ୍ର ଓ ନାମମାତ୍ର ଚାଷୀ ଋଣ ନେଇ ପରିଶୋଧ ନକରିପାରିଲେ, ବ୍ୟାଙ୍କରେ ବନ୍ଧକ ରଖିଥିବା ତାର ଜମିକୁ ନିଲାମ କରି ଋଣ ଆଦାୟ କରୁଛି । ଏହା ଫଳରେ ଭାରତରେ ଜମିହୀନଙ୍କ ସଂଖ୍ୟା ଆଶାତୀତ ଭାବେ ବଢିବାରେ ଲାଗିଛି । ଶୁଣାଯାଏ ଯେ ଭାରତର ରିଜର୍ଭ ବ୍ୟାଙ୍କ ଏହା ଉପରେ ଏକ ଅଧ୍ୟୟନ କରି ଏଭଳି ଚମକପ୍ରଦ ତଥ୍ୟ ପାଇଛି ଯାହା ପ୍ରକାଶିତ ହେଲେ ଦେଶର ବିକାଶ କେଉଁଦିଗରେ ଯାଉଛି ଅନେକ ପ୍ରଶ୍ନ ଉଠିବ । ସେଭଳି ସିଲିଂ ବର୍ହିଭୂତ ଜମି ଯାହା ଭୂମିହୀନମାନଙ୍କ ଭିତରେ ବଣ୍ଟାଯିବା କଥା ତାହା ବହୁକ୍ଷେତ୍ରରେ ଜମି ମାଲିକଙ୍କ କର୍ତ୍ତୃତ୍ୱରେ ଅଛି । ଅନ୍ୟ ପକ୍ଷରେ ସରକାର, ଶିଳ୍ପପତି ଓ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଗରିବ ଆଦିବାସୀମାନଙ୍କୁ ବାସଚ୍ୟୁତ କରି ଲକ୍ଷ ଲକ୍ଷ ଏକର ଜମି ଅଧିଗ୍ରହଣ କରିଛନ୍ତି । ଗଢି ଉଠିଛି ଶିଳ୍ପ, ତିଆରି ହୋଇଛି ଡ୍ୟାମ୍ ଏବଂ ପ୍ରସାରିତ ହୋଇଛି ରାଜରାସ୍ତା । ସରକାର କେତେ ଜମି ଅଧିଗ୍ରହଣ କଲେ, କେତେ ଜଙ୍ଗଲ କାଟିଲେ ଓ କେତେ ଆଦିବାସୀ ଜମିହୀନଙ୍କୁ ଜମି ଦେଲେ, ଏହାର ସଠିକ୍ ହିସାବ ନାହିଁ । ସରକାର କେତେ ବାସ୍ତୁହରାଙ୍କୁ ଓ ବସ୍ତିବାସିନ୍ଦାଙ୍କୁ ଘରଡିହ ଯୋଗାଇଦେଲେ ତାହାର ସଠିକ ତଥ୍ୟ କାହା ପାଖରେ ନାହିଁ । ପରିସଂଖ୍ୟାନ, ବିଭିନ୍ନ ମନ୍ତ୍ରଣାଳୟର ରିପୋର୍ଟ ଓ ଯୋଜନା କମିଶନଙ୍କ ନଥିପତ୍ରରେ ଯାହା କିଛି ଉଲ୍ଲେଖ କରାଯାଇଛି, ତାହା କେତେ ଠିକ୍ କେତେ ଭୁଲ ତାହା କିଛି କହିହେଉନି । ଏହା ଉପରେ ଅନେକ ଗବେଷଣା ଚାଲିଥିଲେ ମଧ ତଥା ବିଧାନସଭା ଓ ସଂସଦରେ ବହୁବାର ଆଲୋଚିତ ହେଉଥିଲେ ମଧ୍ୟ ସଠିକ୍ ପରିସଂଖ୍ୟାନ ମିଳି ପାରୁନାହିଁ ।

ସବୁ ଜମିହୀନଙ୍କୁ ଜମି ମିଳିବା କାହିଁକି ଭାରତ ଭଳି ଦେଶରେ ଏକ ଗୁରୁତର ବିଷୟ ତାହା ସମସ୍ତେ ହୃଦୟଙ୍ଗମ କରିବା ଦରକାର । ଘର ଡିହ ହେଉ

ବା ଚାଷ, ଜାତି, ଶ୍ରେଣୀ ଶ୍ରେଣୀ ମଧ୍ୟରେ ଯେଉଁ ସମ୍ପର୍କର ଡୋରି ଲାଗିଛି ତାର ମୂଳରେ ଅଛି ଜମି । ଚାଷୀମୂଲିଆଙ୍କ ଭାତହାଣ୍ଡି ହେଉ ବା ଖାଦ୍ୟ ନିରାପତ୍ତା ହେଉ ଜମି ହେଉଛି ପୂରାପୂରି ମୂଳକେନ୍ଦ୍ର । ଜମିରେ ଏହା ଏକ ଅଦ୍ୱିତୀୟ ଅବଦାନ । ଗରିବଙ୍କ ଏକମାତ୍ର ସାହା ଭରସା ।

ଭାରତବର୍ଷର ରାଜନୀତି ବିଶାରଦ, ଅର୍ଥନୈତିଜ୍ଞ, ସମାଜତତ୍ତ୍ୱବିଦ୍ ଏବଂ ନୀତିନିର୍ଦ୍ଧାରକମାନେ ଏ ଦେଶର ଅନେକ ସମସ୍ୟାର ସମାଧାନର ଉପାୟ ଯଦିଓ ଭୂସଂସ୍କାର ବୋଲି ଜାଣିଛନ୍ତି ତଥାପି ଏହାକୁ କାହିଁକି ପ୍ରାଥମିକତା ଦେଉନାହାଁନ୍ତି ? ତା ପଛରେ କାରଣଟିଏ ଅଛି । ପ୍ରଥମତଃ ଭାରତବର୍ଷର କୃଷି ଏବଂ ତତ୍‌ସମ୍ବନ୍ଧୀୟ ସମ୍ପର୍କ ଅନୁଧ୍ୟାନ କଲେ ଜଣାପଡେ ଯେ ଜମି ମାଲିକମାନେ ବହୁ ପରିମାଣରେ ଜମି ଠୁଳ କରିଛନ୍ତି ଓ କିଛି ଲୋକ ସଦାସର୍ବଦା ଜମିହୀନ ଚାଷୀ ଓ ଚାଷୀମୂଲିଆ ହୋଇ ରହିଥାନ୍ତୁ ଏହାକୁ କଳେବଳେ କୌଶଳରେ ଜାହିର କରିଥାନ୍ତି । ଏଥିପାଇଁ ଜମି ସଂସ୍କାରର ଆଇନଗତ ବ୍ୟବସ୍ଥାକୁ ତଥା ଅମଲାତାନ୍ତିକ ପଦେକ୍ଷେପକୁ ଭଣ୍ଡୁର କରିଥାନ୍ତି । ଏପରିକି ବିଚାରାଳୟରେ ନ୍ୟାୟ ପାଇଁ ଦ୍ୱାରସ୍ଥ ହେଲେ ଚାଷୀମୂଲିଆ ନିରାଶ ହୋଇଥାନ୍ତି । ବଳକା ଜମି ବଣ୍ଟନରେ ଆଇନଗତ ଜଟିଳତା କେତେ ବେଶି ହାଇକୋର୍ଟର ବିଭିନ୍ନ ମୋକଦ୍ଦମାଗୁଡ଼ିକୁ ବିଶ୍ଳେଷଣ କଲେ ଜଣାପଡିବ । ଜମିଜମା ସଂକ୍ରାନ୍ତରେ ସରକାର କେଉଁ କେଉଁ କେଶ୍ ସବୁ ହାରିଛନ୍ତି ତାହା ଉପରେ ଅନୁସନ୍ଧାନମୂଳକ ଗବେଷଣା ହେବାର କଥା । କେଉଁ କେଉଁ କାରଣରୁ ଜମିହୀନମାନେ ସିଲିଂ ବର୍ହିଭୂତ ଜମି ପାଇଲେ ନାହିଁ । ତାହା ଉପରେ ମଧ୍ୟ ଅନୁସନ୍ଧାନ ପରିସରଭୁକ୍ତ ହେବା କଥା । ସିଲିଂ ବର୍ହିଭୂତ ଜମି ବଣ୍ଟନ ଏକ ରାଜନୈତିକ ଇଚ୍ଛାଶକ୍ତି (Political will) ର ପରିମାପକ । ଭାରତବର୍ଷରେ ସେହି ଇଚ୍ଛାଶକ୍ତିର ଅଭାବ ଅନେକ ଭୂସଂସ୍କାର ପତନର ମୁଖ୍ୟ କାରଣ । ଓଡ଼ିଶା ଭଳି ପ୍ରଦେଶରେ ଏକ କ୍ଷମତାଶୀଳ ଗୋଷ୍ଠୀ ଯେଉଁମାନେ ପେଷାଦାର ଗୋଷ୍ଠୀ ହିସାବରେ ଧନବଳ, ଜନବଳ, ଓ ରାଜନୈତିକ ବଳରେ ବଳୀୟାନ ସେମାନେ ପ୍ରାୟ ଜମି ମାଲିକ । ସେମାନେ କେବେବେଳେ ଚାହିଁ ନାହାଁନ୍ତି ତାଙ୍କର ବଳକା ସିଲିଂ ବର୍ହିଭୂତ ଜମି ଜମିହୀନମାନଙ୍କ ମଧରେ ବଣ୍ଟାଯାଉ । ୧୯୭୫ ମସିହା ଜରୁରୀକାଳୀନ ପରିସ୍ଥିତିରେ ଆଇନଗତ ବ୍ୟବସ୍ଥାକୁ ଅସ୍ତ୍ର ରୂପେ ବ୍ୟବହାର କରି ଡରଭୟ ଚିହ୍ନଟ ହୋଇଥିଲା ନା ପ୍ରକୃତ ପଟ୍ଟା ଦିଆଯାଇଥିଲା । ୧୯୭୭ ମସିହାରେ ଜରୁରୀକାଳୀନ ପରିସ୍ଥିତିର

ଶେଷ ପରେ ଜମିମାଲିକମାନେ ପୁଣି ସେମାନଙ୍କର ଜମି ଜବରଦସ୍ତି ଅଧିକାର କରିଥିଲେ ।

ଜଗତୀକରଣ ପ୍ରକ୍ରିୟା ଆରମ୍ଭ ହେବା ପୂର୍ବରୁ ବିଶ୍ୱ ବ୍ୟାଙ୍କ ୧୯୭୫ରେ ଭୂସଂସ୍କାର ଉପରେ ଏକ ମୌଳିକ ନୀତି ନିର୍ଦ୍ଧାରଣ କରି ବିକାଶଶୀଳ ଦେଶମାନଙ୍କୁ ଉପହାର ଦେଇଥିଲେ । ଏଥିରେ ମୁଖ୍ୟତଃ ୪ଗୋଟି ଦିଗ ଥିଲା; ଯଥା: ୧) ଜମି ବଜାରରେ କିଣାବିକାର ସାମଗ୍ରୀ ହେବ, ୨) ଜମି ପଞ୍ଜିକରଣ ହେବ ଓ ସମସ୍ତ ଜମି ମାଲିକମାନଙ୍କୁ ସ୍ପଷ୍ଟ ଉଲ୍ଲେଖ କରାଯିବ, ୩) ଜମି କିଣାବିକାରେ କୌଣସି କଟକଣା ରହିବ ନାହିଁ ଓ ୪) ଜମିକୁ ବନ୍ଧକ ରଖି ବ୍ୟାଙ୍କରୁ ଋଣ ମିଳିବ । ଏହାର ସୁଦୂରପ୍ରସାରୀ ପ୍ରଭାବ ଖାଲି ଭାରତରେ ନୁହେଁ ତୃତୀୟ ବିଶ୍ୱରେ ବ୍ୟାପକ ଭାବରେ ପଡିଥିଲା । ଏହାକୁ ଆୟୁଧ କରି ସରକାର, ବହୁ ରାଷ୍ଟ୍ରୀୟ କମ୍ପାନୀ ଓ ଆନ୍ତର୍ଜାତିକ ଅର୍ଥ ପ୍ରଦାନକାରୀ ସଂସ୍ଥାମାନେ ଭୂସଂସ୍କାରର ଏକ ଭିନ୍ନ ବ୍ୟାଖ୍ୟା କରୁଥିଲେ । କୌଣସି ପ୍ରକାର ବୈଦେଶିକ ସାହାଯ୍ୟ ଦେବା ପୂର୍ବରୁ ସେମାନେ ସର୍ତ୍ତ ରଖୁଥିଲେ ଯେ ଜମି ସମ୍ବନ୍ଧରେ ସବୁ ଆଇନଗତ କଟକଣା କୋହଳ କରାଯାଉ ଏବଂ କିଣାବିକାର ପ୍ରକ୍ରିୟାକୁ ସହଯୋଗ କରି ଜମିକୁ ବଜାରାଭିମୁଖୀ କରାଯାଉ । ଜମିରୁ କିପରି ସବୁଠାରୁ ଲାଭଜନକ ଉତ୍ପାଦନ ହୋଇ ପାରିବ ସେହିଭଳି କୃଷି ଯୋଜନା ତ୍ୱରାନ୍ୱିତ ହେଉ । ଏଇଥିପାଇଁ ଆନୁସଙ୍ଗିକ ବିହନ, ସାର, କୀଟନାଶକ ଔଷଧ, ଜଳସେଚନ ଓ ତା' ପାଇଁ ଆବଶ୍ୟକ ଶକ୍ତି ଓ ଭିତ୍ତିଭୂମି ଋଣ ମାଧ୍ୟମରେ ବ୍ୟବସ୍ଥା କରାଯାଉ । କୃଷିକୁ ଶିଳ୍ପର ମାନ୍ୟତା ଦିଆଯାଉ । କୃଷିକୁ ବ୍ୟାପାରୀକରଣ କରିବା ପାଇଁ ପରିବେଶ ସୃଷ୍ଟି କରାଯାଉ । ସାଧାରଣ ଚାଷୀଟି ଜମି ଓ ପାଣିର ଠିକ ବିନିଯୋଗ କରିପାରୁ ନାହିଁ ବୋଲି ପେଶାଦାର ଗୋଷ୍ଠୀ କୃଷିର ନିୟନ୍ତ୍ରଣର ଡୋରି ହାତରେ ରଖନ୍ତୁ । ଅତ୍ୟାଧୁନିକ ବୈଜ୍ଞାନିକ ଓ ବୈଷୟିକ ପ୍ରଣାଳୀ ସହ ପ୍ରୟୋଗ ମାଧ୍ୟମରେ ବଡଚାଷୀମାନେ ଦେଶର ଉତ୍ପାଦନ ବଢାନ୍ତୁ । କ୍ଷୁଦ୍ର ଓ ନାମମାତ୍ର ଚାଷୀ ବଡଚାଷୀଙ୍କ ଉପରେ ଏ କୃଷି ପ୍ରଣାଳୀ ପାଇଁ ନିର୍ଭର ହୁଅନ୍ତୁ । ବଡଚାଷୀମାନେ ସବୁ ରିହାତିରୁ ଫାଇଦା ଉଠାନ୍ତୁ ।

ଚାଷକୁ ସହଜ ଏବଂ ସରଳ ଉପାୟରେ ଋଣ ମିଳୁଥିବାରୁ ଚାଷୀକୁଳ ପାରମ୍ପରିକ କୃଷିକୁ ପରିତ୍ୟାଗ କରି ଏଇଭଳି ଅର୍ଥକାରୀ ଫସଲ ଉତ୍ପାଦନ କରିବାରେ

ଲାଗିପଡିଲେ । ପ୍ରାକୃତିକ ବିପର୍ଯ୍ୟୟ ହେଉ ଅଥବା ଅର୍ଥକାରୀ ଫସଲ ହେଉ ଅସଲ କ୍ଷେତ୍ରରେ ଚାଷୀମାନଙ୍କର ନିୟନ୍ତ୍ରଣ ନ ଥିବାରୁ ନୂତନ କୃଷି ଅନେକାଂଶରେ ବିଫଳ ହେଲା ଏବଂ କୃଷକ ତାର ଋଣ ଫେରାଇ ପାରିଲା ନାହିଁ । ଏହାର ଫଳ ସ୍ୱରୂପ ସେ ତାହାର ଜମି ବଡବଡ ଚାଷୀ ଓ ଜମି ମାଲିକଙ୍କୁ ବିକିଲା ଅଥବା ଅତି ନୈରାଶ୍ୟଜନକ ପରିସ୍ଥିତିରେ ପଡି ଆତ୍ମହତ୍ୟା କଲା । ଜଗତୀକରଣ ପ୍ରଭାବରେ ଏଭଳି ବିପରୀତ ଭୂସଂସ୍କାର ନୀତି ପୃଥିବୀର ବିଭିନ୍ନ ପ୍ରାନ୍ତରେ ପ୍ରସାରିତ ହେଲା ।

(୨)

ଜଗତୀକରଣ ପ୍ରକ୍ରିୟାରେ କୃଷି ଉପରେ ଯେତିକି କୁପ୍ରଭାବ ପଡିଛି ତା'ଠାରୁ ଅଧିକ ପ୍ରଭାବ ପଡିଛି ଆଦିବାସୀ ଅଞ୍ଚଳରେ । ଜମିକୁ ବଜାରର ଏକ ସାମଗ୍ରୀ ରୂପେ ବିଚାର କରାଯାଇଛି, ସେହି ଦିନଠାରୁ ଆଦିବାସୀ ଅଞ୍ଚଳରେ ଥିବା ସେମାନଙ୍କର ସାର୍ବଜନୀନ ଜମିଜମା ଓ ସମ୍ପତ୍ତିଗୁଡିକ ଉପରେ ପୁରୁଷପୁରୁଷ ଧରି ସେମାନଙ୍କର ଅଧିକାର ଥିଲା ତାହା କ୍ଷୁର୍ଣ୍ଣ ହୋଇଛି । କାରଣ ଏହି ଜମିଜମା ଉପରେ ଆଦିବାସୀଙ୍କର କୌଣସି ଲିଖିତ ଅଧିକାର ନଥିଲା । ଆଦିବାସୀ ଅଞ୍ଚଳଗୁଡିକରେ ଜଳ, ଜମି, ଜଙ୍ଗଲ ଓ ଖଣିଜଦ୍ରବ୍ୟ ଆଦି ପ୍ରାକୃତିକ ସଂପଦ ଭରପୂର ରହିଛି । ଏଇଥିପାଇଁ ସରକାର ଓ ବହୁରାଷ୍ଟ୍ରୀୟ କମ୍ପାନୀ ଏହି ପ୍ରାକୃତିକ ସମ୍ପତ୍ତିର ବିନିଯୋଗ ପାଇଁ ସବୁବେଳେ ବିଭିନ୍ନ ପ୍ରକାର ପ୍ରକଳ୍ପ ତ୍ୱରାନ୍ୱିତ କରୁଛନ୍ତି । ଏହିସବୁ ଶିଳ୍ପପ୍ରତିଷ୍ଠା ପାଇଁ ଅନେକ ଜମିର ଆବଶ୍ୟକତା ରହିଛି । ସରକାର ବିଭିନ୍ନ ବାଟରେ ଆଦିବାସୀ ଅଞ୍ଚଳରେ ଜମି ଅଧିଗ୍ରହଣ କରୁଛନ୍ତି । ଆଦିବାସୀଙ୍କର ପଟ୍ଟା ଆଦି ଦଲିଲ୍ ନଥିବାରୁ ବିନା କ୍ଷତିପୂରଣରେ ଆଦିବାସୀମାନେ ଜମି ହରାଇ ବସୁଛନ୍ତି । ସ୍ୱାଧୀନତା ପରଠାରୁ ଜୀବନ ଜୀବିକାରୁ ବଞ୍ଚିତ ହୋଇ ବାସଚ୍ୟୁତ ହୋଇଥିବା ଆଦିବାସୀଙ୍କ ସଂଖ୍ୟା ପ୍ରାୟ ଅଢେଇ କୋଟି । ଆଦିବାସୀଙ୍କର ସୁରକ୍ଷା ପାଇଁ ସବୁ ଆଇନ ସତ୍ତ୍ୱେ ବହୁସଂଖ୍ୟାରେ ଆଦିବାସୀମାନେ ସର୍ବହରା ହେଉଛନ୍ତି ଏବଂ ଅତି ସହଜରେ ଜମିହୀନ ଗୋଷ୍ଠୀରେ ସାମିଲ ହୋଇଛନ୍ତି । ଓଡ଼ିଶାର ସବୁ ଆଦିବାସୀ ବହୁଳ ଅଞ୍ଚଳକୁ ଲକ୍ଷ୍ୟକଲେ ଏକଥା ସହଜରେ ପ୍ରମାଣିତ ହୋଇଯାଏ । ହୀରାକୁଦ ନଦୀବନ୍ଧ ଯୋଜନା ହେଉ ଅଥବା ଇନ୍ଦ୍ରାବତୀ ଜଳବିଦ୍ୟୁତ୍ ପ୍ରକଳ୍ପ ହେଉ ଅଥବା ରାଉରକେଲା ଇସ୍ପାତ କାରଖାନା ହେଉ

ଅଥବା କୋରାପୁଟର ଦାମନଯୋଡି ନାଲ୍‌କୋ ହେଉ, ବିସ୍ଥାପନର କାହାଣୀ ସବୁଆଡେ ସମାନ । ଏପରିକି ଦେଖାଯାଇଛି ଯେ କେତେକ କ୍ଷେତ୍ରରେ ଆଦିବାସୀମାନେ ଦୁଇ ତିନିଥର ବାସଚ୍ୟୁତ ହେଲେଣି । ଉଦାହରଣ ସ୍ୱରୁପ- ସୁନାବେଡା ମିଗ୍ ବିମାନ କାରଖାନାରେ ବାସଚ୍ୟୁତ ହୋଇଥିବା ଆଦିବାସୀମାନେ ମାଛକୁଣ୍ଡ ଅଞ୍ଚଳକୁ ଥଇଥାନ ହେବା ପାଇଁ ଆସିଥିଲେ । ମାଛକୁଣ୍ଡ ଜଳବିଦ୍ୟୁତ୍ ପ୍ରକଳ୍ପ ହେତୁ ସେମାନେ ବାଲିମେଳା ଅଞ୍ଚଳକୁ ଉଠିଯାଇଥିଲେ । ବାଲିମେଳା ପ୍ରକଳ୍ପ ହେଲା ପରେ ସେମାନେ ଆଉଥରେ ବାସଚ୍ୟୁତ ହେଲେ । ସେମାନଙ୍କର ଦୁଃଖ ନିର୍ଯ୍ୟାତନାର କାହାଣୀ ଆଜି ପର୍ଯ୍ୟନ୍ତ ଲେଖକ, ଗବେଷକ ଗୋଷ୍ଠୀ ଲିପିବଦ୍ଧ କରିପାରି ନାହାନ୍ତି ।

ଜୀବନ ଓ ଜୀବିକା ହରାଉଥିବା ଆଦିବାସୀଙ୍କ ଭିତରେ ସବୁଠାରେ ବେଶି ଯନ୍ତ୍ରଣାର ଶିକାର ହୋଇଛନ୍ତି ଆଦିବାସୀ ମହିଳା । ଜମି ଓ ଜଙ୍ଗଲ ଉପରେ ଭରସା କରୁଥିବା ଏହି ମହିଳାମାନେ ହଠାତ୍ ନିଜର ସାମାଜିକ ଓ ଆର୍ଥିକ ସ୍ଥିତି ହରାଇ ବସିଛନ୍ତି । ବଜାର ଅର୍ଥନୀତିରେ ଆଦିବାସୀ ମହିଳାମାନେ ନିରାପଦ ଓ ସୁରକ୍ଷିତ ନୁହଁନ୍ତି । ସେମାନଙ୍କର ପରିଶ୍ରମର ଉପଯୁକ୍ତ ମଜୁରୀ ସେମାନେ (କୁଶଳୀ ଶ୍ରମିକ ହୁଅନ୍ତୁ ବା ଅଣକୁଶଳୀ ଶ୍ରମିକ ହୁଅନ୍ତୁ) ସମାନ ଭାବେ ବିସ୍ଥାପନା ଦ୍ୱାରା ପରିଗଣିତ ହୁଅନ୍ତି । ନିଜର ଭିଟାମାଟି ଛାଡି ସେମାନେ ଛୋଟ ଛୋଟ ସହରାଞ୍ଚଳ ବା ଶିଳ୍ପାଞ୍ଚଳକୁ ବହିରାଗମନ ହୋଇଥାନ୍ତି । ପେଟ ପାଇଁ ସଂଗ୍ରାମ ଚାଲିଥିବାରୁ ଆଦିବାସୀ ମହିଳାମାନେ ନିଜକୁ ଓ ଶ୍ରମର ଦାମ୍‌କୁ ଅତି କମ୍ ଦରରେ ବିକ୍ରି କରିଥାନ୍ତି । ସବୁ ସହରାଞ୍ଚଳ ଓ ଶିଳ୍ପାଞ୍ଚଳକୁ ଅନୁସନ୍ଧାନ କଲେ ଜଣା ପଡିବ ଏକଥା କେତେ ସତ୍ୟ, ଏକଥା ସହଜରେ ଜଣାପଡେ । ଏକଦା ଆଦିବାସୀ ମହିଳାମାନେ ନିଜର ଗାଁରେ ସମ୍ମାନର ସହ ଜୀବନ ଓ ଜୀବିକାର ନିରାପତ୍ତା ହାସଲ କରିପାରୁଥିଲେ । ଜମିରେ କରୁଥିଲେ ଚାଷ ଓ ଜଙ୍ଗଲରୁ ପାଉଥିଲେ ଅନେକ କିସମର ଜଙ୍ଗଲ ଜାତୀୟ ଦ୍ରବ୍ୟ । ଏହାଛଡା କୁକୁଡା, ଛେଳି, ମେଣ୍ଢା, ଗାଈ, ବଳଦ ଆଦି ପଶୁପାଳନ କରି ଆର୍ଥିକ ସ୍ତରକୁ ସୁଦୃଢ କରିବାକୁ ଚେଷ୍ଟା କରୁଥିଲେ । ପୋଡୁଚାଷ କରୁ ବା ନିଜର ପାରମ୍ପରିକ ଜଙ୍ଗଲ, କୃଷିକାର୍ଯ୍ୟ କରୁ, ମାଣ୍ଡିଆ, କାନ୍ଦୁଲ, ଅଳଶୀ, ମକା, ରାଶି, ସୋରିଷ ଓ ଅନେକ କିସମର ଶସ୍ୟ ସେ ଉତ୍ପାଦନ କରି ଖାଦ୍ୟ ନିରାପତ୍ତାକୁ ସୁଦୃଢ କରିଥିଲା ଏବଂ ବଳକା ଜିନିଷକୁ ବିକି ସେ ମଧ୍ୟ ଆବଶ୍ୟକ ଅର୍ଥ ଯୋଗାଡ

କରିପାରୁଥିଲା । ଯଦିଓ ବିକାକିଣାରେ ବା ଦର କଷାକଷିରେ ଆଦିବାସୀ ମହିଳାଙ୍କର ନିର୍ଦ୍ଦିଷ୍ଟ ଦକ୍ଷତା ନଥାଏ । ତଥାପି ସେ ଉତ୍ପାଦନ କରୁଥିବା କୃଷିଜାତ ଦ୍ରବ୍ୟ ବା ଜଙ୍ଗଲରୁ ସଂଗ୍ରହ କରୁଥିବା ଜଙ୍ଗଲଜାତଦ୍ରବ୍ୟ ଇମିଗୁଡିକର ବଜାର ଦର ବୁଝିପାରୁଥାଏ । ଆଦିବାସୀମାନେ ହଠାତ୍ ବିସ୍ଥାପିତ ହୋଇ ସହରକୁ ଆସିଗଲେ । ବଜାରର ଜାଲରେ ପଡିଯାଇ ନିଜକୁ ପୁରାପୁରି ନିଃସ୍ୱ ଓ ଅସହାୟ ମନେକରିଥାଏ । ବର୍ତ୍ତମାନ ଦେଖାଯାଉଛି ଯେ ଯେଉଁ ନୂତନ କୃଷି ପ୍ରଣାଳୀ ବା ଜମିର ଉତ୍ପାଦନ ବଢାଯାଉଛି ଓ ତାହା ସହିତ ହାଇବ୍ରିଡ୍ ବିହନ ଓ କୀଟନାଶକ ଦ୍ରବ୍ୟ ଓ ଋଣ, ବୈଷୟିକ ଜ୍ଞାନ ବିଷୟରେ ପ୍ରଶିକ୍ଷଣ, ବଜାର ଦର ବିଷୟରେ ଜ୍ଞାନ, କୃଷିଜାତ ଦ୍ରବ୍ୟର ପ୍ରକ୍ରିୟାକରଣ ଏସବୁ ଆଦିବାସୀ ମହିଳାଙ୍କର ପରିସର ଓ ପ୍ରଭାବ ଭିତରେ ରହେ ନାହିଁ । ତେଣୁ ଶିଳ୍ପ ହେଉ କି କୃଷି ହେଉ ଜଗତୀକରଣ ଦ୍ୱାରା ଆଦିବାସୀ ମହିଳାଙ୍କ ସାମାଜିକ-ଆର୍ଥିକ ସ୍ତରକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ଥଇଥାନ ନୀତିର ଆବଶ୍ୟକ ବ୍ୟବସ୍ଥା ହୋଇନାହିଁ । ଏଥରୁ ସେମାନଙ୍କର ଅସହାୟତା ସ୍ପଷ୍ଟ ପରିଲକ୍ଷିତ ହୁଏ ।

ଅଷ୍ଟମ ପଞ୍ଚବାର୍ଷିକ ଯୋଜନା (୧୯୯୨-୯୭)ରେ ମହିଳାମାନଙ୍କର ସ୍ତର ଅଭିବୃଦ୍ଧି ପାଇଁ ଜମିଜମା ଅଧିକାର ସ୍ୱାମୀ ଓ ସ୍ତ୍ରୀ ଉଭୟଙ୍କୁ ଦିଆଯିବା କଥା ବୋଲି ଆସ୍ଥା ପ୍ରସ୍ତାବ ଦିଆଯାଇଥିଲା । କିନ୍ତୁ, ଏହା ଏବେ ସୁଦ୍ଧା କାର୍ଯ୍ୟକାରୀ ହୋଇନାହିଁ । ସ୍ୱାଧୀନଭାବରେ ଆଦିବାସୀ ମହିଳାଙ୍କୁ ଜମି ମିଳୁ, ଏକଥା ପଚାରୁଛି କିଏ ? କେତେକ ଆଦିବାସୀ ଲୋକଙ୍କ ଭିତରେ ମହିଳାଙ୍କୁ ସ୍ୱତନ୍ତ୍ର ଭାବେ ସମ୍ପତ୍ତି ଅଧିକାର ଦିଆଯାଇଥିଲେ ମଧ୍ୟ, ଏହା ସବୁ କ୍ଷେତ୍ରରେ ପ୍ରଚଳିତ ନୁହେଁ । ତଥାପି ଜଗତୀକରଣ ପ୍ରକ୍ରିୟାରେ ଆଦିବାସୀ ମହିଳାଙ୍କର ପାରମ୍ପରିକ ଅଧିକାର ଓ ସ୍ଥିତି ପୂରା ଭୁଷୁଡି ପଡିଛି- ଏହା ସହଜରେ ଉପଲବ୍ଧି କରାଯାଇଛି । ଜଗତୀକରଣ ପ୍ରକ୍ରିୟା ଆହୁରି ଶକ୍ତିଶାଳୀ ହେଲେ ଭବିଷ୍ୟତରେ ଏମାନଙ୍କର ସମାଜିକ ଜୀବନର ରୂପରେଖ କ'ଣ ହୋଇଥିବ ।

ଏଇ ଅବସରରେ ଭୂସଂସ୍କାର ବିଷୟରେ କିଏ କ'ଣ କହିଛନ୍ତି ଓ ସମ୍ବିଧାନରେ କ'ଣ ଉଲ୍ଲେଖ କରାଯାଇଛି ତାହା ଜାଣିବା ସମସ୍ତଙ୍କ ପାଇଁ ଆବଶ୍ୟକ ହୋଇପଡିଛି । ଗାନ୍ଧିଜୀ କହିଥିଲେ - 'ସ୍ୱାଧୀନ ଭାରତରେ ଚାଷୀମାନେ ଚାଷ କରୁଥିବା ଜମିର ଅଧିକାର ସତ୍ତ୍ୱ ପାଇବେ ଓ ଏଥିଯୋଗୁଁ ଜମି ମାଲିକଙ୍କୁ କୌଣସି କ୍ଷତିପୂରଣ ଦିଆଯିବ ନାହିଁ' । ଜବାହାରଲାଲ ନେହେରୁ ଭାରତୀୟ ଜାତୀୟ

କଂଗ୍ରେସର ଏକ 'ଉଚ୍ଚ କ୍ଷମତା ସମ୍ପନ୍ନ' କମିଟିର ଅଧ୍ୟକ୍ଷତା କରି କହିଥିଲେ କୃଷକ ଓ ରାଷ୍ଟ୍ର ମଧ୍ୟରେ କେହି ମଧ୍ୟସ୍ଥି ରହିବେ ନାହିଁ । ଜମି, କର୍ମଯୋଗାଣର ମୁଖ୍ୟ ଆଧାର ହେବ ଓ ଯେଉଁ ଜମି ମାଲିକମାନେ ଜମିକୁ କୃଷିକ୍ଷେତ୍ରରେ ବ୍ୟବହାର କରୁନାହାନ୍ତି ତାହା ଗ୍ରାମବାସୀଙ୍କ ହାତକୁ ଚାଲିଯିବ । ଆମ ସମ୍ବିଧାନର ୩୯ତମ ଧାରାରେ ଉଲ୍ଲେଖ କରାଯାଇଛି ଯେ ପୁରୁଷ ହୁଅନ୍ତୁ ବା ସ୍ତ୍ରୀ ହୁଅନ୍ତୁ ସମସ୍ତ ନାଗରିକ ଜୀବିକାର ଅଧିକାର ମିଳିବ । ସମ୍ବଳର ଅଧିକାର ଓ ନିୟନ୍ତ୍ରଣ ଏପରି ବ୍ୟବସ୍ଥିତ ହେବ ଯାହା ସମାଜର ସମସ୍ତଙ୍କର ଉପକାରରେ ଆସିବ । ଏହାକୁ ଛାଡି ବର୍ତ୍ତମାନ ସୁଦ୍ଧା ଓଡ଼ିଶା ସମେତ ଅନ୍ୟ ରାଜ୍ୟମାନେ ୨୭୨ଟି ଆଇନ ଓ ସଂଶୋଧନ ପ୍ରସ୍ତାବ ଆଣିଛନ୍ତି । ସମ୍ବିଧାନ ୧୩ଥର ସଂଶୋଧନ କରାଯାଇଛି । ୧୯୫୧ ମସିହାରେ ସମ୍ବିଧାନ ପ୍ରଥମ ଥର ପାଇଁ ସଂଶୋଧନ ହୋଇ ଜମିଦାରୀ ଉଚ୍ଛେଦ ଆଇନ ଅନ୍ତର୍ଭୁକ୍ତ କରାଯାଇଥିଲା । ୪୨ତମ ସଂଶୋଧନରେ ସମ୍ପତ୍ତି ଉପରେ ଅଧିକାର ଉଚ୍ଛେଦ କରାଯାଇ ଭୂସଂସ୍କାରକୁ ତ୍ୱରାନ୍ୱିତ କରାଯିବାକୁ ପଦକ୍ଷେପ ନିଆଯାଇଥିଲା ।

ଭୂସଂସ୍କାରର ପ୍ରକ୍ରିୟାକୁ ମଧ୍ୟ ଅନୁଶୀଳନ କଲେ ଜଣାପଡେ ଯେ ଏହା ସାଫଲ୍ୟ କରିବା ପାଇଁ ଚାରୋଟି ପଦ୍ଧତି ଅନୁସରଣ କରାଯାଇଛି । ସେଗୁଡିକ ହେଲା:- (କ) ଉପର ସ୍ତରରେ ଆଇନ୍ କରି (ଭୂସଂସ୍କାର ସରକାରଙ୍କ ସମ୍ବନ୍ଧୀୟ ଆଇନ୍) । (ଖ) ଉପର ସ୍ତରରୁ ବାମପନ୍ଥୀ ଆଦର୍ଶବାଦ ତଥା ନକ୍ସାଲବାଦର ସହାୟତା ନେଇ (ତେଲେଙ୍ଗାନାର ଉଦାହରଣ) । (ଗ) ଉପର ସ୍ତରର ଆଇନ୍ ଓ ତଳସ୍ତରର ଜନ ଆନ୍ଦୋଳନର ସମନ୍ୱୟ ରକ୍ଷା କରିବା (ପଶ୍ଚିମବଙ୍ଗ ଓ କେରଳ ଉଦାହରଣ) । (ଘ) ତଳସ୍ତରରେ ଜମିମାଲିକ ଓ ଜମିହୀନଙ୍କ ବୁଝାମଣା ରକ୍ଷା କରି । (ଭୂଦାନ, ଗ୍ରାମଦାନର ଉଦାହରଣ)

ସ୍ୱାଧୀନତା ପରଠାରୁ ଜମି ଉପରେ ଅଧିକାରକୁ ନେଇ ଯେଉଁ କେତୋଟି ଆନ୍ଦୋଳନ ହୋଇଛି ତାହା ଉଲ୍ଲେଖ କରିବା ନିତାନ୍ତ ଆବଶ୍ୟକ । ସେଗୁଡିକ ନିମ୍ନରେ ଦିଆଗଲା । (୧) ୧୯୪୩-୪୭ ମସିହାରେ ପଶ୍ଚିମ ବଙ୍ଗରେ ତେଭାଗା ଆନ୍ଦୋଳନ । (୨) ୧୯୪୫-୪୮ ମସିହାରେ ଆନ୍ଧ୍ରପ୍ରଦେଶର ତେଭାଗା ଆନ୍ଦୋଳନ । (୩) ୧୯୫୧ ମସିହାରେ ଭୂଦାନ ଓ ଗ୍ରାମଦାନ ଆନ୍ଦୋଳନ ।

(୪) ୧୯୬୭ ମସିହାରେ ନକ୍‌ସାଲବାଦୀ ଆନ୍ଦୋଳନ । (୫) ୧୯୭୮ ମସିହାରେ ବିହାରର ବୋଧଗୟା ଭୂମି ଆନ୍ଦୋଳନ ।

ଏସବୁ ଆନ୍ଦୋଳନର ସୁଦୂର ପ୍ରସାରୀ ପ୍ରଭାବ ଓ ସାଫଲ୍ୟ ବର୍ତ୍ତମାନର ଜଗତୀକରଣ ପ୍ରକ୍ରିୟାରେ ଆଲୋକସ୍ତମ୍ଭ ଭଳି ପ୍ରେରଣା ଯୋଗାଉଛି କି ନାହିଁ ତାହା ମଧ୍ୟ ଅଧ୍ୟୟନ କରିବାର ସମୟ ଆସିଛି । ଏହାଛଡା ଆଇନ ଓ ଆନ୍ଦୋଳନ, ତଥା ଭାରତର ପଞ୍ଚବାର୍ଷିକ ଯୋଜନାରେ ଭୂସଂସ୍କାରର କ୍ରମକ୍ଷୟିଷ୍ଣୁ ପ୍ରାଧାନ୍ୟ ପଛରେ ରାଜନୈତିକ ଇଚ୍ଛାଶକ୍ତିର ଅଭାବକୁ ମଧ୍ୟ ତାତ୍ପର୍ଯ୍ୟର ସହ ହୃଦୟଙ୍ଗମ କରିବାର ସମୟ ଆସିଛି । ଆଜିର ନାଗରିକ ପାଇଁ ଏ ସବୁର ଇତିହାସକୁ ପ୍ରଶ୍ନବାଚକ ଚିହ୍ନ ସହ ପଢିବାର ବେଳ ଆସିଛି । ଆଜିର ନାଗରିକ ସମାଜ ଏ ଇତିହାସର ପୃଷ୍ଠାଗୁଡିକୁ ସରଳଭାବେ ଜନତାଙ୍କ ସମ୍ମୁଖରେ ଉପସ୍ଥାପନ କରିବାର ଆହ୍ୱାନ ମଧ୍ୟ ଆସିଛି ।

କିନ୍ତୁ ଆଦିବାସୀ ମହିଳାମାନଙ୍କ ଜୀବନଜୀବିକାର ପରିସର ଜଗତୀକରଣ ପ୍ରକ୍ରିୟା ଦ୍ୱାରା ଯେଉଁଭଳି ସଙ୍କୁଚିତ ଓ ଅସହାୟ ଭାବେ ଦୋଦୁଲ୍ୟମାନ ସ୍ଥିତିରେ ପହଞ୍ଚିଯାଇଛି; - ତାହାର ମୂଳକାରଣ ହେଲା ପୁରୁଷ ପ୍ରାଧାନ୍ୟ ସମାଜ ଓ ଏହାର ନୀତି ନିୟମ । ଆମର ରାଜନୈତିକ ନେତା, ନୀତି ନିର୍ଦ୍ଧାରକ ଅଫିସର, ବୁଦ୍ଧିଜୀବୀ ଓ ସର୍ବୋପରି କୃଷକ ସମାଜ ଯଦି ଏ ସମସ୍ୟା ପ୍ରତି ସମ୍ବେଦନଶୀଳ ଥାଆନ୍ତେ, ତେବେ ବର୍ତ୍ତମାନର ସ୍ଥିତି ଅନ୍ୟ କିଛି ହୋଇଥାଆନ୍ତି । କିନ୍ତୁ ଏସବୁ ସତ୍ତ୍ୱେ ଯେଉଁ କେତୋଟି ସଫଳ ଉଦାହରଣ ରହିଛି ତାହା ହେଲା କାଶୀପୁରରେ ଜମିହୀନଙ୍କ ଭିତରେ ସରକାରୀ ଜମି ବଣ୍ଟନ । ୧୯୯୦-୯୫ ମସିହାରେ ସ୍ୱର୍ଗତଃ ବିଜୁ ପଟ୍ଟନାୟକ ନିଷ୍ପତ୍ତି ନେଇଥିଲେ ଯେ ଡଙ୍ଗରଜମି ଆଦିବାସୀଙ୍କ ଭିତରେ ବଣ୍ଟନ କରାଯିବ ଓ ଯେଉଁ ଜମିପଟ୍ଟା ଦିଆଯିବ ତାହା ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କ ନାମରେ ପଟ୍ଟା ତିଆରି କରାଯାଉଥିଲା । ଆଜି ଜଗତୀକରଣ ପ୍ରକ୍ରିୟା ବିରୋଧରେ କାଶୀପୁରରେ ଯେଉଁ ପ୍ରତିବାଦ କରାଯାଉଛି ସେଥିରେ ଆଦିବାସୀ ମହିଳାମାନେ ନେତୃତ୍ୱ ନେବା ସମ୍ଭବ ହୋଇପାରିଛି ।

## (୩)

ଆମେ ଯେଉଁମାନେ ଗଡ଼ଜାତ ଅଞ୍ଚଳରୁ ଆସିଥାଉ, ସେମାନଙ୍କୁ ଜମି ଓ ଜମିଦାରମାନଙ୍କ କଥା ସମ୍ୟକ ଭାବେ ବୁଝିବାକୁ ନା ବେଶୀ ସମୟ ଲାଗେ ନା ତର୍କ

କରିବା ଆବଶ୍ୟକ ପଡ଼େ । ଆମ ଗଡ଼ଜାତରେ ରାଜାଙ୍କର ଯେ ସବୁଠାରୁ ବେଶୀ ଜମି ଅଛି, ବେଶୀ ସଂଖ୍ୟାରେ ହଳ ଓ ହଳିଆ ଅଛନ୍ତି, ଅମାର ଭଣ୍ଡାର ସବୁବେଳେ ଯେ ଭରି ରହିଛି ଏସବୁ ସ୍ୱଚକ୍ଷୁରେ ଦେଖିହୁଏ । ଅବାକ୍ ଲାଗେ ଯେ ରାଜାଙ୍କ ସମକକ୍ଷ ଆଉ କେହି ନାହାନ୍ତି । ସ୍ୱାଧୀନତାର କେତେ ବର୍ଷ ଅତିକ୍ରମ ହୋଇଥିଲେ ମଧ୍ୟ, ଆମ ସମସ୍ତଙ୍କ ଭିତରେ ଜମିଦାରମାନଙ୍କ ପ୍ରତି ଭୟ, ସମ୍ମାନ ଓ ଅପହଞ୍ଚର ଭାବ ବ୍ୟାପି ଯାଇଥାଏ ।

ଷାଠିଏ ଦଶକର ପ୍ରଥମ ଭାଗରେ ବିନୋବାଜୀ ମୋ ଜନ୍ମସ୍ଥାନ ତାଳଚେ଼ରକୁ ଆସିଥିଲେ । ପଦଯାତ୍ରା କାଳରେ ମୋର ମନେଅଛି – ଆମ ଯୁବରାଜ ହାଇସ୍କୁଲରେ ତାଙ୍କର ଶିବିର ପଡିଥିଲା ଓ ମୁଁ ଓଜସ୍ୱୀନି ଭାଷଣ ଶୁଣିଥିଲି । "ଗୀତା ପ୍ରବଚନ" ବହିଟି ମଧ କିଣିଥିଲି ଓ ମୁଣ୍ଡିଆ ମାରି ଗ୍ରହଣ କରିଲାବେଳେ ସେ ସେଥିରେ ନିଜର ଦସ୍ତଖତ ଦେଇଥିଲେ । ମୋର ଗୁରୁଜନମାନେ ତାଙ୍କଠାରୁ ଆଶୀର୍ବାଦ ପାଇବା ପାଇଁ ଯେମିତି ମୋ ଉପରେ ଏକ ମାନସିକ ବଳ ପ୍ରୟୋଗ କରିଥିଲେ । ସେତେବେଳେ ଭୂଦାନ ଓ ଗ୍ରାମଦାନ ଶବ୍ଦ ମୁଁ ଶୁଣିଥିଲି ଯଦିଓ ତାହା ବୁଝି ନଥିଲି । ଟଲ୍‌ଷ୍ଟୟଙ୍କ ଲିଖିତ-ମଣିଷ ପାଇଁ କେତେ ଜମି ଲୋଡ଼ା ଗପଟି ତା ପରବର୍ତ୍ତୀ ସମୟରେ ପଢିଥିଲି ଓ ଜମି ପ୍ରତି ମଣିଷର ଅଭୂତପୂର୍ବ ଲୋଭ ତଥାପି ଯେ କମି ନାହିଁ ତାହା ସ୍ପଷ୍ଟ ଲକ୍ଷ୍ୟ କରିପାରୁଥିଲି । ଫକୀରମୋହନଙ୍କ "ଛମାଣ ଆଠଗୁଣ୍ଠ" ବହିଟି ମୁଁ କେତେଥର ପଢିଥିବି ଓ ହାଇସ୍କୁଲରେ ମୋର ଶିକ୍ଷକମାନଙ୍କ ସହ ଅନେକ ଥର ତର୍ଜମା କରିଥିବି । ଜମିଦାରମାନଙ୍କ ହିଂସ୍ରଭାବ ଓ ଅତ୍ୟାଚାର, ଜମିମାଲିକଙ୍କ ସାମାଜିକ ପ୍ରତିଷ୍ଠା ଓ ରାଜନୈତିକ ଶକ୍ତି ତଥା ଏହା ବିରୁଦ୍ଧରେ ପ୍ରତିବାଦର କ୍ଷୀଣ ସ୍ୱର କାହିଁକି ଇତିହାସରେ ମିଳାଇ ଯାଉଛି ମୁଁ ବୁଝିବାକୁ ଆରମ୍ଭ କରିଥିଲି । ହାଇସ୍କୁଲ ପାଠ ଶେଷକରିବା ବେଳକୁ ପ୍ରସିଦ୍ଧ "ମାଟିର ମଣିଷ" ବହିଟରୁ ଯେମିତି ଅନେକ କିଛି ସଙ୍କେତ ଆମକୁ ମିଳୁଥିଲା । ସାହିତ୍ୟ ଓ ଆଦର୍ଶବାଦ ଯେମିତି ଫେଣ୍ଟିହୋଇ ଆମକୁ ଅସଲ ମଣିଷକୁ ଖୋଜିବାକୁ ପ୍ରେରଣା ଯୋଗାଇଥିଲା । କଲେଜରେ ବାମପନ୍ଥୀ ଚିନ୍ତାଧାରା ଆମକୁ ପ୍ରଭାବିତ କାହିଁକି କରିନଥିଲା ମୁଁ ବୁଝି ପାରିନାହିଁ ଏବେ ସୁଦ୍ଧା । ଜୀବନ ଓ ଜିଜ୍ଞାସାର ଉତ୍ତାଳ ତରଙ୍ଗର ଅସ୍ତିତ୍ୱବାଦ ଯେମିତି ଆମକୁ ମୋହାଚ୍ଛନ୍ନ କରିଥିଲା । ବଞ୍ଚିବାର ତୀବ୍ର ଇଚ୍ଛା ଓ ପ୍ରକ୍ରିୟାକୁ ଖୋଜିବାରେ ଓ ବୁଝିବାରେ ବାମପନ୍ଥୀ ଆଦର୍ଶବାଦ ଯେମିତି ଯଥେଷ୍ଟ ନଥିଲା ।

ସତୁରୀ ଦଶକରେ ନକ୍‌ସାଲପନ୍ଥୀଙ୍କ ହାୱା ଓଡ଼ିଶାକୁ ଆସିଥିଲା ସତ କିନ୍ତୁ ଆମ ଭାରତ ପ୍ରସିଦ୍ଧ ରେଭେନ୍‌ସା କଲେଜର ହତା ମାଡିନଥିଲା । ଓଡ଼ିଶାର ଇତିହାସ ଭାରତ ଓ ବିଶ୍ୱ ଇତିହାସ ପଢ଼ାଯାଇ ମାର୍କ୍ସିଜିମ୍‌-ଲେନିନ୍‌ଜିମ୍‌ରେ ଜଟିଳ ସମୀକ୍ଷା ଆମକୁ ବୁଝେଇବାକୁ କେହି ଚେଷ୍ଟା କରିନଥିଲେ । ମାର୍କ୍‌ସ, ଲେନିନ୍‌, ଟ୍ରଟ୍‌ସ୍କି, ମାଓ ଓ ହୋଚିମିନଙ୍କ ଆଦର୍ଶବାଦୀ ଚିନ୍ତାଧାରା ବୌଦ୍ଧିକତା ଭିତରେ ସୀମିତ ଥିଲା । ମାଓଙ୍କ "ଲଙ୍ଗ୍‌ମାର୍ଚ୍ଚ" ଆମ ପାଇଁ ଥିଲା ଏକ ଲୋମହର୍ଷଣକାରୀ କାହାଣୀ । କିନ୍ତୁ ଜମି ମୁକୁଳେଇ କମ୍ୟୁନ୍‌ ପ୍ରତିଷ୍ଠା କରିବା ଓ ନୂତନ ଭୂସଂସ୍କାର ଦ୍ୱାରା ଉତ୍ପାଦନ ଓ ବଣ୍ଟନ ପ୍ରକ୍ରିୟାକୁ ସହଜ ଓ ସଶକ୍ତ କରିବା କେମିତି ଏକ ଝାପ୍‌ସା ଅଙ୍କାବଙ୍କା ଚିତ୍ରକଳ୍ପ ବୋଲି ମନେ ହେଉଥିଲା । ଭରାତବର୍ଷରେ ଦୁଇଟି ସଂକ୍ଷିପ୍ତ ଓ ସୀମିତ ଆନ୍ଦୋଳନ ମଧ୍ୟ ପ୍ରଭାବିତ କରିଥିଲା । ଗୋଟିଏ ଥିଲା- ମହାରାଷ୍ଟ୍ରରେ 'ଭୂମିସେନା' ଯାହାର ନାମରେ ଆଦିବାସୀମାନେ ଭୂମି ଅଧିକାର ପାଇଁ ଆନ୍ଦୋଳନ କରିଥିଲେ । ଏହାର ଲିଖିତ ଆଲୋଚନା ଏକଦା ଅନେକ କରୁଥିଲେ । ଅନ୍ୟଟି ଥିଲା- କୋରାପୁଟରେ ଭୂସତ୍ୟାଗ୍ରହ । ଯାହା ଜରିଆରେ ଜମି ଦଖଲ କରିବା ପାଇଁ ଆଦିବାସୀମାନେ ଚେଷ୍ଟା କରୁଥିଲେ (ଯାହାକୁ ଅଣଆଦିବାସୀ ଗାନ୍ଧୀବାଦୀ ଭଣ୍ଡୁର କରିଥିଲେ) ।

କିନ୍ତୁ ସତୁରୀ ଦଶକର ଶେଷ ଭାଗରେ ପଶ୍ଚିମ ଓଡ଼ିଶାର ଗାଁ ଗହଳରେ ବୁଲିବାକୁ ମୋତେ ସୁଯୋଗ ମିଳିଥିଲା । ଦାରିଦ୍ର୍ୟର ଅସଲ କାରଣ ଜାଣିବାକୁ ଚେଷ୍ଟା କରିଲାବେଳେ ଏବଂ ଅସଲ ବିକାଶର ମୂଲ୍ୟାଙ୍କନ କରୁଥିଲା ବେଳେ ମୋତେ ସ୍ପଷ୍ଟ ଜଣାପଡିଥିଲା ଯେ ସେ ଅଞ୍ଚଳରେ ଦୁଃଖ ଦୁର୍ଦ୍ଦଶା ମୂଳରେ ରହିଛି ଜମିଜମା ସମ୍ପର୍କ । ଗାଁ ଭିତରେ ଗଉଁତିଆ ଓ ତାର ପରିବାର ଆସ୍ଥାନ ଜମାଇ ଥିବେ ଓ ଗାଁର ପ୍ରାୟ ୭୦-୮୦ ଭାଗ ଜମି ତାଙ୍କ ଦଖଲରେ ଥିବ । ଗାଁରେ କ୍ଷମତା ଓ ପ୍ରତିପତ୍ତି ସେ ପରିବାର ଦ୍ୱାରା ହିଁ ନିୟନ୍ତ୍ରିତ ହେଉଥିବ ।

ପଶ୍ଚିମ ଓଡ଼ିଶାର ମରୁଡ଼ିର ଉତ୍କଟ ପ୍ରଭାବ ଯୋଗୁଁ ଗାଁଗଣ୍ଡା ଛାଡି ଲୋକେ ରାୟପୁର ଓ ଅନ୍ୟଅଞ୍ଚଳକୁ ପଳାୟନର ମୂଳରେ ଥିଲା, ଏଇ ଜମିଜମା ସମ୍ପର୍କରେ ଅସମାନତା । ପୁରୁଷ ପୁରୁଷ ଧରି ରହି ଆସିଥିବା ଭୂମିହୀନ ଓ ସୁଖବାସୀଙ୍କ ପାଇଁ ବହିରାଗମନ ଛଡ଼ା ଆଉ କିଛି ରାସ୍ତା ନଥିଲା । ହଳିଆ ଓ ଗୋତିପ୍ରଥା ସବୁଆଡେ ବ୍ୟାପିଥିଲା । ଜୀବନ ଓ ଜୀବିକା ପାଇଁ ଗରିବ ଲୋକମାନେ ନିଜକୁ ବିକ୍ରୟ

କରିବାର ଅନେକ କରୁଣ କାହାଣୀ ସେତେବେଳେ ଶୁଣିବାକୁ ମିଳୁଥିଲା । ଏବେ ପ୍ରାୟ ୩୦ ବର୍ଷ ପରେ ସରକାରୀ ଓ ବେସରକାରୀ ସଂସ୍ଥା ଅନେକ ଯୋଜନା କ୍ରିୟାନ୍ୱିତ କରି ଓ ଶହ ଶହ କୋଟି ଟଙ୍କା ବ୍ୟୟ କରିବା ପରେ ସବୁ ସମସ୍ୟାର ସମାଧାନ ହୋଇଛି କି ନାହିଁ କହିବା ଏକ କଷ୍ଟକର ବ୍ୟାପାର । କାରଣ ଏବେ ମଧ୍ୟ ଲକ୍ଷ ଲକ୍ଷ ସଂଖ୍ୟାରେ ଲୋକେ ଭିଟାମାଟି ଛାଡି ବିଜୟୱାଡ଼ା ବା ହାଇଦ୍ରାବାଦର ଇଟାଭାଟିକୁ ଯାଉଛନ୍ତି ଓ ପଶୁଭଳି ଜୀବନ ଅତିବାହିତ କରୁଛନ୍ତି । ଶିଶୁ ବିକ୍ରି ଓ ଅନାହାର ମୃତ୍ୟୁର ଖବର ଏବେ ମଧ୍ୟ ପ୍ରକାଶିତ ହୋଇଛି । ଡ଼ି.ଏଫ.ଆଇ.ଡ଼ି (DFID) ଭଳି ସାହାଯ୍ୟକାରୀ ସଂସ୍ଥାମାନେ ଗରିବଙ୍କ ଜୀବନଜୀବିକା ସୁରକ୍ଷା ପାଇଁ ଯେଉଁ ଯୋଜନା କରୁଛନ୍ତି ତାହା କେତେ ବାସ୍ତବବାଦୀ ସେ କଥା ପ୍ରଶ୍ନବାଚକ ଚିହ୍ନରେ ରହିଛି । ଦାରିଦ୍ର୍ୟ ଦୂରୀକରଣ ପାଇଁ ହୋଇଥିବା ଟାସ୍କ ଫୋର୍ସ ଦାରିଦ୍ର୍ୟ ବଢାଇଛି କି କମାଇଛି ତାହା ସମୀକ୍ଷା କରାଯାଇ ନାହିଁ । ଯଦି ସମ୍ବେଦନଶୀଳ ପ୍ରଶାସକ ଓ ଗବେଷକମାନଙ୍କୁ ପଚରାଯିବ ସେମାନେ କହିବେ ଯେ ୧୯୫୧ ମସିହାର ଓଡ଼ିଶା ଇଷ୍ଟେଟ୍ ଆବୋଲିସ୍‌ନ ଆକ୍ଟ (Orissa Estate Abolition Act) ଏବଂ ୧୯୬୦ ମସିହାର ଓଡ଼ିଶା ଲ୍ୟାଣ୍ଡ୍ ରିଫର୍ମ୍‌ସ୍ ଆକ୍ଟ (Orissa Land Reforms Act)ର ସଫଳ ରୂପାୟନ ହେବାକୁ କେହି ଯେମିତି ଯଥେଷ୍ଟ ଉଦ୍ୟମ କରିନାହାଁନ୍ତି । ନୂଆ ଭାବେ ସର୍ଭେ ସେଟେଲ୍‌ମେଣ୍ଟ୍ ହୋଇନାହିଁ । ସାହୁକାର, ମହାଜନ, ଗଉଁତିଆ ଓ ଅଫିସରମାନଙ୍କ କବଳରୁ ଜମିକୁ ଉଦ୍ଧାର କରି ଜମିହୀନଙ୍କୁ ଦେବାର ଯଥେଷ୍ଟ ବ୍ୟବସ୍ଥା ହୋଇନାହିଁ । ଏହା ଯେପର୍ଯ୍ୟନ୍ତ ହୋଇନାହିଁ, ବ୍ୟାଙ୍କ ଓ ଡ଼ି:ଏଫ୍:ଆଇ:ଡ଼ି ଭଳି ସଂସ୍ଥାଙ୍କ ଶହ ଶହ କୋଟି ଅନୁଦାନ ଓ ସାହାଯ୍ୟ ରାଶିର ଫଳାଫଳ ବିପରୀତ ହେବ ବୋଲି ଭବିଷ୍ୟବାଣୀ କରାଯାଉଛି । "ଠିକାଚାଷ" ବା (Contract Farming) ପଶ୍ଚିମ ଓଡ଼ିଶାରେ ବ୍ୟାପକ ହେବ ବୋଲି ସୂଚନା ମିଳୁଛି । ଖାଲି ପଶ୍ଚିମ ଓଡ଼ିଶା ନୁହେଁ ସାରା ଓଡ଼ିଶାକୁ ଏହା ବ୍ୟାପିବାର ଆଶଙ୍କା ରହିଛି ।

ଆଦିବାସୀ ଅଧ୍ୟୁଷିତ ଦକ୍ଷିଣ ଓଡ଼ିଶାରେ ଦାରିଦ୍ର୍ୟ ଓ ଅନାହାର ଦିନକୁ ଦିନ ବ୍ୟାପକ ହେବାକୁ ଲାଗିଛି ଯଦିଓ ଆଦିବାସୀ ଅଞ୍ଚଳ ହିସାବରେ ବିଭିନ୍ନ ବିକାଶମୂଳକ କାର୍ଯ୍ୟକ୍ରମ ସରକାରୀ ଓ ବେସରକାରୀ ସାହାଯ୍ୟରେ କ୍ରିୟାନ୍ୱିତ କରାଯାଇଛି । ଦୁଃଖର କଥା ଯେ ଆଦିବାସୀଙ୍କ ସୁରକ୍ଷା ପାଇଁ ଯେତେ ଆଇନ୍ କାନୁନ୍ ଥିଲେ ମଧ୍ୟ

ଆଦିବାସୀଙ୍କ ଜମି ସେମାନଙ୍କ ନିୟନ୍ତ୍ରଣରୁ ବହୁ ପରିମାଣରେ ହସ୍ତାନ୍ତରୀକରଣ ହୋଇଛି । ବେନାମୀ ଜମି କିଣାବିକା ଦ୍ୱାରା ଅତି ଅନାୟାସରେ ଆଦିବାସୀଙ୍କଠାରୁ ଅଣଆଦିବାସୀଙ୍କ ଅକ୍ତିଆରକୁ ଆସିଯାଇଛି । ଏକ ସର୍ବେକ୍ଷଣରୁ ଜଣାପଡିଛି ଯେ ଅବିଭକ୍ତ କୋରାପୁଟ୍ ଜିଲ୍ଲାରେ ଓଡ଼ିଶାର ବରିଷ୍ଠ ଅଫିସରମାନେ ବହୁମାତ୍ରାରେ ଜମି କିଣିଛନ୍ତି । ଏଥିରେ ଚଞ୍ଚକତା ଓ ଆଇନ୍‌ର ଅପପ୍ରୟୋଗ କରାଯିବାର ଅନେକ ଉଦାହରଣ ରହିଛି । ଆଦିବାସୀଙ୍କ ଜମି କେତେ ମାତ୍ରାରେ ହସ୍ତାନ୍ତରୀକରଣ ହୋଇଛି ଓ କେଉଁ ପରିମାଣରେ ଜୋର ଜବରଦସ୍ତ ଛଡେଇ ନିଆଯାଇଛି ତାହା ଉପରେ ଗବେଷଣା ଓ ଅନୁସନ୍ଧାନ କରି ସର୍ବସାଧାରଣଙ୍କ ଆଗରେ ପ୍ରକାଶ କରିବା ଆମ ସମସ୍ତଙ୍କର କର୍ତ୍ତବ୍ୟ ବୋଲି ମୁଁ ମନେକରୁଛି ।

## ଆମର କିଛି ସ୍ୱପ୍ନ ଅଛି କି ? କିଛି ବିଶ୍ୱାସ ଅଛି କି ?

ଆଦିବାସୀ ଓ ଗରିବଙ୍କ ନିୟନ୍ତ୍ରଣରେ ଭୂସମ୍ପଦ ରହୁ ବୋଲି ଏକ ନୀତିଗତ ନିଷ୍ପତ୍ତି ପୃଥିବୀ ସାରା ନିଆଯାଉ । ଏହାଛଡା ଅନ୍ୟକିଛି ବାଟ ନାହିଁ ବୋଲି ସ୍ୱୀକାର କରିବାକୁ ହେବ । ଏକ ହେକ୍ଟର୍ ହେଉ ପଛକେ, ଜମିର ଗୁଣାତ୍ମକମାନ ନଥାଉ ପଛକେ, ସମସ୍ତଙ୍କୁ ଜମି ମିଳୁ ଓ ଜମିହୀନଙ୍କ ସଂଖ୍ୟା ଶୂନକୁ ଖସି ଆସୁ ଏକଥା ଆମେ ବାସ୍ତବରୂପେ ପରିକଳ୍ପନା କରିବା । ଜମି ଥିଲେ ଜଳସେଚନ କଥା ଚିନ୍ତା କରିହେବ । ଖତ ସାର ବିହନ ଲଗାଇ ଉନ୍ନତ ପ୍ରଣାଳୀର କୃଷି କରାଯାଇପାରିବ । ବୈଜ୍ଞାନିକ ପଦ୍ଧତିକୁ ନିଜସ୍ୱ ଉପାୟରେ ପ୍ରୟୋଗ କରିହେବ । ଉତ୍ପାଦନ ନିଶ୍ଚିତ ବଢିବ ଓ ଏହାଦ୍ୱାରା ଖାଦ୍ୟ ନିରାପତ୍ତା ସମ୍ଭବ ହୋଇପାରିବ । ସ୍ୱାବଲମ୍ବନଶୀଳତାର ମଧ୍ୟ ପ୍ରତ୍ୟକ୍ଷ ଭାବେ ପ୍ରଦର୍ଶିତ ହୋଇ ପାରିବ ।

କିନ୍ତୁ ଜଗତୀକରଣ ପ୍ରକ୍ରିୟାରେ ଏଇ ପ୍ରସ୍ତାବ ଓ ସମ୍ଭାବନାଗୁଡିକର ଅର୍ଥ ଠିକ୍ ଓଲଟା ହେବ । ସ୍ୱାବଲମ୍ବନଶୀଳତା ବଦଳରେ ନିର୍ଭରଶୀଳତାକୁ ଅଗ୍ରାଧିକାର ଦିଆଯିବ । ଜମିସମ୍ବଳ ଉପରେ ଚାଷୀର କର୍ତ୍ତୃତ୍ୱ ରହିବ ନାହିଁ । ସାଧାରଣ ଚାଷୀ ତାହାକୁ ଅନ୍ୟ କ୍ଷମତାଶାଳୀ ଜମି ମାଲିକ ବା ବହୁରାଷ୍ଟ୍ରୀୟ କମ୍ପାନୀକୁ ହାତକୁ ଟେକିଦେବ । ଏଇଭଳି ତୃଣମୂଳ ସ୍ତରରୁ ସବୁ ସମ୍ପଦ ଓ ଶ୍ରମଶକ୍ତି ବନ୍ଧା ପଡିବ । ରାଷ୍ଟ୍ର ମଧ ବିଶ୍ୱବଜାରର ଜାଲରେ ବନ୍ଧା ହୋଇଯିବ । ଏପରି ନତମସ୍ତକ ହୋଇ ବିଶ୍ୱ ବ୍ୟବସ୍ଥା ଆଗରେ ଶରଣାପନ୍ନ ହେଲେ ବିଶ୍ୱ ପୁଞ୍ଜି ସହଜରେ ନିବେଶ ହୋଇ

ପାରିବ । ଏ ପୁଞ୍ଜିସହ ଯନ୍ତ୍ର ଓ ବୈଷୟିକ ଜ୍ଞାନ, କୌଶଳ ଆସିବ । ଯନ୍ତ୍ର ଓ ବୈଷୟିକ ଜ୍ଞାନ ସହ ବଜାର ବ୍ୟବସ୍ଥା ଅଙ୍ଗାଙ୍ଗୀଭାବେ ସଂଶ୍ଳିଷ୍ଟ । ବଜାର ଯଦି ରାଜତ୍ୱ କରେ ବିକାଶର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ ହୋଇଯିବ ସତ କିନ୍ତୁ ଏ ବିକାଶ ଅସଲ ବିକାଶ କି ? ଏ ବିକାଶ ମାନବୀୟ ବିକାଶ କି ? କିଏ ଉତ୍ତର ଦେବ ?

ଜଗତୀକରଣ ପ୍ରକ୍ରିୟାରେ ନାମମାତ୍ର ଓ କ୍ଷୁଦ୍ରଚାଷୀମାନେ ଆଉ ଚାଷୀ ପଦବାଚ୍ୟ ହେବେନାହିଁ । କାରଣ "ଠିକାଚାଷ" ଏତେ ମାତ୍ରାରେ ବ୍ୟାପିଯିବ ଯେ କୃଷିର ସଂଜ୍ଞା ଓ ଗତିଶୀଳତା ବଦଳି ଯିବ । ମାତ୍ର "ଠିକାଚାଷ" କହିଲେ ଆମେ କ'ଣ ବୁଝୁ ?

ଏହାର ଏକ ନିର୍ଦ୍ଦିଷ୍ଟ ବିଶ୍ଳେଷଣ ଅଛି । ଜଗତୀକରଣ ପ୍ରକ୍ରିୟାରେ ଠିକାଚାଷ (Contract Farming) କୁ ପ୍ରାଧାନ୍ୟ ଦିଆଯାଉଛି । ଭୂସଂସ୍କାର ଏକ ବିପରୀତଧର୍ମୀ ବ୍ୟବସ୍ଥା ହେଉଛି "ଠିକାଚାଷ", ଯାହାକୁ ଏବେକାର ସରକାର ଓ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଯଥେଷ୍ଟ ପ୍ରୋତ୍ସାହନ ଦେଉଛନ୍ତି । ଓଡ଼ିଶାର ସରକାରୀକଳ ଏଭଳି ଠିକାଚାଷ କରିବାକୁ ଗୁରୁତ୍ୱ ଦେଉଛନ୍ତି ବୋଲି ଖୋଦ୍ ମୁଖ୍ୟମନ୍ତ୍ରୀ ତାଙ୍କର ଭାଷଣରେ କହିଛନ୍ତି । "ଠିକାଚାଷ" ଏକ ଯନ୍ତାଭଳି ଲାଭକୁ ଆଶାକରି, ନୂତନ ପୁଞ୍ଜି ଓ ବୈଷୟିକଜ୍ଞାନକୁ ଅପେକ୍ଷା କରି ଚାଷୀ ଠିକା ଦେଇଥିବା ପୁଞ୍ଜିପତିର କଞ୍ଚାମାଲ ପାଇଁ ଓ ରପ୍ତାନୀ ଯୋଗ୍ୟ ସାମଗ୍ରୀ ପାଇଁ ନିଜର କୃଷିର ଆଭିମୁଖ୍ୟ ବଦଳାଇବାକୁ ବାଧ ହବ । "ଠିକାଚାଷ"ରେ ଚାଷୀ ତାର ନିଜ ନିୟନ୍ତ୍ରଣରେ ରହିବ ନାହିଁ । ବିଭିନ୍ନ କମ୍ପାନୀମାନଙ୍କର ସୁଟ୍ ଟାଇ ପିନ୍ଧା ଏକ୍‌ଜୁକ୍ୟୁଟିଭ୍‌ମାନଙ୍କ (Executive) ସମ୍ମୁଖରେ ସଖୀ କଣ୍ଢେଇ ଭଳି ରହିବ । କୃଷିଭିତ୍ତିକ ବ୍ୟବସାୟ (Agribusiness) ନାମରେ ଉତ୍ପାଦିତ ସାମଗ୍ରୀଗୁଡ଼ିକର ଦର ଆନ୍ତର୍ଜାତିକ ବଜାର ନିଷ୍ପତ୍ତି କରିବ । ସମ୍ଭବତଃ ପ୍ରଥମେ ପ୍ରଥମେ ଚାଷୀଟି "ଠିକାଚାଷ"ରୁ ଲାଭାନ୍ୱିତ ହେବ କିନ୍ତୁ ସମୟକ୍ରମେ ସେ ବଜାରର କ୍ରୀତଦାସ ହୋଇଯିବ । ଚାଷୀ-ଚାଷୀ ଭିତରେ ତଣ୍ଟିକଟା ପ୍ରତିଯୋଗିତା ବଢ଼ିବ । କେତେକ ଯାଗାରେ ଚାଷୀ ତାର ଜମିକୁ ବଡଚାଷୀ କମ୍ପାନୀଙ୍କ ହାତରେ ସମର୍ପି ଦେଇ କୃଷି ଶ୍ରମିକ ହେବାକୁ ସ୍ୱାଗତ କରିବ । ଏହି ଭଳି ଉପାୟରେ କୃଷକର ମେରୁଦଣ୍ଡ ଭାଙ୍ଗିଯିବ ଓ କୃଷି ଉତ୍ପାଦନର ଗତି ଅଚାନକ ବଦଳିଯିବ ।

ଜଗତୀକରଣ ଦ୍ୱାରା ଜମି ମାଲିକାନା, ଜମିର ଉତ୍ପାଦନ ଚକ୍ର ଓ ପରିବେଶ ଏହିଭଳି ଧ୍ୱଂସ ହୋଇଯିବ "ଠିକାଚାଷ" ଜରିଆରେ । ଆମେ ପରିକଳ୍ପନା କରୁଥିବା ଭୂସଂସ୍କାର ବିପରୀତଧର୍ମୀ ହେବାକୁ ଆଉ ଅଧିକ ସମୟ ଲାଗିବ ନାହିଁ, "ଠିକାଚାଷ" ଓ "ଠିକାଚାଷ" - ଏହା ହେବ କୃଷିର ଅନ୍ୟତମ ପରିଚୟ ।

(୪)

ଜଗତୀକରଣ ପ୍ରକ୍ରିୟା ଓ ତାହାର ବିପରୀତ ପ୍ରଭାବକୁ ମୁକାବିଲା କରିବାକୁ ହେଲେ ଭୂସଂସ୍କାରକୁ ଏକ ନୂତନ ରୂପରେଖ ଦେବା ଛଡା ଅନ୍ୟକିଛି ବିକଳ୍ପ ନାହିଁ ବୋଲି ବୁଦ୍ଧିଜୀବୀ, ଆକ୍ଟିଭିଷ୍ଟି ଓ ରାଜନୈତିକ ନେତାମାନେ କହିବାକୁ ଆରମ୍ଭ କରିଛନ୍ତି । ଏଥିପାଇଁ ଆମ ସମସ୍ତଙ୍କୁ ନୂତନ ସ୍ୱପ୍ନ ଏବଂ ପରିକଳ୍ପନା ରଚନା କରିବାକୁ ହେବ । ଜମି ଓ କୃଷି ସମ୍ବନ୍ଧରେ ଓ ସେମାନଙ୍କ ଭିତରେ ଥିବା ପାରସ୍ପରିକ ସଂପର୍କକୁ ଉତ୍ତମ ରୂପେ ବୁଝି କୃଷି ଉତ୍ପାଦନ ପଦ୍ଧତିକୁ ଆହୁରି ବ୍ୟାପକ ଓ ବଳଶାଳୀ କରିବାକୁ ପଡିବ । କ୍ଷୁଦ୍ର ଓ ନାମମାତ୍ର ଚାଷୀମାନେ ଯେତେ ପ୍ରତିକୂଳ ଅବସ୍ଥା ଆସୁ ପଛକେ ଜମିକୁ ପରିତ୍ୟାଗ ନିକରନ୍ତୁ ଏବଂ କୃଷିକୁ ଜୀବିକା ଭାବେ ପରିହାର ନକରନ୍ତୁ ସେଥିପାଇଁ ସବୁପ୍ରକାର ଉଦ୍ୟମ ହେବାର ଆବଶ୍ୟକତା ରହିଛି । ଜମି କିପରି ସମବଣ୍ଟନ ହୋଇପାରିବ ଏବଂ କୃଷିଜୀବୀ ଓ କୃଷି ଶ୍ରମିକମାନେ ଯେପରି ଏହି ବଣ୍ଟନ ପ୍ରକ୍ରିୟାରୁ ବାଦ୍ ନ ପଡନ୍ତୁ ସେଥିପାଇଁ ମଧ୍ୟ ଯତ୍ନ ନେବାକୁ ପଡିବ । ଜମି ଗରୀବ କୃଷିଜୀବୀମାନଙ୍କ ପାଖକୁ ଆସିଗଲେ କୃଷି ଉତ୍ପାଦନ କ୍ଷମତା ଅନେକ ମାତ୍ରାରେ ବଢିଯିବ । ଉତ୍ପାଦିତ ହେଉଥିବା କୃଷିଜାତ ଦ୍ରବ୍ୟର ବିକାକିଣା ପାଇଁ ମଧ୍ୟ ବଜାର ବ୍ୟବସ୍ଥା କରିବାକୁ ହେବ । ଏବେ ଯେଉଁ ସ୍ଥାନମାନଙ୍କର ନବଜମିଦାରୀ ବ୍ୟବସ୍ଥା ସୃଷ୍ଟି ହେଉଛି ଏବଂ ଅଣକୃଷକମାନେ ଜମିକୁ ଅତ୍ୟଧିକ ପରିମାଣରେ ଅକ୍ତିଆରକୁ ନେଉଛନ୍ତି ତାହାକୁ ବନ୍ଦକରିବା ପାଇଁ ନୀତିଗତ୍ ଭାବେ ନିଷ୍ପତ୍ତି ନେବା ଅପରିହାର୍ଯ୍ୟ ହୋଇପଡିଛି । ଜଗତୀକରଣ ପ୍ରକ୍ରିୟା ଦ୍ୱାରା ସାମାଜିକ, ଆର୍ଥିକ ଓ ରାଜନୈତିକ ସମୀକରଣର ଯେପରି ଦ୍ରୁତ ପରିବର୍ତ୍ତନ ହେଉଛି ଓ ତା'ର ପ୍ରଭାବ କୃଷି ଉପରେ ଯେଉଁଭଳି ପଡୁଛି ତାହାକୁ ବିଶ୍ଳେଷଣ କରି ହୃଦୟଙ୍ଗମ କରିବା ସମସ୍ତଙ୍କର କର୍ତ୍ତବ୍ୟ ବୋଲି ମୋର ମନେହେଉଛି ।

ଆମର ପ୍ରସ୍ତାବ ହେଲା, ଭୂସଂସ୍କାରକୁ ସର୍ବାଙ୍ଗଭାବେ ସଫଳ କରିବାକୁ ହେଲେ ସିଲିଂ ଜମି ସଂପର୍କରେ ଯେଉଁ ଆଇନ ରହିଛି ତାହାକୁ ଯେମିତି ଦୁର୍ବଳ କରାନଯାଏ । ସିଲିଂ ଜମି ଆଇନରେ ଉଲ୍ଲେଖ କରି ଯେ କାହାର ଜମି ସୀମା ବର୍ହିଭୂତ ହୋଇଥାଏ ସରକାର ତାକୁ ଅଧିଗ୍ରହଣ କରି ଜମିହୀନଙ୍କ ଭିତରେ ବାଣ୍ଟିବେ । ଏହି ନିର୍ଦ୍ଦିଷ୍ଟ ସୀମା ବିଭିନ୍ନ କିସମର ଜମିକୁ ନେଇ କରାଯାଇଥାଏ । ସେଇ ସୀମା ଯେପରି ବୃଦ୍ଧି ନହୁଏ ତା' ପ୍ରତି କେତେକ ସ୍ୱାର୍ଥନ୍ୱେଷୀ ଗୋଷ୍ଠୀ ଚେଷ୍ଟିତ ଅଛନ୍ତି । ସେମାନେ ଉଦମ୍ୟ କରି ଆସୁଛନ୍ତି, ଯେ ଜମି ମାଲିକମାନଙ୍କର ଜମି ମାଲିକାନାର ସୀମା କୋହଳ କରାଯାଉ । ଏପରି ଚାପ ଆଗରେ ମୁଁଣ୍ଡ ନୋଇଁବା ଠିକ୍ ହେବ ନାହିଁ । ଭୂସଂସ୍କାର ଆଇନ ଅନୁସାରେ ସବୁ ସିଲିଂ ବର୍ହିଭୂତ ଜମି ଭୂମିହୀନଙ୍କ ମଧ୍ୟରେ ବାଣ୍ଟିବା ପାଇଁ ଯେଉଁ ଆଇନଗତ ଓ ରାଜନୈତିକ ବ୍ୟବସ୍ଥା ରହିଛି ତାହାକୁ ସମ୍ମାନ ଦିଆଯାଉ ଏବଂ କଡ଼ାକଡ଼ିଭାବେ ଆଉଥରେ ଲାଗୁ କରାଯାଉ ।

ଯେଉଁ କୃଷିଜୀବୀମାନେ ଜମିର ପଟ୍ଟା ପାଇପାରି ନାହାଁନ୍ତି ସେମାନଙ୍କୁ ପଟ୍ଟା ଦେବା ଅତ୍ୟନ୍ତ ଜରୁରୀ ଓ ବିନା ପଟ୍ଟାରେ ସେମାନେ ଋଣ ପାଇବେ ନାହିଁ । ବିଭିନ୍ନ ପ୍ରକାର କୃଷି ଓ ବୈଷୟିକ ଜ୍ଞାନରୁ ବଞ୍ଚିତ ହେବେ । ସେମାନଙ୍କର ସ୍ୱାବଲମ୍ବୀ ହେବାର ମାନସିକତା ନିଶ୍ଚିତ ହ୍ରାସ ପାଇବ ଜମି ଉପରେ ମାଲିକାନା ନଥିଲେ ।

ନୀତିଗତ ଭାବେ "ଠିକାଚାଷ"କୁ ବିରୋଧ କରିବାକୁ ହେବ । ଯେଉଁ ବଡବଡ କମ୍ପାନୀମାନେ ଠିକାଚାଷ ଜରିଆରେ ଜମିକୁ କବ୍ଜା କରିବା ପାଇଁ ଚେଷ୍ଟା କରୁଛନ୍ତି ଏବଂ କୃଷିଜାତ ଦ୍ରବ୍ୟ ବଜାରକୁ ନିୟନ୍ତ୍ରଣ କରିବାକୁ ଚାହୁଁଛନ୍ତି ସେମାନଙ୍କ ଉପରେ ଆର୍ଥିକ କଟକଣା ଲାଗୁ କରାଯିବାର ଆବଶ୍ୟକତା ଅଛି । "ଠିକାଚାଷ"କୁ ପ୍ରୋତ୍ସାହନ ନେବାପାଇଁ ବିଭିନ୍ନ ପ୍ରକାର ପୁଞ୍ଜିଲଗାଣ ସଂସ୍ଥା ଓ ବ୍ୟାଙ୍କମାନେ ଆଶାତୀତ ଆଗ୍ରହ ଦେଖାଉଛନ୍ତି, ତାହାର ଗତି ବଦଳିବାର ଅଛି । ବହୁରାଷ୍ଟ୍ରୀୟ କମ୍ପାନୀମାନେ ଆମ ଦେଶର କୃଷିବ୍ୟବସ୍ଥାକୁ ଯେମିତି ଧ୍ୱଂସ କରି ସେମାନଙ୍କର ଲାଭଖୋର ଏବଂ ବ୍ୟବସାୟିକ କୃଷିବ୍ୟବସ୍ଥା ଲଦିବାରେ ଅପଚେଷ୍ଟା କରୁଛନ୍ତି ତାହାକୁ ନିଷ୍କ୍ରିୟ କରିବା ପାଇଁ ସବୁ ସ୍ତରରେ ଉଦ୍ୟମ ହେବାର ଜରୁରୀ ହୋଇପଡିଛି । ଭାରତବର୍ଷ ଭଳି ତୃତୀୟ ବିଶ୍ୱରେ ଯେତେ ଦେଶ ଅଛନ୍ତି ସବୁ ଦେଶରେ କୃଷି

ବ୍ୟବସ୍ଥାକୁ ସଂପୂର୍ଣ୍ଣ ରୂପେ ଧ୍ୱଂସ କରିବା ପାଇଁ ଅନବରତ ଚେଷ୍ଟା ଚାଲିଛି । ଖାଲି "ଠିକାଚାଷ" ନୁହେଁ ଅନ୍ୟପ୍ରକାର କୌଶଳ ଅବଲମ୍ବନ ମଧ୍ୟ କରାଯାଉଛି । ବିହନ, ସାର ଓ ବୈଷୟିକଜ୍ଞାନ କ୍ଷେତ୍ରରେ ଅନେକ ପ୍ରକାର ଭିତିରିଆ ଉଦ୍ଦେଶ୍ୟ ରହିଛି । ଯେଉଁଠି ଜମି ଶସ୍ତା ଓ ସହଜରେ ମିଳୁଛି, ସେଠି ବ୍ୟବସାୟିକ କୃଷି ଜମିର ସୁପରିଚାଳନା ନାଆଁରେ କରାଯାଉଛି । ଏହି ପରିପ୍ରେକ୍ଷୀରେ ଜମିର ଅସଲ ମାଲିକ କିଏ ? ଯିଏ ଚାଷ କରୁଛି ନା ଯିଏ କରୁନାହିଁ ? ଏ ସବୁ ପ୍ରଶ୍ନର ଏକ ସ୍ପଷ୍ଟ ଉତ୍ତର ମିଳିବାର ଅଛି ।

ଭୂସଂସ୍କାରର ପରିସର ଭିତରେ ଜମି କିଣି ଜମିହୀନଙ୍କୁ ଦେବାର ଯୋଜନା କେହି କେହି ବ୍ୟକ୍ତି / ସଂସ୍ଥା କରୁଛନ୍ତି । କିଛି ବର୍ଷ ତଳେ ଭୂମିହୀନ ମହିଳାମାନେ ସଂଗଠିତ ହୋଇ ଜମି କିଣି ଚାଷ କରିବାରେ ଯୋଜନାକୁ ସରକାର ଓ କେତେକ ସ୍ୱେଚ୍ଛାସେବୀ ସଂଗଠନ କ୍ରିୟାନ୍ୱିତ କରୁଥିଲେ । ଏହି ରଣନୀତିର ପ୍ରଭାବରେ ସଫଳତା କିଛିଟା ମିଳିଛି ମଧ୍ୟ କିନ୍ତୁ ଜମିହୀନମାନେ ବ୍ୟାଙ୍କ ଓ ସରକାରୀ ସାହାଯ୍ୟ ନେଇ ଜମି କିଣିବେ ବା ସଂଗ୍ରାମ କରି ଜମିକୁ ଅକ୍ତିଆରକୁ ଆଣିବେ ଏହି ବିଷୟରେ ବୈଚାରିକ ସ୍ତରରେ ମତ ପାର୍ଥକ୍ୟ ଦେଖାଦେଇଛି ।

ସବୁ ଜମିହୀନଙ୍କୁ ଜମି ଓ ଘରଡିହ ମିଳିବା ନିଷ୍ପତ୍ତି ଏକ ରାଜନୈତିକ ନିଷ୍ପତ୍ତି । ଏହି ନିଷ୍ପତ୍ତି ଫଳରେ ଆମ ଦେଶର ବହୁ ଗରୀବ ଓ ଅବହେଳିତ ଗୋଷ୍ଠୀ ନିଶ୍ଚିତ ଲାଭ ପାଇବେ । ଗରୀବମାନେ ସଂଗଠିତ ହେଲେ ଜଗତୀକରଣ ପ୍ରକ୍ରିୟାକୁ ଠିକ୍ ରାସ୍ତାରେ ନେଇ ନିୟନ୍ତ୍ରଣ କରିପାରିବେ । ଦରକାର ପଡିଲେ ଜଗତୀକରଣକୁ ସଂପୂର୍ଣ୍ଣରୂପେ ବିରୋଧ ମଧ୍ୟ କରିପାରିବେ । ଭାରତର ଜନସଂଖ୍ୟା ଓ ମୁଣ୍ଡପିଛା ଜମିକୁ ସମୀକ୍ଷା କଲେ ଦେଖାଯାଏ ଯେ ସମସ୍ତଙ୍କୁ ଜମି ମିଳିବା ଏକ ଦୁରୁହ ବ୍ୟାପାର ନୁହେଁ । ଜମିହୀନମାନଙ୍କୁ ଉଚିତ୍ ଚାଷପୋଯୋଗୀ ଜମି ମିଳିଲେ ଏବଂ ମୁଣ୍ଡ ଗୁଞ୍ଜିବା ପାଇଁ ଘରଡିହ ମିଳିଲେ ସେମାନେ ଗାଁ ଛାଡି ସହରକୁ ଯିବେ ନାହିଁ । ଜମିହୀନଙ୍କୁ ଜମି ମିଳୁ ବୋଲି ଆମେ ପଞ୍ଚବାର୍ଷିକ ଯୋଜନାରେ ଉଲ୍ଲେଖ କରି ଆସୁଛୁ କିନ୍ତୁ ଏ ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବାକୁ ସବୁ ସ୍ତରରେ ପଛଘୁଞ୍ଚା ଦେଉଛୁ ।

ଜମିହୀନଙ୍କୁ ଜମି ମିଳୁ, କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଜମିରୁ ଉଚ୍ଛେଦ ନ କରାଯାଉ । ଏଥିପାଇଁ ସାମାଜିକ ଆନ୍ଦୋଳନର ଆବଶ୍ୟକତା ରହିଛି । ଏହିସବୁ

ସାମାଜିକ ଆନ୍ଦୋଳନ କିପରି ସୁଦୂରପ୍ରସାରୀ ଓ ଦୀର୍ଘସ୍ଥାୟୀ ହେବ ସେଥିପାଇଁ ରଣନୀତି ଆବଶ୍ୟକତା ରହିଛି । ଜମିହୀନ ଓ ଜମିମାଲିକଙ୍କ ଭିତରେ ଶ୍ରେଣୀସଂଘର୍ଷ ହେବାର ସମ୍ଭାବନାକୁ ଏଡାଇ ଦିଆଯିବ ନାହିଁ । ଇତିହାସ ଅଧ୍ୟୟନ କଲେ ଶ୍ରେଣୀସଂଘର୍ଷ ସବୁବେଳେ ଅହିଂସା ପଥରେ ଗତି କରିନାହିଁ । ଆନ୍ଧ୍ରପ୍ରଦେଶର ନକ୍ସଲପନ୍ଥୀମାନଙ୍କର ରଣକୌଶଳକୁ ମାଧ୍ୟମ କରି ଅନେକ ଜମିହୀନ ଜମି ପାଉଛନ୍ତି ବୋଲି ଏକ ଅଧ୍ୟୟନରୁ ଜଣା ପଡିଛି । ସରକାର ମଧ୍ୟ ଏହି ଉପର ପ୍ରଭାବିତ ହୋଇ ୨୦୦୫ ମସିହାରେ ପାଖାପାଖି ୩ ଲକ୍ଷ ଏକର ବଳକା ଜମିକୁ ଚିହ୍ନଟ କରି ଜମିହୀନଙ୍କ ଭିତରେ ବାଣ୍ଟିଛନ୍ତି । ଯଦି ଜମିହୀନଙ୍କୁ ଜମି ମିଳିବା ସର୍ବପ୍ରଥମ ଲକ୍ଷ୍ୟ ହୁଏ ତେବେ ସାମାଜିକ ଆନ୍ଦୋଳନ ହେଉ ବା ସରକାରୀ କାର୍ଯ୍ୟକ୍ରମ ହେଉ ବା ନକ୍ସଲପନ୍ଥୀଙ୍କ ହିଂସାତ୍ମକ ପନ୍ଥାହେଉ ସବୁଙ୍କୁ ସ୍ୱାଗତ କରି ଜଗତୀକରଣ ବିରୁଦ୍ଧରେ ଏକ ବଳିଷ୍ଠ ସାମ୍ମୁଖ୍ୟ ସୃଷ୍ଟି କରାଇବା ଯୁକ୍ତିଯୁକ୍ତ ବୋଲି ଅନେକ ବୁଦ୍ଧିଜୀବୀ ମତ ପୋଷଣ କରୁଛନ୍ତି । ରାଜ୍ୟ ସରକାର ହୁଅନ୍ତୁ ବା କେନ୍ଦ୍ର ସରକାର ହୁଅନ୍ତୁ, ଭୂସଂସ୍କାରର ସାମ୍ପ୍ରତିକ ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ ଉନ୍ନତଭାବେ ହୃଦୟଙ୍ଗମ କରି ଏକ ବିଭାଗ ବା ମନ୍ତ୍ରଣାଳୟ ସୃଷ୍ଟି କରନ୍ତୁ ଓ ସେଥିପାଇଁ ଆର୍ଥିକ ବ୍ୟବସ୍ଥା ରଖନ୍ତୁ । ଦେଶବିଦେଶରେ ଯେଉଁଠି ଭୂସଂସ୍କାର ସଫଳ ହୋଇଛି ଓ ସାମାଜିକ ଆନ୍ଦୋଳନ ମୁଣ୍ଡଟେକିଛି ତାକୁ ଅନୁଧ୍ୟାନ କରନ୍ତୁ । ବ୍ୟବସ୍ଥା ଏବଂ ଉତ୍ସର୍ଗୀକୃତ ଅଫିସରମାନଙ୍କୁ ଏ ବିଭାଗରେ ନିଯୁକ୍ତି ଦିଅନ୍ତୁ । ନାଗରିକ ସମାଜକୁ ମାନ୍ୟତା ଦେଇ ସେମାନଙ୍କର ମତାମତକୁ ସମ୍ମାନ ଦିଅନ୍ତୁ । ଯେଉଁମାନେ ଭୂସଂସ୍କାର କାର୍ଯ୍ୟକ୍ରମରେ ସଂଶ୍ଳିଷ୍ଟ ହେଉଛନ୍ତି ସେମାନଙ୍କୁ ଏକ ମଞ୍ଚରେ ଛିଡ଼ା ହେବାକୁ ପଦକ୍ଷେପ ନିଆଯାଉ । ଭୂସଂସ୍କାର କେବଳ ଜମି ରେକର୍ଡ଼ କମ୍ପୁଟରୀକରଣ ନୁହେଁ ବା ଜମି ବନ୍ଦୋବସ୍ତ ନୁହେଁ । ଏହା ସହିତ ସତ୍ତ୍ୱ, ବିନିଯୋଗ, ପରିଚାଳନା, କର୍ତ୍ତୃତ୍ୱ ଓ ନିୟନ୍ତ୍ରଣ ଆଦି ମଧ୍ୟ ବିଚାରକୁ ନିଆଯାଉ । ଆମର ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେବା ଦିନଠାରୁ ଚାଷୀମୁଲିଆକୁ ଜମିଜମାର ଅଧିକାର ଦେବାକୁ ଯେଉଁ ସ୍ୱପ୍ନ ରହିଛି ତାହା ସାର୍ଥକ ହେଉ ।

ତେବେ ଆଦିବାସୀ ଅଞ୍ଚଳର କଥା ଦେଖାଯାଉ, ଯେଉଁ ଅଞ୍ଚଳରେ ଜମି ଏକ ପ୍ରାଥମିକ ମୌଳିକ ସଂପଦ । ଜମିକୁ ନେଇ ଆଦିବାସୀ ବଞ୍ଚି ରହିଛି ଓ ଜୀବନଜୀବିକାକୁ ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ଅକ୍ଷୁର୍ଣ୍ଣ ରଖିପାରିଛି । ଆଦିବାସୀ ଅଞ୍ଚଳରେ ଶିଳ୍ପ ଏବଂ ଅନ୍ୟ ବୃହତ୍ ପ୍ରକଳ୍ପ ପାଇଁ ଯେଉଁ ଜମି ଅଧିଗ୍ରହଣ କରିବା ବ୍ୟାପକ ଭାବରେ ବଢିଚାଲିଛି, ସେ ସବୁକୁ ପୁନର୍ବିଚାର କରି ଭୂସଂସ୍କାରର ଏକ ନୂତନ ପର୍ଯ୍ୟାୟ ଆରମ୍ଭ

କରିବା ଅବଶ୍ୟମ୍ଭାବୀ ହୋଇପଡିଛି । ଆଦିବାସୀ ଅଞ୍ଚଳରେ ନକ୍ସଲପନ୍ଥୀଙ୍କ ପ୍ରଭାବ ବଢୁଛି ଏବଂ ସାମାଜିକ ଆନ୍ଦୋଳନର ପରିସର ସଙ୍କୁଚିତ ହେଉଛି ବୋଲି କେହି କେହି କହୁଛନ୍ତି । ନୂତନ ଅର୍ଥନୈତିକ ଢ଼ାଞ୍ଚା ଆଦିବାସୀଙ୍କ ଉପରେ ଲଦିଦେବାକୁ ଚେଷ୍ଟା କରୁଥିବା ସରକାର ଓ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଆଦିବାସୀଙ୍କ ପ୍ରତି କେତେଟା ସମ୍ବେଦନଶୀଳ ତାହା ଗୁରୁତରଭାବେ ସମୀକ୍ଷା କରିବା ଜରୁରୀ । ବିସ୍ଥାପିତ ଲୋକଙ୍କୁ ଜମି ବଦଳରେ ଜମି ମିଳିବା ପାଇଁ ରାଜନୈତିକ ଏବଂ ପ୍ରଶାସନିକ ଇଚ୍ଛାଶକ୍ତି ପ୍ରଦର୍ଶନ କରିବାର ଅଛି ।

ଜଗତୀକରଣ ପ୍ରକ୍ରିୟାର ପ୍ରଭାବରେ ବହୁରାଷ୍ଟ୍ରୀୟ କମ୍ପାନୀଙ୍କୁ ଅଙ୍ଗାର ବ୍ୟବସାୟ (କାରବନ୍ ଟ୍ରେଡ୍) ପାଇଁ ହଜାର ହଜାର ଏକର ଜମି ଦେବାକୁ ଆମ ସରକାର କୁଆଡେ ନିଷ୍ପତ୍ତି ନେଇଛନ୍ତି । ଏହାର ଅର୍ଥ ହେଲା ଯଦି କୌଣସି ବହୁରାଷ୍ଟ୍ରୀୟ କମ୍ପାନୀ ପରିବେଶକୁ ଦୂଷିତ କରୁଛି ତାକୁ କମାଇବା ପାଇଁ ଅନ୍ୟତ୍ର ବୃକ୍ଷରୋପଣ, ବନୀକରଣ ଓ ଜଙ୍ଗଲ ପରିଚାଳନା ଆଦି କାମ ପାଇଁ ପ୍ରୋତ୍ସାହନ ମିଳୁଛି । ଏବେ ଓଡ଼ିଶାର କୋରାପୁଟ ଜିଲ୍ଲାରେ, ଶିଳ୍ପପ୍ରତିଷ୍ଠା ପାଇଁ ଆଗେଇ ଆସିଥିବା କେତେକ ବହୁରାଷ୍ଟ୍ରୀୟ କମ୍ପାନୀକୁ ହଜାର ହଜାର ଏକର ଜମି ବନୀକରଣ ଓ ବୃକ୍ଷରୋପଣ ପାଇଁ ଲିଜ୍ ଦେବାକୁ ସରକାର ବିଚାର କରୁଛନ୍ତି ବୋଲି ସୂଚନା ମିଳୁଛି ଏହା ସତରେ ଭୟଙ୍କର । ଏହା ସରକାରଙ୍କ ଆଦିବାସୀ ବିରୋଧୀ ନୀତିବୋଲି ମଧ୍ୟ ମାନିବାକୁ ହେବ । ଏହାର ସତ୍ୟାସତ୍ୟ ଓ ବିସ୍ତୃତ ସୂଚନା ସ୍ଥାନୀୟ ଲୋକଙ୍କୁ ମିଳିବା ନିତାନ୍ତ ଜରୁରୀ । ଏ ଦେଶରେ ଆଦିବାସୀମାନେ ମଧ୍ୟ ଏଇ ସୂଚନା ପାଇବା ପାଇଁ ଦାବି କରିବା ଆବଶ୍ୟକ । ସେମାନେ ଯଦି ଏହା ନ କରନ୍ତି ପ୍ରଥମେ ଚିଡ଼ିଆଖାନାର ଜୀବଜନ୍ତୁ ଭଳି ଜୀବନ କାଟିବେ ଓ ପରିଶେଷରେ ମ୍ୟୁଜିୟମରେ ଲୁପ୍ତବସ୍ତୁ ଭଳି ଶୋଭା ପାଇବେ । ❑

# ଜଗତୀକରଣ ଓ ଗଣହତ୍ୟା

ସଂପ୍ରତି କଳିଙ୍ଗ ନଗରର ପୁଲିସ୍‌ର ଗୁଳିକାଣ୍ଡକୁ ଅତି ବିସ୍ତୃତ ଭାବରେ ଅଧ୍ୟୟନ କରିବାର ଆବଶ୍ୟକ ରହିଛି । ଟିକିଏ ଗଭୀର ଭାବରେ ନିରୀକ୍ଷଣ କଲେ ଜଣାପଡ଼େ ଯେ ଏହା ଜଗତୀକରଣ ପ୍ରକ୍ରିୟାର ଏକ ପରିପ୍ରକାଶ । ନହେଲେ ଏଭଳି ଜଘନ୍ୟ ଗଣହତ୍ୟା ହୋଇ ନଥାଆନ୍ତା । ଗୋଟିଏ ପଟେ ଜଗତୀକରଣକୁ ବିରୋଧ କରୁଥିବା ଗରିବ ଆଦିବାସୀ ଅନ୍ୟପକ୍ଷରେ ଜଗତୀକରଣକୁ ସମର୍ଥନ ଦେଉଥିବା ସରକାର ଓ ବିଶ୍ୱପୁଞ୍ଜି । ସଂଗ୍ରାମ ଅବଶ୍ୟମ୍ଭାବୀ । ଝାଡ଼ଖଣ୍ଡର ଜଣେ ପ୍ରଖ୍ୟାତ ପ୍ରାମାଣିକ ଚଳଚିତ୍ର ନିର୍ଦ୍ଦେଶକ ଶ୍ରୀ ମେଘନାଥ "ବନ୍ଧୁକ ମୂନରେ ବିକାଶ" (Development flows from the barrel of a gun) ବୋଲି ଏକ ଚଳଚ୍ଚିତ୍ର ନିର୍ମାଣ କରିଛନ୍ତି । ଏଥିରେ ବିସ୍ଥାପିତ ଲୋକଙ୍କ ଉପରେ କିପରି ପୁଲିସ୍ ଓ ପ୍ରଶାସନ ଅତ୍ୟାଚାର କରିଛି ଓ ନିର୍ମମ ଭାବରେ ଗୁଳି କରି ମାରିଛି, ତାହାର କେତେଗୁଡ଼ିଏ ଜୀବନ୍ତ ଉଦାହରଣ ଦିଆଯାଇଛି । ଏହି ଚଳଚ୍ଚିତ୍ରରେ ୫ଗୋଟି କାହାଣୀ ଅଛି । ପ୍ରଥମେ ମାଇକଞ୍ଚର ଗୁଳିକାଣ୍ଡ ଯେଉଁଥିରେ ମାଇନିଂ ଓ ଶିଳ୍ପ ବିରୋଧରେ ଆଦିବାସୀମାନେ ଜୀବନ ଜୀବିକା ପାଇଁ ଲଢ଼ିଛନ୍ତି ଓ ୩ଜଣ ଆଦିବାସୀ ଗୁଳି ଖାଇ ଶହୀଦ୍ ହୋଇଛନ୍ତି । ଝାଡ଼ଖଣ୍ଡର କୋଏଲକାରୋ ନଦୀ ଉପରେ ନିର୍ମାଣ ହେବାକୁ ଥିବା ବୃହତ୍ତ ନଦୀବନ୍ଧ ଯୋଜନା ଯାହା ବିରୋଧରେ ଆଦିବାସୀମାନେ ଅନେକ ବର୍ଷ ଧରି ସଂଘର୍ଷ କରିଆସୁଛନ୍ତି । ତାଙ୍କ ଉପରେ ପୁଲିସ୍ ଗୁଳି ଚଳାଇ ୮ଜଣ ଆଦିବାସୀଙ୍କୁ ହତ୍ୟା କରିଛି । ମଧ୍ୟପ୍ରଦେଶର ଦେଓ୍ୱାସଠାରେ ଆଦିବାସୀମାନେ ଜଙ୍ଗଲ ଉପରେ ଅଧିକାରକୁ ସାବ୍ୟସ୍ତ କରିବାକୁ ଯାଇ ପୁଲିସ୍ ଗୁଳିରେ ୭ଜଣ ଶିକାର ହୋଇଛନ୍ତି । ଛତିଶଗଡ଼ରେ ବସ୍ତର ଜିଲ୍ଲାରେ ନଗରନାର ଠାରେ ବିରଳା କମ୍ପାନୀର ଏକ ଷ୍ଟିଲ୍‌ପ୍ଲାଣ୍ଟ୍‌କୁ ବିରୋଧ କରି ୪୫ଜଣ ଆଦିବାସୀ ପୁଲିସ୍‌ର ଗୁଳି ଖାଇ ଆହତ ହୋଇଛନ୍ତି । ଗୁଜୁରାଟର ବନ୍ଦର ପ୍ରତିଷ୍ଠାକୁ ନେଇ ଅତ୍ୟାଚାର କରାଯାଇଛି ଓ ତାଙ୍କୁ ନେତୃତ୍ୱ ଦେଉଥିବା ଜଣେ ଅବସରପ୍ରାପ୍ତ କର୍ଣ୍ଣେଲଙ୍କୁ ପୁଲିସ୍ ପିଟି ପିଟି ହାଜତରେ ମାରିଦେଇଛି । ଏହି ଲୋମ ହର୍ଷଣକାରୀ ହତ୍ୟାକାଣ୍ଡ ଓ ଗୁଳିକାଣ୍ଡକୁ ଶ୍ରୀ ମେଘନାଥ ଏହିଭଳି ଜୀବନ୍ତ ଭାବେ ଉପସ୍ଥାପନା କରିଛନ୍ତି ଯେ, ଯିଏ ଦେଖିବ ସେ ଜଗତୀକରଣ ଦ୍ୱାରା ବିକାଶ ଓ ବିନାଶ ପ୍ରକ୍ରିୟା ସଂପର୍କରେ ମୌଳିକ ପ୍ରଶ୍ନ ନିଶ୍ଚିତ ଉଠାଇବ । ଏହି

ଚଳଚ୍ଚିତ୍ର ପ୍ରତ୍ୟେକ ଲୋକ ଦେଖିବା କଥା ଓ ସରକାରଙ୍କ ନୀତି ବିରୋଧରେ ସ୍ୱର ଉତ୍ତୋଳନ କରିବା କଥା । ଏହି ଚଳଚ୍ଚିତ୍ର ବହୁତ ପୁରସ୍କାର ପାଇଲାଣି । ଯଦିଓ ଆଦିବାସୀ ଅଞ୍ଚଳରେ ଏହି ଚଳଚ୍ଚିତ୍ରଟି ବହୁତ ଲୋକପ୍ରିୟ ହୋଇଛି, କେତେକ ଯାଗାରେ ତାହା ପ୍ରଦର୍ଶିତ ହେବାକୁ ଅନୁମତି ମିଳୁନାହିଁ ।

ଓଡ଼ିଶାକୁ ଲକ୍ଷ୍ୟ କଲେ ମାଇକଞ୍ଚକୁ ଛାଡ଼ି କେତେଗୁଡ଼ିଏ ଗୁଳିକାଣ୍ଡ ଏ ଭିତରେ ଘଟିଯାଇଛି ଏବଂ ଅନେକ ନିରୀହ ଲୋକ ପୁଲିସ୍‌ର ଗୁଳିମାଡ଼ରେ ମୃତାହତ ହୋଇଛନ୍ତି । ୧୯୯୯ ମସିହାରେ ଗଜପତି ଜିଲ୍ଲାର ମାନ୍ଦ୍ରାବାଜୁ ଜମି ଅଧିକାରକୁ ନେଇ ଆଦିବାସୀମାନେ ଯେଉଁ ଆନ୍ଦୋଳନ କରିଥିଲେ ତାଙ୍କ ଉପରେ ପୁଲିସ୍ ଗୁଳିମାଡ଼ କରିଥିଲା ଏବଂ ସେଥିରେ ମହିଳାଙ୍କ ସମେତ ୯ଜଣ ମରିଥିଲେ । ୨୦୦୦ ମସିହାରେ ଡ଼ିସେମ୍ବର ମାଇକଞ୍ଚ ଗୁଳିକାଣ୍ଡ ଘଟଣା ସମସ୍ତଙ୍କୁ ଜଣାଥିବ । ୨୦୦୧ରେ ନବରଙ୍ଗପୁରଠାରେ, ରାଇଘରଠାରେ ଆଦିବାସୀଙ୍କର ଜମି ଅଧିକାରକୁ ନେଇ ପୁଲିସ୍ ଦୁଇଥର ଗୁଳି ଚଳାଇଥିଲା ଏବଂ ୫ଜଣ ଲୋକ ମରିଥିଲେ । ଚିଲିକାରେ ପାରମ୍ପରିକ ମତ୍ସ୍ୟଜୀବିମାନେ ଜୀବନ-ଜୀବିକାକୁ ନେଇ ସୋରଣଠାରେ ଗୁଳିକାଣ୍ଡରେ ୫ଜଣ ଲୋକ ମଲେ । ଭାରତର ବିଭିନ୍ନ ଅଞ୍ଚଳରେ ଏହିଭଳି ଗୁଳିକାଣ୍ଡ ଘଟଣାର ମର୍ମସ୍ପର୍ଶୀ କାହାଣୀ ସବୁ ବିଭିନ୍ନ ସମୟରେ ପଢ଼ିବାକୁ ମିଳେ । କେରଳର ମୁଥାଙ୍ଗାଠାରେ ଆଦିବାସୀମାନେ ଜଙ୍ଗଲ ଓ ଜମି ଉପରେ ଅଧିକାରକୁ ନେଇ ପୁଲିସ୍ ସହ ସଂଘର୍ଷ କରିଥିଲେ ଏବଂ ଏଥିରେ ଜଣେ ଆଦିବାସୀ ମରିଥିଲେ ଓ ଅନେକ ଆହତ ହୋଇଥିଲେ । ଭାରତର ଉତ୍ତର ପୂର୍ବାଞ୍ଚଳରେ ବିଭିନ୍ନ ସମୟରେ ଏହିଭଳି ପୋଲିସ୍ ଓ ସେନାବାହୀନର ଗୁଳିରେ ସେ ଅଞ୍ଚଳର ଆଦିମ ଅଧିବାସୀ ମରୁଥିବାର ଖବର ବିଭିନ୍ନ ସମୟରେ ପ୍ରକାଶିତ ହୋଇଥାଏ । ମାନବାଧିକାର ଭଙ୍ଗ ହେବା ସଙ୍ଗେ ସଙ୍ଗେ ହିଂସା ଓ ପ୍ରତିହିଂସା ଲାଗି ରହିଛି ସବୁଆଡ଼େ ।

ଖାଲି ପୁଲିସ୍ ଗୁଳିକାଣ୍ଡରେ ଯେ ଆଦିବାସୀ ଓ ବିସ୍ଥାପିତ ଲୋକମାନେ ମରୁଛନ୍ତି ଏକଥା ଏତିକିରେ ସୀମିତ ରହିନାହିଁ, ପ୍ରକଳ୍ପ ହେଉ, ଖଣିଖାଦାନ ହେଉ ବା ଶିଳ୍ପ ପ୍ରତିଷ୍ଠାକୁ ନେଇ ଯେଉଁମାନେ ବାସଚ୍ୟୁତ ହେଉଛନ୍ତି ଏବଂ ଜୀବନ-ଜୀବିକାକୁ ହରାଇ ବସୁଛନ୍ତି ସେମାନେ ବହୁ ଅଳ୍ପ ସମୟ ଭିତରେ ନିଶ୍ଚିହ୍ନ ହୋଇଯାଉଛନ୍ତି । ସ୍ୱାଧୀନତା ପରଠାରୁ ପ୍ରାୟ ଅଢ଼େଇ କୋଟି ଲୋକ ବିକାଶ ପ୍ରକ୍ରିୟା ଦ୍ୱାରା ବିସ୍ଥାପିତ ହୋଇ ସାରିଲେଣି ଓ ସେମାନେ କୁଆଡ଼େ ଗଲେ ଓ କେଉଁଭଳି ନିଶ୍ଚିହ୍ନ ହୋଇଗଲେ ତାହାର ସଠିକ୍ ବିବରଣୀ କାହା ପାଖରେ ନାହିଁ । ଏହା ଏକ ଗଣହତ୍ୟା ନୁହେଁ କି ? ପୁଲିସ୍ ଗୁଳିରେ

ପ୍ରତ୍ୟକ୍ଷ ଭାବେ ମରିବା ଏବଂ ଭିଟାମାଟି ହରାଇଥିବା ଓ ଜୀବନ ଜୀବିକାରୁ ବଂଚିତ ହୋଇଥିବା ଲକ୍ଷ ଲକ୍ଷ ଅସହାୟ ଲୋକ ସରକାରଙ୍କ ନୀତି ଓ ଶିଳ୍ପପତିଙ୍କ ଲୋଭ ଦ୍ୱାରା ସହଜରେ ମରିହଜି ଯିବା ଗଣହତ୍ୟାର ଏକ ମାନଚିତ୍ର । ଏକଥା କିଏ ଅସ୍ୱୀକାର କରିବ କି ?

ଜଗତୀକରଣ ପ୍ରକ୍ରିୟାର ଇତିହାସରୁ ଜଣାପଡ଼େ ଯେ ଅତି ନିର୍ମମ ଓ ଅମାନୁଷିକ ଭାବରେ ବିଶ୍ୱ ପୁଞ୍ଜି ବିଭିନ୍ନ ସ୍ଥାନରେ ଓ ବିଭିନ୍ନ ପରିସରରେ ବିଭିନ୍ନ ଧରଣର ଗଣହତ୍ୟା କରିଆସିଛି । ଉପନିବେଶବାଦ ନିଜକୁ ସଫଳ କରାଇବାକୁ ଯାଇ ଅନେକ ଦେଶରେ ଗଣ ହତ୍ୟାର ତାଣ୍ଡବ ଲୀଳା ଭଳି ଅଧ୍ୟାୟ ସୃଷ୍ଟି କରୁଛି । ଉତ୍ତର ଆମେରିକାର ଲୋହିତ ଭାରତୀୟ ହୁଅନ୍ତୁ କିମ୍ବା ଦକ୍ଷିଣ ଆମେରିକାର ଆଦିମ ଅଧିବାସୀ ଓ ଅଷ୍ଟ୍ରେଲିଆର ଆଦିମ ଅଧିବାସୀ ହୁଅନ୍ତୁ ଏବଂ ଆଫ୍ରିକାର ବାସିନ୍ଦା ହୁଅନ୍ତୁ ସେଠାରେ ବନ୍ଧୁକ ମୂନରେ ଉପନିବେଶବାଦ ତା'ର ରାଜତ୍ୱ ବିସ୍ତାର କରୁଛି । ଲକ୍ଷ ଲକ୍ଷ ଲୋକ ଓ କେତେକ କ୍ଷେତ୍ରରେ ଗୋଟାଏ ଗୋଟାଏ ଜାତି ଓ ସଭ୍ୟତା ସଂପୂର୍ଣ୍ଣ ଲୋପପାଇ ଯାଇଅଛି । ଆଜି ନବ-ଉପନିବେଶବାଦ କେମିତି ସେହି ପୁରୁଣା ଐତିହ୍ୟସିକ ଢ଼ାଞ୍ଚାରେ ମୁଣ୍ଡ ଟେକିଛି ତାକୁ ପୃଥିବୀର ବର୍ତ୍ତମାନ ସମୟର ବିଶିଷ୍ଟ ବୁଦ୍ଧିଜୀବୀ ନୋଅମ୍ ଚୋମସ୍କି (Noam Chomski)ତାହାର ଏକ ବିଶ୍ଳେଷଣ କରିଛନ୍ତି । ଜଗତୀକରଣ ପ୍ରକ୍ରିୟା ଦ୍ୱାରା ଗଣହତ୍ୟା କିପରି ବ୍ୟାପକ ହେଉଛି ଗତ କେତେବର୍ଷ ହେଲା ପୃଥିବୀର ଇତିହାସ ଓ ଭୂଗୋଳକୁ ଅଧ୍ୟୟନ କଲେ ସହଜରେ ଜଣାପଡ଼ିବ । ୧୯୮୮ ମସିହାରେ ଆମାଜନର ଘଞ୍ଚ ଜଙ୍ଗଲରେ 'ଚିକୋ ମେଣ୍ଡିସ୍' ଦକ୍ଷିଣ ଆମେରିକାର ବର୍ଷା ଅରଣ୍ୟର ସଂରକ୍ଷଣ ପାଇଁ ଲଢୁଥିଲେ ଏବଂ ସ୍ଥାନୀୟ ଆଦିବାସୀମାନଙ୍କର ସ୍ୱାର୍ଥ ପାଇଁ ଲଢୁଥିଲେ । କିନ୍ତୁ, ବର୍ଷା ଅରଣ୍ୟକୁ କାଟି ସଫା କରି କୃଷି, ପଶୁପାଳନ ଓ ର୍‍ୟାଞ୍ଚ (Ranch)ପ୍ରତିଷ୍ଠା ପାଇଁ ପୁଞ୍ଜିପତିମାନେ ଚିକୋ ମେଣ୍ଡିସ୍‌କୁ ହତ୍ୟା କରିଥିଲେ । ଏହାପରେ ବର୍ଷା ଅରଣ୍ୟ ସବୁ ଧ୍ୱଂସ କରିବା ପାଇଁ ପ୍ରତିଯୋଗିତା ଆରମ୍ଭ ହୋଇଗଲା । ପରିବେଶ ଓ ସ୍ଥାନୀୟ ଆଦିମ ଅଧିବାସୀମାନେ ଏହାଦ୍ୱାରା ପ୍ରଭାବିତ ହୋଇଥିଲେ ।

ଫିଲିପାଇନସ୍‌ର ମିରାଣ୍ଡୁକୀ ଦ୍ୱୀପରେ କାନାଡ଼ା ଦେଶର ଏକ ମାର୍କକପର (Marcoppur) ନାମକ ଏକ ମାଇନିଂ କମ୍ପାନୀ ତମ୍ବା ଖଣି ପାଇଁ ଲିଜ୍ ପାଇଥିଲା । ଖଣିଜ ପଦାର୍ଥରୁ ବିଶୋଧନ କରି ତମ୍ବା ବାହାର କଲାବେଳେ ଅନେକ ବିଷାକ୍ତ ବର୍ଜ୍ୟବସ୍ତୁ ବାହାରୁଥିଲା, ଯାହା ସ୍ଥାନୀୟ ଜନବସତି ଏବଂ ଉଦ୍ଭିଦ ଓ ପ୍ରାଣୀଜଗତ ଉପରେ ପ୍ରଭାବ

ପକାଇଥିଲା । ଏହି ବର୍ଜ୍ୟବସ୍ତୁ ଦ୍ୱାରା ଶହ ଶହ ଲୋକେ ଆକ୍ରାନ୍ତ ହୋଇଥିଲେ । ସୁନ୍ଦର ହେନ୍ତାଳ ବନ ନଷ୍ଟ ହୋଇଥିଲା । ମତ୍ସ୍ୟଜୀବିଙ୍କୁ ମାଛ ମିଳିନଥିଲା । ଏବେସୁଦ୍ଧା ଅନେକ ବ୍ୟକ୍ତି ଚିକିତ୍ସିତ ହେଉଛନ୍ତି ।

ଆଫ୍ରିକାର ନାଇଜେରିଆରେ ପେଟ୍ରୋଲିୟମ କମ୍ପାନୀ ସେଲ୍ (Shell) ଅଗୋନି ନାମକ ଆଦିବାସୀ ସଂପ୍ରଦାୟମାନଙ୍କର ଜଳ, ଜମି ଓ ଜଙ୍ଗଲ ଉପରେ କର୍ତ୍ତୃତ୍ୱ ବିସ୍ତାର କରି ପେଟ୍ରୋଲିୟମ୍ ଗ୍ୟାସ୍ ଉତ୍ପାଦନ କରୁଥିଲା । ଏଥିପାଇଁ ଅନେକ ଆନ୍ଦୋଳନ ଚାଲୁଥିଲା ଏବଂ ଅଗୋନିମାନଙ୍କର ଅପୂରଣୀୟ କ୍ଷତି ହୋଇଥିଲା । ନାଇଜେରିଆ ସରକାର ଏବଂ ସେଲ୍ କମ୍ପାନୀ ସବୁ ଲାଭ ମାରି ନେଉଥିଲେ ଏବଂ ଅଗୋନିମାନଙ୍କୁ କିଛି ବି ଦେଉନଥିଲେ । ଏହି ଆନ୍ଦୋଳନକୁ ବୌଦ୍ଧିକ ସମର୍ଥନ ଦେଇଥିବା ନାଇଜେରିଆର ବିଖ୍ୟାତ କବି ଓ ବୁଦ୍ଧିଜୀବୀ କେନ୍ ସାର ଓ୍ୱିବାଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଥିଲା । କେତେ ଯେ ଅଗୋନି ସଂପ୍ରଦାୟର ଲୋକ ସେଲ୍ କମ୍ପାନୀ ଦ୍ୱାରା ନିଶ୍ଚିହ୍ନ ହୋଇଛନ୍ତି ତାହା ଆକଳନ କରିବା କଷ୍ଟସାଧ ।

କାନାଡ଼ାର ଓଲ୍ଲାଷ୍ଟୋନ ହ୍ରଦ ଚାରିପାଖରେ ବାସ କରୁଥିବା ଲୋହିତ ଭାରତୀୟମାନେ ଏକ ୟୁରାନିୟମ୍ ଖଣି ଏବଂ ବିଶୋଧନ ଦ୍ୱାରା ପ୍ରଭାବିତ ହୋଇଥିଲେ । ଏହା ପାଇଁ ଏକ ବ୍ୟାପକ ଆନ୍ଦୋଳନ ହୋଇଥିଲା । ଏଥିରେ ଯେ ଖାଲି ପରିବେଶ ପ୍ରଦୂଷଣ ହୋଇନଥିଲା, ସ୍ଥାନୀୟ ଲୋକଙ୍କର ଖାଦ୍ୟ ନିରାପତ୍ତା ଓ ସ୍ୱାସ୍ଥ୍ୟ ନିରାପତ୍ତା ବ୍ୟାହାତ ହୋଇଥିଲା । ଖାଦ୍ୟ ମଣିଷ ଜୀବନର ମୂଳଦୁଆ । ଅନାହାର ପ୍ରଦୂଷିତ ଖାଦ୍ୟ ଭକ୍ଷଣ ଏହି ଲୋହିତ ଭାରତୀୟଙ୍କ ମଧ୍ୟରୁ ଅନେକଙ୍କର ମୃତ୍ୟୁର କାରଣ ହୋଇଥିଲା ।

ପାପୁଆ ନିଉଗିନିରେ ସୁନା, ତମ୍ବା ଓ ପେଟ୍ରୋଲିୟମ୍ ଗ୍ୟାସ୍‌ର ବିଶାଳ ଭଣ୍ଡାର ଅଛି । ଏହା ସହିତ ଅଛି ଘଞ୍ଚ ବର୍ଷା ଅରଣ୍ୟ । ଏହା ଉପରେ ଦୃଷ୍ଟି ପଡ଼ିଛି ବିଶ୍ୱର ସବୁ ପୁଞ୍ଜିପତିମାନଙ୍କର ଏବଂ ପୁଞ୍ଜିପତି ଓ ରାଷ୍ଟ୍ରର । ଇଣ୍ଡୋନେସିଆର ସାମରିକ ବାହାନର ସହାୟତା ନେଇ ସେଠାରେ ଚାଲିଛି ଗଣହତ୍ୟା । ପାପୁଆକୁ ଛୁଟିଛି ମାହାର ମଣିଷଙ୍କର ସୁଅ ଓ ଯେଉଁମାନେ ଇଣ୍ଡୋନେସିଆର ମୂଳ ଜାଭା, ବାର୍ଲି ଦ୍ୱୀପମାନଙ୍କରୁ ଆସି ବସତି ସ୍ଥାପନ କରିଛନ୍ତି ସେମାନେ ପାପୁଆର ଲୋକଙ୍କୁ ଅତି ଘଞ୍ଚ ଅରଣ୍ୟରେ ବାସ କରି ମୂଳ ଆଦିବାସୀମାନଙ୍କୁ ଠେଲି ଦେଇଛନ୍ତି । ଖଣିଖାଦାନରେ କାମ କରୁଥିବା ଆଦିବାସୀମାନେ ଏତେ ସଂଖ୍ୟାରେ ପହଞ୍ଚିଛନ୍ତି ଏଡ଼ସ୍, ଏଚ୍.ଆଇ.ଭି. ରୋଗ ବଢ଼ିବାରେ ଲାଗିଛି ।

ପାପୁଆର ଆଦିମ ଅଧିବାସୀମାନେ ଯେଉଁ ସଂଖ୍ୟାରେ ମରିବାକୁ ଆରମ୍ଭ କରିଛନ୍ତି, ତାହାକୁ ଗଣହତ୍ୟା ନକହି ଆଉ କ'ଣ ବା କୁହାଯିବ ?

ଗଣହତ୍ୟା କରିବା ପାଇଁ ଗୋଟାଏ ପ୍ରଭାବଶାଳୀ ଓ ପ୍ରତିପତିଶାଳୀ ଗୋଷ୍ଠୀ ସବୁବେଳେ ଯେମିତି ତତ୍ପର ହୋଇରହିଛି । ଇତିହାସକୁ ଅଧ୍ୟୟନ କଲେ ଏହିକଥା ସହଜରେ ବୁଝିହୁଏ । ଭବିଷ୍ୟତରେ ଗଣହତ୍ୟାର ରୂପରେଖ ଓ ବିସ୍ତୃତି ସ୍ପଷ୍ଟ ବାରିହୁଏ । ଜର୍ମାନର ନାଜୀମାନେ ଇହୁଦୀମାନଙ୍କୁ ଗଣହତ୍ୟା କରି ଭାବୁଥିଲେ ଯେ ସେମାନେ ଅନ୍ୟମାନଙ୍କଠାରୁ ଉଚ୍ଚଜାତିର । ଏହିଭଳି ଏକ ଭୂତ ଆଜି ଯେପରି ପୃଥିବୀର ଅଣଆଦିବାସୀମାନଙ୍କ ଭିତରେ ପଶିଯାଇଛି । ସେମାନେ ଭାବୁଛନ୍ତି ଯେଉଁମାନେ ଉଚ୍ଚଜାତିର ଏବଂ ଉଚ୍ଚ ବୌଦ୍ଧିକତାର, ସେମାନଙ୍କ ପାଖରେ ଆଦିବାସୀ ଓ ଗରିବମାନଙ୍କର ଧନ ଜୀବନ ଅଧିକାରରେ ରହିଛି । ଏହାକୁ ସାବ୍ୟସ୍ତ କରିବାକୁ ଯାଇ ଗଣହତ୍ୟାରେ ସାମିଲ ହେଉଛି ଓ ଏଭଳି ଏକ ଅମାନୁଷିକ ଘଟଣାକୁ ସମର୍ଥନ କରୁଛି । ଆଜି କଳିଙ୍ଗ ନଗରରେ ଯାହା ଘଟିଛି ଏହିଭଳି ଏକ ଭାବନାର ପରିପ୍ରକାଶ କେବଳ । ❑

# ଜଗତୀକରଣ ଓ ଗଣମାଧ୍ୟମ

ଏବେ କଳିଙ୍ଗନଗର ଘଟଣା ପରେ ଇଂରାଜୀ ଖବର କାଗଜର ଜଣେ ସାମ୍ବାଦିକଙ୍କ ସହ ଅଚାନକ ଦେଖାହେଲା । ସେ ମହାଶୟ କଳିଙ୍ଗନଗରର ଗଣହତ୍ୟାକୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସମର୍ଥନ କରିଥିଲେ ଏବଂ କତିପୟ ଆଦିବାସୀ ଓଡ଼ିଶାର ମାନଚିତ୍ରକୁ ବିକୃତ କରୁଥିବାର ଦାୟୀ କରୁଥିଲେ । ଏହି ମହାଶୟଙ୍କ ଭଳି ଗଣମାଧ୍ୟମରେ କାମ କରୁଥିବା ଅନେକ ବ୍ୟକ୍ତିଙ୍କ ଇତିହାସ ଚମତ୍କାର । ବିଭିନ୍ନ ଶିଳ୍ପପ୍ରତିଷ୍ଠା ପାଇଁ ଓ ଶିଳ୍ପପତିମାନଙ୍କର ହାତ ବାରିସି ହୋଇ ସେମାନେ ସବୁବେଳେ ସମ୍ବାଦପତ୍ରକୁ ଓ ଗଣମାଧ୍ୟମକୁ ବ୍ୟବହାର କରିଥାଆନ୍ତି । ଶିଳ୍ପପତିଙ୍କ ଭଲ ଭାବମୂର୍ତ୍ତି ପ୍ରତିଷ୍ଠା ପାଇଁ ଲେଖା ଲେଖନ୍ତି ଓ ବିଜ୍ଞାପନ ଛାପନ୍ତି । ବେଳେବେଳେ ମଧ୍ୟ ଦଲାଲ ହୋଇ ଶିଳ୍ପପତିମାନଙ୍କ ତରଫରୁ ଅଫିସର ରାଜନୈତିକ ନେତାମାନଙ୍କୁ ପ୍ରଭାବିତ କରିଥାନ୍ତି । ଏମାନଙ୍କୁ ବେଶ୍ କଛି ଫାଇଦା ମିଳିଥାଏ । କାହାକୁ ଲ୍ୟାପଟ୍‌ପ କମ୍ପୁଟର ମିଳେ, କାହାକୁ ଗୋଆରେ ଅବସର ବିନୋଦନ କଟାଇବା ପାଇଁ ଅଥବା ନିଜର ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ ଆବଶ୍ୟକ ସାହାଯ୍ୟ ମିଳିଥାଏ । ଏମାନଙ୍କୁ କକ୍‌ଟେଲ ପାର୍ଟିରେ ଦେଖିବାକୁ ମିଳେ ବା ଶକ୍ତିଶାଳୀ ରାଜନୈତିକ ନେତାଙ୍କ ଗହଣରେ ଆତଯାତ ହେଉଥିବାର ଦେଖାଯାଏ । ଏସବୁର ଗୋଟିଏ ଉଦ୍ଦେଶ୍ୟ ତାହା ହେଉଛି ଶିଳ୍ପପ୍ରତିଷ୍ଠା ପାଇଁ ସର୍ବସମ୍ମତି ହାସଲ କରିବ ଓ ସମସ୍ତଙ୍କୁ ମନାଇବା । ଶିଳ୍ପପ୍ରତିଷ୍ଠାରେ ବାଧାବିଘ୍ନ ସୃଷ୍ଟି କରୁଥିବା ବ୍ୟକ୍ତିମାନଙ୍କର ଚରିତ୍ର ଦହନ କରିବାକୁ ସେମାନେ ଦ୍ୱିଧା ପ୍ରକାଶ କରିନଥାନ୍ତି । ସେମାନଙ୍କର ବୁଦ୍ଧିବିବେକକୁ ଜଳାଞ୍ଜଳି ଦେଇ ଶିଳ୍ପ ଓ ପୁଞ୍ଜିର ସପକ୍ଷରେ ଯୁକ୍ତି ବାଢ଼ିଥାନ୍ତି ଅହରହ । କହିବା ବାହୁଲ୍ୟ ଯେ ଏହି ସାମ୍ବାଦିକ ୨୦୦୦ ମସିହାରେ ମାଇକଞ୍ଚ ଗୁଳିକାଣ୍ଡରେ ଅଗ୍ରଗାମୀକୁ ଦାୟୀ କରି ଅସଲ ଦୋଷୀକୁ ଘଣ୍ଟ ଘୋଡ଼ାଇଥିଲେ । ଚିଲିକା ଆନ୍ଦୋଳନରେ ଟାଟାର ସପକ୍ଷ ନେଇ ମତ୍ସ୍ୟଜୀବିମାନଙ୍କୁ ନିନ୍ଦା କରିଥିଲେ । ଏମାନଙ୍କୁ ସାଧାରଣ ଜନତା ଚିହ୍ନିବା ଦରକାର ଓ ସେମାନଙ୍କ ଭିତିରି ଉଦ୍ଦେଶ୍ୟ ବୁଝିବା ଦରକାର ।

ସାରା ପୃଥିବୀରେ ଶିଳ୍ପାୟନ, ଉଦାରୀକରଣ ଓ ଘରୋଇକରଣ ଏବେ ଯେଉଁ ପ୍ରକ୍ରିୟା ଚାଲିଛି ତାହାକୁ ଶକ୍ତିଶାଳୀ ସୁଦୂରପ୍ରସାରୀ କରିବାରେ ଗଣମାଧ୍ୟମର

ଭୂମିକା ଅନେକ ବୋଲି ପ୍ରମାଣିତ ହୋଇସାରିଛି । ୧୯୮୮ରେ ନୋଅମ ଚୋଅମସ୍କିଙ୍କର 'ମାନୁଫାକଚରିଂ କନସେଣ୍ଟ୍- ଦି ପଲିଟିକାଆଲ ଏକୋନମି ଅଫ ମାସ୍ ମିଡିଆ' ବୋଲି ଏକ ଚମତ୍କାର ପୁସ୍ତକ ପ୍ରକାଶ କରିଛନ୍ତି ଯେଉଁଥିରେ ଗଣମାଧ୍ୟମକୁ 'ପ୍ରଚାର ମଡେଲ' କରାଯାଇଛି ତାହା ଉଲ୍ଲେଖ କରିଛନ୍ତି ।

ଚମ୍‌ସ୍କି ପ୍ରଶ୍ନ କରନ୍ତି ଅସଲ ସମ୍ବାଦ କ'ଣ ? କେଉଁ ସମ୍ବାଦ ଖବରକାଗଜ, ରେଡିଓ ଓ ଟେଲିଭିଜନରେ କିଭଳି ପ୍ରକାଶ ପାଇବ ସମାଜର ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ସ୍ଥିର କରିଥାନ୍ତି । ଏହାକୁ ମୁଖ୍ୟସ୍ରୋତ ଧର୍ମୀ ସମ୍ବାଦ ବୋଲି କୁହାଯିବ । ଏହାର ସୁଯୋଗ ନିଅନ୍ତି ସରକାର ଓ ରାଜନୈତିକ ଦଳ । ବୃହତ୍ ବ୍ୟବସାୟୀ ଗୋଷ୍ଠୀ ମଧ୍ୟ ନିଜ ନିଜର ସ୍ୱାର୍ଥସିଦ୍ଧି ପାଇଁ ଗଣମାଧ୍ୟମକୁ ବ୍ୟବହାର କରନ୍ତି । ଦରକାର ପଡିଲେ ଏହାକୁ ନିୟନ୍ତ୍ରଣ କରିନ୍ତି ଅଥବା ନିଜର ସମ୍ପତ୍ତି ଭାବେ ଅକ୍ତିଆର କରନ୍ତି । ଏହା ଫଳରେ ମୁଖ୍ୟସ୍ରୋତ ବିରୋଧୀ ଚିନ୍ତାଧାରା ବା ଅଭିବ୍ୟକ୍ତି ସମ୍ବାଦ ପତ୍ରରେ ସ୍ଥାନ ପାଏ ନାହିଁ । ଉଦାହରଣ ସ୍ୱରୂପ ଶିଳ୍ପ ଓ ଖଣିଖାଦାନ ହେଲେ ରାଜ୍ୟର କିପରି ଅଭୂତପୂର୍ବ ପ୍ରଗତି ହେବ ସେ କଥା ମୁଖ୍ୟ ସମ୍ବାଦ ହେଉଥିଲା ବେଳେ, ବିସ୍ଥାପିତ ଲୋକଙ୍କର ସମସ୍ୟା କେବେ କେମିତି କେତୋଟି ଧାଡିର ସମ୍ବାଦରେ ସୀମିତ ରହୁଛି ଅଥବା ଗଣମାଧ୍ୟମର ପରିସର ଭିତରକୁ ଆସୁନାହିଁ । ମାଇକଞ୍ଚ ଓ କଳିଙ୍ଗନଗର ଭଳି ଗୁଳିକାଣ୍ଡ ହେଲେ ବି ଏହା କିପରି ଶିଳ୍ପପ୍ରତିଷ୍ଠା କ୍ଷେତ୍ରରେ ବାଧା ସୃଷ୍ଟି କରୁଛି ସେଇ ସମ୍ବାଦକୁ ପ୍ରାଧାନ୍ୟ ଦିଆଯାଉଛି । ଅଥଚ ବିସ୍ଥାପିତ ଲୋକଙ୍କର ସ୍ୱର ଶୁଭୁନାହିଁ । କୋକାକୋଲା ଓ ପେପ୍‌ସି ଭଳି କମ୍ପାନୀ ଗଣମାଧ୍ୟମରେ ସେମାନଙ୍କର ପ୍ରତିକୂଳ ପରିଚୟକୁ ଗଣମାଧ୍ୟମ ଜରିଆରେ ସେମାନଙ୍କର ଭାବମୂର୍ତ୍ତୀକୁ ବଦଳେଇ ଦେଇ ପାରୁଛନ୍ତି । ଯେତେପ୍ରକାର କୀଟନାଶକ ଔଷଧ ଏବଂ ସ୍ୱାସ୍ଥ୍ୟ ସମ୍ପଦକୁ କ୍ଷତି କରୁଥିବା ବିଭିନ୍ନ ସାମଗ୍ରୀ ବିଭିନ୍ନ ଉପାୟରେ ପ୍ରଚାର କରି ବିକ୍ରୀ ଏବଂ ତାହାର ବଜାର ବଢ଼େଇବା ଅନେକ ଉଦାହରଣ ରହିଛି । ମୋଟାମୋଟି କହିବାକୁ ଗଲେ ଗଣମାଧ୍ୟମ ଚାହିଁଲେ କଳା କୁ ଧଳା କରିପାରିବ ଏବଂ ତିନିତୁଣ୍ଡରେ ଛେଳି କୁକୁର କରିପାରିବ । ବର୍ତ୍ତମାନ ଜଗତୀକରଣ ସପକ୍ଷରେ ଯେଉଁ ଯୁକ୍ତି କରାଯାଉଛି ତାହା ଏହିଭଳି ଏକ ପଦ୍ଧତିକୁ ଅସ୍ତ୍ର କରି ହାସଲ କରାଯାଇ ପାରୁଛି । କୁହାଯାଉଛି ଯେ ଜଗତୀକରଣକୁ ରୋକିହେବ ନାହିଁ । ଏବଂ ଯେହେତୁ ଏହାକୁ ରୋକି ହେବନାହିଁ ସେଥିପାଇଁ ଏହାକୁ ସ୍ୱାଗତ କର । ଏଇଭଳି ଜନମାନସକୁ କବଳିତ କରାଯାଇ ପାରୁଛି ।

ଜଗତୀକରଣ ପ୍ରକ୍ରିୟାକୁ ସୁଦୃଢ଼ ପାଇଁ କିପରି ଅହର୍ନିଶି ପ୍ରୟାସ କରୁଛନ୍ତି ତାହାକୁ ବିଶ୍ଳେଷଣ କରିବା ଏବଂ ସାଧାରଣ ମଣିଷଙ୍କ ଆଗରେ ଉପସ୍ଥାପନା କରିବା ନାଗରିକ ସମାଜର ମୁଖ୍ୟ ଦାୟିତ୍ୱ । ନୋଆମ କ୍ଲେଇନ୍- 'ନୋ ଲୋଗୋ' ବହି ଏବଂ ଅରୁନ୍ଧତୀ ରାୟଙ୍କର 'ଆନ ଅଡିନାରି ପରସନ୍‌ସ୍ ଗାଇଡ୍ ଟୁ ଏମ୍ପାୟର୍' ପୁସ୍ତକର ସମୀକ୍ଷା ଓ ବିଚାର ଆଲୋଚନାକୁ ଆଣିଲେ ଗଣମାଧ୍ୟମର ଭୂମିକା ଆହୁରି ସୁସ୍ପଷ୍ଟ ହୋଇଯିବ । ଆପଣ ଜାଣିଛନ୍ତି କି ସମାଜରେ କେଉଁ ବ୍ୟକ୍ତି ଓ ବର୍ଗ ଗଣମାଧ୍ୟମକୁ ପରିଶୋଧନ କରି ନିଜର ପ୍ରଭାବ ବିସ୍ତାର କରିଥାନ୍ତି ? ସେମାନେ ପ୍ରଥମେ ହେଲେ ଧନୀବର୍ଗର ସାମ୍ବାଦିକ । ସେମାନେ ସମ୍ବାଦପତ୍ରକୁ କିଣି ନିଅନ୍ତି ଅଥବା ସେମାନଙ୍କ ପରିଚାଳନା ମଣ୍ଡଳୀରେ ରହିଥାନ୍ତି । ଏହାଛଡା ବିଭିନ୍ନ ବ୍ୟବସାୟିକ ପ୍ରତିଷ୍ଠାନର ଦୃଢ ପରିଚାଳନା ଦେଇଥାନ୍ତି । ଏଭଳି ସମ୍ପର୍କ ବିଭିନ୍ନ ବ୍ୟବୟାୟିକ ପ୍ରତିଷ୍ଠାନ ସମ୍ପର୍କର ଅନ୍ତରଙ୍ଗଭାବେ ଛନ୍ଦାଛନ୍ଦି ଓ ଲଗାଲଗି ହୋଇ ପ୍ରତିଷ୍ଠିତ ହୋଇ ସାରିଛି । ତେଣୁ ବ୍ୟବସାୟିକ ପ୍ରତିଷ୍ଠାନମାନେ ଏବଂ ସମ୍ବାଦପତ୍ର ଜରିଆରେ ସହାନୁଭୂତିର ନିଷ୍ପତ୍ତି ନେବା ପ୍ରକ୍ରିୟାକୁ ନିଜ ନିୟନ୍ତ୍ରଣରେ ରଖିଥାନ୍ତି ।

ଜଗତୀକରଣର ପ୍ରତିଷ୍ଠା ଓ ପ୍ରଭାବ ପାଇଁ ଗଣମାଧ୍ୟମର ଦ୍ୱିତୀୟ ମୁଖ୍ୟ ଅସ୍ତ୍ର ହେଲା ବିଜ୍ଞାପନ ପ୍ରତି ପ୍ରୋତ୍ସାହନ ଦେବା । ଯେକୌଣସି ସାମଗ୍ରୀ ବା ଚିନ୍ତାଧାରାକୁ ବଜାର ଭିତରେ ବିକିବା ପାଇଁ ବିଜ୍ଞାପନ ଏକ ଆମୋଘ ଅସ୍ତ୍ର । ଉଦାହରଣ ସ୍ୱରୂପ ସ୍ୱଦେଶୀ ଜିନିଷ ଖରାପ ଓ ବିଦେଶୀ ଜିନିଷ ଭଲ ଭଳି ଏକ ଭାବନାକୁ ନେଇ ବର୍ତ୍ତମାନ ବହୁରାଷ୍ଟ୍ରୀୟ କମ୍ପାନୀର ବହୁଜିନିଷ ପୁରପଲ୍ଲୀରେ ପହଞ୍ଚି ଯାଇଛି । 'ମେଡ୍ ଇନ୍ ୟୁ.ଏସ୍.ଏ. / ମେଡ୍ ଇନ୍ ଜାପାନ' ମିଳୁଥିବା ଜିନିଷ କହିଲେ ସେ ଆଲପିନ ହେଉ କି କାର୍ ହେଉ ନହେଲେ ଜାମା ହେଉ ବା ଜୋତା ହେଉ ସହଜରେ ବିକ୍ରି ହୋଇପାରୁଛି । ଏହିସବୁ ସବିସ୍ତୃତ ବିଜ୍ଞାପନର ଫଳ ବିଶେଷ ମାନ୍ୟତା ପାଉଛି । ବର୍ତ୍ତମାନ ଏପରି ଏକ ସମୟ ଉପସ୍ଥିତ ହୋଇଛି ମଣିଷ କ'ଣ ଖାଇବ, କ'ଣ ପିନ୍ଧିବ, କ'ଣ ଶୁଣିବ, କିପରି ରହିବ ଓ କେଉଁଭଳି ଜୀବନଯାପନ କରିବ, ତାହା ସବୁ ଏହି ବିଜ୍ଞାପନ ଦ୍ୱାରା ନିୟନ୍ତ୍ରିତ ହେଉଛି । ବହୁରାଷ୍ଟ୍ରୀୟ କମ୍ପାନୀଙ୍କର ଆକର୍ଷଣୀୟ ମନମୁଗ୍ଧକର ବିଜ୍ଞାପନ ଦ୍ୱାରା ସବୁ ମଣିଷ ଆଜି ମେଣ୍ଢାପଲ ଭଳି ଏକ ପରିଚୟ ବିହୀନ ଜୀବନଯାପନ କରୁଛନ୍ତି ।

ତୃତୀୟ ଦିଗଟି ହେଲା ସମ୍ବାଦ ଯେଉଁ ସ୍ରୋତରୁ ଜନ୍ମ ନିଏ- ତାହା ମଧ୍ୟ ବୁଝିବା ଆବଶ୍ୟକ । କଳିଙ୍ଗ ନଗର ଗୁଳିକାଣ୍ଡରେ ନେତା ଓ ଅଫିସରମାନେ କ'ଣ କହିଲେ ତାହା ଯେଉଁଭଳି ପ୍ରକାଶିତ ହେଲା ତାହା ସାଧାରଣ ଲୋକଙ୍କ ମତାମତ ଉପସ୍ଥାପିତ ହେଲା ନାହିଁ । ସବୁଆଡ଼େ ପ୍ରଚାର କରାଗଲା ଆଦିବାସୀମାନେ ପାରମ୍ପରିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହେବା ନିନ୍ଦନୀୟ । ଅନେକ କିଛି କାହାଣୀ ମଧ୍ୟ ତିଆରି କରାଗଲା ଏଣୁ ଗଣମାଧ୍ୟମରେ ପରିବେଷଣ ହେଉଥିବା କାହାଣୀ ଏଭଳି ସୃଷ୍ଟି ହୁଏ ଓ କିଭଳି ରୂପ ନିଏ ତାହା ଏଥିରୁ ଜାଣି ହୁଏ । ସେସବୁ ଏକ ଚମତ୍କାର ରଣକୌଶଳ ବୋଲି ମାନିବାକୁ ପଡ଼ିବ । ଏବେ ଇରାକ୍ ଉପରେ ଯେଉଁ ଆକ୍ରମଣ ହେଲା ତାହାକୁ ସମର୍ଥନ କରିବା ପାଇଁ ମାନବ ବିରୋଧୀ ଅସ୍ତ୍ରଶସ୍ତ୍ର ଗଚ୍ଛିତ ରହିଛି ବୋଲି ବାରମ୍ବାର ଗଣମାଧ୍ୟମରେ ପ୍ରଚାରିତ ହେଲା । ଏପରି ଭାବରେ କୁହାଗଲା ଯେପରି କଥାଟା ନିରାଟ ସତ୍ୟ । ନର୍ମଦା ବଞ୍ଚାଅ ଆନ୍ଦୋଳନରେ ନେତ୍ରୀ ମେଧା ପାଟ୍‌କରଙ୍କୁ ଜନବିରୋଧୀ ଓ ବିକାଶ ବିରୋଧୀ ବୋଲି ବାରମ୍ବାର ଚିତ୍ରଣ କରାଯାଇଥିଲା । ଏହିଭଳି ଉଦାହରଣରୁ ଜଣାପଡ଼େ ଗଣମାଧ୍ୟମରେ ପ୍ରକାଶିତ ସମ୍ବାଦର ଏକ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ରହିଛି । ତାହା ସତ୍ୟ, ଧର୍ମ ଓ ନ୍ୟାୟର ପରିପନ୍ଥୀ ନୁହଁନ୍ତି କି ?

ଯଦି ସତ୍ୟଧର୍ମୀ ସମ୍ବାଦ ବିରୁଦ୍ଧରେ ଅପପ୍ରଚାର କରିବା ଯଦି କେଉଁଠି କିଛି ଘଟଣା ଘଟୁଛି ଯେଉଁଥିରେ ପ୍ରଭାବଶାଳୀ ଗୋଷ୍ଠୀ କ୍ଷତିଗ୍ରସ୍ତ ହେଉଛି ତାହାକୁ ପ୍ରତିଶୋଧ କରିବା ପାଇଁ ସିଣ୍ଡିକେଟ୍ ଜର୍ଣ୍ଣାଲିଷ୍ଟ୍‌ମାନେ ବିଭିନ୍ନ ପ୍ରକାର ସମ୍ବାଦ ପ୍ରକାଶ କରିଥାଆନ୍ତି ଓ ବିଭିନ୍ନ ପ୍ରକାର ଲୋକଙ୍କର ସାକ୍ଷାତ୍‌କାର ପ୍ରକାଶ କରିଥାଆନ୍ତି । ବେଳେ ବେଳେ ପେଶାଦାର ସଂସ୍ଥାମାନଙ୍କୁ ନିୟୋଜିତ କରାଯାଇ ଅସତ୍ୟ କଥାକୁ ସତ୍ୟ ବୋଲି ଉପସ୍ଥାପନା କରାଯାଏ । ସେଥିପାଇଁ ବେଳେ ବେଳେ ଅଭିନୟ ମାଧ୍ୟମରେ ସତ୍ୟର ଅପଳାପ ଉଦାହରଣ ସ୍ୱରୂପ ପ୍ରଦୂଷଣକାରୀ ଶିଳ୍ପର ପ୍ରଦୂଷଣ ଘୋଡ଼ାଇବାକୁ ଯାଇ ଦେଖାଯାଇଥାଏ ଯେ ଶିଳ୍ପ ପ୍ରତିଷ୍ଠା ଦ୍ୱାରା ଯେମିତି ଅନେକ ମାତ୍ରାରେ କମି ଯାଇଛି । ବ୍ୟବସାୟୀ ଗୋଷ୍ଠୀ ସେମାନଙ୍କର ବ୍ୟବସାୟରୁ ସାଧାରଣ ଲୋକ ଉପକୃତ ହେଉଛନ୍ତି ବୋଲି ବିଭିନ୍ନ ଯୁକ୍ତି ଦେଖାଇ ପ୍ରମାଣିତ କରିଥାଆନ୍ତି । ତାଙ୍କର ବ୍ୟବସାୟ ଦେଶର ବା ମଣିଷ ଜାତିର ପ୍ରଗତି ଓ ହିତ ପାଇଁ ଯେମିତି ସଂକଳ୍ପବଦ୍ଧ । ଏକଥାରେ ନିରୀହ ସାଧାରଣ ଲୋକଟି ସହଜରେ ବିଶ୍ୱାସ କରିପାରିବ ନାହିଁ ।

ଶେଷରେ ପଞ୍ଚମ ଦିଗଟି ହେଲା ଏକ ମତବାଦ ବିରୋଧୀ ଗୋଷ୍ଠୀ ଏକ ଭିନ୍ନ ମତବାଦୀ ଗୋଷ୍ଠୀକୁ ସେମାନଙ୍କ ମତବାଦ ପ୍ରତି ଅସୂୟାଭାବ ପ୍ରଦର୍ଶନ କରିଥାଆନ୍ତି । ନାଜୀ ମତବାଦରେ ଇହୁଦୀମାନଙ୍କୁ ଘୃଣ୍ୟ ବୋଲି ପ୍ରମାଣିତ କରାଯାଇଥାଏ । ପୁଞ୍ଜିବାଦ ତୁଳନାରେ ସାମ୍ୟବାଦ କିପରି ଅମାନୁଷିକ ଗଣମାଧ୍ୟମ ଜରିଆରେ ତାହା ପ୍ରଚାର କରାଯାଇଥାଏ । ଏସବୁର ଯୁକ୍ତି ପାଇଁ ଲେଖକ, ଐତିହାସିକ ଓ ବୁଦ୍ଧିଜୀବି ନିଶ୍ଚିତ ଭାବରେ ବିନିଯୋଗ ହୋଇଥିବେ । ଗୋରାମାନେ କଳା ଲୋକଙ୍କଠାରୁ ଭଲ ଏକଥା ଗଣମାଧ୍ୟମରେ ପ୍ରମାଣ କରାଯିବାକୁ ସଦାସର୍ବଦା ଉଦ୍ୟମ ଚାଲିଛି । ଭବିଷ୍ୟତରେ ଚାଲିବ ମଧ୍ୟ ।

ଅସଲ କଥାଟି ହେଉଛି ସତ୍ୟ ଓ ଅସତ୍ୟ, ଭୁଲ ଓ ଠିକ୍ ଗଣମାଧ୍ୟମର ପ୍ରଭାବ ଦ୍ୱାରା ସ୍ଥିର କରାଯାଉଛି । ସମୟ ଆସିବ ସମସ୍ତେ ଭାବିବେ ଯୁଦ୍ଧ ଦ୍ୱାରା ଶାନ୍ତି ପ୍ରତିଷ୍ଠା ହୋଇ ପାରିବ । ଘୃଣା ଦ୍ୱାରା ପ୍ରେମ କରାଯାଇ ପାରିବ । କଳିଙ୍ଗ ନଗର ଭଳି ଘଟଣାଗୁଡ଼ିକୁ ଚିତ୍ରଣ କରାଯିବ ଯେ ଗୁଳିକାଣ୍ଡର ଦୁଇଟି କାରଣ ଅଛି । ଗୋଟାଏ ହେଲା ଓଡ଼ିଶାର ବିକାଶ ପାଇଁ କିଛି ଆଦିବାସୀଙ୍କୁ ପ୍ରାଣ ଦେଇ ତ୍ୟାଗ କରିବାକୁ ପଡ଼ିବ । ଦ୍ୱିତୀୟଟି ହେଲା କିଛି ଲୋକଙ୍କୁ ହତ୍ୟା କରି ଖୁସିରେ ରହିବାର ଅଧିକାର ଅଛି ବୋଲି ସ୍ୱୀକାର କରିବାକୁ ହେବ । ଏବେ କେତେଦିନ ଧରି ଗଣମାଧ୍ୟମରେ କଳିଙ୍ଗନଗରକୁ ନେଇ ଯାହା ପ୍ରକାଶିତ ହେଉଛି ସେଥିରୁ ଏହା କ'ଣ ସ୍ପଷ୍ଟ ଜାଣି ହେଉ ନାହିଁ କି ? ❑

# ଜଗତୀକରଣ ଓ ସାଧାରଣ ମଣିଷଙ୍କ ସ୍ୱାସ୍ଥ୍ୟ

(୧)

ଅନୁନ୍ନତ ଆଦିବାସୀ ଅଞ୍ଚଳରେ ହେଉ ବା ଉନ୍ନତ ଅଣଆଦିବାସୀ ଅଞ୍ଚଳର ହେଉ ବିଭିନ୍ନ ପ୍ରକାର ରୋଗ-ମହାମାରୀ, ପୁଷ୍ଟିହୀନତା, ପ୍ରଦୂଷିତ ପରିବେଶ ବଢିବାରେ ଲାଗିଛି । ସବୁ ବିକାଶମୂଳକ କାର୍ଯ୍ୟକ୍ରମ ଏବଂ ବୈଜ୍ଞାନିକ ପଦ୍ଧତି ଅବଲମ୍ବନ କରି ଏକ ସୁସ୍ଥ ଏବଂ ନିରୋଗ ସମାଜ ଗଢିବାର ପ୍ରୟାସ ଯେମିତି ଅସମ୍ଭବ ଜଣାପଡୁଛି । ସାଧାରଣ ଗରୀବ ଲୋକଙ୍କର ଖାଦ୍ୟ ନିରାପତ୍ତା, ଆର୍ଥିକ ନିରାପତ୍ତା ଓ ଜୀବିକା ନିରାପତ୍ତା ସହ ସ୍ୱାସ୍ଥ୍ୟ ନିରାପତ୍ତା ମଧ୍ୟ ବିପନ୍ନ ହୋଇ ସାରିଛି । ଏଇ ଲେଖକ ବିଭିନ୍ନ ଅଞ୍ଚଳକୁ ଯାଇ ସ୍ୱାସ୍ଥ୍ୟ ସେବା କିପରି ଚାଲିଛି ତାହା ଅଧ୍ୟୟନ କରିବାକୁ ଚେଷ୍ଟା କରିଛି । ଯାହା ଜଣାପଡିଛି ସେଥିରୁ ସ୍ୱାସ୍ଥ୍ୟର ସାଂପ୍ରତିକ ସ୍ଥିତି ଏବଂ ପ୍ରଗତି କେଉଁଭଳି ଅଛି ତାହା ଜାଣି ହେଉଛି । ସାଧାରଣ ରୋଗ ହେଉ ବା ସାଂଘାତିକ ବେମାରି ହେଉ ସାଧାରଣ ଲୋକଟି ଡାକ୍ତରଖାନା ଓ ସ୍ୱାସ୍ଥ୍ୟକେନ୍ଦ୍ରକୁ ଗଲେ ଔଷଧ ନପାଇ ଲମ୍ବା ଔଷଧ ତାଲିକା ପାଉଛି । ଔଷଧ ତାଲିକା ଧରି ଯେତେବେଳେ ରୋଗୀ ଓ ତାର ପରିବାର ଔଷଧ ଦୋକାନକୁ ଆସୁଛି ଔଷଧ ଦର ଦେଖି ମୁଣ୍ଡରେ ହାତ ରଖୁଛି । ସାମାନ୍ୟ ରୋଗପାଇଁ ଏକ ଅସମାନ୍ୟ ଓ ଅପହଞ୍ଚମୂଲ୍ୟର ଜାଣିବା ପରେ କେତେ ରୋଗୀ ମରିବାକୁ ଶ୍ରେୟସ୍କର ମନେକରୁଛନ୍ତି । ତେଣୁ ସାଧାରଣ ଲୋକଙ୍କ ପାଇଁ ସରକାରୀ ସ୍ୱାସ୍ଥ୍ୟ ସେବା ଆଜି ନିଷ୍କ୍ରିୟ ତଥା ଅପାରଗ, ସାରା ପୃଥିବୀରେ ଏକ ଉଦାହରଣ ହୋଇଯାଇଛି । ଅଳ୍ପ କିଛି ଖର୍ଚ୍ଚରେ କେତେ ମୂଲ୍ୟବାନ ଜୀବନ ରକ୍ଷା ହୁଅନ୍ତା ଜାଣି ଦୁଃଖ ଲାଗୁଛି । ଅନ୍ୟପକ୍ଷରେ ପଶ୍ଚିମ ବିକଶିତ ଦେଶମାନଙ୍କ ଭଳି ଘରୋଇ ସ୍ୱାସ୍ଥ୍ୟସେବା ଓ ବଡବଡ ହସ୍ପିଟାଲ ଓ ଗବେଷଣା କେନ୍ଦ୍ର ଦକ୍ଷିଣ ଦେଶମାନଙ୍କରେ ଛତୁ ଫୁଟିଲାଭଳି ଜନ୍ମ ନେଉଛନ୍ତି । ସାଧାରଣ ଅର୍ଥରେ ବୁଝିବାକୁ ଗଲେ ଯାହାର ଅର୍ଥ ବଳ ଅଛି ସେ କେବଳ ଉତ୍ତମ ସ୍ୱାସ୍ଥ୍ୟସେବା ପାଇପାରିବେ । ଯିଏ ଗରୀବ ଓ ଆର୍ଥିକ ଦୃଷ୍ଟିରେ ଅସହାୟ ଓ ଦୁର୍ବଳ ସେ ରୋଗବେମାରରେ ଆକ୍ରାନ୍ତ ହେଲେ ମୃତ୍ୟୁ ନିଶ୍ଚିତ ବୋଲି ମାନିବାକୁ ହେବ । ଏସବୁ ମୋଟାମୋଟିଭାବେ ଜଗତୀକରଣ ପ୍ରଭାବ ଓ ପ୍ରତିକ୍ରିୟା ବୋଲି ପ୍ରମାଣିତ

ହେଉନାହିଁ କି ? ସ୍ୱାସ୍ଥ୍ୟ ନିରାପତ୍ତା ଦୃଷ୍ଟିରୁ କିଛି ଲୋକ ସୁସ୍ଥ ଓ ନିରୋଗ ରହିବେ ଏବଂ ବହୁ ଲୋକ ଅସୁସ୍ଥ ଓ ରୋଗଗ୍ରସ୍ତ ହେବେ-ଏହା ଜଗତୀକରଣର ଭୟାନକ ଅବଦାନ ନୁହେଁକ କି ?

ସାରାପୃଥିବୀରେ ତିନୋଟି ରୋଗ ମହାମାରୀ ଭଳି ବ୍ୟାପିବାରେ ଲାଗିଛି ପ୍ରଥମଟି ହେଲା ମ୍ୟାଲେରିଆ, ଦିତ୍ୱୀୟଟି ଯକ୍ଷ୍ମା ଓ ତୃତୀୟଟି ହେଉଛି ଏଡସ୍ (HIV/AIDS) । ପୃଥିବୀରେ ପ୍ରତିବର୍ଷ ପାଞ୍ଚ କୋଟି ଲୋକ ମ୍ୟାଲେରିଆ ଦ୍ୱାରା ଆକ୍ରାନ୍ତ ହୁଅନ୍ତି ଓ ପାଖାପାଖି ୩୦ ଲକ୍ଷ ଲୋକ ମୃତ୍ୟୁବରଣ କରିଥାନ୍ତି । ଯକ୍ଷ୍ମାରେ ପ୍ରତିବର୍ଷ ଭାରତବର୍ଷରେ ୨୦ଲକ୍ଷ ଲୋକେ ଆକ୍ରାନ୍ତ ହୋଇଛନ୍ତି ଓ ୫ ଲକ୍ଷ ଲୋକ ମରିଥାନ୍ତି । ସାରା ପୃଥିବୀରେ ଆସନ୍ତ ୩/୪ବର୍ଷ ଭିତରେ ପାଖାପାଖି ୮କୋଟି ଲୋକ ମୃତ୍ୟୁବରଣରେ ପଡିବେ । ବର୍ତ୍ତମାନ ଭୟଙ୍କର ଏଡସ (HIV/AIDS)ରେ ପାଖାପାଖି ୪କୋଟି ଲୋକ ଆକ୍ରାନ୍ତ ହୋଇଛନ୍ତି । ବର୍ତ୍ତମାନ ସୁଦ୍ଧା ଆଫ୍ରିକା, ଏସିଆ, ଆଦି ଅନୁନ୍ନତ ମହାଦେଶରେ କେତେକୋଟି ରୋଗଗ୍ରସ୍ତ ଲୋକ ମରିବାର ଆଶଙ୍କା ରହିଛି । ଭାରତକୁ ଲକ୍ଷ୍ୟକଲେ ଏଇ ତିନୋଟି ବେମାରୀର ମାତ୍ର କେତେ ବ୍ୟାପକ ତାହା ଜଣାପଡିବ । ଭାରତର ଏହାକୁ ଛାଡି ପୋଲିଓ, କୁଷ୍ଠ, ଫାଇଲେରିଆ, ଜଳବାହୀ ରୋଗ, ଶିଶୁ ମୃତ୍ୟୁହାର ଆଦି ରୋଗ ଏପରି ବଢିବାରେ ଲାଗିଛି । ଯେ ପ୍ରତିବର୍ଷ ବିକାଶ ସୂଚାଙ୍କ ତାଲିକାରେ ଭାରତର ସ୍ଥାନ କମିବାରେ ଲାଗିଛି । ୨୦୦୩ ମସିହାରେ ଭାରତର ସ୍ଥାନ ଥିଲା ୧୨୭ । ଭାରତର ଅନ୍ୟପ୍ରଦେଶକୁ ତୁଳନା କଲେ ଓଡ଼ିଶାର ସ୍ଥିତି ଏତେ ନିମ୍ନରେ ଅଛନ୍ତି ଯେ ନିନ୍ଦା ଓ ଗ୍ଲାନିରେ ସବୁ ଓଡ଼ିଶାକୁ ମର୍ମାହତ ହେବାକୁ ପଡିବ । ଲକ୍ଷେ ଜନସଂଖ୍ୟାରେ ଓଡ଼ିଶାରେ ମ୍ୟାଲେରିଆ ରୋଗୀ ଅଛନ୍ତି ୬୦୫୯୨ ଯାହା ସର୍ବଭାରତୀୟ କ୍ଷେତ୍ରରେ ହେଉଛି ୧୩୨୯୬ । ପ୍ରତି ଏକ ଲକ୍ଷ ଜନସଂଖ୍ୟାରେ ଯକ୍ଷ୍ମାରେ ଓଡ଼ିଶାରେ ଅଛନ୍ତି ୫୫୫ ଯାହା ସର୍ବଭାରତୀୟ କ୍ଷେତ୍ରରେ ହେଉଛି ୪୬୭ । ଓଡ଼ିଶାର ଶିଶୁ ମୃତ୍ୟୁହାର ସର୍ବଭାରତୀୟ କ୍ଷେତ୍ରରେ ହାରାହାରିଠାରୁ ଅନେକ ଉର୍ଦ୍ଧ୍ୱରେ ରହିଛି ।

ଜଗତୀକରଣ ଦ୍ୱାରା ସ୍ୱାସ୍ଥ୍ୟ ଉପରେ ୫ଟି ପ୍ରଭାବ ପଡିଛି ବୋଲି ବିଶ୍ଳେଷଣରୁ ଜଣାପଡିଛି । ପ୍ରଥମଟି ହେଲା ଆର୍ଥିକ ଅସମାନତା ବୃଦ୍ଧି, ଏହା ଫଳରେ ଜଗତୀକରଣ ପ୍ରକ୍ରିୟାଦ୍ୱାରା ଗରୀବଙ୍କ ଆର୍ଥିକ ସ୍ତର ଦୃତ ଗତିରେ କମିବାର

ଲାଗିଛି ଏବଂ ଯାହା ଜାତିଜାତି, ଦେଶଦେଶ ମଧ୍ୟରେ ପରିଲକ୍ଷିତ ହେଉଛି । ଏହା ସ୍ୱାସ୍ଥ୍ୟ ସେବା କ୍ଷେତ୍ରକୁ ମଧ୍ୟ ପ୍ରସାରିତ ହୋଇଛି । ବିଦେଶୀ କମ୍ପାନୀମାନେ ସାରାପୃଥିବୀର ସ୍ୱାସ୍ଥ୍ୟକ୍ଷେତ୍ରରେ ବିଦେଶୀ ପୁଞ୍ଜି ଲଗାଇଛନ୍ତି । ଘରୋଇ ହସ୍ପିଟାଲ ଓ କ୍ଲିନିକ୍ ପ୍ରତିଷ୍ଠା କରିଛନ୍ତି । ସ୍ୱାସ୍ଥ୍ୟ କ୍ଷେତ୍ରରେ ଯେଉଁଭଳି ବୀମା କରିବା କଥା ଉଠୁଛି ତାହା ମଧ୍ୟ ବହୁରାଷ୍ଟ୍ରୀୟ କମ୍ପାନୀଦ୍ୱାରା ନିୟନ୍ତ୍ରିତ ହୋଇଛି । ଏହାଛଡ଼ା ଯେଉଁ ଡାକ୍ତରମାନେ ପେଶାଦାରଭାବେ ଉତ୍ସର୍ଗୀକୃତ ଏବଂ ନିପୁଣ ସେମାନେ ସେବା ମନୋବୃତ୍ତି ଛାଡି ବ୍ୟବସାୟିକ ସ୍ୱାର୍ଥ କାର୍ଯ୍ୟରେ ନିଜକୁ ନିୟୋଜିତ କରୁଛନ୍ତି । ଏବେ ଯଦି ଘରୋଇ ହସ୍ପିଟାଲ ଓ କ୍ଲିନିକ୍‌ରେ ଦେଖାଯିବ ସବୁଠାରୁ ଖ୍ୟାତନାମା ଓ ଅଭିଜ୍ଞ ଡାକ୍ତରମାନେ ସେମାନଙ୍କ ବେତନ ପତ୍ରକରେ ଅଛନ୍ତି ।

ଜଗତୀକରଣର ସ୍ୱାସ୍ଥ୍ୟ କ୍ଷେତ୍ରରେ ଦ୍ୱିତୀୟ ପ୍ରଭାବ ହେଲା ଜୀବନରକ୍ଷାକାରୀ ଔଷଧର ମୂଲ୍ୟବୃଦ୍ଧି । ଯେଉଁ ବାବଦରେ ପ୍ୟାଟେଣ୍ଟକ୍‌ରଣ କରାଯାଇଛି ସେଥିରେ କେତେଟା ବାହାର କମ୍ପାନୀଙ୍କର ବନଔଷଧ ପ୍ରସ୍ତୁତ ପ୍ରଣାଳୀ ଏବଂ ଔଷଧ ତିଆରି କରିବାର ଜ୍ଞାନବିଜ୍ଞାନ ଉପରେ ନିୟନ୍ତ୍ରଣ କରୁଛି । ଦକ୍ଷିଣ ଦେଶମାନଙ୍କରୁ ବିଶେଷକରି ଆଦିବାସୀ ଅଞ୍ଚଳରୁ ଅତି ଶସ୍ତାରେ କଞ୍ଚାମାଲ ଓ ବନୌଷଧି ନେଇ ଓ ତାହାର ପ୍ରକ୍ରିୟାକରଣ କରି ବହୁରାଷ୍ଟ୍ରୀୟ କମ୍ପାନୀମାନେ ବିଭିନ୍ନ ଔଷଧଗୁଡିକୁ ମାତ୍ରାଧିକଭାବେ ବିକିବାରେ ଲାଗିଛନ୍ତି । ଏହାଦ୍ୱାରା ଦେଶରୁ ଉତ୍ପାଦିତ ହେଉଥିବା ବିଭିନ୍ନ ଔଷଧକୁ ବଜାରର ବିଲୁପ୍ତ କରିବାରେ ସକ୍ଷମ ହୋଇଛନ୍ତି । ଔଷଧ କମ୍ପାନୀମାନଙ୍କର ପ୍ରତିନିଧିମାନେ ଏପରି ଭାଷାରେ, ଏପରି ଢଙ୍ଗରେ ତଥା ବିଜ୍ଞାପନ ଜରିଆରେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଔଷଧ ଫଳପ୍ରଦ ବୋଲି ପ୍ରଚାର କରୁଛନ୍ତି ଯେ ସାଧାରଣ ଲୋକଙ୍କ ବିଶ୍ୱାସ ହେଉଛି ବିଦେଶୀ ଔଷଧର ଗୁଣବତ୍ତା ଅଛି ଏବଂ ଯେତେ ରୋଗ ସାଂଘାତିକ ହେଉ ସେଥିରେ ସୁସ୍ଥ ହେବା ସମ୍ଭବ । ତେଣୁ ଦେଶୀ ତିଆରି ଔଷଧରେ କୌଣସି ବାଟେ ମଣିଷକୁ ସୁସ୍ଥ କରିହେବ ନାହିଁ ବୋଲି ଧାରଣା ସୃଷ୍ଟି କରିଛି । ତେଣୁ ଅତି ସହଜରେ ବହୁରାଷ୍ଟ୍ରୀୟ ଔଷଧ କମ୍ପାନୀଗୁଡିକର ବଜାର ଏବେ ଏଦେଶର ପୁରପଲ୍ଲୀକୁ ବିସ୍ତାରିତ ହୋଇଛି । ଫାଇଜର, ଡୁପଣ୍ଟ, ଶିବା ଆଦି କମ୍ପାନୀଗୁଡିକ ନାମ ବର୍ତ୍ତମାନ୍ ଘରେ ଘରେ ଶୁଣାଯାଇଛି । ସେମାନଙ୍କ ଛଡା ଉପଭୋକ୍ତାମାନଙ୍କର ଯେମିତି ଅନ୍ୟବାଟ ନାହିଁ । ଘରୋଇ ଚିକିତ୍ସା, ଆର୍ଯ୍ୟୁର୍ବେଦ,

ହୋମିଓପାଥି, ଉନାନୀଭଳି ସୁଲଭ ଚିକିତ୍ସା ଆଉ ସାଧାରଣ ଲୋକଙ୍କ ବିଶ୍ୱାସ ଭାଜନ ହେଉନାହିଁ । ଆଦିବାସୀମାନେ ସେମାନଙ୍କର ଯେଉଁ ଏକ ସ୍ୱତନ୍ତ୍ର ଔଷଧଜ୍ଞାନ ପୁରୁଷ ପୁରୁଷ ଧରି ଦିସାରୀ ଓ ବୈଦ୍ୟମାନଙ୍କ ସହାୟତାରେ ବ୍ୟବହାର କରୁଥିଲେ ତାହା ଆଜି ଯେମିତି ଲୁପ୍ତପ୍ରାୟ । ଯେଉଁ ରୋଗ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଦ୍ୱାରା ବ୍ୟାପୁଛି ସେମାନଙ୍କ ଦ୍ୱାରା ନିର୍ମିତ ଔଷଧରେ ସେ ରୋଗ ଯେମିତି ଭଲ ହେଉଛି !

ତୃତୀୟ ପ୍ରଭାବଟି ହେଲା ଜଗତୀକରଣ ପ୍ରକ୍ରିୟାରେ ସ୍ୱାସ୍ଥ୍ୟକ୍ଷେତ୍ରରେ ଅସମାନତା ଅସାମାନ୍ୟଭାବେ ବଢ଼ି ଚାଲିଛି । ଯେ କୌଣସି ବିକାଶଶୀଳ ବା ଅନୁନ୍ନତ ଦେଶର ଉଦାହରଣ ନିଆଗଲେ ଏକଥା ସହଜରେ ଜଣା ପଡିବ । ସ୍ୱାସ୍ଥ୍ୟ ବ୍ୟବସ୍ଥା ଯେମିତି ଦୁର୍ବଳ; ଗୁଣଯୁକ୍ତ, ଔଷଧ ସେମିତି ବିରଳ । ଫଳସ୍ୱରୂପ ନୂଆନୂଆ ରୋଗର ଆର୍ବିଭାବ ହେଉଛି ଓ ଦୁର୍ବଳ ଏବଂ ଦରିଦ୍ରମାନଙ୍କୁ ଏଥିର ଶିକାର ହେବାକୁ ପଡୁଛି । ଯେଉଁ ରୋଗ ନିୟନ୍ତ୍ରିତ ହେଲା ବୋଲି ସ୍ୱୀକାର କରାଯାଉଥିଲା ତାହା ପୁନର୍ବାର ଅତି ଭୟଙ୍କର ଭାବେ ପୁର୍ନଜନ୍ମ ନେଉଛି । ମ୍ୟାଲେରିଆ, ଯକ୍ଷ୍ମା, ଡେଙ୍ଗୁ, ପ୍ଲେଗ ଆଦି ମହାମାରୀ ସମ୍ପୂର୍ଣ୍ଣ ନିୟନ୍ତ୍ରଣ କରାଯାଇଛି ବୋଲି ବିକଶିତ ଦେଶମାନେ ଯେଉଁ ଦାବୀ କରି ଆସୁଥିଲେ ତାହା ଅଚାନକ ମିଥ୍ୟା ବୋଲି ପ୍ରମାଣିତ ହୋଇଛି । ଏବେ 'ବାର୍ଡ ଫ୍ଳୁ' ନାମକ ଏକ ଭୟଙ୍କର ରୋଗ ପୃଥିବୀବାସୀଙ୍କୁ ଭୟଭୀତ କରି ରଖିଛି । ପୃଥିବୀର ଯେଉଁ ୨୦ପ୍ରତିଶତ ସବୁଠାରୁ ଗରିବ, ସେମାନେ ମଧ୍ୟ ଏସବୁ ରୋଗର ପ୍ରଥମ ଶୀକାର ବୋଲି ଗଣାଯାଉଛି ।

ଜଗତୀକରଣର ଚତୁର୍ଥ ପ୍ରଭାବ ହେଲା "ଟେଲିମେଡିସିନ୍"ର ପ୍ରଭାବ । ଗୋଟାଏ ଇଲାକାରେ ଜଣେ ବ୍ୟବସାୟୀ ବା ଉଦ୍ୟୋଗପତି ଏକ "ଟେଲିମେଡିସିନ୍ ସେଣ୍ଟର୍" ଖୋଲି ଗ୍ରାହକମାନଙ୍କୁ ଆକୃଷ୍ଟ କରିବ । ଏଥିରେ ସବୁ ଯନ୍ତ୍ରପାତି ଥିବ ଓ ଶଲ୍ୟ ଚିକିତ୍ସା ଏବଂ ଅପରେସନ୍ ପାଇଁ ବ୍ୟବସ୍ଥା ଥିବ । ସ୍ଥାନୀୟ ଅନୁସନ୍ଧାନ ଓ ଡାଇଗ୍ନୋସିସ୍ ପରେ କେତେ ଶହ ବା ହଜାର କିଲୋମିଟର ଦୂରରେ ଥିବା "ସୁପର ସ୍ପେସିଆଲିଷ୍ଟ" ଡାକ୍ତରଙ୍କୁ ପରାମର୍ଶ କରାଯାଇପାରିବ । ଏହା ସମ୍ଭବ ହୋଇପାରିବ, ଉତ୍ତମ ଏବଂ ଆଧୁନିକ ଇଲେକ୍‌ଟ୍ରୋନିକ୍ ସଂଚାର ପଦ୍ଧତି ଦ୍ୱାରା । କିନ୍ତୁ ଏଭଳି 'ଟେଲିମେଡିସିନ୍ ସେଣ୍ଟର୍' ମାନଙ୍କର ପ୍ରସାର ବ୍ୟାପକ ହେଲେ ଅନେକ ମୌଳିକ ପ୍ରଶ୍ନ ଉଠିବ । ପ୍ରଥମେ ଏକ ନୈତିକ ପ୍ରଶ୍ନ ଆସିବ ଯେ ଏଭଳି ଚିକିତ୍ସା କରିବା

ଠିକ୍ କି ? ଦ୍ୱିତୀୟରେ ରୋଗୀର ଗୋପନୀୟତା କ୍ଷୁର୍ଣ୍ଣ ହେବ । ତୃତୀୟରେ ଏହା ଖର୍ଚ୍ଚ ବହୁଳ ମଧ୍ୟ ହେବ ଯାହା ସାଧାରଣ ଲୋକଙ୍କ ସୀମା ବାହାରେ ରହିବ । ଇଣ୍ଟରନେଟ୍ ଜରିଆରେ ଚିକିତ୍ସା କରିହେବ ସତ ତାହା ସାର୍ବଜନୀନ ହେବା ଏକ ଦୁରୁହ ବ୍ୟାପର ହୋଇ ପଡିବ ।

ଶେଷରେ ଜଗତୀକରଣର ପଞ୍ଚମ ପ୍ରଭାବଟି ହେଉଛି ସେବା ସ୍ୱାସ୍ଥ୍ୟ ପାଇଁ ରାଷ୍ଟ୍ରର ଭୂମିକା । ବାସ୍ତବକ୍ଷେତ୍ରରେ ଦେଖାଯାଉଛି ଯେ ରାଷ୍ଟ୍ର ଏହାର ନାଗରିକଙ୍କ ଉତ୍ତମ ସ୍ୱାସ୍ଥ୍ୟ ପାଇଁ ଆବଶ୍ୟକ ପଦକ୍ଷେପ ନେବାକୁ ଅସମର୍ଥ । କର୍ପୋରେଟ୍‌ମାନେ ସ୍ୱାସ୍ଥ୍ୟକ୍ଷେତ୍ରକୁ ଅବତୀର୍ଣ୍ଣ କେତେବର୍ଷରୁ ହୋଇ ସାରିଲେଣି । ରାଷ୍ଟ୍ରର ଦାୟିତ୍ୱ ଯାହା ଥିଲା, ଏବେ ତାହା ଘରୋଇ କମ୍ପାନୀ ବା ଅଣସରକାରୀ ସଂସ୍ଥାମାନଙ୍କୁ ନ୍ୟସ୍ତ କରାଯାଇ ସାରିଲାଣି । ଠିକାଦାରମାନଙ୍କୁ ବା ପେଶାଦାରମାନଙ୍କୁ ବହୁକ୍ଷେତ୍ରରେ ବିନିଯୋଗ କରାଯାଇ ସ୍ୱାସ୍ଥ୍ୟସେବାକୁ ତ୍ୱରାନ୍ୱିତ କରାଯିବା ଦ୍ୱାରା ରାଷ୍ଟ୍ର ବା ସରକାରଙ୍କ ଭୂମିକା ସଙ୍କୁଚିତ ହେବାକୁ ଲାଗିଛି । 'ପବ୍ଲିକ୍-ପ୍ରାଇଭେଟ୍ ପାର୍ଟନରସିପ୍' ଏବେ ସ୍ୱାସ୍ଥ୍ୟକ୍ଷେତ୍ରକୁ ବେଶ୍ ସମ୍ପ୍ରସାରିତ ହୋଇସାରିଛି । କିନ୍ତୁ ଏହା ଲୋକଙ୍କର ଅସଲ ସ୍ୱାସ୍ଥ୍ୟ ସମସ୍ୟା ସମାଧାନର ପଥ ଉନ୍ମୁକ୍ତ କରୁଛି କି ନାହିଁ ଅନେକ ପ୍ରଶ୍ନ ଉଠାଯାଉଛି ।

ସ୍ୱାଧୀନତା ପରଠାରୁ ଏଦେଶର ସ୍ୱାସ୍ଥ୍ୟବ୍ୟବସ୍ଥାରେ ଯେଉଁ ଅବନୀତି ହୋଇଛି ତାହାର ସଂକ୍ଷିପ୍ତ ସାରାଂଶ ହେଲା ଜାତୀୟ ସ୍ତରରେ କ୍ରିୟାନ୍ୱିତ ହେଉଥିବା ଅନେକ ସ୍ୱାସ୍ଥ୍ୟ ଯୋଜନା ବର୍ତ୍ତମାନ ବନ୍ଦ ହୋଇଯାଇଛି । ଏହା ଫଳରେ ନିଃଶୁଳ୍କ ମୌଳିକ ସ୍ୱାସ୍ଥ୍ୟସେବାର ପରିସର ଦ୍ରୁତବେଗରେ ସଙ୍କୁଚିତ ହୋଇଛି । ଡାକ୍ତର ଓ ସ୍ୱାସ୍ଥ୍ୟକର୍ମଚାରୀମାନଙ୍କର ସଂଖ୍ୟା ମଧ୍ୟ ହ୍ରାସ ହୋଇଛି ସରକାରଙ୍କ ଦ୍ୱାର । ସ୍ୱାସ୍ଥ୍ୟବ୍ୟବସ୍ଥାର ଦ୍ରୁତ ଘରୋଇକରଣ ହେବାକୁ ଲାଗିଛି । ଗ୍ରାମାଞ୍ଚଳରେ ଗରୀବଙ୍କ ସ୍ୱାସ୍ଥ୍ୟ ଓ ଉନ୍ନୟନ ବୁଝିବା ପାଇଁ ସରକାର ଆଉ ଚିନ୍ତିତ ନୁହଁନ୍ତି । ସ୍ୱାସ୍ଥ୍ୟକୁ ଏକ ବ୍ୟବସାୟ ରୂପେ ସ୍ୱୀକାର କରାଯାଉଛି ଏବଂ ପୁଞ୍ଜି ବିନିଯୋଗ ପାଇଁ ଏହା ଅନ୍ୟ ଏକ ପ୍ରକୃଷ୍ଟ କ୍ଷେତ୍ରବୋଲି ବର୍ତ୍ତମାନ ପ୍ରମାଣିତ ହୋଇସାରିଛି । ନୂତନ ଅର୍ଥନୀତି ଲାଗୁ ହେବା ଦିନଠାରୁ ବିଶ୍ୱବ୍ୟାଙ୍କ ଭଳି ଅନୁଦାନକାରୀ ସଂସ୍ଥାମାନେ ଯେଉଁ ସେକ୍ଟର ରିଫର୍ମର ବୋଝ ଏ ଦେଶରେ ଲଦିଛନ୍ତି, ସେଥିରେ ଭୟାନକ ପରିସ୍ଥିତି ସୃଷ୍ଟି

ହୋଇଛି । ସରକାରଙ୍କ ଯୋଜନାରେ ଏବେ ବଜେଟ୍‌ରେ ସ୍ୱାସ୍ଥ୍ୟ ସେବାକୁ ଯଥେଷ୍ଟ ଗୁରୁତ୍ୱ ଦିଆଯାଉନାହିଁ । ଉପଭୋକ୍ତା ଓ ସେବା ଲାଭାନ୍ୱିତ ବ୍ୟକ୍ତିମାନଙ୍କୁ ସବୁକଥାରେ ଟଙ୍କାପଇସା ଫିସ୍ ଆକାରରେ ଦେବାକୁ ପଡୁଛି । ରୋଗମାନଙ୍କର ପ୍ରତିଷେଧକ ବ୍ୟବସ୍ଥା ଉପରେ ଜୋର୍ ଦିଆଯାଉଛି କିନ୍ତୁ ରୋଗ ହେଲେ କିପରି ଭଲହେବ ସେ ଉପରେ ପ୍ରାଧାନ୍ୟ ଦିଆଯାଉନାହିଁ । ସବୁଠାରୁ ଆଶ୍ଚର୍ଯ୍ୟ କଥା ବହୁ ସମସ୍ୟାରେ ପ୍ରପୀଡିତ ହେଉଥିବା ମ୍ୟାଲେରିଆ, ଯକ୍ଷ୍ମା ଓ କୁଷ୍ଠ ଆଦି ରୋଗଗୁଡ଼ିକୁ ଜନସଚେତନତା ଆଣିବା ପରିବର୍ତ୍ତେ ମଦ, ଧୂମପାନ, ନିଶାସେବନ ଓ ଏଡସ୍ ଭଳି ଗୌଣ ସମସ୍ୟା ଉପରେ ସରକାର ଓ ସ୍ୱାସ୍ଥ୍ୟନୀତି ଗୁରୁତ୍ୱ ଦେଉଛି ।

(୨)

ଗୋଟିଏ ବହି ଯାହା ସାରା ପୃଥିବୀରେ ଓଡିଆ ସମେତ ପ୍ରାୟ ସବୁ ଭାଷାରେ ଅନୁବାଦିନ ହୋଇ ଲୋକପ୍ରିୟ ହୋଇ ପାରିଛି ତାହାର ନାମ ହେଉଛି "ଯେଉଁଠାରେ ଡାକ୍ତର ନାହାଁନ୍ତି" (ହୋୟାର୍ ଦେୟାର୍ ଇଜ୍ ନୋ ଡକ୍ଟର୍) । ଡାଭିଡ୍ ୱେର୍ଣ୍ଣର ହେଉଛନ୍ତି ଏହାର ଲେଖକ । ସାଧାରଣ ସ୍ୱାସ୍ଥ୍ୟକୁ ବୁଝିବା ଓ ତାହାର ପ୍ରତିରୋଧ କରିବା ସହ ଆବଶ୍ୟକ ପଡିଲେ ଚିକିତ୍ସା କରିବା ହେଉଛି ଏ ବହିର ମୂଳତତ୍ତ୍ୱ । ଏହା ସହ ଆଉ ଗୋଟିଏ ବହି ପାଶ୍ଚାତ୍ୟ ଦେଶରେ ବହୁ ପରିମାଣର ବିକ୍ରୀ ହୋଇଛି, ଯାହାର ନାମ ହେଉଛି "ପୁନଃ ଆରୋଗ୍ୟ ଲାଭ"(ଗେଟିଙ୍ଗ୍ ୱେଲ୍ ଏଗେନ୍) । ଲେଖକ ହେଉଛନ୍ତି ସିମୋଣ୍ଟନ୍ ଦମ୍ପତି । ଉଭୟ ଡାକ୍ତର ଓ କ୍ୟାନ୍‌ସର ଭଳି ମହାବ୍ୟାଧିର ସଫଳ ଚିକିତ୍ସାର ଉପାୟମାନ ଏମାନେ ଉଲ୍ଲେଖ କରିଛନ୍ତି । ସବୁ ଦେଶ, ଜାତି ଓ ସଭ୍ୟତାରେ ସାଧାରଣ ରୋଗ ହେଉ ବା ମହାବ୍ୟାଧି ହେଉ ଚିକିତ୍ସା ଓ ରୋଗ ନିରାକରଣର ବାସ୍ତବଜ୍ଞାନ କୌଶଳ ରହିଆସିଅଛି । ତିବ୍‌ତୀୟମାନଙ୍କର ଚିକିତ୍ସା ହେଉ ବା ମେକ୍ସିକୋ ଦେଶର ଦେଶୀୟ ଔଷଧ ହେଉ, ଆଦିବାସୀମାନଙ୍କର ଚେରମୂଳୀ ଔଷଧ ହେଉ ବା ଆରବ ଦେଶର ଚିକିତ୍ସା ବିଜ୍ଞାନ ହେଉ, ସବୁ ଭିତରେ ନୂତନତ୍ୱ ଅଛି ଓ ନିଜସ୍ୱ ଶକ୍ତି ଓ ପ୍ରଭାବ ରହିଛି । ଏ ଲେଖକ ଦେଖିଛି ଯେ କନ୍ଧ ଦିସାରୀମାନେ ପକ୍ଷାଘାତ (ପାରାଲିସିସ୍) ଭଳି ରୋଗକୁ ଭଲ କରି ଦେଉଛନ୍ତି ଓ ପଙ୍ଗୁ ହୋଇଥିବା ବ୍ୟକ୍ତିମାନେ ପୁନଶ୍ଚ ଗିରିପର୍ବତ ଅତିକ୍ରମ କରିପାରୁଛନ୍ତି । କିନ୍ତୁ

ପ୍ରଶ୍ନ ଉଠୁଛି ଯେ ଏସବୁ ସତ୍ତ୍ୱେ ପୃଥିବୀରେ ରୋଗ ବେମାରୀ କାହିଁକି ବଢୁଛି ଓ କାହିଁକି ଲକ୍ଷ ଲକ୍ଷ ଲୋକ ମୃତ୍ୟୁ ମୁଖରେ ପଡୁଛନ୍ତି ? ଗଭୀର ଅନୁଧ୍ୟାନ କଲେ ଏହାର ଗୋଟିଏ ମାତ୍ର ଉତ୍ତର ଅଛି । ତାହା ହେଉଛି ଜଗତୀକରଣର କୁପ୍ରଭାବ ଦ୍ୱାରା ମୃତ୍ୟୁ ସଂଖ୍ୟା ବଢିବାରେ ଲାଗିଛି ।

ଆମେ ରୋଗବ୍ୟାଧିର ଇତିହାସ ଜାଣିବାକୁ ଚାହିଁଲେ ଜଗତୀକରଣର ଇତିହାସକୁ ବୁଝିବାକୁ ଆବଶ୍ୟକ ବୋଲି ସ୍ୱୀକାର କରିବା । ଆଜିକୁ ୫୦୦ରୁ ଅଧିକ ବର୍ଷ ପୂର୍ବେ ୧୪୯୨ ମସିହାରେ ଯେତେବେଳେ କଲମ୍ବସ୍ ଆମେରିକା ଆବିଷ୍କାର କରିଥିଲେ ତାହା ଥିଲା ଜଗତୀକରଣ ଇତିହାସର ଅଯମାରମ୍ଭ । ଆମେରିକା ଆବିଷ୍କାର ହେଲା ସତ, ସେଠାକର ଆଦିମ ଅଧିବାସୀ ଓ ଲୋହିତ ଭାରତୀୟମାନଙ୍କୁ ବିଭିନ୍ନ ରୋଗ ଇୟୁରୋପରୁ ଯାଇ ଆକ୍ରାନ୍ତ କରିଥିଲା ଏବଂ ହଜାର ହଜାର ଲୋକେ ବିନା ଚିକିତ୍ସାରେ ମୃତ୍ୟୁବରଣ କରିଥିଲେ । ସେହି ଦିନଠାରୁ ନିଗ୍ରୋମାନଙ୍କୁ ନେଇ ଯେଉଁ କ୍ରୀତଦାସର ବ୍ୟବସାୟ ଚାଲିଥିଲା, ସେଥିରେ ମଧ୍ୟ ବିଭିନ୍ନ ରୋଗ ସଂକ୍ରମିତ ହୋଇଥିଲା । ଏଇଭଳି ଇୟୁରୋପର ରୋଗ ଆମେରିକାକୁ ଓ ଆଫ୍ରିକାର ରୋଗ ଆମେରିକାକୁ ଓ ଆମେରିକାର ରୋଗ ସାରା ପୃଥିବୀକୁ କେତେ ପୁରୁଷ ମଧ୍ୟରେ ବ୍ୟାପିଥିଲା ଯାହା ଏବେ ସୁଦ୍ଧା ନିୟନ୍ତ୍ରଣ ହୋଇନାହିଁ ବରଂ ବଢିବାରେ ଲାଗିଛି । ଜଗତୀକରଣର ସର୍ବଶେଷ ଅବଦାନ ହେଉଛି ଜାଗତୀକ ଉଷ୍ଣତା ବୃଦ୍ଧି (ଗ୍ଲୋବାଲ୍ ୱାର୍ମିଂ) । ଏହା ଫଳରେ ରୋଗ ମହାମାରୀ ବ୍ୟାପକ ଭାବେ ପ୍ରସାରିତ ହେଉଛି । ମ୍ୟାଲେରିଆ ସଂକ୍ରମଣ ଏବେ ସୀମା ଟପିଛି ସାରା ବିଶ୍ୱରେ । ଡେଙ୍ଗୁଜ୍ୱର ମଧ୍ୟ ଅତି ଦ୍ରୁତଗତିରେ ପ୍ରସାରିତ ହେଉଛି । ଗ୍ଲୋବାଲ୍ ୱାର୍ମିଂ ଦ୍ୱାରା କେଉଁଠି ହେଉଛି ତ ବନ୍ୟା ଆଉ କେଉଁଠି ମରୁଡି । ହଇଜା, ବାର୍ଡ ଫ୍ଲୁ ଆଦି ମହାମାରୀ ଏକ ସଭ୍ୟତାକୁ ଧ୍ୱଂସ କରିବାର ଉପକ୍ରମ ସୃଷ୍ଟି କରିଛନ୍ତି । ଖାଲି ମଣିଷ ଆକ୍ରାନ୍ତ ହେଉନାହିଁ, ଗୃହପାଳିତ ପଶୁ ମଧ୍ୟ ରୋଗଗ୍ରସ୍ତ ହୋଇ ଲକ୍ଷ ଲକ୍ଷ ସଂଖ୍ୟାରେ ମରୁଛନ୍ତି ।

ଆମେ ସାରା ପୃଥିବୀର ସ୍ୱାସ୍ଥ୍ୟ ବ୍ୟବସ୍ଥାକୁ ଏକ ସମାଲୋଚନାତ୍ମକ ଦୃଷ୍ଟିରେ ଯଦି ଦେଖିବା, ଅନୁଭବ କରିବା ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଆଦି ସଂସ୍ଥାଗୁଡିକ ସେମାନଙ୍କର ପ୍ରଭାବ ହରାଇ ବସିଛନ୍ତି । ତାଙ୍କ ବଦଳରେ ବିଶ୍ୱ ବ୍ୟାଙ୍କ, ବିଶ୍ୱ

ବାଣିଜ୍ୟ ସଂଗଠନ, ବହୁରାଷ୍ଟ୍ରୀୟ କମ୍ପାନୀମାନେ ଏବେ ପ୍ରତ୍ୟେକ ଦେଶର ସ୍ୱାସ୍ଥ୍ୟନୀତି ନିର୍ଦ୍ଧାରଣ କରିଛନ୍ତି ଓ କେତେକ କ୍ଷେତ୍ରରେ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନର ଭୂମିକା ସମ୍ପୂର୍ଣ୍ଣ ବଦଳାଇ ଦେଉଛନ୍ତି । ଗୋଟିଏ ସାଧାରଣ ଉଦାହରଣ ନିଆଯାଉ । ବିଶ୍ୱ ସଂଗଠନ ଶିଶୁର ମାଆ ସ୍ତନ୍ୟପାନ ଉପରେ ଗୁରୁତ୍ୱ ଦେଇ ଶିଶୁ ଖାଦ୍ୟ ଓ ମାଆକ୍ଷୀରର ବିକଳ୍ପ ଉପରେ ଏକ ଆନ୍ତର୍ଜାତିକ ନୀତିନିୟମ ଜାରିକରିଥିଲା ୧୯୭୮ ମସିହାରେ । ଶିଶୁଖାଦ୍ୟକୁ ନେଇ ବ୍ୟବସାୟ କରୁଥିବା ବହୁରାଷ୍ଟ୍ରୀୟ କମ୍ପାନୀମାନେ ଏହାକୁ ବିରୋଧ କରିଥିଲେ ବେପାର ଓ ବାଣିଜ୍ୟ ଦୃଷ୍ଟିରୁ ଏବଂ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନକୁ ନଂପୁସକ ପ୍ରାୟ କରିଦେଇଥିଲେ । ଯୁକ୍ତରାଷ୍ଟ୍ର ଆମେରିକା ମଧ୍ୟ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନର ନୀତିକୁ ବିରୋଧ କରି ଆର୍ଥିକ ସାହାଯ୍ୟ ହ୍ରାସ କରିଥିଲା । ଧୂମପାନ କ୍ଷେତ୍ରରେ ଧୂଆଁପତ୍ର ବେପାରୀଙ୍କ ପତିଆରା ହେତୁ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ମଧ୍ୟ ପ୍ରାୟ ପ୍ରଭାବଶୂନ୍ୟ ହୋଇଯାଇଛି । ୧୯୭୯ ମସିହାରେ ଯେଉଁ ପ୍ରସିଦ୍ଧ ଆଲ୍‌ମା ଆଟା ଘୋଷଣାନାମା ଦ୍ୱାରା ସ୍ୱାସ୍ଥ୍ୟନୀତିର ଏକ ବୈପ୍ଳବିକ ପରିବର୍ତ୍ତନ ପରିକଳ୍ପନା କରାଯାଇଥିଲା, ଆଜି ତାହା ଏକ କପୋଳକଳ୍ପିତ କାହାଣୀ ବୋଲି ମନେ ହେଉଛି । ସ୍ୱାସ୍ଥ୍ୟ କ୍ଷେତ୍ରରେ ଯେଉଁ ସ୍ୱାବଲମ୍ବନଶୀଳତାର ସ୍ୱପ୍ନ ଦେଖି ହେଉଥିଲା, ତାହା ଧୂଳିସାତ୍ ହୋଇଯାଉଛି । ୨୦୦୦ ମସିହା ସୁଦ୍ଧା ସମସ୍ତଙ୍କ ପାଇଁ ଯେଉଁ ଉତ୍ତମ ସ୍ୱାସ୍ଥ୍ୟର ନକ୍‌ସା ଅଙ୍କା ଯାଇଥିଲା ଆଜିର ଦିନରେ ତାହା ସମ୍ପୂର୍ଣ୍ଣ ରଙ୍ଗହୀନ ହୋଇପଡିଛି । ସାରା ପୃଥିବୀରେ ବିଶେଷକରି ଗରୀବମାନଙ୍କ ଜୀବନମୃତ୍ୟୁ କ୍ଷେତ୍ରରେ ସ୍ୱାସ୍ଥ୍ୟନୀତି କ'ଣ ହେବ ତାହା ନିର୍ଦ୍ଧାରଣ କରୁଛନ୍ତି ବିଶ୍ୱବ୍ୟାଙ୍କ, ବିଶ୍ୱ ବାଣିଜ୍ୟ ସଂଗଠନ, ଫୋର୍ଡ ଫାଉଣ୍ଡେସନ୍ ଏବଂ ରକ୍‌ଫେଲର୍ ଫାଉଣ୍ଡେସନ୍ ଭଳି ସଂସ୍ଥାମାନେ, ଯେଉଁ ମାନେ ତୃତୀୟ ବିଶ୍ୱକୁ ସ୍ୱାସ୍ଥ୍ୟ ବିକାଶ କାର୍ଯ୍ୟକ୍ରମରେ ଆର୍ଥିକ ଅନୁଦାନ ଦେଇଛନ୍ତି । ଏହା ସହ ଚିନ୍ତାଧାରାରେ ମଧ୍ୟ ପରିବର୍ତ୍ତନ ଆଣିପାରୁଛନ୍ତି । ସେମାନେ ତୃତୀୟ ବିଶ୍ୱର ମୌଳିକ ସ୍ୱାସ୍ଥ୍ୟ ବ୍ୟବହାର ଢାଞ୍ଚାକୁ ବଦଳେଇ ଦେବାରେ ସକ୍ଷମ ହୋଇଛନ୍ତି । ଆମେ ବିଶେଷ କରି ଦୁଇଟି ସଂସ୍ଥା- ବିଶ୍ୱ ବାଣିଜ୍ୟ ସଂଗଠନ (ଡବ୍ଲ୍ୟୁ.ଟି.ଓ) ଏକ ବାଣିଜ୍ୟ ସମ୍ପର୍କୀତ ବୌଦ୍ଧିକ ସମ୍ପତ୍ତି ଅଧିକାର (ଟ୍ରିପସ୍) କିପରି ସାରା ପୃଥିବୀରେ ସ୍ୱାସ୍ଥ୍ୟ କ୍ଷେତ୍ରରେ ଜଗତୀକରଣ ପ୍ରକ୍ରିୟାକୁ କ୍ରିୟାନ୍ୱିତ କରିପାରିଛନ୍ତି ତାହା ଆଲୋଚନା କରିବା ।

ବିଶ୍ୱ ବାଣିଜ୍ୟ ସଂଗଠନ ୧୯୯୫ ମସିହାରେ ଜନ୍ମଲାଭ କରିଲା, ଗ୍ୟାଟ୍ ତାହାର କାର୍ଯ୍ୟକାଳ ସମ୍ପୂର୍ଣ୍ଣ କରିଲା ପରେ । ଏଥିରେ ମୁକ୍ତ ବେପାର ଓ ବଜାରକୁ ଗୁରୁତ୍ୱ ଦିଆଗଲା ଏବଂ କୌଣସି ଦେଶର ସ୍ୱାର୍ଥକୁ ଜଳାଞ୍ଜଳୀ ଦିଆଗଲା । ବେପାର ବଜାର ସହ ସେବା ଓ ଜ୍ଞାନ କୌଶଳର ବେପାର ବାଣିଜ୍ୟକୁ ଅନ୍ତର୍ଭୁକ୍ତ କରାଗଲା । ସବୁ ଦେଶର ଆଇନ୍ କାନୁନ୍‌କୁ ବିଶ୍ୱ ବାଣିଜ୍ୟ ସଂଗଠନର ସ୍ୱାର୍ଥରକ୍ଷା ପାଇଁ ପରିବର୍ତ୍ତନ କରାଯିବାକୁ ବାଧ୍ୟ କରାଗଲା । ବଜାରକୁ ପ୍ରାଥମିକତା ଦେଇ ସ୍ୱାସ୍ଥ୍ୟହାନୀ ହେଉଥିବା ଜିନିଷ ବିକାକିଣାକୁ ପ୍ରୋତ୍ସାହନ ଦିଆଗଲା । ହର୍‌ମୋନ୍‌ଯୁକ୍ତ ଗୋମାଂସ ବିରୁଦ୍ଧରେ ବିଶ୍ୱବ୍ୟାପୀ ଯେଉଁ ଆନ୍ଦୋଳନ ହୋଇଥିଲା ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ହିତ ପାଇଁ ତାହାକୁ ବିଶ୍ୱ ବାଣିଜ୍ୟ ସଂଗଠନ ଦବାଇ ପାରିଥିଲା । ସେହିଭଳି 'ଜେନେଟିକାଲ ମୋଡିଫାଏଡ ବିହନ' (Geneticall Modified) ଓ ଖାଦ୍ୟସାମଗ୍ରୀ ବିକାକିଣା କରିବାରେ ବିଶ୍ୱ ବାଣିଜ୍ୟ ସଂଗଠନ ଏକ ଅନୁକୂଳ ପରିବେଶ ସୃଷ୍ଟି କରିଥିଲା । କିନ୍ତୁ ଅସଲ କ୍ଷେତ୍ରରେ ଜି.ଏମ୍ ବିହନ ଓ ଖାଦ୍ୟଦ୍ରବ୍ୟ ସ୍ୱାସ୍ଥ୍ୟହାନୀ କରିବାର କାରଣ ହୋଇପାରେ ତାହା ପାଇଁ ସାଧାରଣରେ ତର୍କ ହେଲାନାହିଁ । ସେଇଭଳି ଡି:ଡି:ଟି: ମିଶ୍ରିତ ଖାଦ୍ୟ ଦ୍ରବ୍ୟର ବେପାର ଉପରେ ବିଶ୍ୱ ବାଣିଜ୍ୟ ସଂଗଠନ ନିର୍ଦ୍ଦିଷ୍ଟ ଭାବେ ନିଷେଧାଜ୍ଞା ଜାରି କରିଲା ନାହିଁ । ଆଉମଧ ଔଷଧ ବିକାକିଣାରେ ମଧ ଏ ସଂସ୍ଥା ଗୁରୁତ୍ୱର ପ୍ରଭାବ ବିସ୍ତାର କରିଥିଲା । ସାମଗ୍ରୀକ ଭାବେ କହିବାକୁ ଗଲେ ବିଶ୍ୱ ବାଣିଜ୍ୟ ସଂଗଠନ ଚାରୋଟି କ୍ଷେତ୍ରରେ ପ୍ରଭାବ ବିସ୍ତାର କରିଥିଲା । ସେଗୁଡିକ ହେଲା:-

କ) ସ୍ୱାସ୍ଥ୍ୟହାନୀ ହେଉଥିବା ଖାଦ୍ୟସାମଗ୍ରୀର ବିକାକିଣା ନିୟମ କୋହଳ କରିବା । (ଖ) ସ୍ୱାସ୍ଥ୍ୟହାନୀ ହେଉଥିବା ହର୍‌ମୋନ ଯୁକ୍ତ ଖାଦ୍ୟ ହେଉ ବା ଜି:ଏମ୍: ହେଉ ତାହାର ବାଣିଜ୍ୟକୁ ସୁରକ୍ଷା ଦେବା । (ଗ) ମାଆକ୍ଷୀର ବଦଳରେ କୃତ୍ରିମ ଶିଶୁ ଖାଦ୍ୟକୁ ପ୍ରୋତ୍ସାହନ ଦେବା । (ଘ) ବିଭିନ୍ନ ଜୀବନ ରକ୍ଷାକାରୀ ଔଷଧକୁ ନିୟନ୍ତ୍ରଣ କରିବା ।

ଟ୍ରିପ୍‌ସ (ବାଣିଜ୍ୟ ସମ୍ପର୍କିତ ବୌଦ୍ଧିକ ସମ୍ପତ୍ତିର ଅଧିକାର) ଚୁକ୍ତିନାମା ୧୯୯୫ ମସିହାରୁ ଲାଗୁ ହେଲାଣି ଏଥିରେ ୭ଟି ବୌଦ୍ଧିକ ସମ୍ପତ୍ତି ସମ୍ପର୍କରେ ସର୍ବନିମ୍ନମାନ ନିର୍ଦ୍ଧାରଣ କରାଯାଇଛି ସେଗୁଡିକ ହେଲା ଗ୍ରନ୍ଥ ସ୍ୱତ୍ତ୍ୱାଧିକାର (କପିରାଇଟ), ପଣ୍ୟ

ଚିହ୍ନ (ଟ୍ରେଡମାର୍କସ୍), ଭୌଗଳିକ ସ୍ଥିତି ବାଣିଜ୍ୟ ନକ୍‌ସା, ବେପାର ସମ୍ବନ୍ଧୀୟ ଗୋପନ ତଥ୍ୟ ଓ ପ୍ୟାଟେଣ୍ଟ୍ ଗୁଡିକ ହେଲା ଏଥିରେ ଔଷଧ ତିଆରି ଭଳି ଚୁକ୍ତିରେ ଗୁରୁତ୍ୱପୂର୍ଣ୍ଣ ବିଷୟ ସଂପୃକ୍ତ ହୋଇଛି । ଏହାର ପ୍ରଭାବରେ ଔଷଧ କ୍ଷେତ୍ରରେ ବୈଷୟିକ ଜ୍ଞାନକୌଶଳ, ବିଦେଶୀ ପୁଞ୍ଜି ନିବେଶ ଓ ଗବେଷଣା କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ । ବିକଶିତ ଦେଶମାନେ ଏବଂ ବହୁରାଷ୍ଟ୍ରୀୟ କମ୍ପାନୀମାନେ ପୁଞ୍ଜି ବିନିଯୋଗ ଓ ଉନ୍ନତମାନର ଗବେଷଣା ଦ୍ୱାରା ଅନେକ ଜ୍ଞାନର ବୌଦ୍ଧିକ ସମ୍ପତ୍ତିର ମାଲିକାନା ନିଜର ନିୟନ୍ତ୍ରଣକୁ ନେଇ ସାରିଲେଣି । ଏପରିକି ଅନେକ କେତୋଟି ଦେଶରେ ୯୭% ଭାଗର ପ୍ୟାଟେଣ୍ଟ୍ ଅଧିକାରକୁ ନିୟନ୍ତ୍ରଣରେ ରଖାଯାଇଛି ।

ଟ୍ରିପସ୍‌ର ଯେତେ ପ୍ରକାର କୁପ୍ରଭାବ ତୃତୀୟ ବିଶ୍ୱରେ ପଡିବ ସେ ସବୁକୁ ସାଧାରଣ ଲୋକେ ଜାଣିବା, ବୁଝିବା ଓ ମୁକାବିଲା କରିବା ଏକ କଷ୍ଟକର ବ୍ୟାପାର । ବୌଦ୍ଧିକ ସ୍ତରରେ ଯଦି ମାଲିକାନା ବା ଏକାଧିପତ୍ୟକୁ ସ୍ୱୀକାର କରିବା ଅପରିହାର୍ଯ୍ୟ ହୋଇପଡେ, ତେବେ କେତେ ଲୋକ ନିଶ୍ଚିତ ଭାବେ ଅନ୍ୟମାନଙ୍କ ଉପରେ ନିଜର ବାହୁବଳ ପ୍ରଦର୍ଶନ କରିବେ । ଏହାର ଅର୍ଥହେଲା ଯେ ଟ୍ରିପସ୍ ଯୋଗୁଁ କିଛି କମ୍ପାନୀ ଔଷଧ ତିଆରି କରିବାର ଓ ବିକିବାର ସମ୍ପୂର୍ଣ୍ଣ ଅଧିକାର ପାଇବେ । ଏହା ଯଦି ସେମାନେ ପ୍ୟାଟେଣ୍ଟ୍ କରିଦିଅନ୍ତେ ତେବେ ତାହା ସେମାନଙ୍କର ଏକଚାଟିଆ କର୍ତ୍ତୃତ୍ୱ ରହିବ । ଫଳତଃ ଔଷଧର ମୂଲ୍ୟ ସେମାନେ ଇଚ୍ଛାମୁତାବକ ବଢାଇବେ ଓ ଅନ୍ୟମାନଙ୍କୁ କିଣିବାକୁ ବାଧ କରିବେ । ଆଉ ଏକ ପ୍ରଭାବ ପଡିବ ଯେ କେତେଗୁଡିଏ ଅତ୍ୟାବଶ୍ୟକ ଓ ଜୀବନ ରକ୍ଷାକାରୀ ଔଷଧ ସାଧାରଣ ଲୋକଙ୍କ ପାଖକୁ ଆସିବ ନାହିଁ । ଔଷଧ ତିଆରି ହେବ ନୂତନ ଗବେଷଣା ଓ ବୈଷୟିକ ଜ୍ଞାନକୌଶଳ ପାଇଁ ଏବଂ ଗବେଷଣା ସାଧାରଣ ଲୋକଙ୍କ ହିତରେ ନହୋଇ ବଜାର ଓ ବେପାର ଦ୍ୱାରା ନିୟନ୍ତ୍ରୀତ ହେବ । ଅତ୍ୟାବଶ୍ୟକ ଔଷଧଗୁଡିକ ଆନ୍ତର୍ଜାତିକ ବଜାରରୁ ଖରିଦ୍ ପାଇଁ ତୃତୀୟ ବିଶ୍ୱର ଦେଶମାନଙ୍କୁ ଅନେକ ଖର୍ଚ୍ଚ କରିବାକୁ ହେବ । ସାଧାରଣତଃ ଯେଉଁ କମ୍ପାନୀମାନେ ଅତ୍ୟାବଶ୍ୟକ ଔଷଧ ତିଆରି କରନ୍ତି ଟ୍ରିପସ୍ ସେମାନଙ୍କୁ ୨୦ବର୍ଷ ପାଇଁ ଅନୁମତି ପତ୍ର (ଲାଇସେନ୍‌ସ) ଦେଇଥାଏ । ଏହାର ଅର୍ଥ ହେଲା, କୋଡିଏ ବର୍ଷଧରି ଗୋଟାଏ ଔଷଧ କମ୍ପାନୀର ଏକଚାଟିଆ ବେପାର ଲାଗି ରହିବ । ତୃତୀୟ ବିଶ୍ୱରେ ରୋଗୀମାନେ ସୁଲଭ ଦରରେ ଔଷଧ

ପାଇବା ପାଇଁ କୋଡିଏ ବର୍ଷ .ଅପେକ୍ଷା କରିପାରିବେ ନାହିଁ କାରଣ ସେମାନେ ସମ୍ଭବତଃ ସେ ଭିତରେ ମୃତ୍ୟୁ ମୁଖରେ ପଡିଥିବେ । ସାଧାରଣ ମଣିଷଙ୍କ ସ୍ୱାସ୍ଥ୍ୟ ଓ ଜୀବନକୁ ନେଇ କିପରି ରାଜନୀତି ଚାଲିଛି ଏହା ଭାବିଲେ ସମସ୍ତଙ୍କର ମନୋଭାବ ତିକ୍ତ ଓ ଉଗ୍ର ହେବ । ହେବ ନାହିଁ କି ?

## (୩)

ଆମ ଦେଶରେ ସ୍ୱାସ୍ଥ୍ୟ ବ୍ୟବସ୍ଥା, ଔଷଧପତ୍ରର ତିଆରି ଓ ବିକାକିଣା ଏବଂ ପ୍ୟାଟେଣ୍ଟ୍ ପ୍ରକ୍ରିୟାକୁ ବୁଝିବାକୁ ଚେଷ୍ଟା କଲେ ଟ୍ରିପ୍‌ସ୍‌କୁ ବୁଝିବା ନିତ୍ୟାନ୍ତ ଆବଶ୍ୟକ । ବାଣିଜ୍ୟ ସମ୍ପର୍କୀତ ବୌଦ୍ଧିକ ସମ୍ପତ୍ତି ଅଧିକାର (ଟ୍ରିପ୍‌ସ୍) ଲାଗୁ ହେବା ପୂର୍ବରୁ ଭାରତରେ ଇଣ୍ଡିଆନ୍ ପ୍ୟାଟେଣ୍ଟ୍ ଆକ୍ଟ (ଭାରତୀୟ ପ୍ୟାଟେଣ୍ଟ ଆଇନ) ୧୮୫୬ ମସିହାରୁ ଲାଗୁ ହୋଇଆସୁଛି । ଯଦିଓ ସମୟକ୍ରମେ ଏହାର ପରିବର୍ତ୍ତନ ହୋଇଛି ଓ ପରିଭାଷା ବଦଳିଛି, କିନ୍ତୁ ତାହା ୧୯୭୦ ମସିହାରେ ଶିଳ୍ପକୁ ସୁହାଇଲା ଭଳି ହୋଇଛି । କିନ୍ତୁ ଏହାର ଅର୍ଥ ନୁହେଁ ଯେ ସାଧାରଣ ମଣିଷଙ୍କ ସ୍ୱାର୍ଥକୁ ଜଳାଞ୍ଜଳି ଦିଆଯାଇଛି । ପ୍ୟାଟେଣ୍ଟ୍ ଆକ୍ଟର ବ୍ୟବସ୍ଥା ଅନୁସାରେ କେତେକ ନିୟମ କାନୁନ୍ ପ୍ୟାଟେଣ୍ଟ ଦାବୀ କରୁଥିବା ଲୋକଙ୍କୁ ମାନିବାକୁ ପଡିବ ଓ ବାର୍ଷିକ ଦେୟ ମଧ ଦେବାକୁ ହେବ । କିନ୍ତୁ ଅନେକ ବ୍ୟକ୍ତି ବା ବ୍ୟବସାୟିକ ପ୍ରତିଷ୍ଠାନ ଏହାକୁ ମାନୁ ନଥିଲେ । ଫଳରେ ୧୯୯୫ ମସିହାରେ ୩୦ହଜାର ପ୍ୟାଟେଣ୍ଟ୍ ହ୍ରାସ ପାଇ ଚାରି ହଜାରରେ ପହଞ୍ଚିଲା । କିନ୍ତୁ ପରବର୍ତ୍ତୀ ବର୍ଷମାନଙ୍କରେ ତାହ ପୁଣି ବଢିଲା ଓ ବିଦେଶୀ କମ୍ପାନୀ ତଥା ବ୍ୟକ୍ତିମାନେ ଭାରତରେ ପ୍ୟାଟେଣ୍ଟ୍ ଆକ୍ଟ ଅନୁସାରେ ଅନେକ କିଛି ପଞ୍ଜିକୃତ କରିଥିଲେ । ୧୯୯୬ ମସିହାରେ ଭାରତ ଟ୍ରିପ୍‌ସ ଚୁକ୍ତିରେ ସ୍ୱାକ୍ଷର କରିଥିଲା । ଏହା ପୂର୍ବରୁ ୧୯୯୫ ମସିହାରେ ବିଶ୍ୱ ବାଣିଜ୍ୟ ସଂଗଠନର ପରିସର ଭିତରେ ଟ୍ରିପ୍‌ସ ଅନ୍ତର୍ଭୁକ୍ତ ହୋଇସାରିଥିଲା । ଏହାଦ୍ୱାରା ପ୍ରତ୍ୟେକ ଦେଶ ଟ୍ରିପ୍‌ସର ନୀତିନିୟମକୁ ସ୍ୱୀକାର କରିବାକୁ ପରୋକ୍ଷରେ ସମ୍ମତି ଦେଇଥିଲେ ଏବଂ ପ୍ୟାଟେଣ୍ଟ୍ ନିୟମରେ ସଂସ୍କାର ଆଣିବାକୁ ମୋଟାମୋଟି ଭାବେ ବାଧ ହୋଇଥିଲେ । ଏକ ସମୟ ସୀମା ଭିତରେ ଟ୍ରିପସ୍ ଯେମିତି ସବୁଆଡେ ତାହାର କାୟା ବିସ୍ତାର କରିଥିଲା ଓ ସ୍ୱାସ୍ଥ୍ୟକ୍ଷେତ୍ରରେ ତାହା ଯଥେଷ୍ଟ ଅନୁଭୂତ ହୋଇଥିଲା ।

୨୦୦୧ ମସିହାରେ ଦୋହାଠାରେ ବିଶ୍ୱ ବାଣିଜ୍ୟ ସଂଗଠନର ଯେଉଁ ବିଚାର ବିମର୍ଷ ହୋଇଥିଲା ସେଥିରେ କୁହାଯାଇଥିଲା ଯେ ଟ୍ରିପ୍‌ସ୍‌ର ନିୟମ କାନୁନ୍ ସତ୍ତ୍ୱେ ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ଦେଶମାନେ ଜନସ୍ୱାସ୍ଥ୍ୟ ସୁରକ୍ଷା ପାଇଁ ଉଚିତ୍ ପଦକ୍ଷେପ ନେବେ ଓ ସମସ୍ତେ ଯେମିତି ସହଜରେ ଔଷଧ ପାଇପାରିବେ ସେଥିପାଇଁ ବ୍ୟବସ୍ଥା କରିବେ । ଏସବୁ ସତ୍ତ୍ୱେ ଭାରତ ୨୦୦୫ ମାର୍ଚ୍ଚ ମାସରେ ପ୍ୟାଟେଣ୍ଟ୍ ଆକ୍ଟକୁ ସଂଶୋଧନ କରିଥିଲା ଏବଂ ୨୦୦୪ ମସିହାରେ ଅଧ୍ୟାଦେଶକୁ (ଅର୍ଡିନାନ୍‌ସ) ବଦଳେଇ ଦେଇଥିଲା । ଏଇ ସଂଶୋଧନ ପଦକ୍ଷେପ ଟ୍ରିପ୍‌ସ ରାଜିନାମା ସର୍ତ୍ତ ଅନୁସାରେ ହିଁ ହୋଇଥିଲା ଯଦିଓ ପାର୍ଲିଆମେଣ୍ଟରେ ଓ ଦେଶସାରା ଏଥିପାଇଁ ଅନେକ ବିତର୍କ ହୋଇଥିଲା ।

ଚାଲନ୍ତୁ ଆମେ ଦେଖିବା ଟ୍ରିପ୍‌ସ୍ ରାଜିନାମା ଦ୍ୱାରା ସ୍ୱାସ୍ଥ୍ୟ କ୍ଷେତ୍ରରେ ବି ପ୍ରତିକୂଳ ବ୍ୟବସ୍ଥା ସୃଷ୍ଟି ହେବ । ସେଗୁଡିକ ସହଜରେ ତାଲିକାଭୁକ୍ତ କରାଯାଇ ନିମ୍ନରେ ଉଲ୍ଲେଖ କରାଗଲା । ପ୍ରଥମତଃ; ଟ୍ରିପ୍‌ସ ଯୋଗୁଁ ସହଜ ଓ ସୁନ୍ଦର ଔଷଧ ଆଉ ମିଳିବ ନାହିଁ । କେତେକ ଔଷଧର ଦର ଓ ମାନ ନିୟନ୍ତ୍ରଣ ସରକାର କରୁଥିଲେ ମଧ୍ୟ, ସାଧାରଣତଃ ଔଷଧର ଦରବୃଦ୍ଧି କ୍ରମାଗତ ଭାବେ ଲାଗିରହିବ । ପ୍ୟାଟେଣ୍ଟ୍ ନିୟମ ଯୋଗୁଁ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଔଷଧର ଦର କ୍ରମାଗତ ଭାବେ ବଢାଇବେ । ଏହା ବେଶୀ ଉତ୍କଟ ହେବ ଯେତେବେଳେ କୌଣସି ଏକ ଦେଶ ତା'ର ଚାହିଦା ମୁତାବକ ଔଷଧ ତିଆରି କରିପାରିବ ନାହିଁ । ଭାରତରେ ସବୁପ୍ରକାରର ଔଷଧ ଗୁଡିକର ଦର ନିୟନ୍ତ୍ରଣ ପାଇଁ ପଦ୍ଧତି ଥିଲେ ମଧ୍ୟ, ବାହାରୁ ଆମଦାନୀ ହେଉଥିବା ଔଷଧଗୁଡିକ ଉପରେ କିଛି ପ୍ରଭାବ ରହିବ ନାହିଁ ।

ଦ୍ୱିତୀୟତଃ; ଟ୍ରିପ୍‌ସ ରାଜିନାମା ଔଷଧ ଉଦ୍ୟୋଗ ଉପରେ ଯେଉଁ ଖରାପ ପ୍ରଭାବ ପକାଇବ, ସେଗୁଡିକ ହେଲା:

କ) ଟ୍ରିପ୍‌ସ୍ ଯୋଗୁଁ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଔଷଧ ବିକାକିଣା କ୍ଷେତ୍ରରେ ଯଥେଷ୍ଟ ଫାଇଦା ଉଠାଇବେ । (ଖ) ଔଷଧ ମୂଲ୍ୟବୃଦ୍ଧି ହେତୁ ସାଧାରଣ ଜନତା ଔଷଧ କିଣି ପାରିବେନାହିଁ । (ଗ) ଆମ ଦେଶର ସ୍ୱାସ୍ଥ୍ୟନୀତି ପ୍ରଭାବିତ ହେବ ଓ ନିରନ୍ତର ବିକାଶ ଏବଂ ସ୍ୱାବଲମ୍ବନଶୀଳତା ହ୍ରାସ ପାଇବ । (ଘ) ଆୟୁର୍ବେଦ ଓ ଉନାନୀ ଭଳି ବିକଳ୍ପ ଚିକିତ୍ସା ପଦ୍ଧତି ଟ୍ରିପ୍‌ସ୍ ଦ୍ୱାରା ଗୁରୁତ୍ୱହୀନ ହୋଇପଡିବ । (ଙ) ଛୋଟଛୋଟ ଔଷଧ କମ୍ପାନୀ ବନ୍ଦ ହେବାର ଆଶଙ୍କା ରହିବ । (ଚ) ଯେଉଁ କମ୍ପାନୀ ଗବେଷଣା କରିବ

ନାହିଁ, ସେମାନେ ବହୁରାଷ୍ଟ୍ରୀୟ କମ୍ପାନୀର ନିୟନ୍ତ୍ରଣରେ ରହିବେ ବା ଯୌଥ ପରିଚାଳନା କରିବେ । (ଛ) ଔଷଧ ଉଦ୍ୟୋଗ କ୍ଷେତ୍ରରେ ଯେଉଁ ଅଭିବୃଦ୍ଧିର ଲକ୍ଷ୍ୟ ଅଛି, ତାହା ଶିଥିଳ ହୋଇଯିବ ।

ଭାରତରେ ଆପାତତଃ ଟ୍ରିପ୍‌ସ୍‌ଦ୍ୱାରା କେତେକ ଲାଭଦାୟକ ପରିସ୍ଥିତି ସୃଷ୍ଟି ହେବ ତାହା ମଧ୍ୟ ଜନସାଧାରଣଙ୍କ ଜାଣିବାର ଅଛି । ସେଗୁଡିକ ହେଲା:

କ) ଔଷଧ ଉଦ୍ୟୋଗଗୁଡିକ ସାରା ପୃଥିବୀରେ ଔଷଧ ବଜାର ପାଇଁ ସକ୍ରିୟ ହେବେ । ପୃଥିବୀର ବଜାର ଏକାକାର ହୋଇଯିବ । (ଖ) ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ସହ ଦେଶୀୟ ଔଷଧ କମ୍ପାନୀମାନେ ସହଯୋଗ ଓ ସମନ୍ୱୟ ରକ୍ଷା କରିବେ ଓ ଔଷଧ ଉଦ୍ୟୋଗରେ ଗବେଷଣା ଓ ବିକାଶର ଗତି ବଢାଇବେ । (ଗ) ପୁରୁଣାକାଳିଆ ଔଷଧ କମ୍ପାନୀମାନେ ନୂତନ ବୈଷୟିକଜ୍ଞାନ ଓ ଯନ୍ତ୍ରପାତି ଦ୍ୱାରା ନିଜର କ୍ଷମତା ବଢାଇ ପାରିବେ । (ଘ) ଟ୍ରିପ୍‌ସ୍ ଦ୍ୱାରା ଗବେଷଣା ଓ ବିକାଶର ପରିସର ବ୍ୟାପକ ହେବ । ଏହାଦ୍ୱାରା ଆମ ଦେଶର ବୈଜ୍ଞାନିକ ଓ ଭେଷଜଜ୍ଞାନର ବିଶାରଦମାନେ ନିଜର ଜ୍ଞାନକୌଶଳର ପୂର୍ଣ୍ଣ ବିନିଯୋଗ କରିବେ । (ଙ) ବିଦେଶୀ ପୁଞ୍ଜି ବିନିଯୋଗ ମଧ୍ୟ ବଢିବ । ସରକାରଙ୍କ ପୃଷ୍ଠପୋଷକତା ଏଥିପାଇଁ ବ୍ୟାପକ ହେବ । (ଚ) କଣ୍ଟ୍ରାକ୍ଟ ମାନୁଫାକ୍‌ଚରିଙ୍ଗ୍ (ଠିକା ବିନିର୍ମାଣ ପ୍ରକ୍ରିୟା) ଦ୍ୱାରା ବହୁରାଷ୍ଟ୍ରୀୟ କମ୍ପାନୀମାନେ ହଜାର ହଜାର କୋଟି ଟଙ୍କାର ଔଷଧ ତିଆରି କରି ବିଶ୍ୱ ବଜାରକୁ ବିକ୍ରି କରିବେ । (ଜ) ଟ୍ରିପ୍‌ସଦ୍ୱାରା ଔଷଧ ତିଆରି ଶିକ୍ଷା କୌଶଳ ଏ ଦେଶରେ ମଧ୍ୟ ପ୍ରଗତିଶୀଳ ହେବ । ରୋଗୀମାନଙ୍କର ଚିକିତ୍ସା ସମ୍ବନ୍ଧୀୟ ଶିକ୍ଷା କ୍ଷେତ୍ରରେ ମଧ୍ୟ ଅଭିବୃଦ୍ଧି ହେବ ।

ଏସବୁ ସତ୍ତ୍ୱେ ଟ୍ରିପ୍‌ସ ସାଧାରଣ ମଣିଷଙ୍କ ସ୍ୱାସ୍ଥ୍ୟ ପାଇଁ ଯଥେଷ୍ଟ ସହାୟକ ହେବନାହିଁ । ସ୍ୱାସ୍ଥ୍ୟ ଯଦି ମାନବାଧିକାରର ଏକ ଅଙ୍ଗଭାବେ ମାନି ନିଆଯାଏ ତେବେ କେତେକ ପ୍ରଶ୍ନ ପଚାରିବା ଯଥାର୍ଥ ହେବ । ପ୍ରଥମେ, ଟ୍ରିପ୍‌ସ ସମସ୍ତଙ୍କର ଶାରିରୀକ ଓ ମାନସିକ ସ୍ୱାସ୍ଥ୍ୟ ରକ୍ଷାରେ ସାହାଯ୍ୟ କରିବ କି ? ଦ୍ୱିତୀୟତଃ, ସମସ୍ତଙ୍କୁ ସମାନ ଢଙ୍ଗରେ ଗୁଣାତ୍ମକ ସ୍ୱାସ୍ଥ୍ୟ ସେବା ପ୍ରାପ୍ତ ହେବ କି ? ସ୍ୱାସ୍ଥ୍ୟ ସହ ଓତଃପ୍ରୋତଃ ଭାବେ ଜଡିତ ଖାଦ୍ୟ, ପାନୀୟ ଜଳ, ପରିବେଶ ଆଦି ସମସ୍ତଙ୍କୁ ମିଳିବ କି ? ସ୍ୱାସ୍ଥ୍ୟ ଦୃଷ୍ଟିରୁ ସମସ୍ତଙ୍କୁ ଉତ୍ତମ ପରିବେଶର କର୍ମକ୍ଷେତ୍ର ମିଳିବ କି ? ଜାତୀୟ ସ୍ୱାସ୍ଥ୍ୟନୀତି ଗରିବ ଓ ସାଧାରଣଙ୍କ ହିତରେ ଆସିବ କି ?

କେତେକ ଅଧ୍ୟୟନରୁ ଦେଖାଯାଇଛି ଓଡ଼ିଶା, ଛତିଶଗଡ଼ ଓ ଝାଡଖଣ୍ଡ ଆଦି ଆଦିବାସୀ ବହୁଳ ରାଜ୍ୟରେ ସ୍ୱାସ୍ଥ୍ୟ ବ୍ୟବସ୍ଥା ୬ଟି କାରଣ ଯୋଗୁ ବ୍ୟାହତ ହୋଇଛି- • ଲୋକଙ୍କୁ ସର୍ବନିମ୍ନ ସେବା ଓ ସୁବିଧା ନ ମିଳିବା ହେତୁ • ମହିଳାମାନଙ୍କର ପ୍ରତି ଅନ୍ୟାୟ ଓ ଭେଦଭାବ ହେତୁ • ସାଂସ୍କୃତିକ କାରଣ ଯୋଗୁ • ସ୍ୱାସ୍ଥ୍ୟ ବ୍ୟବସ୍ଥାରେ ତ୍ରୁଟି • ଢାଞ୍ଚାଗତ ସମସ୍ୟା ଯୋଗୁ • ଏବଂ ଆର୍ଥିକ ଦୁରବସ୍ଥା ଯୋଗୁ । ଜାତୀୟ ସ୍ୱାସ୍ଥ୍ୟ ନୀତିରେ ଏହିସବୁ ଏହି ସମସ୍ୟାଗୁଡ଼ିକୁ ବିଚାରକୁ ନିଆଯାଇ ବିଭିନ୍ନ କାର୍ଯ୍ୟକ୍ରମର ପରିକଳ୍ପନା କରାଯାଇଛି । ଜାତୀୟ ସ୍ୱାସ୍ଥ୍ୟନୀତି ଗରୀବବର୍ଗଙ୍କ ହିତରେ ଯିବ କି ନାହିଁ ସେସବୁ ବିଷୟରେ ଅନେକ ସନ୍ଦେହ ଉପୁଜିଛି । ବିକଶିତ ଦେଶରେ ସମସ୍ତଙ୍କର ସ୍ୱାସ୍ଥ୍ୟ ବୀମା ଅଛି । ଯେଉଁ ଶିଶୁ ଆଜି ଜନ୍ମ ହେଉଛି ବା ଯାହାର ବୟସ ଶତାବ୍ଦୀରେ ଆସି ପହଞ୍ଚିଛି ସେଇ ସ୍ୱାସ୍ଥ୍ୟ ବୀମା ଯୋଗୁ ସହଜରେ ଅତ୍ୟାଧୁନିକ ଚିକିତ୍ସାର ସୁବିଧା ସୁଯୋଗ ପାଇପାରୁଛି । କିନ୍ତୁ ଭାରତ ଭଳି ବିକାଶଶୀଳ ଦେଶରେ ଏବଂ ଓଡ଼ିଶାଭଳି ଅନୁନ୍ନତ ରାଜ୍ୟରେ ଏଭଳି ସ୍ୱାସ୍ଥ୍ୟ ବୀମାର ଏପର୍ଯ୍ୟନ୍ତ ପରିକଳ୍ପନା କରାଯାଇ ନାହିଁ । ସମସ୍ତଙ୍କ ପାଇଁ ଉତ୍ତମ ସ୍ୱାସ୍ଥ୍ୟ ଅପରିହାର୍ଯ୍ୟ । ଏକଥା ଜାଣି ମଧ୍ୟ ବିଚାରଗତ ଏବଂ ବ୍ୟବହାରିକ ସ୍ତରରେ ଏହାକୁ କାର୍ଯ୍ୟକାରୀ କରାଯିବ । ଯେତିକ ରାଜନୈତିକ ଓ ସାମାଜିକ ଇଚ୍ଛାଶକ୍ତି ରହିବାର କଥା ତାହାର ଘୋର ଅଭାବ ଦେଖାଦେଇଛି । ଜାତୀୟ ସ୍ୱାସ୍ଥ୍ୟନୀତିରେ ଟ୍ରିପ୍‌ସର କୁପ୍ରଭାବକୁ ମୁକାବିଲା କରିବା ପାଇଁ ସେଭଳି ଉଚିତ୍ ପଦକ୍ଷେପ ନାହିଁ ।

ସବୁକଥା ବିଚାରକୁ ନେଇ ଦେଖା ଯାଉଛି ଯେ ସାଧାରଣ ଲୋକେ ଓ ବିଶେଷକରି ସମାଜ ସମୁଦାୟ ନିଜର ସ୍ୱାସ୍ଥ୍ୟ ବ୍ୟବସ୍ଥାକୁ ବିଶ୍ଳେଷଣ କରି ବିକଳ୍ପ ସ୍ୱାସ୍ଥ୍ୟ ବ୍ୟବସ୍ଥାକୁ ସୁଦୃଢ କରିପାରିଲେ ଜଗତୀକରଣ ପ୍ରକ୍ରିୟାକୁ ମୁକାବିଲା କରିପାରିବ । ଯୋଗ, ଆୟୁର୍ବେଦ, ଉନାନୀ, ସିଦ୍ଧି, ପ୍ରାକୃତିକ ଚିକିତ୍ସା ଓ ଆଦିବାସୀଙ୍କ ଚିକିତ୍ସା ପଦ୍ଧତି ଉପରେ ବିସ୍ତୃତ ଗବେଷଣା କରାଯାଇ ସେଥିରେ ଆବଶ୍ୟକ ହେଉଥିବା ପ୍ୟାଟେଣ୍ଟ୍ କରାଗଲେ ସାମାଜିକ ସ୍ୱାସ୍ଥ୍ୟ ଏବଂ ନିରୋଗ ପୃଥିବୀ ସମ୍ଭବ ହେବ ବୋଲି ହୃଦ୍‌ବୋଧ ହେଉଛି । ଜଗତୀକରଣ ଦ୍ୱାରା ଯେଉଁ ସାମାଜିକ, ମାନସିକ ଓ ଆଧାତ୍ମିକ ରୋଗ ବ୍ୟାପିବାରେ ଲାଗିଛି ତାହା ଉପଶମ ଓ ନିୟନ୍ତ୍ରଣ ହୋଇପାରିବ ବୋଲି ଏ ଲେଖକର ଆଶା ରହିଛି । ❑

# ଜଗତୀକରଣ ଓ ତାହାର ସୁଦୃଢ ସ୍ତମ୍ଭମାନେ

## (୧)

ଡ଼କ୍ଟର ଡ଼ାଫନୀ ୱାଇସାମ୍ ଓ ଡ଼କ୍ଟର ଜୀମ୍ ଭାଲେଟ୍ ମୋର ଦୁଇଜଣ ଘନିଷ୍ଠ ବନ୍ଧୁ । ଏ ଦୁହେଁ ଆମେରିକାର ୱାସିଂଟନ୍‌ବାସୀ, ଗବେଷକ ଓ ଲେଖକ । ଅଚାନକ ତାଙ୍କ ସହ ଦେଖାହେଲା ବ୍ରାଜିଲ୍‌ର ପୋର୍ଟୋ ଆଲେଗ୍ରେ ସହରରେ ଯେଉଁଠି ୨୦୦୩ ମସିହାରେ ବିଶ୍ୱ ସାମାଜିକ ସଂଗଠନର ସମାବେଶ ଆୟୋଜିତ ହୋଇଥିଲା । ଉଭୟ ବନ୍ଧୁ ମୋତେ ଚକିତ ଓ ଆଶ୍ଚର୍ଯ୍ୟିତ କରିଦେଉଥିଲେ ଓଡ଼ିଶା କଥା କହି । ଓଡ଼ିଶାରେ ଖଣି ଖାଦାନ, ଶକ୍ତି ସଂସ୍କାର ଓ ବିଶ୍ୱବ୍ୟାଙ୍କର ବିଭିନ୍ନ ପୁଞ୍ଜିନିବେଶ ଉପରେ ତାଙ୍କର ଗବେଷଣା ପ୍ରେରିତ ବିଶ୍ଳେଷଣ ଥିଲା ଅଦ୍ୱିତୀୟ । ତାଳଚେରର କୋଇଲାଖଣି, ବିଦ୍ୟୁତଶକ୍ତି ଉତ୍ପାଦନ, ନନ୍ଦିରା ନଦୀ ଓ ତାର ଆଖପାଖରେ ପ୍ରଦୂଷଣ ଓ ଓଡ଼ିଶାର ଭବିଷ୍ୟତକୁ ନେଇ ସେମାନେ କେତେବର୍ଷ ହେଲା ବିଭିନ୍ନ ତଥ୍ୟ ସଂଗ୍ରହ କରିଛନ୍ତି ଓ ବିଭିନ୍ନ ନଦୀବନ୍ଧମାନ ପ୍ରକାଶ କରିଛନ୍ତି । ସେମାନେ କହିଥିଲେ ଯେ ବିଶ୍ୱବ୍ୟାଙ୍କର ଅର୍ଥନୈତିକ ଉପଦେଷ୍ଟାମାନଙ୍କ ପ୍ରରୋଚନା ଦ୍ୱାରା ବିଶ୍ୱବ୍ୟାଙ୍କ ଓଡ଼ିଶାରେ ଶକ୍ତି ସଂସ୍କାରର ପ୍ରୟୋଗ କରିଛନ୍ତି । କୋଇଲା ଖଣି ଖନନ ଓ ବିଦ୍ୟୁତ ଉତ୍ପାଦନ ପାଇଁ ଏକ ମାଷ୍ଟର ପ୍ଲାନ୍ କରିଛନ୍ତି ନାଁ ସ୍ଥାନୀୟ ଲୋକଙ୍କ ଅବସ୍ଥା ଓ ବସବାସକୁ ବିଚାରକୁ ନିଆଯାଉଛି ନାଁ ପରିବେଶ ଓ ପାରିପାର୍ଶ୍ୱିକ ପ୍ରଭାବକୁ ଗୁରୁତ୍ୱ ଦିଆଯାଇଛି । ତାଳଚେର ଓ ତା'ର ଆଖପାଖ ଅଞ୍ଚଳର ସାମାଜିକ, ଆର୍ଥିକ, ପାରିବେଶିକ ଓ ରାଜନୈତିକ ଅବସ୍ଥା ପାଠକ ବନ୍ଧୁମାନେ ଜାଣିଥିବେ । ସେ ଅଞ୍ଚଳ ବର୍ତ୍ତମାନ ପୃଥିବୀର ସବୁଠାରୁ ଉତପ୍ତ ଅଞ୍ଚଳ । ଗତବର୍ଷମାନଙ୍କରେ ଖରାଦିନେ ତାପମାତ୍ରା ୫୦ଡିଗ୍ରୀ ସେଣ୍ଟିଗ୍ରେଡ଼କୁ ଟପିଛି । ପିଇବା ପାଣି ନାହିଁ । କୂଅ ସବୁ ସୁଖି ଯାଉଛି । ଧୂଆଁ ନିର୍ଗତ ହେଉଥିବାରୁ ସେ ଅଞ୍ଚଳରେ ପାଣି ପବନ ବିଷାକ୍ତ ହୋଇଯାଉଛି । ଯକ୍ଷ୍ମା ଓ ଚର୍ମରୋଗ ଅଧିକାଂଶ ଲୋକଙ୍କୁ ଆକ୍ରାନ୍ତ କରିଛି । ବ୍ରାହ୍ମଣୀ ନଦୀଟି ଏତେ ପ୍ରଦୂଷଣ ହୋଇଛି ଯେ ତାହା ହଜାର ହଜାର ଲୋକଙ୍କ ଜୀବନ ଓ ଜୀବିକାକୁ ଘରେ ବାହାରେ ଅନୀତି, ଅସାମଜିକତା ଓ ଅରାଜକତା ଦେଖା ଦେଇଛି । ସେ ଅଞ୍ଚଳରେ ବାସଚ୍ୟୁତଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି । ମାଫିଆମାନେ ରାଜତ୍ୱ କରୁଛନ୍ତି । ବିକାଶ ନାଁରେ ସରଳ ଗ୍ରାମ୍ୟଜୀବନ ଓ ଛୋଟସହରମାନଙ୍କର

ସୁଶାନ୍ତ ବାତାବରଣ ଆଜି ଆଉ ସେ ଅଞ୍ଚଳରେ ଦେଖା ଯାଉନାହିଁ । ମୂଲ୍ୟବୋଧର ଏକ ଚରମ ବିପର୍ଯ୍ୟୟ ଘଟିଛି । ଗୋଟାଏ ସବୁଜ ଓ ସୁନ୍ଦର ଇଲାକାର ସବୁଦିନ ପାଇଁ ମୃତ୍ୟୁ ଘଟିଛି । ଏଥିପାଇଁ ବିଶ୍ୱବ୍ୟାଙ୍କ ମୂଳତଃ ଦାୟୀ ଓ ଦାୟୀ ବିଶ୍ୱବ୍ୟାଙ୍କ ଦ୍ୱାରା ଆକର୍ଷିତ ନେତା, ଅଫିସ୍‌ର ଓ କଣ୍ଟ୍ରାକ୍ଟର୍‌ମାନେ । ବିଶ୍ୱବ୍ୟାଙ୍କକୁ କହୁଯାଇପାରେ ଏକ ବୁଢ଼ିଆଣୀ, ନଚେତ୍ ଏକ ପରାଙ୍ଗପୁଷ୍ଟ ଫୁଲ ବା ଏକ ବିଷକନ୍ୟା । ଆକର୍ଷଣକରି ଜୀବନ୍ତ ପ୍ରାଣୀମାନଙ୍କୁ ନିଜର କରାୟତ କରିବା ଯେମିତି ଏହାର ମୁଖ୍ୟ ବ୍ୟବସାୟ ଏବଂ ନିଜକୁ ବଞ୍ଚାଇ ରଖିବାର ଏକ ବଳିଷ୍ଠ ଉଦାହରଣ । ଟିକିଏ ଗଭୀର ଭାବେ ଦେଖିଲେ ବିଶ୍ୱବ୍ୟାଙ୍କ ଓଡ଼ିଶାରେ ତାର ଜାଲ ଏମିତି ବିସ୍ତାର କରିଛି ଯେ ରାଜନୈତିକ ନେତୃବର୍ଗ, ଅମଲା ଓ ଅଫିସର୍, ଗବେଷକ ଓ ବୁଦ୍ଧିଜୀବୀ, ସ୍ୱେଚ୍ଛାସେବୀ ସଂଗଠନ ଓ ଗଣମାଧ୍ୟମ ସେଥିରେ ପଡିବାଛଡା ଆଉ ଯେମିତି ବାଟନାହିଁ । ମୃତ୍ୟୁ ଅନିର୍ବାର୍ଯ୍ୟ ଜାଣି ସୁଦ୍ଧା ଏମାନେ ବିଶ୍ୱବ୍ୟାଙ୍କ ଗୁଣ ଗାଇ ଗାଇ ଭଜନ ସଂକୀର୍ତ୍ତନ କରୁଛନ୍ତି । ପେଟରେ ଭୋକ, ମନରେ ଗ୍ଲାନି ଓ ଲଜ୍ୟା ଏବଂ ମୁହଁରେ କୃତ୍ରିମ ହସ ରଖି ଏମାନେ, ବିଶେଷକରି ବଡ ଅମଲାମାନେ, ପୁଷ୍ପଗୁଚ୍ଛ ଧରି ବିଶ୍ୱବ୍ୟାଙ୍କର କର୍ମ କର୍ତ୍ତାମାନଙ୍କୁ ଆମନ୍ତ୍ରଣ କରୁଛନ୍ତି ।

ଡ଼କ୍ଟର ଡ଼ାଫ୍‌ନୀ ୱାଇସାମ୍ ଓ ଡ଼କ୍ଟର ଜୀମ୍ ଭାଲେଟ ସାରା ପୃଥିବୀରେ ବିଶ୍ୱବ୍ୟାଙ୍କର କାର୍ଯ୍ୟପନ୍ଥା ପ୍ରଭାବ ଓ ପ୍ରତିଷ୍ଠା ନୀତି ଓ ନିୟମ, ପ୍ରାକୃତିକ ସମ୍ପଦ ଉପରେ ଅମାନବୀୟ ଲୁଣ୍ଠନ ପାଇଁ ପୁଞ୍ଜିନିବେଶ, କର୍ପୋରେଟ୍ ଓ ଶିଳ୍ପପତିଙ୍କ ମୁନାଫା ପାଇଁ ପ୍ରତ୍ୟକ୍ଷ ଓ ପରୋକ୍ଷ ରଣନୀତି ଏସବୁ ଉପରେ କେତେ ବର୍ଷ ହେଲା ଗବେଷଣା ଚଳାଇଛନ୍ତି ଓ ବିଭିନ୍ନ ଉପାଦେୟ ପ୍ରବନ୍ଧ ଓ ପୁସ୍ତକ ପ୍ରକାଶ କରିଛନ୍ତି । ସାରାପୃଥିବୀରେ କୋଇଲା ପେଟ୍ରୋଲିୟମ ଓ ପ୍ରାକୃତିକ ଗ୍ୟାସ ଯେଉଁଠି ଗଚ୍ଛିତ ରହିଛି ଓ ତାହା କିପରି ଲୁଣ୍ଠନ କରାଯାଇ ଏକ ଶିଳ୍ପ ସାମ୍ରାଜ୍ୟ ପ୍ରତିଷ୍ଠା ହୋଇପାରିବ, ଏଥିପ୍ରତି ବିଶେଷ ଧ୍ୟାନ ଦେଇଛି ବିଶ୍ୱବ୍ୟାଙ୍କ୍ । ପ୍ରତ୍ୟେକ ଦେଶରେ ଶକ୍ତି ଏବଂ ରାଜ୍ୟ ସମ୍ପଦର ବିକାଶ ପାଇଁ ବିଶ୍ୱବ୍ୟାଙ୍କ ପ୍ରସ୍ତୁତ କରିଛି ବ୍ଲୁ ପ୍ରିଣ୍ଟ୍ । ସାତୋଟି ବିକଶିତ ଦେଶ (ଜି-ସେଭେନ୍) ଯଥା ଯୁକ୍ତରାଷ୍ଟ୍ର ଆମେରିକା, ଗ୍ରେଟ୍ ବ୍ରିଟେନ୍, ଜର୍ମାନୀ, ଜାପାନ, କାନାଡ଼ା, ଇଟାଲୀ ଓ ଫ୍ରାନ୍‌ସଙ୍କ ସ୍ୱାଦକୁ ଆଖିରେ ରଖି ବିଶ୍ୱବ୍ୟାଙ୍କ୍ ନିଜର ପୁଞ୍ଜିନିବେଶ ନୀତି ତିଆରି କରିଛି । ପୁଞ୍ଜିନିବେଶ ପଛରେ ଏ ସାତୋଟି ଦେଶର ପୁଞ୍ଜିପତି କର୍ପୋରେଟ୍‌ମାନଙ୍କର ଲାଭବୃଦ୍ଧି ପାଇଁ ମଧ୍ୟ ବଳିଷ୍ଠ ପଦକ୍ଷେପ ନିଆଯାଉଛି । ଫସିଲ୍ ଫୁଏଲ୍ (କୋଇଲା, ପେଟ୍ରୋଲିୟମ,

ପ୍ରାକୃତିକ ଗ୍ୟାସ) କେମିତି ବ୍ୟାପକଭାବେ ଖନନ କରାଯାଇ ଏ ସାତୋଟି ବିକଶିତ ଦେଶର ଅର୍ଥନୀତି ଓ ବ୍ୟବସାୟରେ ଅଭିବୃଦ୍ଧି ଘଟାଇବ ତାହାକୁ ବିଧିବଦ୍ଧ ଭାବେ ଯୋଜନା କରାଯାଉଛି । ପ୍ରତ୍ୟେକ ମହାଦେଶକୁ ବିଚାରକୁ ନିଆଯାଉ ଏବଂ ଯେଉଁଠି ଫସିଲ ଫୁଏଲର ଭଣ୍ଡାର ଗଚ୍ଛିତ ରହିଛି ତାହାର ଏକ ତାଲିକା କରାଯାଉ । ଦେଖାଯିବ ଯେ ବିଶ୍ୱବ୍ୟାଙ୍କ ସେ ଇଲାକାରେ ବର୍ତ୍ତମାନ ୧୯୯୨ ମସିହା ଠାରୁ ୧୩୩ଟି ପ୍ରକଳ୍ପକୁ ସ୍ୱୀକୃତି ଦେଇ ଆର୍ଥିକ ସାହାଯ୍ୟ କରିଛି ଯାହାର ପରିମାଣ ଦଶ ବିଲିୟନ ଡ଼ଲାର (ପ୍ରାୟ ଚାଳିଶ ହଜାର କୋଟି ଟଙ୍କା) । ଏସବୁ ଋଣ, ଅନୁଦାନ, ସହାୟକ ପୁଞ୍ଜିନିବେଶ ଏବଂ ଜମାନତ ଆଦି ହିସାବରେ ବିନିଯୋଗ କରାଯାଉଛି । ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଏହା ସହାୟକ ହୋଇଛି ୧୨ଟି କର୍ପୋରେଟକୁ ଯାହାକୁ "ଡାର୍ଟି ଡଜନ୍" ବୋଲି ଆଖ୍ୟା ଦିଆଯାଇଛି । ପାଠକମାନେ ଏଇ ବାରୋଟି କମ୍ପାନୀ ଓ ସେମାନଙ୍କର କାରବାର ଜାଣିବା ନିତାନ୍ତ ଆବଶ୍ୟକ ।

| ନମ୍ବର | ଦେଶ | କମ୍ପାନୀର ନାମ (ପୁଞ୍ଜିନିବେଶ ପରିମାଣ ଅନୁସାରେ) | କେଉଁ ଦେଶରେ ବିଶ୍ୱବ୍ୟାଙ୍କ ସହାୟତାରେ ପୁଞ୍ଜିନିବେଶ କରିଛନ୍ତି |
|---|---|---|---|
| ୧ | ଆମେରିକା | ହ୍ୟାଲିବର୍ଟନ | ଆଜରବାଇଜାନ୍, ବାଙ୍ଗ୍ଲାଦେଶ, ବ୍ରାଜିଲ୍, କ୍ୟାମେରୁନ୍, ଜର୍ଜିୟା, ଭାରତ, କାଜାକ୍‌ସ୍ଥାନ୍, ମୋଜାମ୍ବିକ୍, ଋଷିଆ, ଥାଇଲାଣ୍ଡ, ଚାଦ୍ |
| ୨ | ହଲାଣ୍ଡ | ସେଲ୍ | ଆର୍ଜେଣ୍ଟିନା, ବାଙ୍ଗଲାଦେଶ, ବଲିଭିଆ, କ୍ୟାମେରୁନ୍, ଗାବନ୍, ନାଇଜେରିଆ, ଋଷିଆ, ବ୍ରାଜିଲ, ତୁର୍କୀ ମେନିସ୍ଥାନ |
| ୩ | ଆମେରିକା | ସେଭ୍ରନ୍ ଟେକ୍‌ସାକୋ | କ୍ୟାମେରୁନ୍, ଚାଦ୍, କଲମ୍ବିଆ, କଙ୍ଗୋ, ଇଣ୍ଡୋନେସିଆ, କାଜାକ୍‌ସ୍ଥାନ, ଋଷିଆ, ଥାଇଲାଣ୍ଡ |
| ୪ | ଫ୍ରାନ୍‌ସ | ଟୋଟାଲ୍ | ଆର୍ଜେଣ୍ଟିନା, ଆଜରବାଇଜାନ୍, ଜର୍ଜିୟା, ଋଷିଆ, ଥାଇଲାଣ୍ଡ, ତୁର୍କୀ କ୍ୟାମେରୁନ୍, କଙ୍ଗୋ, |

| | | | |
|---|---|---|---|
| ୫ | ଆମେରିକା | ଏକ୍‌ସନ ମବିଲ୍ | ଆର୍ଜେଣ୍ଟିନା, ଚାଦ୍, କ୍ୟାମେରୁନ୍, କାଜାକ୍‌ସ୍ଥାନ୍, ଋଷିଆ, ଚୀନ୍, ଜର୍ଜିୟା |
| ୬ | ଆମେରିକା | ବେକ୍‌ଟେଲ | ଆର୍ଜେଣ୍ଟିନା, ଆଜରବାଇଜାନ୍, କାଜାକ୍‌ସ୍ଥାନ୍, ଋଷିଆ, ଟ୍ୟୁନିସିଆ, ତୁର୍କୀ, ତୁର୍କମେନିସ୍ଥାନ, ଜର୍ଜିୟ, ଭାରତ, |
| ୭ | ଗ୍ରେଟ୍ ବ୍ରିଟେନ୍ | ବ୍ରିଟିଶ ପେଟ୍ରୋଲିୟମ | ଆଜରବାଇଜାନ୍, ଜର୍ଜିୟା, କାଜାକ୍‌ସ୍ଥାନ୍, ପାକିସ୍ଥାନ, ଋଷିଆ, ତୁର୍କୀ |
| ୮ | ଆମେରିକା | ଅନ୍‌କୋଲ୍ | ଆଜରବାଇଜାନ୍, ବାଙ୍ଗଲାଦେଶ, ଜର୍ଜିୟା, ଥାଇଲାଣ୍ଡ୍, ତୁର୍କୀ |
| ୯ | ଇଟାଲୀ | ଏନି | ଆଜରବାଇଜାନ୍, ଜର୍ଜିୟ, କାଜାକ୍‌ସ୍ଥାନ୍, ନାଇଜେରିଆ, ପାକିସ୍ଥାନ, ଋଷିଆ, ତୁର୍କୀ |
| ୧୦ | ଅଷ୍ଟ୍ରେଲିଆ | ବି:ଏଚ୍:ପି | ବ୍ରାଜିଲ୍, ଭାରତ, ପାକିସ୍ଥାନ, ପାପୁଆ, ନିଉଗିନି, ଋଷିଆ |
| ୧୧ | ଗ୍ରେଟ୍ ବ୍ରିଟେନ୍ | ବ୍ରିଟିଶ୍ ଗ୍ୟାସ | ବ୍ରାଜିଲ, କାଜାକ୍‌ସ୍ଥାନ, ପାକିସ୍ଥାନ, ଟ୍ୟୁନିସିଷ୍ |
| ୧୨ | ଆମେରିକା | ଏନ୍‌ରନ୍ | ଆଜରବାଇଜାନ, ବ୍ରାଜିଲ୍, ଚୀନ, ମାଜାମ୍ବିକ, ତୁର୍କମେନ୍‌ସ୍ଥାନ କଲମ୍ବିଆ, ଜର୍ଜିୟ |

ଏସବୁ ପୁଞ୍ଜିନିବେଶ ଓ ଫସିଲ ଫୁଏଲ ରପ୍ତାନୀକୁ ବିଶ୍ଳେଷଣ କରିଲେ ଜଣାପଡେ ଯେ କୋଇଲା, ପେଟ୍ରୋଲିୟମ ତୈଳ ଓ ପ୍ରାକୃତିକ ଗ୍ୟାସ ଆଦି ମୁଖ୍ୟତଃ ପଶ୍ଚିମ ୟୁରୋପ, କାନାଡ଼ା, ଆମେରିକା, ଅଷ୍ଟ୍ରେଲିଆ, ଜାପାନ୍ ଆଦି ଦେଶର ଶିଳ୍ପ ବିକାଶ ପାଇଁ ବିଶ୍ୱବ୍ୟାଙ୍କ କେତେ ଉତ୍ସର୍ଗୀକୃତ । କିନ୍ତୁ ତାହାର ଫଳାଫଳ ତୃତୀୟ ବିଶ୍ୱରେ କେଉଁଭଳି ପଡିଛି ଜାଣିଲେ ବିଶ୍ୱବ୍ୟାଙ୍କ ପ୍ରତି ଘୃଣା ଓ ବିତୃଷ୍ଣା ସ୍ୱତଃ ଜାତ ହୋଇଥାଏ । ଆମେ କେତୋଟି ପ୍ରଭାବ ନିମ୍ନରେ ଆଲୋଚନା କରିବା ।

ପ୍ରଥମତଃ; ଗରୀବମାନଙ୍କ ଉପରେ ଏ ପ୍ରକଳ୍ପଗୁଡିକ ଲଦି ଦିଆଯାଇଥାଏ ଓ ସେମାନଙ୍କୁ ସବୁଠାରୁ ବେଶୀ ମୂଲ୍ୟ ଦେବାକୁ ପଡିଥାଏ । ବିସ୍ଥାପନ ପ୍ରକ୍ରିୟାରେ ଲକ୍ଷ ଲକ୍ଷ ଲୋକ ବାସଚ୍ୟୁତ ହୋଇ ଥାଆନ୍ତି ଓ ଜୀବନଜୀବିକା ହରାଇ ଥାଆନ୍ତି । ଗରୀବ

ଦେଶଟି ସାଧାରଣ ଲୋକଙ୍କ ବିକାଶ କଥା ଭୁଲିଯାଇ ଖନନ ଶିଳ୍ପରେ ଅଧିକରୁ ଅଧିକ ପୁଞ୍ଜି ବିନିଯୋଗ କରିଥାଆନ୍ତି । ଏହା ଫଳରେ ଗରୀବଙ୍କ ସ୍ଥିତି ଆହୁରି ନିମ୍ନଗାମୀ ହୋଇଥାଏ ।

ଦ୍ୱିତୀୟତଃ; ଖଣିଖାଦାନ, ତୈଳ ଓ ପ୍ରାକୃତିକ ଗ୍ୟାସ ପ୍ରକଳ୍ପ ଦ୍ୱାରା ଆଦିମ ଆଦିବାସୀ ବେଶୀ ପ୍ରଭାବିତ ଓ କ୍ଷତିଗ୍ରସ୍ତ ହୁଅନ୍ତି । ସେମାନେ ବିସ୍ଥାପିତ ହେଲେ ଦାରିଦ୍ର୍ୟ ଓ ଶୋଷଣର ଶୀକାର ହୁଅନ୍ତି । ସେମାନଙ୍କର ଜୀବନ, ଜୀବିକା, ପରିବେଶ ଓ ନିରାପତ୍ତା ନଷ୍ଟ ହୋଇଯାଏ । ସେମାନଙ୍କର ସଂଖ୍ୟା ହ୍ରାସ ପାଏ । ସାଂସ୍କୃତିକ ପରିଚୟ କ୍ଷୁର୍ଣ୍ଣହୁଏ । ସେମାନଙ୍କର ଜଳ, ଜମି, ଜଙ୍ଗଲ, ପର୍ଯ୍ୟାବରଣ ଉପରେ ଯେଉଁ ପୁରୁଷ ପୁରୁଷର ଅଧିକାର ରହିଆସିଛି ତାହା ସେମାନେ ହରାଇ ବସନ୍ତି ।

ତୃତୀୟତଃ; ଏସବୁ ପ୍ରକଳ୍ପ ଦ୍ୱାରା ଜଙ୍ଗଲ ଓ ଜୈବ ବିବିଧତାର ପ୍ରବଳ କ୍ଷତି ହୁଏ । ସାଇବେରିଆରେ ଜଙ୍ଗଲ, କେନ୍ଦ୍ରୀୟ ଆଫ୍ରିକାର ହେନ୍ତାଳ ବନ, ଆମାଜନ୍ ନଦୀର ବୃଷ୍ଟି, ବୃଷ୍ଟି ଜଙ୍ଗଲ ଅତି ଦ୍ରୁତ ଗତିରେ କ୍ଷୟ ହେଉଛି ବୋଲି ସାରା ପୃଥିବୀରେ ତୀବ୍ର ପ୍ରତିକ୍ରିୟା ଦେଖାଦେଇଛି । ଏବେ ସନ୍ଦେହ ପ୍ରକାଶ ପାଇଛି ଯେ ଦକ୍ଷିଣ ଆମେରିକା, ଋଷିଆ ଓ ଭାରତର ଜଙ୍ଗଲ ଓ ଜୀବଜନ୍ତୁ ବଞ୍ଚିରହିବେ ନାହିଁ ।

ଚତୁର୍ଥତଃ; ଖଣିଖାଦାନ୍, ତୈଳ ଓ ପ୍ରାକୃତିକ ଗ୍ୟାସ ପ୍ରକଳ୍ପ ଦ୍ୱାରା ଯେଉଁ ଶିଳ୍ପାଞ୍ଚଳ ଗଢିଉଠିବ ତାହା ଏକ ବିଷାକ୍ତ ପରିବେଶ ସୃଷ୍ଟି କରିବ ଅନେକ ଅଞ୍ଚଳରେ ବିଷାକ୍ତ ଗ୍ୟାସ୍ ନିର୍ଗତ ହେବ । ତୈଳ ଲିକ୍ ହେଲେ ଅନେକ ନଦୀ, ସମୁଦ୍ର ପ୍ରଦୂଷିତ ହେବ । ବିଷାକ୍ତ ବର୍ଜ୍ୟବସ୍ତୁ ଅନେକ ଲୋକଙ୍କୁ ଆକ୍ରାନ୍ତ କରିବ । ଆଉ ଆକ୍ରାନ୍ତ ହେବେ ପଶୁ ସମ୍ପଦ, ମତ୍ସ୍ୟ ସମ୍ପଦ, ଭୂଜଳ । ବିଷାକ୍ତ ହେବ ମାଟି, ପାଣି ଓ ପବନ ।

ପଞ୍ଚମତଃ; ସାଧାରଣ ମଣିଷଙ୍କ ମାନବାଧିକାର ଭଙ୍ଗ ହେବ ସବୁଆଡେ । ବିସ୍ଥାପିତ ଲୋକଙ୍କୁ ବଳପ୍ରୟୋଗ କରି ଅଥବା ହିଁସାତ୍ମକ ଉପାୟରେ ନିଜର ଭିଟାମାଟିରୁ ତଡି ଦିଆଯିବ । ଯେଉଁମାନେ ନ୍ୟାୟ ଓ ନ୍ୟାୟୋଚିତ ଥଇଥାନ ଚାହିଁବେ ତାଙ୍କ ଉପରେ ଅତ୍ୟାଚାର ହେବ । ଓଡ଼ିଶାରେ ଏପରି ଅନେକ ଉଦାହରଣ ବର୍ତ୍ତମାନ ରହିଛି । ଏହାଛଡା ନାଇଜେରିଆର ଓ ଓଗୋନି ଆଦିବାସୀମାନେ, ଇଣ୍ଡୋନେସିଆର ଅମୁଙ୍ଗ୍‌ମେମାନେ, କାନାଡ଼ାର ସ୍ଥାନୀୟ ଇଣ୍ଡିଆନ୍‌ମାନେ ଅନେକ ଅତ୍ୟାଚାରର ସମ୍ମୁଖୀନ ହେଉଛନ୍ତି ।

ଷଷ୍ଠତଃ; ଏକଛତ୍ରବାଦୀ ଓ ମିଲିଟାରୀ ଶାସନ ମୁଣ୍ଡଟେକିବ ଏ ଦେଶମାନଙ୍କରେ ଯେଉଁଠି ତୈଳ ଓ ପ୍ରାକୃତିକ ଗ୍ୟାସ୍ ଏବଂ ଖଣିଜଦ୍ରବ୍ୟ ଗଚ୍ଛିତ ରହିଛି । ଋଷିଆ, କଲମ୍ବିଆ, ଇଣ୍ଡୋନେସିଆ, ନାଇଜେରିଆ, ଆଦି ଦେଶରେ ଶାସନତନ୍ତ୍ର ସବୁ ପୁଞ୍ଜିବାଦୀ କର୍ପୋରେଟ୍‌ମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଛି । ଦୁର୍ନୀତି କ୍ୟାନ୍‌ସରଭଳି ବ୍ୟାପୁଛି ମଧ୍ୟ ।

ସପ୍ତମତଃ; ଯେଉଁ ଦେଶରେ ଏ ଫସିଲ୍ ଫୁଏଲ ସମ୍ପର୍କୀତ ଶିଳ୍ପ ଗଢିଉଠିବ, ସେ ଦେଶ ଗୁଡିକରେ କର୍ପୋରେଟ୍ ରାଜ୍ ଚାଲିବ । ଏ କର୍ପୋରେଟ୍‌ମାନଙ୍କର ଆୟ ସେ ଦେଶମାନଙ୍କର ସାମଗ୍ରିକ ଆୟଠାରୁ କେତେଗୁଣ ଅଧିକ ହେବ । ଚାଦ୍ କ୍ୟାମେରୁନ୍ ପାଇପ୍‌ଲାଇନ୍ ପ୍ରୋଜେକ୍ଟରେ ମୁଖ୍ୟ ଭୂମିକା ନେଇଥିବା ଏକ୍ସନ କମ୍ପାନୀର ଲାଭ ଚାଦର ବାର୍ଷିକ ଆୟଠାରୁ ୪୦ଗୁଣ ଅଧିକ ଓ କ୍ୟାମେରୁନ୍‌ଠାରୁ ୪ଗୁଣ ଅଧିକ । ସାଧାରଣ ଲୋକଙ୍କ ବିକାଶ ନାଁରେ ଏଇଭଳି ବହୁରାଷ୍ଟ୍ରୀୟ କମ୍ପାନୀମାନେ ଲାଭ ନେଉଥିବାର ଏସବୁ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ଅଷ୍ଟମତଃ; ଫସିଲ ଫୁଏଲ ଦ୍ୱାର ଗଢି ଉଠୁଥିବା ଶିଳ୍ପ ଯୋଗୁଁ ସାରା ପୃଥିବୀର ଜଳବାୟୁରେ ଘୋର ପରିବର୍ତ୍ତନ ଦେଖା ଦେଉଛି । ଏହାଦ୍ୱାରା ଗରିବ ଦେଶମାନଙ୍କରେ ଅନେକ ପ୍ରଭାବ ପଡିବ । ବିଶ୍ୱବ୍ୟାଙ୍କ ଅଣପାରମ୍ପରିକ ଓ ପ୍ରାକୃତିକ ଗ୍ୟାସର ଖନନ ଉପରେ । ଏବେ ନୂତନ ଭାବେ କାର୍ବନଟ୍ରେଡ୍ ଉପରେ ବିଶ୍ୱବ୍ୟାଙ୍କ ଗୁରୁତ୍ୱ ଦେଉଛି । ଏହା ବ୍ୟାପକଭାବେ ଲାଗୁହେଲେ ଯେଉଁ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଏବେ ବିଶ୍ୱବ୍ୟାଙ୍କ ଦ୍ୱାରା ଉପକୃତ ହୋଇଛନ୍ତି ଆହୁରି ବେଶୀ ଲାଭାନ୍ୱିତ ହେବ ।

ନବମତଃ; ଗରୀବ ଦେଶମାନଙ୍କର ଋଣବୋଝ ଅନେକ ବଢିଯିବ । ସ୍ଥାନୀୟ ଅର୍ଥନୀତି ଏତେ ଦୁର୍ବଳ ହୋଇ ପଡିବ ଯେ ଗରୀବ ଦେଶଗୁଡିକ ପ୍ରାକୃତିକ ସମ୍ପଦଗୁଡିକୁ ଶାଗମାଛ ମୂଲରେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ବିକିଦେବେ । ବିଦେଶୀପୁଞ୍ଜି ଲୋଭରେ ଗରୀବ ଦେଶମାନେ ବିଭିନ୍ନ ପ୍ରକାରରେ ନିଜର ସ୍ୱାଧିନତା ଓ ସ୍ୱାଭିମାନକୁ ବଳିଦେଇ ଆହୁରି ଗରୀବ ହେବାକୁ ବାଟ ଉନ୍ମୁକ୍ତ କରିବେ ।

## (୨)

ବିଶ୍ୱବ୍ୟାଙ୍କ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସାରା ପୃଥିବୀରେ ଜଗତୀକରଣ ପ୍ରକ୍ରିୟାକୁ ବଳଶାଳୀ ଓ ସୁଦୂରପ୍ରସାରୀ କରି ଆସିଛି ବୋଲି ବିଭିନ୍ନ ଅନୁସନ୍ଧାନ ଓ

ଗବେଷଣା ଦ୍ୱାରା ପ୍ରମାଣିତ କରାଯାଇଛି । ଗାଁ ଗହଳରେ, ଗରିବ, ମହିଳା ଓ ଶିଶୁମାନଙ୍କ ଉପରେ ତଥା ଆଦିବାସୀ ଓ ଦଳିତମାନଙ୍କର ଜୀବନଜୀବିକାକୁ ଦୁର୍ବଳ କରିବାରେ ବିଶ୍ୱବ୍ୟାଙ୍କ ଯେମିତି ସକ୍ରିୟ ଭୂମିକା ଗ୍ରହଣ କରିଛି ଯଦିଓ ଯୁଦ୍ଧୋତ୍ତର ପୃଥିବୀରେ ବିକାଶ ଓ ପୁର୍ନନିର୍ମାଣ ଏହାର ସର୍ବପ୍ରଥମ ଉଦ୍ଦେଶ୍ୟ ଥିଲା । ଓଡ଼ିଶାର ସମାଜିକ, ଆର୍ଥିକ ଓ ସାଂସ୍କୃତିକ ମାନ କଥା ବିଚାରକୁ ନିଆଯାଉ ଓ ପରିସଂଖ୍ୟାନର ପରିସର ବାହାରକୁ ଯାଇ ସମୀକ୍ଷା କରାଯାଉ । ଓଡ଼ିଶାରେ ବିଶ୍ୱବ୍ୟାଙ୍କରୁ କୃଷି, ଜଳସେଚନ, ଶକ୍ତି, ସ୍ୱାସ୍ଥ୍ୟ, ଖଣି, ଶିକ୍ଷା, ଜଙ୍ଗଲ ଓ ପରିବେଶ ରାସ୍ତା ଓ ଭିତ୍ତିଭୂମି ନିର୍ମାଣ, ଢାଞ୍ଚାଗତ ଆଦିର ବିକାଶ ପାଇଁ ଯଥେଷ୍ଟ ଋଣ ଆଣି ସାରିଛି । ଭବିଷ୍ୟତରେ ଆହୁରି କେତେ ହଜାର କୋଟି ଆଣିବାର ଯୋଜନା ଶାସନରେ ଥିବା ବିଶ୍ୱବ୍ୟାଙ୍କର ଏଜେଣ୍ଟମାନେ ପରିକଳ୍ପନା କରିଛନ୍ତି । ସାଧାରଣ ଲୋକଙ୍କ ଉପରେ ଋଣଭାର ଅନେକ ପରିମାଣରେ ବଢ଼ିଛି । କିନ୍ତୁ ଅତି ସାଧାରଣ ଭାବେ ଆମେ ଓଡ଼ିଶାବାସୀଙ୍କ ଖାଦ୍ୟ, ଜଳ, ସ୍ୱାସ୍ଥ୍ୟ, ଶିକ୍ଷା, କର୍ମ ନିଯୁକ୍ତି, ଗୃହ ଏବଂ ସର୍ବୋପରି ନିଜସ୍ୱ ଢଙ୍ଗରେ ବିକାଶ ପାଇଁ ଯେଉଁ ମୌଳିକ ଅଧିକାର ରହିଛି ତାହା ବହୁମାତ୍ରାରେ ଭଙ୍ଗ ହୋଇଛି । ଓଡ଼ିଶା କ୍ରମଶଃ ଶୋଷଣର ଶିକାର ହୋଇ ନିଜସ୍ୱ ହେବାକୁ ଲାଗିଛି । ଓଡ଼ିଶା ଆଜି କେଉଁ ଅପନ୍ତରାରେ ଦାଦନ ଖଟୁଛି ଓ ନିଜର ଦାନାପାଣି ପାଇଁ ଇଜ୍ଜତ୍ ମହତ୍ ବିକିବାରେ ଲାଗିଛି । ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣର ପ୍ରକ୍ରିୟା ଓଡ଼ିଶାରେ ବହୁରୂପୀ ଓ ବହୁବ୍ୟାପୀ ହେବା ପାଇଁ ସବୁ ଖୋରାକ ପାଇଛି ।

ଓଡ଼ିଶା ଭଳି ଭାରତରେ ଓ ଭାରତ ଭଳି ସମସ୍ତ ତୃତୀୟ ବିଶ୍ୱରେ ଏଇଭଳି ଦାରିଦ୍ର୍ୟ ଓ ଅସହାୟତା ବଢ଼ିବାରେ ଲାଗିଛି ଓ ଧନୀ ଏବଂ ଗରିବଙ୍କ ଭିତରେ ଥିବା ପ୍ରଭେଦ ଆହୁରି ଉତ୍କଟ ହେବାରେ ଲାଗିଛି । କେଉଁ ଦେଶରେ ଏବଂ କେଉଁ ଅଞ୍ଚଳରେ ବିକାଶନୀତି କିପରି ହେବ, ତାହା କିପରି କ୍ରିୟାନ୍ୱିତ ହେବ ଏବଂ ସେଥିରେ କ'ଣ ସୁଫଳ ମିଳିବ ତାହା ସମ୍ପର୍କରେ ବିଶ୍ୱବ୍ୟାଙ୍କର ବିଶାରଦମାନେ ନିର୍ଦ୍ଧାରଣ କରନ୍ତି ଓ ଅତି ଅମାନୁଷିକ ଓ ଅଗଣତାନ୍ତ୍ରିକ ଉପାୟରେ ତାହା ଆର୍ଥିକ, ସାମାଜିକ ଓ ରାଜନୈତିକ ଦୃଷ୍ଟିକୋଣରୁ ଦୁର୍ବଳ ଦେଶମାନଙ୍କ ଉପରେ ଲଦି ଦେଇଥାଆନ୍ତି । ପ୍ରାକୃତିକ ସମ୍ବଳର ବିକାଶ ନାମରେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ପୁଞ୍ଜିନିବେଶ ପାଇଁ ବିଶ୍ୱବ୍ୟାଙ୍କ ପ୍ରେରଣା ଯୋଗାଇଥାଏ । ମାନବସମ୍ବଳ ବିକାଶ

ନାମରେ ବିଭିନ୍ନ ଯୋଜନା ମଧ୍ୟ ହୋଇଥାଏ । ବିଶ୍ୱବ୍ୟାଙ୍କ ମୁଖ୍ୟତଃ ବଜାର ଓ ବେପାରକୁ ମୁଖ୍ୟକରି ସବୁକିଛି ପୁଞ୍ଜିନିବେଶ କରିଥାଏ ବୋଲି ସବୁଆଡେ ପ୍ରମାଣିତ ହୋଇ ସାରିଛି । ନିରନ୍ତର ବିକାଶର ସ୍ଲୋଗାନ ଦେଇ ତା'ଭିତରେ ବିଭିନ୍ନ ଘରୋଇକରଣ ପ୍ରକ୍ରିୟାକୁ ନିମନ୍ତ୍ରଣ କରିଥାଏ ବିଶ୍ୱବ୍ୟାଙ୍କ । ଓଡ଼ିଶାରେ ବିଦ୍ୟୁତ୍ ଶକ୍ତି ସଂସ୍କାର ବା ପାଣି ପଞ୍ଚାୟତ ଆଦି ବିଶ୍ୱବ୍ୟାଙ୍କର ପ୍ରବଳ ପ୍ରୋତ୍ସାହନ ଦ୍ୱାରା ଲାଗୁ ହୋଇଛି ଏବଂ ଏହାର କିଭଳି ପ୍ରତିକୂଳ ପ୍ରଭାବ ପଡିବ ଓ କିଏ ଏ ପ୍ରକ୍ରିୟାରୁ ଲାଭ ଉଠାଉଛି ତାହା ପ୍ରତ୍ୟେକ ଓଡ଼ିଶାବସୀ ହୃଦବୋଧ କରି ସାରିଥିବେ । ବିଶ୍ୱବ୍ୟାଙ୍କ ଦ୍ୱାରା ପ୍ରରୋଚିତ ସଂସ୍କାର ପ୍ରକ୍ରିୟା ଜଗତୀକରଣ ଅନ୍ୟ ଏକ ରୂପ ବୋଲି ଆଉ ଅଧିକ ପ୍ରମାଣର ଆବଶ୍ୟକ ନାହିଁ ।

ଓଡ଼ିଶାବାସୀ ବିଶ୍ୱବ୍ୟାଙ୍କର ଅସଲ ଉଦ୍ଦେଶ୍ୟ ବୁଝିବା ଆବଶ୍ୟକ । ଏଥିପାଇଁ ସବୁ ସ୍ତରରେ ପ୍ରଶ୍ନ ପଚାରିବା ପାଇଁ ଶକ୍ତି, ସାହାସ, ବୃଦ୍ଧି ଓ ବିବେକ ସବୁର ଆବଶ୍ୟକତା ରହିଛି । ଓଡ଼ିଶାରେ ନଗ୍ନ ଦାରିଦ୍ର୍ୟ ଯେଉଁଭଳି କେତୋଟି ଲାଗିଛି, ସେଇଥି ପାଇଁ ବିଶ୍ୱବ୍ୟାଙ୍କ କରିଛି କ'ଣ ? ଆମେ କେତୋଟି ସୂଚକକୁ ନେଇ ତର୍କ କରିବାକୁ ଅଣ୍ଟା ଭିଡିବା ଆବଶ୍ୟକ । ପ୍ରଥମେ ଶିକ୍ଷା ବିଶେଷ କରି ପ୍ରାଥମିକ ଶିକ୍ଷା କଥା ନିଆଯାଉ । ଆଜି ସେ କ୍ଷେତ୍ରଟି ଏତେ ବିପର୍ଯ୍ୟସ୍ତ ଯେ ଭବିଷ୍ୟତରେ ଓଡ଼ିଶାବାସୀ ଯେଉଁ ମାନବ ସମ୍ବଳ କ୍ଷେତ୍ରରେ ସ୍ଥାନ ଗ୍ରହଣ କରିଥାଆନ୍ତେ ତାହା ଆଉ ସମ୍ଭବ ହେବନାହିଁ । ଶିକ୍ଷାର ବିକାଶ ନହେଲେ ନାଗରିକମାନେ ନିଜର ଅଧିକାର କ'ଣ ଜାଣିବେ ନାହିଁ କି ତାହାର ସୁରକ୍ଷା କରିପାରିବେ ନାହିଁ । ଜୀବନଜୀବିକାର ମାନ ଉପରେ ଶିକ୍ଷାର ଅଭାବ ମଧ୍ୟ ଯଥେଷ୍ଟ ପ୍ରଭାବ ପକାଇବ । ଏ ରାଜ୍ୟରେ ଲକ୍ଷ ଲକ୍ଷ ଶିଶୁ ଆଉ ପ୍ରାଥମିକ ସ୍କୁଲକୁ ଯିବେନାହିଁ ବା ସେଭଳି ଶିକ୍ଷା ସହଜରେ ଓ ସୁଲଭରେ ମିଳିବନାହିଁ । କୁଶଳୀ କାରିଗର, ବିକଶିତ ଚଷୀ, ସକ୍ଷମ କର୍ମୀ ଓ ପେଶାଦାର ବ୍ୟକ୍ତି ମଧ୍ୟ ଆଉ ରହିବେନାହିଁ । ଯେଉଁ ରାଜ୍ୟରେ ଶିକ୍ଷା ଓ ବୃତ୍ତିର ବିକାଶ ହୋଇନାହିଁ, ସେ ରାଜ୍ୟର ପ୍ରଗତି କେବେ ହୋଇପାରିବ ନାହିଁ । ବିଶ୍ୱବ୍ୟାଙ୍କ ଜାଣିଶୁଣି ଓଡ଼ିଶା ପଛରେ ରହୁ ବୋଲି ପରିସ୍ଥିତି ସୃଷ୍ଟି କରିଛି ।

ଦ୍ୱିତୀୟରେ ସ୍ୱାସ୍ଥ୍ୟକଥା ବିଚାରକୁ ନିଆଯାଉ । ସମସ୍ତଙ୍କୁ ଉତ୍ତମ ସ୍ୱାସ୍ଥ୍ୟ ମିଳିବାର ବିଶ୍ୱବ୍ୟାଙ୍କର କାର୍ଯ୍ୟକ୍ରମ ଓ ନୀତି ଘୋର ଅନ୍ତରାୟ ସୃଷ୍ଟି କରିଛି ।

ମାଗଣାରେ ସ୍ୱାସ୍ଥ୍ୟ ମିଳିବନାହିଁ । ସବୁପାଇଁ ଅର୍ଥଦେବାକୁ ହେବ । ଘରୋଇ ଚିକିତ୍ସା ଓ ଘରୋଇ ସ୍ୱାସ୍ଥ୍ୟସେବାକୁ ପ୍ରାଧାନ୍ୟ ଦିଆଯିବ ।

ତୃତୀୟରେ କ୍ଷୁଦ୍ର ଓ ଲଘୁ ଉଦ୍ୟୋଗ କଥା ଦେଖିଲେ ବିଶ୍ୱବ୍ୟାଙ୍କର ନୀତି ଉପରେ ଅନେକ ପ୍ରଶ୍ନ ଉଠିବ । ଗରିବଙ୍କ ଜୀବନ ଜୀବିକା ଏହିଭଳି କ୍ଷୁଦ୍ର ଓ ଲଘୁ ଉଦ୍ୟୋଗ ଉପରେ ନିର୍ଭର କରୁଛି ଓ ପ୍ରକ୍ରିୟାକରଣ ଉପରେ ପର୍ଯ୍ୟବେଶିତ ହୋଇଛି । ଓଡ଼ିଶା ପରିପ୍ରେକ୍ଷୀରେ ଗୁରୁ ଉଦ୍ୟୋଗକୁ ବିଶ୍ୱବ୍ୟାଙ୍କ ମାନ୍ୟତା ଦେଉଛି । ଅନ୍ୟ ପକ୍ଷରେ ହସ୍ତଶିଳ୍ପ, ହସ୍ତତନ୍ତ ଆଦି ଉପରେ ପୁଞ୍ଜିନିବେଶ କରିବାକୁ ବିଶ୍ୱବ୍ୟାଙ୍କ କେବେହେଲେ ଉତ୍ସାହ ଦେଖାଇ ନାହିଁ । ଏହା ଯଦି ସେ କରିଥାନ୍ତା ଓଡ଼ିଆ ପୁଅ ଭିଟାମାଟି ଛାଡି ଦାଦନ ହୁଅନ୍ତା ନାହିଁ । ଖଣି ଓ ଶିଳ୍ପକୁ ମୁଖ୍ୟ କରି ଓଡ଼ିଶାର ବିକାଶ ନକ୍‌ସା ଯେମିତି ବିଶ୍ୱବ୍ୟାଙ୍କ ତିଆରି କରିଛି । ବିସ୍ଥାପନ ଓ ଦାରିଦ୍ର୍ୟର ପରିମାଣ ବଢାଇବାକୁ ଯେମିତି କୌଶଳ କରାଯାଇଛି ଓ ବିଶ୍ୱବ୍ୟାଙ୍କ ଦ୍ୱାରା ଆର୍ଥିକ ମେରୁଦଣ୍ଡ ଯେମିତି ସବୁଦିନ ପାଇଁ ଭାଙ୍ଗିଯିବ ତାହା ପାଇଁ ସବୁ ପଦକ୍ଷେପ ନିଆଯାଇଛି ।

ଚତୁର୍ଥରେ ଓଡ଼ିଶାର କୃଷି ବିକାଶ ଦିଗରେ ବିଶ୍ୱବ୍ୟାଙ୍କ ଯଥେଷ୍ଟ ପୁଞ୍ଜିନିବେଶ କରିନାହିଁ । କୃଷି ପ୍ରାଧାନ ରାଜ୍ୟରେ କୃଷକମାନଙ୍କ ହିତରେ ପୁଞ୍ଜି ସବୁଠାରୁ ବେଶୀ ହେବା କଥା । ଓଡ଼ିଶାରେ ବହୁଜିନିଷ ଆଦି ଆମଦାନୀ କରାଯାଉଛି- ଫଳ, ଫୁଲ, ମାଛ, କୁକୁଡା, ପନିପରିବା, ଡାଲି, ଖାଇବା ତେଲ ଓ ଅନ୍ୟାନ୍ୟ ଉପଭୋକ୍ତାର ସାମଗ୍ରୀଗୁଡିକ । ବିଶ୍ୱବ୍ୟାଙ୍କ ରପ୍ତାନୀ କଥା ଉଠାଇ କେବଳ ରେଶମ ଶିଳ୍ପ ଉପରେ ପୁଞ୍ଜିନିବେଶ କରିବାକୁ ଚାହୁଁଛି । ଜଳସେଚନ ସୁବିଧା କରିବାକୁ ଯାଇ ଡ୍ୟାମ୍ କରାଯାଉଛି କିନ୍ତୁ କେନାଲ୍ ପାଇଁ ପୁଞ୍ଜି ନିବେଶ ହୋଇ ପାରୁନାହିଁ । ଜଳସେଚନର ବ୍ୟବସ୍ଥା ହେଲେ ଆନୁସଙ୍ଗିକ କୃଷି ବିକାଶ ବା ପ୍ରକ୍ରିୟାକରଣର କୌଣସି ଯୋଜନା ବିଶ୍ୱବ୍ୟାଙ୍କର ନୀତି ଭିତରେ ନାହିଁ ।

ପଞ୍ଚମରେ ଉର୍ଜା ବା ଶକ୍ତି କଥା ବିଚାରକୁ ନିଆଯାଉ । ଓଡ଼ିଶାରେ ବିଦ୍ୟୁତ ଶକ୍ତି ଉତ୍ପାଦିତ ହେଉଛି ସତ, ଅଧିକାଂଶ ଘର ଅନ୍ଧାରରେ ରହୁଛି । ବିଦ୍ୟୁତ ଶକ୍ତି ସଂସ୍କାର ନାଁରେ ପ୍ରତି ଇଉନିଟ୍ ଏତେ ମହଙ୍ଗା ହୋଇଛି ଯେ ଧିରେ ଧିରେ ସାଧାରଣ ଲୋକମାନେ ଆଉ ବିଦ୍ୟୁତଶକ୍ତି ବ୍ୟବହାର କରିପାରିବେ ନାହିଁ । ବିଶ୍ୱବ୍ୟାଙ୍କ୍‌ର ପ୍ରଭାବ ଫଳରେ ଓଡ଼ିଶା ଶିଳ୍ପ ଓ ଆନୁସଙ୍ଗିକ କ୍ଷେତ୍ର ପାଇଁ ବିଦ୍ୟୁତ ଶକ୍ତି ବିନିଯୋଗ ହେବ । ଅନ୍ୟ ରାଜ୍ୟମାନଙ୍କୁ ବିକାଯିବ । କିନ୍ତୁ ନ୍ୟାର୍ଯ୍ୟ ଦାବୀ

ହିସାବରେ ଓଡ଼ିଶାବସୀ ବିଦ୍ୟୁତଶକ୍ତି ପାଇବେ ନାହିଁ । ଅକ୍ଷୟ ଶକ୍ତି କ୍ଷେତ୍ରରେ ବିଶ୍ୱବ୍ୟାଙ୍କ ଓଡ଼ିଶାରେ ପୁଞ୍ଜିନିବେଶ କରିବେ କି ନାହିଁ କିଏ କହିବ ? ସାରା ପୃଥିବୀ ଆଜି ଅକ୍ଷୟଶକ୍ତିର ବିକାଶ ପାଇଁ ଉଦ୍‌ବିଗ୍ନ । ଓଡ଼ିଶା ଯେମିତି ଶୋଇ ପଡିଛି ।

ଷଷ୍ଠରେ ସହରାଞ୍ଚଳରେ ଥିବା ଗରୀବ ଓ ବସ୍ତିବାସିନ୍ଦାଙ୍କ ସହ ସାଧାରଣ ନାଗରିକଙ୍କ ବିକାଶ ପାଇଁ ବିଶ୍ୱବ୍ୟାଙ୍କ ପୁଞ୍ଜିନିବେଶ କାହିଁକି କରୁନାହିଁ ତାହା ପଚାରିବାର କଥା । ଟାଉନ୍ ପ୍ଲାନିଙ୍ଗ୍ ଜଳ ଯୋଗାଣ ବ୍ୟବସ୍ଥା, ରାସ୍ତାଘାଟ, ପରିବେଶ, ବର୍ଜ୍ୟବସ୍ତୁର ପରିଚାଳନା ଆଦି ପ୍ରତି ବିଶ୍ୱବ୍ୟାଙ୍କ ଧ୍ୟାନ ଦେଇନାହିଁ । ପରୋକ୍ଷ ଭାବରେ ଏସବୁର ଘରୋଇକରଣର ବ୍ୟବସ୍ଥା କରିବାକୁ ସରକାରଙ୍କ ଉପରେ ଚାପ ପକାଇଛି । ସହରାଞ୍ଚଳରେ ଯେଉଁ ସମସ୍ୟା ସବୁ ବର୍ତ୍ତମାନ ଦେଖା ଦେଇଛି ତାହା ଦିନକୁ ଦିନ ଜଟିଳତର ହେଉଛି । ସମସ୍ୟାର ସମାଧାନର ଉପାୟ ଚିନ୍ତା କରୁଛି କିଏ ?

ସପ୍ତମରେ ବନ ସମ୍ପଦର କଥା ବିଚାରକୁ ନିଆଯାଉ । ଓଡ଼ିଶାରେ ବନସମ୍ପଦ ଯଥେଷ୍ଟ ଥିଲା ଏବଂ ଏହାର ଦ୍ରୁତ ଅବକ୍ଷୟ ଆଜି ସମସ୍ତଙ୍କୁ ବ୍ୟଥିତ ଓ ଚିନ୍ତିତ କରିଛି । ବିଶ୍ୱବ୍ୟାଙ୍କ ଏବଂ ତାହାର ଆନୁସଙ୍ଗିକ ସଂସ୍ଥାମାନେ ଯୌଥ ବନ ପରିଚାଳନା କଥା କହି ଆସିଛନ୍ତି । ଏହାର ପ୍ରକୃତ ଲାଭ ମିଳିବା ପୂର୍ବରୁ ନୀତି ବଦଳୁଛି । ବୃକ୍ଷରୋପଣ, ବନମହୌଷଧି ଆଦି ପ୍ରକ୍ରିୟା ପଛରେ ବନବାସୀ ଓ ଆଦିବାସଙ୍କୁ କି ଲାଭ ମିଳିବ ଓ କି ଉଦ୍ଦେଶ୍ୟ ସାଧିତ ହେବ ତାହା ଏ ପର୍ଯ୍ୟନ୍ତ ସ୍ପଷ୍ଟ ହୋଇନାହିଁ । ନିଶ୍ଚିତ ଭାବେ ବିଶ୍ୱ ବଜାରରେ ଶସ୍ତାରେ କଞ୍ଚାମାଲ୍ ଓଡ଼ିଶାରୁ ପହଞ୍ଚିବ, ବିଶ୍ୱବ୍ୟାଙ୍କ ଯେମିତି ଷଡଯନ୍ତ୍ର କରିଛି ।

ଶେଷରେ ଓଡ଼ିଶାଭଳି ଏକ ଦାରିଦ୍ର୍ୟ ରାଜ୍ୟ କିପରି ସାମାଜିକ, ଆର୍ଥିକ, ସାଂସ୍କୃତିକ ଓ ପାରିବେଶିକ କ୍ଷେତ୍ରରେ ବିକଶିତ ଓ ସ୍ୱାବଲମ୍ବୀ ହୋଇପାରିବ, ଏକଥା ବିଶ୍ୱବ୍ୟାଙ୍କ ଭଳି ଆନ୍ତର୍ଜାତିକ ସଂସ୍ଥାମାନେ ଯତ୍ନଶୀଳ ଓ ସମ୍ବେଦନଶୀଳ ତାହା ପ୍ରଶ୍ନବାଚକ ଚିହ୍ନରେ ରହିଛି ।

## (୩)

ବିଶ୍ୱବ୍ୟାପୀ ଆଦୃତ ଓ ସମାଲୋଚିତ ହୋଇଥିବା ଜୋସେଫ୍ ଷ୍ଟିଗିଲିଜ୍‌ଙ୍କ ପୁସ୍ତକ 'ଜଗତୀକରଣ ଓ ତାର ଦୁର୍ଗତି' (ଗ୍ଲୋବାଲାଇଜେସନ୍ ଆଣ୍ଡ ଇଟ୍‌ସ୍

ଡିସ୍‌କଭେଣ୍ଟସ୍) ଜଣେ ନପଢ଼ି ମଧ୍ୟ ସାରା ଦୁନିଆରେ କିପରି ସାମାଜିକ ଓ ଆର୍ଥିକ ବ୍ୟବସ୍ଥା ତାହାର ଭାରସାମ୍ୟ ହରାଇ ବସିଛି ତାହା ସହଜରେ ଅନୁଭବ କରିପାରୁଥିବ । ଗତ ସପ୍ତାହରେ ଗଣ ମାଧ୍ୟମରେ ଖୁବ ପ୍ରଚାରିତ ହୋଇଥିଲା ଯେ ବାଙ୍ଗାଲୋରର ଏକ ମ୍ୟାନେଜ୍‌ମେଣ୍ଟ ପ୍ରତିଷ୍ଠାନରୁ ସଦ୍ୟ ପାସ୍ କରିଥିବା ଜଣେ ଯୁବକ ବର୍ଷକୁ ଏକଲକ୍ଷ ଟଙ୍କା ପଞ୍ଚାନବେ ହଜାର ଡଲାର ବା ମାସକୁ ପ୍ରାୟ ସାଢେ ସାତ ଲକ୍ଷ ଟଙ୍କା ମୋଟା ଦରମା ମିଳୁଥିବା ନିଯୁକ୍ତି ଏବର୍ଷ ପାଇଛନ୍ତି । ଓଡ଼ିଶାର ଲକ୍ଷ ଲକ୍ଷ ବ୍ୟକ୍ତିଙ୍କ ଦୈନିକ ଆୟ ଦିନକୁ ଗୋଟାଏ ଡ଼ଲାର୍ ବା ମାସକୁ ପ୍ରାୟ ପଞ୍ଚଶହ ପଚାଶ ଟଙ୍କାରୁ କମ୍ । କାହିଁ କାହାର ମାସିକ ଦରମା ସାଢେ ସାତ ଲକ୍ଷ ଟଙ୍କା ହେଲାବେଳେ ଓ କାହାର ମାସିକ ଆୟ ପ୍ରାୟ ସାଢେ ପାଞ୍ଚଶହ ଟଙ୍କା ? ଏ କି ପ୍ରକାର ପ୍ରଭେଦ ? ଏ ପୃଥିବୀରେ ଓ ଏ ସମାଜରେ ଏ ପ୍ରଭେଦ ଓ ଏ ଅସମତୁଲ ଭାରସାମ୍ୟ ସମ୍ଭାଳି ହେବ କି ? ଏ ଅନ୍ୟାୟ ଓ ଅଯୌକ୍ତିକ ଢାଞ୍ଚା ସୁରକ୍ଷିତ ରହି ପାରିବ କି ? ଜଣେ ସଚେତନ ମଣିଷ ଏ ବଢନ୍ତି ଖାଇକୁ ଦେଖି ଚୁପ ରହିବ କି ? ଆମ ସମାଜରେ ଉଚ୍ଚ ଦରମାରେ ଚାକିରୀଟିଏ ପାଇବା ପାଇଁ ସମସ୍ତେ ବ୍ୟଗ୍ର । ମଧ୍ୟବିତ୍ତ ଓ ଉଚ୍ଚମଧ୍ୟବିତ୍ତ ପରିବାରର ପ୍ରତେକ ଯୁବକ ଓ ଯୁବତୀ ମୋଟା ଅଙ୍କ ଆୟ କରିବା ପାଇଁ ଅହରହ ସ୍ବପ୍ନାବିଷ୍ଟ । କିନ୍ତୁ ଲକ୍ଷ ଲକ୍ଷ ପରିବାରର ଜୀବନ ଜୀବିକା ଯେ ଅତି ମାତ୍ରାରେ ଦୁର୍ବଳ ଓ ସୀମିତ ତାହା ଯେମିତି ହୃଦ୍‌ବୋଧ କରିବା ଅନେକଙ୍କ ପାଇଁ ଅସମ୍ଭବ । ଜଣେ ମାସକୁ ଦଶଲକ୍ଷ ଟଙ୍କାର ବେତନରେ ରହୁ କିଛି ଆପତ୍ତି ନାହିଁ । କିନ୍ତୁ, ଜଣେ ଘୋର ଦାରିଦ୍ର୍ୟରେ ରହିବ ଏହା ଏକ ସଭ୍ୟରାଷ୍ଟ୍ରରେ ଗ୍ରହଣଯୋଗ୍ୟ ନୁହେଁ ।

ସବୁ ଅନୁନ୍ନତ ଓ ଅବକଶିତ ଦେଶରେ ସାମାଜିକ, ଆର୍ଥିକ ଓ ରାଜନୈତିକ ବିଭେଦ ସୃଷ୍ଟି କରିବା ପାଇଁ ତିନୋଟି ସାହାଯ୍ୟକାରୀ ସଂସ୍ଥାଙ୍କ ଭୂମିକା ଅନୁସନ୍ଧାନର ପରିସର ଭିତରକୁ ଆସିଯାଇଛି । ପ୍ରଥମଟି ହେଲା ବିଶ୍ବବ୍ୟାଙ୍କ, ଦ୍ବିତୀୟଟି ହେଲା ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ତୃତୀୟଟି ହେଲା ବିଶ୍ବ ବାଣିଜ୍ୟ ସଂଗଠନ । ଏ ତିନୋଟି ସଂସ୍ଥା ପରସ୍ପର ସହ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ । ଏମାନଙ୍କର ନୀତି ଓ ଆଭିମୁଖ୍ୟ ସମାନ ଯଦିଓ ଭୂମିକା ବିଭିନ୍ନ । ଗୋଟିଏ ଗରିବ ଦେଶର ବିକାଶ ପାଇଁ ଏମାନେ ସାହାଯ୍ୟ କରିବା ବାହାନା ନେଇ ବିଭିନ୍ନ ଯୋଜନା କରନ୍ତି, ପେଶାଦାର ଅଭିଜ୍ଞ

ଲୋକମାନଙ୍କୁ ପଠାନ୍ତି ଓ ଭବିଷ୍ୟତ ପାଇଁ ହର୍ତ୍ତା, କର୍ତ୍ତା ଓ ଭାଗ୍ୟବିଧାତା ବୋଲି ଆଖ୍ୟାୟିତ ହୁଅନ୍ତି । ସଂସ୍କାରର ସ୍ଲୋଗାନ୍ ଦିଅନ୍ତି ଓ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭାବେ ଗୋଟାଏ ଦେଶ ବା ସମାଜର ଜୀବନ ସ୍ରୋତ ନିୟନ୍ତ୍ରଣ କରନ୍ତି । ବିକାଶ ନାମରେ ବିଶ୍ୱବ୍ୟାଙ୍କ ଋଣ ଦିଏ ଓ ଗୋଟାଏ ପୋଖତ ସାହୁକାର ଭଳି ବ୍ୟବହାର କରେ । ଗୋଟାଏ ଦେଶର ଅର୍ଥନୈତିକ ବ୍ୟବସ୍ଥା କିପରି ହେବ ତାହା ନିର୍ଦ୍ଧାରଣ କରେ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି । ଗୋଟାଏ ଦେଶର ଆମଦାନୀ ଓ ରପ୍ତାନୀକୁ ନିର୍ଦ୍ଧାରଣ କରି ବିଶ୍ୱବାଣିଜ୍ୟ ସଂଗଠନ ବଜାରକୁ ନିୟନ୍ତ୍ରଣ କରେ । ଆଜି ଯଦି ଢାଞ୍ଚା ସନ୍ତୁଳନ କାର୍ଯ୍ୟକ୍ରମ (ଷ୍ଟ୍ରକ୍‌ଚରାଲ୍ ଆଡ୍‌ଜଷ୍ଟ୍‌ମେଣ୍ଟ୍ ପ୍ରୋଗାମ୍)ର ଦୁହାଇ ଦେଇ ଦେଶ ପରେ ଦେଶ, ଜାତି ପରେ ଜାତିକୁ ଯେପରି ବଳି ଦିଆଯାଉଛି ତାହାର ପଛରେ ଏହି ତିନୋଟି ସଂସ୍ଥାଙ୍କର ମୁଖ୍ୟ ଭୂମିକା ରହିଛି । ଉଦାହରଣ ସ୍ୱରୂପ ବିଶ୍ୱବ୍ୟାଙ୍କର ନୀତିଦ୍ୱାରା ବୁର୍କିନାଫାସୋ, ନାଇଜର୍, ମାଲି ଭଳି ଦେଶମାନେ ଆଜି ପତନାଭିମୁଖୀ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଦ୍ୱାରା ପ୍ରଭାବିତ ଦେଶମାନେ ହେଲେ ଥାଇଲାଣ୍ଡ, ଦକ୍ଷିଣକୋରିଆ, ଫିଲିପାଇନ୍‌ସ, ମାଲୟେସିଆ । ବିଶ୍ୱ ବାଣିଜ୍ୟ ସଂଗଠନ ଦ୍ୱାରା ଶୋଷିତ ଦେଶମାନଙ୍କର ତାଲିକାରେ ଅଛନ୍ତି ବ୍ରାଜିଲ, ଗାମ୍ବିଆ, ମରିସସ୍, ନାଇଜେରିଆ ।

ଟିକଏ ଗଭୀର ଭାବେ ଅନୁଧ୍ୟାନ କରିଲେ ଏ ତିନୋଟି ସଂସ୍ଥାର ରଣନୀତି ଗୁଡିକ ନିମ୍ନରେ ଦିଆଗଲା:

୧) ଉଦାରୀକରଣ ଓ ଖୋଲା ବଜାରରେ ସମଦର କିଣାବିକା । (୨) ରାଷ୍ଟ୍ରର ଭୂମିକା ସଙ୍କୋଚନ । (୩) ଘରୋଇକରଣକୁ ପ୍ରତ୍ୟକ୍ଷ ପ୍ରୋତ୍ସାହନ (୪) ମୁଦ୍ରାର ମୂଲ୍ୟହ୍ରାସ । ବର୍ହି ଋଣର ସୁଦ୍ଧହାର ବୃଦ୍ଧି, ଶ୍ରମର ବଜାରୀକରଣ, ସବ୍‌ସିଡି(ରିହାତି)ର ଅଯୌକ୍ତିକ ହ୍ରାସ । (୫) ପୁଞ୍ଜିନିବେଶ ଓ ବହୁରାଷ୍ଟ୍ରୀୟ କମ୍ପାନୀକୁ ନିୟନ୍ତ୍ରଣ । (୬) ବିଭିନ୍ନ ପ୍ରକାର ନିୟନ୍ତ୍ରଣକୁ ଆଇନ୍ କାନୁନ୍‌ରେ କୋହଳ ପ୍ରକ୍ରିୟା ।

ଏଇ ତିନୋଟି ସଂଗଠନର ପ୍ରତିକୂଳ ପ୍ରଭାବ ଓଡ଼ିଶାରେ ପଡିଛି କି ନାହିଁ ଏବେ ବିଚାରକୁ ନିଆଯାଉ । ଏହା ସହିତ ଡି:ଏଫ୍:ଆଇ:ଡି: ଭଳି ସାହାଯ୍ୟକାରୀ ସଂସ୍ଥାର ଭୂମିକାକୁ ଆଲୋଚନାର ପରିସରକୁ ଅଣାଯାଉ । ଆଗରୁ ଏଇ ସ୍ତମ୍ଭରେ ମୁଁ କେତେବାର ଉଲ୍ଲେଖ କରିଛି ଯେ ଅନୁଦାନ/ଋଣ ଦେଇଥିବା ସଂସ୍ଥାମାନଙ୍କର

ପ୍ରାକୃତିକ ସମ୍ପଦରେ ଭରପୂର ଓଡ଼ିଶା ଉପରେ ବହୁଦିନରୁ ଲୋଲୁପଦୃଷ୍ଟି ପଡିଛି । ଦେଶର ସର୍ବବୃହତ୍ ଖଣିସମ୍ପଦ(କ୍ରୋମାଇଟ୍ ୯୮.୪%, ବକ୍ସାଇଟ ୬୯.୭%, ଗ୍ରାଫାଇଟ୍ ୩୨.୬%, ମାଙ୍ଗାନିଜ ୩୧.୮%, ଡୋଲୋମାଇଟ୍ ୧୨%) ଏଗଠି ଭରପୂର ରହିଛି । ଏହା ବ୍ୟତିରେକ ଲୁହାପଥର ଓ କୋଇଲାର ବିଶାଳ ଭଣ୍ଡାର ମଧ୍ୟ ଗଚ୍ଛିତ ରହିଛି । ଏଗୁଡିକ ଛଡା ପୁଞ୍ଜିନିବେଶ ପାଇଁ ଅନେକ ଆକର୍ଷଣ ମଧ୍ୟ ରହିଆସିଛି । ଭିତିଭୂମି ହେଉ, ରାସ୍ତାଘାଟ ହେଉ, ବନ୍ଦର ନିର୍ମାଣ ହେଉ, ବନସ୍ପତି ସୁରକ୍ଷା ହେଉ, ଆଗାମୀ ବର୍ଷମାନଙ୍କରେ ଏକଲକ୍ଷ କୋଟିରୁ ଅଧିକ ବିଦେଶୀ ପୁଞ୍ଜି ଓଡ଼ିଶାରେ ବିଭିନ୍ନ କ୍ଷେତ୍ରରେ ଲଗାଯିବ ବୋଲି ଯୋଜନା କରାଯାଉଛି । ଏ ଭିତରେ ଅଛନ୍ତି ବିଶ୍ୱବ୍ୟାଙ୍କ, ଏ:ଡି:ବି: ଓ ଜି-୭ ଦେଶ (ଜାପାନ, ଆମେରିକା, ବ୍ରିଟେନ୍, ଫ୍ରାନ୍ସ ଆଦି) ।

ଏହାର ଫଳ ସ୍ୱରୂପ ଓଡ଼ିଶା ସରକାରଙ୍କୁ ବିଭିନ୍ନ ସଂସ୍କାର କରାଯିବାକୁ ବାଧ୍ୟ କରାଯାଇଛି ଓ ତା'ର ଫଳାଫଳ ଏବେ ଓଡ଼ିଶାବାସୀ ଭୋଗିବା ଆରମ୍ଭ କରିଛନ୍ତି । ପ୍ରଥମେ ଏକ ବଳିଷ୍ଠ ଘରୋଇକରଣ ପ୍ରକ୍ରିୟା ଓଡ଼ିଶାରେ ବ୍ୟାପକ ହୋଇଛି । ସୂତାକଳ, ଚିନିକଳ, କୋଣାର୍କ ଟିଭି, ଇଡ଼କଲ୍ ସିମେଣ୍ଟ ଆଦି ସରକାରୀ କର୍ପୋରେସନ୍‌କୁ ଘରୋଇକରଣ କରାଯାଇ ପୁଞ୍ଜିପତିଙ୍କୁ ଶାଗ ମାଛ ମୂଲ୍ୟରେ ବିକ୍ରି କରାଯାଇଛି । କ୍ରମାଗତ ଭାବେ କ୍ଷତିରେ ଚାଲୁଛି ବୋଲି ଦର୍ଶାଯାଇ ଏଇ ନିଗମମାନଙ୍କରୁ ସରକାର ପୁଞ୍ଜି ଅପସାରଣ କରିଛନ୍ତି । କ୍ଷତି କାହିଁକି ହେଉଛି ତାହାର ମୂଳକାରଣ ସମ୍ଭବତଃ ଖୋଜା ଯାଇନାହିଁ । କ୍ଷତି ରୋକାଯିବାକୁ ପଦକ୍ଷେପ ନିଆଯାଇନାହିଁ । ସାଧାରଣ ଜନତାଙ୍କ ଆଗରେ ଯୁକ୍ତି ବଢାଯାଇ ନାହିଁ । ବିଶ୍ୱବ୍ୟାଙ୍କ ଏବଂ ଡି:ଏଫ୍:ଆଇ:ଡି:ଙ୍କ ସାହାଯ୍ୟ ପାଇଁ ଏହା ସର୍ତ୍ତ କରାଯାଇଥିଲା । ବିନା ଦ୍ୱିଧାରେ ମାନି ଏହା କରାଯାଇଛି । ପବ୍ଲିକ୍ ସେକ୍ଟର୍ ରିଫର୍ମ୍ସ ନାମରେ ଏହାକୁ ଅତି ଲଜ୍ୟାଜନକ ଭାବେ ସ୍ୱୀକାର କରାଯାଇଛି ।

ଦ୍ୱିତୀୟରେ, ପ୍ରଶାସନିକ ସଂସ୍କାର (ଆଡମିନିଷ୍ଟ୍ରେଟିଭ ରିଫର୍ମ୍ସ) ନାଁରେ ସରକାରୀ କର୍ମଚାରୀମାନଙ୍କୁ ସ୍ୱେଚ୍ଛାକୃତଭାବେ ଅବସର ନେବାକୁ (ଭି.ଆର୍.ଏସ୍.) ବାଧ୍ୟ କରାଯାଇଛି । ଛଟେଇ. ପ୍ରକ୍ରିୟା ଚାଲିଛି ଓ ଭବିଷ୍ୟତରେ ଏହା ଆହୁରି ବ୍ୟାପକ ହେବବୋଲି ଆଶଙ୍କା କରାଯାଉଛି । ଅର୍ଥନୀତି ଏତେ ଦୁର୍ବଳ ହୋଇଛି ଯେ

ସରକାର କର୍ମଚାରୀମାନେ ନିୟମିତ ଦରମା ପାଉନାହାଁନ୍ତି । ତା'ଉପରେ ଛଟେଇ ଡର ବେଢି ଉପରେ କୋରଡା ମାଡ ଭଳି ଲାଗୁଛି ।

ତୃତୀୟରେ ବିଦ୍ୟୁତ ଶକ୍ତି କ୍ଷେତ୍ରରେ ବ୍ୟାପକ ସଂସ୍କାର ଅଣାଯାଇଛି (ଯାହାକୁ ପାୱାର ସେକ୍ଟର୍ ରିଫର୍ମ୍‌ସ କୁହାଯାଏ) । ଏଥିରେ ଉତ୍ପାଦନ ଓ ବିତରଣ ବ୍ୟବସ୍ଥାକୁ ସମ୍ପୂର୍ଣ୍ଣ ରୂପେ ଘରୋଇକରଣ କରାଯାଇଛି । ଓଡ଼ିଶାରେ ବିଶ୍ୱବ୍ୟାଙ୍କର ଏ ପରୀକ୍ଷା ସଫଳ ହୋଇଛି କି ନାହିଁ ତାହା ଏ ପର୍ଯ୍ୟନ୍ତ ପ୍ରମାଣିତ ହୋଇନାହିଁ । କିନ୍ତୁ ଏ ସଂସ୍କାର ଓଡ଼ିଶାରେ ପ୍ରଥମେ ଆରମ୍ଭ ହୋଇଥିଲା ଓ ଏହାକୁ ଉଦାହରଣ ଭାବେ ଦେଖାଇ ବିଶ୍ୱବ୍ୟାଙ୍କ ଭାରତରେ ଅନେକ ପ୍ରଦେଶରେ ବିଦ୍ୟୁତଶକ୍ତି କ୍ଷେତ୍ରରେ ସହଜରେ ସଂସ୍କାର ଆଣିବାରେ ସଫଳତା ହାସଲ କରିଛି ।

ଚତୁର୍ଥରେ, ପାଣି ପଞ୍ଚାୟତ ଜରିଆରେ ଜଳସମ୍ପଦର ଘରୋଇକରଣ କରାଯାଇଛି । ବିଶ୍ୱବ୍ୟାଙ୍କ ଏ ପରୀକ୍ଷା ସଫଳ ହୋଇଛି କି ନାହିଁ ଏବେସୁଦ୍ଧା ପ୍ରଚାର କରିନାହିଁ । ସରକାର କିନ୍ତୁ ପାଣି ପଞ୍ଚାୟତ ବିଷ୍ଣୁ ସହସ୍ର ନାମ ଭଳି ଘୋଷିବାରେ ଲାଗିଛି । ଏହାକୁ ଉପହାସ କରି ଜଣେ ବିଖ୍ୟାତ ସମ୍ପାଦକ 'ନାଁ ପାଣି ନାଁ ପଞ୍ଚାୟତ' ବୋଲି ପ୍ରବନ୍ଧଟି ଲେଖିଛନ୍ତି । ସାରା ଦେଶର ଲୋକେ ହସୁଛନ୍ତି ।

ପଞ୍ଚମରେ, ଓଡ଼ିଶାରେ କୃଷିକୁ ଶିଳ୍ପର ମାନ୍ୟତା ଦିଆଯାଇଛି । ଏହା ପଛରେ ଘରୋଇ ପୁଞ୍ଜିନିବେଶ ଅସଲ ଉଦ୍ଦେଶ୍ୟ ବୋଲି କୁହାଯାଉଛି । ରପ୍ତାନି ଭିତିକ କୃଷି ଉପରେ ପ୍ରାଧାନ୍ୟ ଦିଆଯାଇଛି । ଆଗ୍ରି ବିଜିନେସ୍ ନାଁରେ ବିଭିନ୍ନ କମ୍ପାନୀମାନଙ୍କୁ ଜମି ଓ ପୁଞ୍ଜି ସୁବିଧାରେ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି । ଭୂସଂସ୍କାର ଆଇନ୍ କୋହଳ କରିବାକୁ ପଦକ୍ଷେପ ନିଆଯାଉଛି । କଣ୍ଟ୍ରାକ୍ଟ ଫାର୍ମିଂର ପ୍ରସ୍ତାବ କାର୍ଯ୍ୟକାରୀ ହେବାକୁ ବେଶୀ ସମୟ ଲାଗିବ ନାହିଁ ବୋଲି କୃଷି ବିଶାରଦମାନେ କହୁଛନ୍ତି । କୃଷି ଓ କୃଷକର ସ୍ଥିତି ଓଡ଼ିଶାରେ କ୍ରମାଗତ ଭାବେ ଦୁର୍ବଳ ହେବାରେ ଲାଗିଛି ଓ ସାମାନ୍ୟ ଖାଉଟି ଦ୍ରବ୍ୟ ସବୁ ଓଡ଼ିଶାରେ ଆମଦାନୀ କରାଯାଉଛି । ଓଡ଼ିଶାର ଅର୍ଥରେ ପାର୍ଶ୍ୱବର୍ତ୍ତୀ ପ୍ରଦେଶର ଚାଷୀ ଓ ବ୍ୟବସାୟୀମାନେ ସମୃଦ୍ଧଶାଳୀ ହେବାରେ ଲାଗିଛନ୍ତି । ଆଶଙ୍କା ରହିଛି ଯେ ଓଡ଼ିଶାକୁ ଆଉ ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ବୋଲି କୁହାଯିବ ନାହିଁ ।

ଷଷରେ ଓଡ଼ିଶାରେ କର୍ମଯୋଗାଣର ଏକ ଭୟାନକ ପରିସ୍ଥିତି ସୃଷ୍ଟି ହୋଇଛି । ଓଡ଼ିଶା ମାଟିରେ କର୍ମ ସଂସ୍ଥାନ ମିଳୁ ନଥିବାରୁ ବହୁ କର୍ମଜୀବି ଓ ପେଶାଦାର ବ୍ୟକ୍ତି ଦେଶାନ୍ତରୀ ହେବାକୁ ବାଧ ହେଉଛନ୍ତି ।

ବନ୍ଧୁଗଣ । ସମୟ ଆସିଛି, ଜଗତୀକରଣ ଓ ଏହାକୁ ଶକ୍ତିଶାଳୀ କରୁଥିବା ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି, ବିଶ୍ୱ ବାଣିଜ୍ୟ ସଂଗଠନ ଓ ବହୁରାଷ୍ଟ୍ରୀୟ କର୍ପୋରେସନ୍‌ମାନଙ୍କୁ ଭଲଭାବରେ ବୁଝିବା ପାଇଁ ଓ ସେମାନଙ୍କର ମୁଖା ଖୋଲିଦେବା ପାଇଁ । ଓଡ଼ିଶାରେ ଏଇଭଳି ଭ୍ରମାତ୍ମକ ନୀତି ଓ ବିକାଶର ଦିଗକୁ ପ୍ରଶ୍ନ କରିବାର ସମୟ ଆସିଛି । ଯେତେବେଳେ ନୋବେଲ ପୁରସ୍କାର ବିଜେତା ଓ ବିଶିଷ୍ଟ ଅର୍ଥନୀତିଜ୍ଞ ଜୋସେଫ୍ ଷ୍ଟିଗ୍‌ଲିଜ୍ ବିଶ୍ୱବ୍ୟାଙ୍କ, ଆଇ:ଏମ୍:ଏଫ୍: ଆଦି ସଂସ୍ଥାମାନଙ୍କ ଭିତରେ ରହି ତାହାର ଅସଲ ଉଦ୍ଦେଶ୍ୟକୁ ସ୍ପଷ୍ଟତାର ସହ ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପିତ କରଛନ୍ତି, ସେତେବେଳେ ଆମେ ମଧ୍ୟ ବିଦେଶୀ ପୁଞ୍ଜିର ଏଜେଣ୍ଟ୍‌ମାନଙ୍କ ଜାଲରେ ନପଡିବା ପାଇଁ ସତର୍କ ହେବା । ଯେତେବେଳେ ସାରା ବିଶ୍ୱରେ ଜନ ଆନ୍ଦୋଳନ ମୁଣ୍ଡ ଟେକୁଛି ଓ ଅସନ୍ତୋଷର ନିଆଁ ଜଳୁଛି, ସେତେବେଳେ ଓଡ଼ିଶାବାସୀ ନୀରବ ରହିବେ କି ? ଏହାର ଉତ୍ତର ମିଳିବା ଅପେକ୍ଷାରେ ମୁଁ ଅଛି । ❑

# ଜଗତୀକରଣ ଏବଂ ଆମ ସାଂସ୍କୃତିକ ସମ୍ପଦ

## (୧)

ସତୁରୀ ଦଶକର ଶେଷଭାଗରେ ସାରା ପୃଥିବୀରେ ବ୍ରାଜିଲ୍‌ର ଶିକ୍ଷାବିତ୍ ପାଉଲୋ ଫ୍ରାଏରେଙ୍କ ପ୍ରଦତ୍ତ ତାତ୍ତ୍ୱିକ ଓ ଦର୍ଶନ ସମ୍ବନ୍ଧିତ ଆଲୋଚନା ଓ ସମାଜ ପରିବର୍ତ୍ତନର ନୂତନ ଧାରାପାଇଁ ଆବଶ୍ୟକ ରଣନୀତି ମୋ' ଭଳି ଅନେକ ଯୁବକ ଯୁବତୀଙ୍କୁ ପ୍ରଭାବିତ କରିଥିଲା । ତାଙ୍କ ମତଥିଲା ଯେ ଯଦି ଦାରିଦ୍ର୍ୟ ଓ କ୍ରୀତଦାସତ୍ୱର ବେଡ଼ିରେ ବାନ୍ଧିହୋଇଥିବା ମଣିଷଟିଏ ତାହାର ସାଂସ୍କୃତିକ ନୀରବତା ଭଙ୍ଗ କରିଦିଏ, ତେବେ ସେ ବିକାଶ ଓ ପରିବର୍ତ୍ତନର ଡୋରି ସମ୍ଭାଳିବାକୁ ସକ୍ଷମ ହେବ । ଏହାର ଅର୍ଥ ହେଲା, ଯଦି ଗରିବ ମଣିଷଟି ନିଜର କର୍ମ ଚିନ୍ତନ କରିଆରେ ନିଜର ସାମଗ୍ରୀକ ସ୍ଥିତିର ପ୍ରକୃତ ଅର୍ଥ ବୁଝିପାରିବ ଓ ତାକୁ ବଦଳାଇବାରେ ସକ୍ଷମ ହେବ । ଏଥିପାଇଁ ଏକ ଶକ୍ତିଶାଳୀ ଓ ମାର୍ଗଦର୍ଶୀ ପୁସ୍ତକ ଲେଖିଥିଲେ । ସ୍ୱାଧୀନତା ପାଇଁ ସାଂସ୍କୃତିକ କର୍ମ (କଲଚରାଲ୍ ଆକ୍ସନ୍ ଫର୍ ଫ୍ରିଡମ୍) ଯାହାକୁ ମୁଁ ଅନେକ ଥର ପଢ଼ିଛି ଓ ବୁଝିବାକୁ ଚେଷ୍ଟାକରିଛି । ନୂତନ ଶିକ୍ଷା ଓ ଚେତନା ପାଇଁ କେତେକ ସାଂସ୍କୃତିକ କାର୍ଯ୍ୟକ୍ରମ ନିତାନ୍ତ ଆବଶ୍ୟକ । ସଂସ୍କୃତି ଗଢ଼ାହୁଏ କର୍ମ-ଚିନ୍ତନ-କର୍ମ ଚକ୍ରର ଅବାରିତ ଓ ଅପରିମିତ ପ୍ରକ୍ରିୟାରୁ । ଶକ୍ତି ଓ ସ୍ୱାଧୀନତା ପାଇଁ ଦାରିଦ୍ର୍ୟ, ଅନ୍ୟାୟ ଓ ଅତ୍ୟାଚାରର ଶୃଙ୍ଖଳାରୁ ମୁକ୍ତ ହେବା ପାଇଁ ପ୍ରତ୍ୟେକ ଶୋଷିତ ଓ ଅତ୍ୟାଚାରିତ ବ୍ୟକ୍ତିକୁ ତାର ଆପଣାର ସଂସ୍କୃତିର ସଂଜ୍ଞାକୁ ବୁଝିବାକୁ ପଡ଼ିବ ଓ ବଦଳାଇବାକୁ ପଡ଼ିବ । ମାତ୍ର ଦୁଃଖର କଥା ଯେ, ଗତ ୩୦ ବର୍ଷ ଭିତରେ ପରିବର୍ତ୍ତନର ସବୁ ଆଶାକୁ ଧୂଳିସାତ୍ କରି ଏକ ସାଂସ୍କୃତିକ ସାମ୍ରାଜ୍ୟବାଦ ଯେମିତି ଏ ପୃଥିବୀଟାକୁ ସମ୍ପୂର୍ଣ୍ଣ ରୂପେ ଗ୍ରାସ କରିଦେଇଛି । ଜଗତୀକରଣ ଦ୍ୱାରା ଏ ପୃଥିବୀର ବିଭିନ୍ନ ସମାଜ ଓ ସଂସ୍କୃତି ଯେଉଁଭଳି ପ୍ରଭାବିତ ହୋଇଛି ତାହା ଦେଶ, କାଳ, ପାତ୍ର ଓ ପରିବେଶର ସମସ୍ତଙ୍କୁ ଆଜି କ୍ରୀତଦାସ କରି ରଖିବା ସ୍ପଷ୍ଟ ବାରିହେଉଛି । ଗୋଟିଏ ପାର୍ଶ୍ୱରେ ଏ ପୃଥିବୀର ଗରିବ ମଣିଷଟି ସାଂସ୍କୃତିକ ନୀରବତା ଭାଙ୍ଗିପାରିଲା ନାହିଁ । ଅନ୍ୟ ପାର୍ଶ୍ୱରେ ଜଗତୀକରଣ ପ୍ରଭାବରେ ନିଜର ସାଂସ୍କୃତିକ ସମ୍ପଦକୁ ସେ ହରାଇ ବସିଛି । ମଣିଷଟି କେତେ ଅସହାୟ ହୋଇପଡ଼ିଛି ପାଠକମାନେ ଜାଣିପାରୁଥିବେ । ନିମ୍ନରେ କେତୋଟି ଉଦାହରଣକୁ ବିଚାରକୁ ନେବା ।

ଆମ ଆଦିବାସୀ ଅଞ୍ଚଳର ଏକ ସର୍ବେକ୍ଷଣରୁ ଜଣାପଡ଼ିଛି ଯେ, ସେମାନେ ତାଙ୍କର ପ୍ରିୟ ଖାଦ୍ୟ ମାଣ୍ଡିଆ ଓ ସୁଆଁ, କାନ୍ଦୁଲ ଓ କନ୍ଦାକୁ କ୍ରମଶଃ ଭୁଲିଯିବାକୁ ବସିଲେଣି । ପାରମ୍ପରିକ କାର୍ଯ୍ୟ ବଦଳରେ ଏବେ ଚାଉଳ,ଗହମ ଓ ଅନ୍ୟ କେତେ କିସମର ଖାଦ୍ୟଦ୍ରବ୍ୟ ସେ ଅଞ୍ଚଳରେ ଲୋକପ୍ରିୟ ହେବାକୁ ଲାଗିଛି । କେତେ ଜାଗାରେ ଫାଷ୍ଟଫୁଡ୍ ଦୋକାନ ଖୋଲିଲାଣି ମଧ୍ୟ । କେୟାର ଓ ବିଶ୍ୱ ଖାଦ୍ୟ ଯୋଜନା ତରଫରୁ ମଧ୍ୟ ବିଭିନ୍ନ ପ୍ରକାର ଖାଦ୍ୟଗୁଣ୍ଡ ଓ ବିସ୍କୁଟ ଯୋଗାଇ ଦିଆଯାଉଛି । ଗୋଟାଏ ଧାରଣା ସୃଷ୍ଟି କରାଯାଉଛି ଯେ, ମାଣ୍ଡିଆ ହେଉଛି ହୀନ ମଣିଷଙ୍କ ପାଇଁ ଉଦ୍ଦିଷ୍ଟ ଖାଦ୍ୟ । କାରଣ ମାଣ୍ଡିଆ ଅଣଆଦିବାସୀ ଓ ଉଚ୍ଚବର୍ଗର ଲୋକେ ଖାଆନ୍ତି ନାହିଁ । ଏପରିକି ଆଦିବାସୀ ବିଧାୟକ ଓ ସାଂସଦମାନେ ମାଣ୍ଡିଆ କଥା ଆଲୋଚନା କରିଲେ ନାକ ଟେକୁଛନ୍ତି । ସାରା ପୃଥିବୀରେ ଏଭଳି ପାରମ୍ପରିକ ଖାଦ୍ୟ ଓ ପୋଷାକ ଲୋପପାଇଯିବାକୁ ବସିଛି । ମାକ୍‌ଡୋନାଲ୍‌ଡ଼୍, କେଣ୍ଟୁକି ଫ୍ରାଏଡ଼୍ ଚିକେନ୍ ଆଦିଙ୍କ ଶାଖାପ୍ରଶାଖା ବଢ଼ିବାରେ ଲାଗିଛି । କୋକାକୋଲା ଆଜି ଗାଁ ଗହଳରେ ମିଳୁଛି । ସହରର ସୁବିଧା ଗାଁରେ ମିଳିବା ଅର୍ଥ ଏଇଆ ବୋଲି ଯୁକ୍ତି ହେଉଛି ।

ଲଦାଖ୍ ହେଉଛି, ହିମାଳୟ ପର୍ବତର ଅଂଶବିଶେଷ । ସେଠାରେ ରହୁଥିବା ବୌଦ୍ଧଧର୍ମ ଅଧିବାସୀମାନଙ୍କର ରହିବା, ଖାଇବା, ପୋଷାକ, ସଙ୍ଗୀତ ସବୁଥିରେ ସ୍ୱାତନ୍ତ୍ର୍ୟ ରହିଛି । କିନ୍ତୁ କିଛିଦିନ ଧରି ଦେଖାଯାଉଛି ଯେ, ସେଠାରେ ସବୁକିଛି ବଦଳିବାରେ ଲାଗିଛି । ଲଦାଖ୍‌ବାସୀ ସିମେଣ୍ଟ୍ କ'ଣ ଜାଣିନଥିଲେ କି କେବେ ବ୍ୟବହାର କରିନଥିଲେ । ସେମାନଙ୍କ ପାରମ୍ପରିକ ବାସଗୃହର ସ୍ଥାନୀୟ ପଦାର୍ଥରୁ ତିଆରି ହୁଏ ଓ ଏଥିରେ ଏକ ସ୍ୱତନ୍ତ୍ର ଢ଼ାଞ୍ଚା ଏବଂ ନିର୍ମାଣ ଶୈଳୀ ରହିଥାଏ । ଆଧୁନିକ ବାସଗୃହ ନାମରେ ବର୍ତ୍ତମାନ ସେଠାରେ ସିମେଣ୍ଟ୍, କଂକ୍ରିଟ୍ ଘର ଆରମ୍ଭ ହୋଇଗଲାଣି ଏଇ କେତେବର୍ଷ ମଧ୍ୟରେ । ଏକ ସ୍ୱାବଲମ୍ବୀ ସମାଜ ଏବେ ସେଠାରେ ଅନ୍ୟ ଅଞ୍ଚଳ ଉପରେ ନିର୍ଭର କରିବା ଆରମ୍ଭ କରିଛି । ଯୁବ ଲଦାଖିମାନେ ବାପଅଜା ଅମଳର ଘରେ ରହିବାକୁ ପସନ୍ଦ କରୁନାହାନ୍ତି । ପାରମ୍ପରିକ ଲଦାଖି ପୋଷାକ କାଁ ଭାଁ କିଏ ପିନ୍ଧୁଛି । ସମସ୍ତେ ପାଶ୍ଚାତ୍ୟ ଦେଶର ଫ୍ୟାସନ୍‌କୁ ଆପଣାର କରୁଛନ୍ତି ।

ଆଜି ଆମ ଦେଶର ଗାଁ ଗହଳି ଭିତରେ ପଶିବା ମାତ୍ରେ ଦେଖିବେ ପିଲାମାନେ କ୍ରିକେଟ୍ ଖେଳୁଛନ୍ତି । ବ୍ୟାଟ୍ ବା ଷ୍ଟମ୍ପସ୍ ନଥାଉ, ପ୍ୟାଡ୍ ବା କ୍ରିକେଟ୍ ବଲ୍ ନଥାଉ

ସେଠାରେ ଖେଳ ଚାଲୁଛି । ହାରଜିତ୍ ବାଜି ପଡୁଛି ଓ କେତେ ଗାଁକୁ ନେଇ ଟୁର୍ଣ୍ଣାମେଣ୍ଟ୍ ମଧ୍ୟ ହେଉଛି । ଆବାଳବୃଦ୍ଧବନିତା କ୍ରିକେଟ୍ ମ୍ୟାଚ୍, ଟି.ଭି ବା ରେଡ଼ିଓକୁ ଆଶ୍ରାକରି ଉପଭୋଗ କରୁଛନ୍ତି । ନିଶାଗ୍ରସ୍ତ ଭଳି ବ୍ୟବହାର କରୁଥାନ୍ତି ସେମାନେ । ତେନ୍ଦୁଲ୍‌କର ଆଦି ଖେଳାଳିଙ୍କର ଚିତ୍ର ଘରେ ଘରେ, ସ୍କୁଲ ବହିରେ, ସବୁ ତରୁଣଙ୍କ ମାନସ ପଟରେ ଅହର୍ନିଶ ବିରାଜମାନ କରୁଛି । ଏହିଭଳି ପରିବେଶ ମୁଁ ଫିଲିପାଇନ୍‌ସରେ ମଧ୍ୟ ଦେଖିଛି । ସେଠିକାର ତରୁଣ ଯୁବଗୋଷ୍ଠୀ ବାସ୍କେଟ୍ ବଲ୍ ଖେଳିବା ପାଇଁ ପାଗଳ । ଗାଁ ଦାଣ୍ଡରେ ବାସ୍କେଟ୍‌ବଲ୍ ପଡ଼ିଆ ତିଆରି କରାଯାଉଛି । ପ୍ରତ୍ୟେକ ତରୁଣ ଆମେରିକାର ୟାଙ୍କି ବା ଚିକାଗୋ ବୁଲ୍ ଢାଞ୍ଚାରେ ଡ୍ରେସ୍ ଓ କ୍ୟାପ୍ ପିନ୍ଧୁଛି । ଟିକିଏ ଫୁର୍‌ସତ୍ ମିଳିଲେ ଗାଁ ଦାଣ୍ଡରେ ବାସ୍କେଟ୍ ବଲ୍ ଧରି ସାଙ୍ଗମାନଙ୍କ ସହ ଖୁସି ଗମାତରେ ଲାଗି ରହୁଛି । ମନେ ହେଉଛି ସାରା ଫିଲିପାଇନ୍‌ସ ଆମେରିକା ଆଡ଼କୁ ମୁହାଁଉଛି । କାୟ ମନୋବାକ୍ୟରେ ପ୍ରତ୍ୟେକ ଫିଲିପିନୋ ଓ ଫିଲିପିନା ଆମେରିକା ଯିବାକୁ ଯେମିତି ଗୋଡ଼ କାଢି ବସିଛି । ଏବଂ ଭାବୁଛି ଆମେରିକାରେ ରହିଲେ, ଯେମିତି ସେମାନଙ୍କୁ ସ୍ୱର୍ଗ ମିଳିଯିବ ।

ଉପନିବେଶବାଦର ଏକ ଘୃଣ୍ୟ ଅବଦାନ ଥିଲା ସାଂସ୍କୃତିକ ସମ୍ପଦକୁ ଧ୍ୱଂସ କରିବା । ଯେଉଁଠି ଉପନିବେଶବାଦ ପ୍ରବେଶକରିଛି, ସେଠାରେ ଔପନିବେଶିକମାନେ ସେମାନଙ୍କର ସଂସ୍କୃତି ଜବରଦସ୍ତ ଲଦିଦେବାକୁ ପ୍ରବଳ ଚେଷ୍ଟା କରିଛନ୍ତି ଏବଂ ସଫଳ ହୋଇଛନ୍ତି । ଆଫ୍ରିକା ହେଉଛି ଏହାର ଏକ ଚରମ ଉଦାହରଣ । ସେ ମହାଦେଶରେ ଏପରି ସାଂସ୍କୃତିକ ଅବକ୍ଷୟ ଘଟିଛି ଯେ, ଜଣେ ହେଲେ କେହି ଆଫ୍ରିକୀୟ ନିଜର ପରିଚୟ ସମ୍ପର୍କରେ ପ୍ରଶ୍ନ ପଚାରୁ ନାହିଁ । ଗୋରାମାନଙ୍କର ଆଚରଣ ଓ ଜୀବନଶୈଳୀ ଅନୁକରଣ କରିବାକୁ ସେ ପଛଘୁଞ୍ଚା ଦେଇନାହିଁ । ଆଫ୍ରିକା ଆଜି ସବୁପ୍ରକାର ସାଂସ୍କୃତିକ ସମ୍ପଦରୁ ବଞ୍ଚିତ ହୋଇ ଯେମିତି ନିଃସ୍ୱ ହୋଇଯାଇଛି । ଆଫ୍ରିକାର ଖାଦ୍ୟାଭାବ ଜନିତ ଦୁର୍ଭିକ୍ଷ ହେଉ କି ଏଡ୍‌ସ ବେମାରୀ ହେଉ, ଗୃହଯୁଦ୍ଧ ହେଉ, ଅଥବା ଜନହତ୍ୟା ହେଉ, ସବୁ ଯେମିତି ଏକ ସାଂସ୍କୃତିକ ସମସ୍ୟାରୁ ଜନ୍ମ ହୋଇଛି । ଜଣେ ଆଫ୍ରିକୀୟ ଆଉ ଜଣେ ଆଫ୍ରିକୀୟକୁ ଚିହ୍ନିପାରୁ ନାହିଁ । ଭାଷା ଯେମିତି ମରିଯାଇଛି । ସଙ୍ଗୀତର ସ୍ୱର ଯେମିତି ହଜିଯାଇଛି ।

ସତୁରୀ ଦଶକରେ ଏ ପୃଥିବୀର ଯୁବଗୋଷ୍ଠୀଙ୍କୁ କୁଆଡ଼େ ଗୋଟିଏ ଜିନିଷ ବେଶୀ ଆକର୍ଷଣ କରୁଥିଲା । ତାହା ହେଉଛି "ବ୍ଲୁ ଜିନ୍‌ସ୍" । କମ୍ପାନୀ ଗୁଡ଼ିକ ଥିଲା

ଲେଭାଇ ବା ର୍ୟାଙ୍ଗଲର୍ । ଏ ବ୍ରାଣ୍ଡର ଜିନ୍‌ସ ଆମ ଭିତରୁ କିଏ କିଣୁଥିଲେ ଆମେ ସବୁ ମାଗି ପିନ୍ଧୁଥାଉ ଓ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିଥାଉ । ସେତେବେଳେ ଏହି ଧରଣର ଜିନ୍‌ସ କେବଳ ଆମେରିକାରେ ମିଳୁଥିଲା ଓ ଲୁଚାଛପାରେ ଏ ଦେଶକୁ ଆସୁଥିଲା । ଶୁଣାଯାଏ ଭୂତପୂର୍ବ ସୋଭିଏତ୍ ଋଷିଆର ଯୁବଗୋଷ୍ଠୀ ବ୍ଲୁ ଜିନ୍‌ସ୍ ପାଇଁ କୁଆଡେ ପାଗଳ ହୋଇଯାଇଥିଲା । ସେତେବେଳେ ଅନେକ ଗୁଣ ଦାମ୍ ଦେଇ ବ୍ଲୁ ଜିନ୍‌ସ କିଣିବାକୁ ପଡୁଥିଲା । ଶୁଣାଯାଏ, ଯେ ସେ ଦେଶର ଯୁବତୀମାନେ ଏପରିକି ଦେହ ବିନିମୟରେ ଜିନ୍‌ସପ୍ୟାଣ୍ଟ ପାଇବାକୁ କୁଣ୍ଠା ପ୍ରକାଶ କରୁନଥିଲେ । ଏବେ ଉତ୍ତରମେରୁ ଠାରୁ ଦକ୍ଷିଣ ମେରୁ ପର୍ଯ୍ୟନ୍ତ ଟିଟ୍ଲାଗଡ଼ରୁ ଟିମ୍ବକ୍‌ଟୁ ପର୍ଯ୍ୟନ୍ତ ବ୍ଲୁ ଜିନ୍‌ସ୍‌ର ବହୁଳ ବ୍ୟବହାର ଚାଲିଛି । ସମସ୍ତେ ପ୍ରାୟ ଏକାଭଳି ଦିଶୁଛନ୍ତି । ଏହା ସହ ଯୁବଗୋଷ୍ଠୀ ମୋବାଇଲ୍ ଫୋନ୍‌ଟିଏ ଧରିଛି । ଟି.ଭି. ଚ୍ୟାନେଲ୍‌ରେ ବିଜ୍ଞାପନ ଦ୍ୱାରା ପ୍ରଭାବିତ ହୋଇ ସେମିତି ବେଶପୋଷାକ, ଚାଲିଚଳନ, ଢ଼ଙ୍ଗରଙ୍ଗର ଅନୁକରଣ କରିଛି । ସାରା ପୃଥିବୀର ସବୁ ଯୁବଗୋଷ୍ଠୀ ଯେମିତି ଏକାକାର ହୋଇପଡ଼ିଛନ୍ତି । ଜଗତୀକରଣର ସମର୍ଥକମାନେ ବାରମ୍ବାର କହୁଛନ୍ତି, ଏ ପୃଥିବୀଟି ଗୋଟିଏ ଗାଁ ଏବଂ ପ୍ରତ୍ୟେକ ବ୍ୟକ୍ତି ଜଣେ ଜଣେ ଗ୍ରାମବାସୀ । ସମସ୍ତେ ସମାନଭାବେ ରହିବେ, ସମାନ ପିନ୍ଧିବେ, ସମାନ ଖାଇବେ ଓ ସମାନ ଭାବେ ଦୃଷ୍ଟିକୋଣ ଓ ମୂଲ୍ୟବୋଧ ରଖିବେ - ଏକ ନୂତନ ରାମରାଜ୍ୟର ଉଦ୍ଭଟ ପରିକଳ୍ପନା । ସମସ୍ତେ ଏକାକାର ହୋଇଯିବେ ।

ସାଂସ୍କୃତିକ ଲଢ଼େଇ ସୁଦୂରପ୍ରସାରୀ ହୋଇଛି ଜଗତୀକରଣ ପ୍ରକ୍ରିୟାରେ ଗତିଶୀଳତା ଆସିଲା ପରେ । ଦେଶ ଭିତରେ ଓ ବାହାରେ, ଧର୍ମ ଭିତରେ ଓ ବାହାରେ, ଭାଷା ଭିତରେ ଓ ବାହାରେ, ଐଶ୍ୱରୀକ ବିଶ୍ୱାସ ଭିତରେ ଓ ବାହାରେ ସବୁଠି ଦଙ୍ଗା ଓ ଲଢେଇ, ହତ୍ୟା ଓ ଲୁଣ୍ଠନ, ଘୃଣା ଓ ଶତ୍ରୁତା ଲାଗିରହିଛି । ଏସବୁକୁ ନେଇ ପୃଥିବୀର ମାନବୀୟ ଭୂଗୋଳ ଓ ବୈଚାରିକ ମାନଚିତ୍ର ବଦଳିବାରେ ଲାଗିଛି । ଆମ ଦେଶରେ ଧର୍ମ, ଭାଷା, ବିଶ୍ୱାସ ଓ ବିଚାରଧାରାକୁ ନେଇ ସଂଘର୍ଷ ବଢୁଛି । ପୃଥିବୀର ସବୁଆଡ଼େ ଗୋଟିଏ ଅପ୍ରାକୃତିକ ଓ ଅମାନୁଷିକ ଉତ୍ତେଜନା ଲାଗିରହିଛି । ସାଂସ୍କୃତିକ ସଂଘର୍ଷର ତିନୋଟି କାରଣ ରହିଛି । ଗୋଟାଏ ହେଲା ଧର୍ମ ରକ୍ଷାକରିବା ପାଇଁ ଲଢ଼େଇ । ଦ୍ୱିତୀୟଟି ହେଲା ଜାତିଗତ ଲଢ଼େଇ । ତୃତୀୟଟି ହେଲା ସାଂସ୍କୃତିକ ଉତ୍କର୍ଷତା ପାଇଁ ଲଢ଼େଇ । ବିଶିଷ୍ଟ ଲେଖକ ଓ ବୁଦ୍ଧିଜୀବି ସାମୁଏଲ୍ ହଣ୍ଟିଙ୍ଗ୍‌ଟନ୍ ଏସବୁ ଲଢ଼େଇକୁ ତାଙ୍କ ବହି "ଦି

କ୍ଲାସ୍ ଅଫ୍ ସିଭିଲାଇଜେସନ୍" ରେ ବିଶେଷ ଭାବେ ଉଲ୍ଲେଖ କରିଛନ୍ତି । ଏବେ ସାମ୍ପ୍ରତିକ ପୃଥିବୀରେ ଧର୍ମକୁ ନେଇ ଯେପରି ଅଗଣିତ ଲଢ଼େଇ ଚାଲୁରହିଛି, ସେଗୁଡ଼ିକୁ ସହଜରେ ତାଲିକାଭୁକ୍ତ କରାଯାଇପାରେ । ଲଢ଼େଇ ଚାଲିଛି, ଖ୍ରୀଷ୍ଟିଆନ୍ ଓ ମୁସଲମାନମାନଙ୍କ ମଧ୍ୟରେ, ଖ୍ରୀଷ୍ଟିଆନ୍ ଓ ଇହୁଦୀ ମାନଙ୍କ ମଧ୍ୟରେ, ଇହୁଦୀ ଓ ମୁସଲମାନମାନଙ୍କ ମଧ୍ୟରେ, ହିନ୍ଦୁ ଓ ମୁସଲମାନ ମାନଙ୍କ ମଧ୍ୟରେ, ସୁନ୍ନି ଓ ସିୟାମାନଙ୍କ ମଧ୍ୟରେ, ପ୍ରୋଟେଷ୍ଟାଣ୍ଟ ଓ କ୍ୟାଥୋଲିକ୍‌ଙ୍କ ମଧ୍ୟରେ । ବଲ୍କଲଧାରୀ ମହିମାଧର୍ମୀ ଓ କୌପନୀଧାରୀ ମହିମାଧର୍ମୀଙ୍କ ମଧ୍ୟରେ । ଜାତିକୁ ଦେଖିଲେ ଉଚ୍ଚଜାତି ଓ ନୀଚଜାତି, ଚୀନାବାସୀ ଓ ଜାପାନ୍‌ବାସୀ, ସ୍ଲାଭ୍ ଓ ତୁର୍କୀ, ଚୀନାବାସୀ ଓ ମାଳୟବାସୀ, ଗ୍ରୀକ୍ ଓ ତୁର୍କୀବାସୀ, ସିଂହଳ ଓ ତାମିଲ୍, ଋଷିଆ ଓ ଚେଚେନ୍, ସର୍ବ ଓ ବୋସ୍‌ନିଆବାସୀ, ହୁଟୁ ଓ ଟୁଟ୍‌ସା ଆଦି ଲଢ଼େଇକୁ ଋକ୍ରାନ୍ତ କରିସାରିଛି । ଲଢ଼େଇରେ ଗଣହତ୍ୟା ହୋଇଛି । ଯାହା ଯଦି ଜଣେ ବୁଝିବାକୁ ଚାହିଁବେ ସେ ତାର ମଣିଷପଣିଆ ହରାଇବସିବେ ୀ ସାଂସ୍କୃତିକ ଲଢ଼େଇରେ ଏହି କେତେ ବର୍ଷରେ ଯେତେ ଲୋକ ମରିଛନ୍ତି, ତାହା ଇତିହାସ କେବେହେଲେ ଭୁଲିଯିବ ନାହିଁ । ବିଂଶ ଶତାବ୍ଦୀରେ କ'ଣ ପ୍ରଗତି ହୋଇଛି ? ତାହା ସମୀକ୍ଷାରେ ସୀମିତ ନରଖି ଯେତେ ହୋଇଛି ତାହା ଗଣହତ୍ୟା ବିଚାରକୁ ନିଆଯାଏ । ଅବାକ୍ ଲାଗେ ଯେ, ଏକ ବିକଶିତ ଓ ଉନ୍ନତ ସଭ୍ୟତାରେ ଏ ଗଣହତ୍ୟା କିପରି ସମ୍ଭବ ହୋଇଛି । ମରିଛନ୍ତି ଦଶଲକ୍ଷ ଆରମେନିଆନ୍, କେତେକୋଟି ଋଷିଆନ୍, ଏକକୋଟିରୁ ଉର୍ଦ୍ଧ ଇହୁଦୀ, ତିରିଶ ଲକ୍ଷ କାମ୍ବୋଡ଼ିଆବାସୀ, ହଜାର ହଜାର ବୋସ୍‌ନିଆବାସୀ, ରୁଆଣ୍ଡା ଓ ପୂର୍ବ ତିମୋର୍‌ବାସୀ । ଅସଲ ଯୁଦ୍ଧରେ ମରୁଥିବା ସୈନିକମାନଙ୍କ ଠାରୁ ଏ ଗଣହତ୍ୟା ଅନେକ ସୀମା ଟପିଯାଇଛି । ଐତିହାସିକମାନେ ବାରମ୍ବାର କହିଆସୁଛନ୍ତି ଯେ, ସାଂସ୍କୃତିକ ଉତ୍କର୍ଷତା ଦେଖାଇଥିବା ଜାତି, ନିକୃଷ୍ଟତାର ସଂସ୍କୃତିକୁ ଧ୍ୱଂସ କରିଦେଇଛି ସବୁବେଳେ । ଆର୍ଯ୍ୟମାନେ ଅନାର୍ଯ୍ୟମାନଙ୍କୁ, ଗୋରାମାନେ କଳାମାନଙ୍କୁ, ଗୋରାମାନେ ଲୋହିତ ଭାରତୀୟମାନଙ୍କୁ ମାରି ଖତମ୍ କରିଦେଲା ଭଳି ଜଗତୀକରଣରେ ହୃଷ୍ଟପୁଷ୍ଟ ହେଉଥିବା ସଂସ୍କୃତି, ପଛୁଆ ପଡ଼ିଯାଇଥିବା ସଂସ୍କୃତିକୁ ନିଶ୍ଚିହ୍ନ ଯେ କରିଦେବ ଏକଥା ଭବିଷ୍ୟବାଣୀ ଆକାରରେ ଦିଆସରିଛି ।

ଏଇଥିପାଇଁ ସ୍ଥାନୀୟ ଓ ଏକାନ୍ତ ଭାବେ ନିଜସ୍ୱ ସଂସ୍କୃତି ଯାହା ପଛରେ ହଜାର ହଜାର ବର୍ଷର ମୂଲ୍ୟବୋଧ ଓ ସ୍ଥାୟୀତ୍ୱ ରହିଛି ଏବେ ତାହାର ମୂଳୋତ୍ପାଟନ ହେବା

ଆରମ୍ଭ କରିଛି ଓ ଜଗତୀକରଣ ଏହି ପ୍ରକ୍ରିୟାକୁ ସଫଳ କରିବାରେ ମୂଳ ଭୂମିକା ଗ୍ରହଣ କରିଛି । ବର୍ତ୍ତମାନ ଆମର ପ୍ରଚଳିତ ସାଂସ୍କୃତିକ କାର୍ଯ୍ୟକ୍ରମ ସବୁ ଆଗାମୀ ଦିନର ସାଂସ୍କୃତିକ ଦାସତ୍ୱକୁ ମଜଭୁତ୍ କରିବାରେ ଲାଗିଛି ।

(୨)

ନବେ ଦଶକର ପ୍ରାରମ୍ଭରେ କାଶୀପୁରଠାରେ ଆମ ଆଦିବାସୀ ଭାଇଭଉଣୀ ଯେଉଁମାନେ ରାତି ସ୍କୁଲରେ ପାଠ ପଢ଼ାନ୍ତି ଓ ଆମେ ଯାହାକୁ ଶ୍ରଦ୍ଧାରେ ଗୁରୁଭାଇ ଗୁରୁ ଭଉଣୀ ଡାକିଥାଉ, ଏକଦା ଏକ ବିଶାଳ ସମାବେଶରେ ଏକତ୍ରିତ ହୋଇଥିଲେ । ସେଠାରେ ସେମାନଙ୍କୁ ତାଙ୍କ ନିଜ ଭାଷାରେ ଗୀତ ଗାଇବା ପାଇଁ ଅନୁରୋଧ କରାଯାଇଥିଲା । ସେମାନଙ୍କ ପାରମ୍ପରିକ ଲୋକନୃତ୍ୟ ପ୍ରଦର୍ଶନ ପାଇଁ ପ୍ରସ୍ତାବ ମଧ୍ୟ ଥିଲା । କିନ୍ତୁ ସେମାନେ ନା ଗୀତ ଗାଇଲେ ନା ନାଚିଲେ । ଅନେକ କଷ୍ଟରେ 'ରଙ୍ଗବତୀ' ଗୀତ କେତେ ଜଣ ଗାଇଥିଲେ । ଆମେ ସବୁ ଆଶ୍ଚର୍ଯ୍ୟ ହୋଇଥିଲୁ ଯେଉଁ ଆଦିବାସୀ ଆପଣା ଛନ୍ଦରେ ଗୀତ ବୋଲିବା ପାଇଁ ଓ ଆପଣା ତାଳରେ ନାଚିବା ପାଇଁ ସାରା ପୃଥିବୀରେ ପରିଚିତ ସେ କାହିଁକି ନିଜର ଏ ସଂସ୍କୃତିକୁ ଓ ସାଂସ୍କୃତିକ ପରିଭାଷାକୁ ସ୍ୱତଃପ୍ରବୃତ୍ତ ଭାବେ ପରିପ୍ରକାଶ କରିବାକୁ ନାରାଜ ?

ଏକ ଅଧ୍ୟୟନରୁ ଜଣାପଡ଼ିଛି ଯେ ଗତ କେତେ ବର୍ଷରେ ସାରା ପୃଥିବୀରେ ଅନେକ ଭାଷା ସବୁ ଲୋପ ପାଇଯାଇଛି । ଦକ୍ଷିଣ ଆମେରିକାରେ କେତେ ଶହ ଭାଷା ଏ ଭିତରେ ନିଶ୍ଚିହ୍ନ ହୋଇଗଲାଣି । ପୃଥିବୀରେ ପ୍ରାୟ ୭ହଜାରରୁ ଉର୍ଦ୍ଧ୍ୱ କଥିତ ଓ ଲିଖିତ ଭାଷା ଏବେ ସୁଦ୍ଧା ବଞ୍ଚିରହିଛି କିନ୍ତୁ ଅଧ୍ୟୟନରୁ ଜଣାପଡ଼ିଛି ଯେ ବର୍ଷକୁ ପ୍ରାୟ ୨୦ଟି ଭାଷା ଲୁପ୍ତ ହୋଇଯାଉଛି । ଅର୍ଦ୍ଧାଧିକ ଭାଷା ବର୍ତ୍ତମାନ ଲୁପ୍ତ ପ୍ରାୟ ବୋଲି ୟୁନେସ୍କୋ ତା'ର ଏକ ରିପୋର୍ଟରେ ଉଲ୍ଲେଖ କରିଛନ୍ତି । ଯେଉଁ ଗୋଷ୍ଠୀ ନିଜର ଭାଷା ହରାଇ ବସିଛି ସେ ଗୋଷ୍ଠୀ ସାରା ମଣିଷ ସମାଜ ପାଇଁ ଏକ ଦୁଃଖଦ ଘଟଣା ହୋଇପଡୁଛି । ଭାଷା ମରିଗଲେ ତା' ସହିତ ଏକ ଅଦ୍ୱିତୀୟ ଅନୁଭୂତି ମଧ୍ୟ ପୃଥିବୀ ପୃଷ୍ଠରେ ବିଲୁପ୍ତ ହୋଇଯାଉଛି । ଅନ୍ୟ ପକ୍ଷରେ ଗୋଟିଏ ଭାଷା ମରିଗଲେ ନୂଆ ଭାଷାଟିଏ ସୃଷ୍ଟି ହେଉନାହିଁ । ବରଂ ସାରା ପୃଥିବୀରେ ଗୋଟିଏ ଶକ୍ତିଶାଳୀ ଭାଷା ତା'ର ପ୍ରଭାବ ବିସ୍ତାର କରିଚାଲୁଛି । ସେଇଟି ହେଉଛି ଇଂରାଜୀ ।

ପୃଥିବୀରେ ସବୁ ଦେଶରେ ଇଂରାଜୀ ଭାଷା ଶିଖିବା ପାଇଁ ଏବେ ଖୁବ୍ ଗୁରୁତ୍ୱ ଦିଆଯାଉଛି । ଏପରିକି ଚୀନ୍ ଓ ଜାପାନ ଭଳି ଦେଶମାନେ ଇଂରାଜୀ ଭାଷା ଶିଖିବାକୁ ଗତ କେତେ ବର୍ଷ ଧରି ପ୍ରାଧାନ୍ୟ ଦେଇଆସିଛନ୍ତି । ଇଂରାଜୀ ମାଧ୍ୟମ ସ୍କୁଲ୍ ସବୁଆଡ଼େ ଖୋଲାଯାଉଛି । ଗରିବ ପରିବାର ହେଉ ବା ଧନୀ ଗୋଷ୍ଠୀ ହେଉ, ଇଂରାଜୀ ଭାଷା କହିବାକୁ ଓ ଏଥିରେ ଭାଷ ମାଧ୍ୟମରେ ଯୋଗାଯୋଗ କରିବାକୁ ସହଜ ଓ ସୌଭାଗ୍ୟଜନକ ବୋଲି ମନେ କରୁଛନ୍ତି । ଅନେକ ଅଞ୍ଚଳରେ ଓ ପରିବାରରେ ଇଂରାଜୀ ଭାଷା କ୍ରମେ କ୍ରମେ ମାତୃଭାଷା ରୂପେ ଗଣାହେଲାଣି । ଜଗତୀକରଣ ପ୍ରକ୍ରିୟାରେ ଇଂରାଜୀ ଏକ ସୂତ୍ରଧର । ଇଂରାଜୀ ବାଣିଜ୍ୟ ବେପାରର ଭାଷା, ଲାଭଖୋର ଉପନିବେଶବାଦୀଙ୍କ ଭାଷା ଯାହା ଆମ ସମସ୍ତଙ୍କୁ ଆକର୍ଷଣ କରିଆସିଛି । ଏଇ ଭାଷା ବଳରେ ଆମ ଭିତରେ ବଜାରୀକରଣର ପ୍ରକ୍ରିୟା ବଳଶାଳୀ ହୋଇସାରିଛି ।

ଭାଷା ବ୍ୟତୀତ ସାରା ପୃଥିବୀ ଏବେ ଗୁରୁତର ସାଂସ୍କୃତିକ ସଙ୍କଟ ଦେଇ ଗତି କରୁଛି । ଆମ ସାଂସ୍କୃତିକ ସମ୍ପଦ ଅକ୍ଷୁଣ୍ଣ ଓ ଅକ୍ଷତ ରହିବ କି ନାହିଁ ସେ କଥା କିଏ କହିବ ? ମହାତ୍ମାଗାନ୍ଧିଙ୍କ କଥା ଆଜି ମନେ ପଡୁଛି- 'ମୋ ଘର ଚାରି କାନ୍ଥ ଭିତରେ ଆବଦ୍ଧ ନ ରହୁ ମୋ ରହିବା ଅଣନିଃଶ୍ୱାସୀ ନ ହେଉ । ସେ ଘରକୁ ସବୁ ଅଞ୍ଚଳରୁ ସାଂସ୍କୃତିର ମୁକ୍ତ ହାୱା ପ୍ରବେଶ କରୁ, କିନ୍ତୁ ଏବ ବାହ୍ୟ ସଂସ୍କୃତି ମୋତେ ଉଡ଼ାଇ ନ ଦେଉ ।'

ଜଗତୀକରଣ ପ୍ରଭାବରେ ଏକ ଅପସଂସ୍କୃତିର ଝଡ଼ ଯେମିତି ରହିବା ଆରମ୍ଭ କରିଛି ଓ ପୃଥିବୀର ଅନେକ ଅଞ୍ଚଳରେ ଲୋକଙ୍କୁ ନିଃସ୍ୱ, ସମ୍ପଦହୀନ କରିବାରେ ଲାଗିଛି । ଏଇ ଅପସଂସ୍କୃତି ହେଲା ଆମେରିକା ଓ ପଶ୍ଚିମ ମହାଦେଶର ସାଂସ୍କୃତିକ ମୂଲ୍ୟବୋଧ । ଏପରିକି ଆମେରିକାର ସଂସ୍କୃତି ୟୁରୋପର ସଂସ୍କୃତିକୁ ଦୂଷିତ କରିସାରିଲାଣି ବୋଲି ସେ ଦେଶମାନଙ୍କରେ ପ୍ରତିବାଦ ପ୍ରକଟିତ ହେଉଛି । ସାରା ପୃଥିବୀରେ ଗୋଟିଏ ସଂସ୍କୃତି ବିରାଜମାନ କରିବ ଏହି ଆଶଙ୍କା ଏବେ ସତ୍ୟରେ ପରିଣତ ହେବାକୁ ବସିଛି । ସାରା ପୃଥିବୀରେ ସଂସ୍କୃତି କହିଲେ ବୁଝାଏ ଭାଷା, ସଙ୍ଗୀତ, ସାହିତ୍ୟ, ମୂଲ୍ୟବୋଧ, ଧର୍ମ, ପାରମ୍ପରିକ ପରିପ୍ରକାଶ, ପର୍ବପର୍ବାଣି, ମଣିଷ ମଣିଷ ଓ ପରିବାର ପରିବାର ଭିତରେ ସମ୍ପର୍କକୁ ଏବଂ ଏକ ଜାତିର ଏହା ଅଦ୍ୱିତୀୟ ପରିଚୟ । ଭାଷା ବିଷୟରେ ଥିବା ସନ୍ଦେହ ଆଗରୁ ଉଲ୍ଲେଖ କରାଯାଇଛି । ଏବେ ପୃଥିବୀର ସଙ୍ଗୀତ

ତାହାର ହଜାର ହଜାର ବର୍ଷର ପରମ୍ପରାକୁ ହରାଇ ବସିଛି । ଏମ୍‌ତିଭିର ଏକ ନୂତନ ଝଙ୍କାର ପ୍ରତି କୋଣ ଅନୁକୋଣରେ ଶୁଣାଯାଉଛି । ନାଁ ସେଥିରେ ତାଳ ଅଛି ନା ଲୟ । କିନ୍ତୁ ସବୁ ଗୋଷ୍ଠୀ ଏମ୍‌ତିଭି କହିଲେ ବୁଝୁଛନ୍ତି । ଶାସ୍ତ୍ରୀୟ ସଙ୍ଗୀତର ନାଁ ଧରିଲେ ଲୋକ ଓଲଟା ବୁଝୁଛନ୍ତି ଓ ନାକ ଟେକୁଛନ୍ତି । ସିମ୍ଫୋନୀସବୁ ଇତିହାସରେ ପୋତି ହୋଇଗଲେଣି । ଡ଼ିସ୍କୋ ସଙ୍ଗୀତର ତାଳେ ତାଳେ ଆମର ସମାଜ ଉଦ୍ଧତ ଅସଂଯତ ସ୍ୱାଭାବକୁ ହିଁ ପ୍ରଦର୍ଶନ କରୁଛି ।

ଠିକ୍ ସେହିଭଳି ସାହିତ୍ୟ ଯେମିତି କାରଖାନାରେ ତିଆରି ହେଉଛି । ସାହିତ୍ୟ ଏକ ଜାତିର ଓ ଏକ ସମାଜର ଯେ ଦର୍ପଣ ଏହା ଆଉ ମନେ ହେଉନାହିଁ କିମ୍ବା ସାହିତ୍ୟର ଚିରାଚରିତ ବିବିଧତା ଦେଖିବାକୁ ମିଳୁନାହିଁ । ସ୍ୱକୀୟ ଏବଂ ମୌଳିକ ସାହିତ୍ୟର ଅଫୁରନ୍ତି ସୁବାସ ଆଉ ଚହଟୁ ନାହିଁ । ସବୁ ପଛରେ ବଜାର । ସାହିତ୍ୟଟି ବିକ୍ରି ହେବ କି ନାହିଁ ଅଥବା ଏଥିରେ କାମୋଦ୍ଦୀପକ ବର୍ଣ୍ଣନା ରହିବ କି ନାହିଁ ତାହା ହିଁ ଲେଖକର ମୂଳ ବିଚାର ହୋଇ ରହିଛି । ସାହିତ୍ୟର ତଥା ସାହିତ୍ୟକଙ୍କ ଆତ୍ମିକ ଅନୁଭୂତି ନାହିଁ । ସାହିତ୍ୟିକ ପଳାତକ ସାଜିଛି ଓ ଜଗତୀକରଣରେ ଖାପ ଖୁଆଇବା ପାଇଁ ନିଜକୁ ବିଭସ୍ସ ଓ ବିକଳାଙ୍ଗ କରିବାକୁ ପଛାଉ ନାହିଁ ।

ଆମ ସଂସ୍କୃତି ବିଷୟରେ ପ୍ରଫେସର କୋସାମ୍ବି ହୁଅନ୍ତୁ ବା ଆମେରିକାର କାଳ ସମାଲୋଚକ (ଆର୍ଟକ୍ରିଟିକ୍) ଜେରାର୍ଡ଼ୋ ମୋସ୍କେରା ହୁଅନ୍ତୁ, ଗୋଟିଏ କଥା ସ୍ପଷ୍ଟ କରିଯାଇଛନ୍ତି ଯେ ଜଗତୀକରଣ ପ୍ରକ୍ରିୟାରେ ସାଧାରଣ ମଣିଷଙ୍କ ସାଂସ୍କୃତିକ ପରିଚୟ ଆଜି ବିପନ୍ନ । ଭାଷା, ଧର୍ମ ଓ ଜାତିଗତ ସ୍ୱତନ୍ତ୍ର ଏହି ପରିଚୟର ବିଭିନ୍ନ ସ୍ତମ୍ଭ ବୋଲି ବୁଦ୍ଧିଜୀବୀ ଫ୍ରାନ୍‌ସିସ୍ ଫୁକୁୟାମ୍ କହିଛନ୍ତି । ଏଣୁ ଆମ ସାଂସ୍କୃତିକ ସମ୍ପଦର ଐତିହ୍ୟକୁ ବାରମ୍ବାର ଦୃଷ୍ଟି ନିକ୍ଷେପ କରିବାର ବେଳ ଆସିଛି । ସାଂସ୍କୃତିକ ବିବିଧତା କେତେ ପରିମାଣରେ ହ୍ରାସ ପାଇଛି ତାହାର ସମୀକ୍ଷା ମଧ୍ୟ କରିବାର ସମୟ ଉପସ୍ଥିତ ହୋଇଛି ।

ପାରିବାରିକ ସମ୍ପର୍କକୁ ଗୋଟାଏ ଉଦାହରଣ ହିସାବରେ ନିଅନ୍ତୁ । ସମାଜରେ ପରିବାରରେ ସଂଜ୍ଞା ଓ ଢ଼ାଞ୍ଚା ବଦଳିଯାଇଛି । ସାରା ପୃଥିବୀରେ ପର୍ବପର୍ବାଣିର ଆନନ୍ଦ ମଉଛବର ରୂପରେଖ ବଦଳିଯାଇଛି । ଯେଉଁ ଉତ୍ସାହ ଉଦ୍ଦୀପନାରେ ଭାଲେଣ୍ଟାଇନ୍ ଡ଼େ ପାଳନ କରାଯାଉଛି ଭାବିଲେ ଆଶ୍ଚର୍ଯ୍ୟ ଲାଗେ ଯେ ଏ ସମାଜର ଗତି କେଉଁ ଆଡକୁ । ଆଦିବାସୀ ସମାଜଠାରୁ ଆରମ୍ଭ କରି ସବୁଠାରୁ ବିକଶିତ ସମାଜରେ ପର୍ବପର୍ବାଣି

ଏକ ସାମାଜିକ ବନ୍ଧନର ପରିପ୍ରକାଶ । ସଭ୍ୟତାର ଆରମ୍ଭରୁ ଆଜି ପର୍ଯ୍ୟନ୍ତ ଏଥିରେ ହଜାର ହଜାର ବର୍ଷର ମୂଲ୍ୟବୋଧ ଓ ବିବିଧତାର ରଙ୍ଗ ବେରଙ୍ଗ ପ୍ରରିପ୍ରକାଶ ସନ୍ନିହିତ ହୋଇଛି । ଜଗତୀକରଣ ଆରମ୍ଭ ଦିନଠାରୁ ଏକ ଦୁର୍ଦ୍ଧର୍ଷ ଓ ବଳଶାଳୀ ସାଂସ୍କୃତିକ ଶକ୍ତି ତାହାକୁ ଅନାୟାସରେ ଧ୍ୱଂସ କରିବାକୁ ଆରମ୍ଭ କରିଛି ।

ଏବେ ଇଣ୍ଟରନେଟ୍ କଥା ବିଚାରକୁ ନିଆଯାଉ । ବିଜ୍ଞାନ ଓ ଟେକ୍‌ନୋଲୋଜି ପ୍ରେରିତ ଜଗତୀକରଣ ଏହା ଏକ ଅବଦାନ । ଏହାଦ୍ୱାରା ସୁଫଳ ମିଳୁଛି କି କୁପ୍ରଭାବ ବଢୁଛି ତାହା ବିଚାରଯୋଗ୍ୟ ଓ ସମାଲୋଚନାର ପରିଧିଭୁକ୍ତ । କିନ୍ତୁ ଆଇଟି ଦ୍ୱାରା ପୃଥିବୀରେ ଗୋଟିଏ ପ୍ରକାରର ଓ ଗୋଟିଏ ରୁଚିର ଟେଲିଭିଜନ୍ ପ୍ରୋଗାମ୍ ପ୍ରଚାରିତ ହେଉଛି । ବିଜ୍ଞାପନ ଓ ଜଗତୀକରଣ ପ୍ରତି ପଦକ୍ଷେପରେ ଆକର୍ଷଣର ମୂଳ ବିନ୍ଦୁ ହୋଇପଡ଼ିଛି । ଜଗତୀକରଣ ଦ୍ୱାରା ନିୟନ୍ତ୍ରିତ ହେଉଥିବା ଉପଭୋକ୍ତାବାଦ ମଧ୍ୟ ସମସ୍ତଙ୍କୁ ଅନାୟାସରେ ପ୍ରଭାବିତ କରିପାରୁଛି । ଇଣ୍ଟରନେଟ୍ ମାଧ୍ୟମରେ ଦୂରତ୍ୱ ହ୍ରାସ ପାଇଛି ସତ, ହେଲେ ଦେଶ ଦେଶ ଭିତରେ, ସମାଜ ସମାଜ ଭିତରେ ତଥା ମଣିଷଙ୍କ ଭିତରେ ସାଂସ୍କୃତିକ ଦୂରତା ବଢ଼ିବାରେ ଲାଗିଛି । ସାଂସ୍କୃତିକ ସମ୍ପଦ ଆଜି ବଜାରରେ ଉପଭୋଗ୍ୟ ବସ୍ତୁ ଭାବରେ ପରିଗଣିତ ହେଉଛି ଏବଂ ଇଣ୍ଟରନେଟ୍ ଏହା ଅତି ସହଜରେ ସମ୍ଭବ କରାଇପାରୁଛି । ଏ ପୃଥିବୀ, ଏ ସଭ୍ୟତା ଓ ସମାଜ ଦିନେ ସାଂସ୍କୃତିକ ବିବିଧତାରେ ଭରପୂର ଥିଲା । ଗୋଟାଏ ଅଞ୍ଚଳରେ ବା ଗୋଟାଏ ଦେଶରେ ବାତାବରଣ ଓ ପର୍ଯ୍ୟାବରଣକୁ ନେଇ ସେ ଦେଶର ଓ ସେ ସମାଜର ସାଂସ୍କୃତିକ ମୂଲ୍ୟବୋଧ ଗଢ଼ି ଉଠିଥିଲା । ପ୍ରାକୃତିକ ପରିବେଶ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଓତଃପ୍ରୋତଃ ଭାବେ ସଂଶ୍ଳିଷ୍ଟ ଥିଲେ । ଜୈବ ବିବିଧତାକୁ ନେଇ ସଭ୍ୟତାର ମୂଳଦୁଆ ଯେମିତି ପଡୁଥିଲା ସାଂସ୍କୃତିକ ବିବିଧତାକୁ ନେଇ ସଭ୍ୟତା ସେମିତି ସୁଦୃଢ଼ ହେଉଥିଲା । ପରିବେଶର ଅବକ୍ଷୟ ସହ ସାଂସ୍କୃତିକ ମୂଲ୍ୟବୋଧର ଅବକ୍ଷୟ ଘଟିବା ଏକ ବୈଜ୍ଞାନିକ ସତ୍ୟତାରେ ପରିଣତ ହୋଇଛି । ଯେମିତି ଜଗତୀକରଣ ଦ୍ୱାରା ଗଛଲତା, ଗୁଳ୍ମ ଓ ଦ୍ରୁମ, କୀଟପତଙ୍ଗ, ପ୍ରାଣୀ ଓ ପକ୍ଷୀମାନେ ବିଲୁପ୍ତ ହୋଇପଡୁଛନ୍ତି ଓ ଜୈବ ବିବିଧତାର ହ୍ରାସ ହେଉଛି ସେଇ ଅନୁପାତରେ ସାଂସ୍କୃତିକ ବିବିଧତା ମଧ୍ୟ ହ୍ରାସ ପାଉଛି । ଏହାର ପରିଣତି ଭବିଷ୍ୟତରେ ଭୟାନକ ହେବ ବୋଲି ସ୍ପଷ୍ଟ ଜଣାପଡୁଛି ।

ସାଂସ୍କୃତିକ ଜଗତୀକରଣର ସୁଦୂରପ୍ରସାରୀ ପ୍ରଭାବ ଓ ବିପରୀତ ସ୍ୱଭାବ ଦେଖି ଅନେକ ଦେଶରେ ପ୍ରତିରୋଧର ସୂଚନା ମିଳିଲାଣି । ୟୁରୋପରେ ପ୍ରତ୍ୟେକ ଦେଶ

ଯେଉଁଠି ଇତିହାସରେ ଅନେକ ଚମକପ୍ରଦ ଓ ରକ୍ତାକ୍ତ ଅଧ୍ୟାୟ ଅଛି ସେମାନେ ସେମାନଙ୍କର ଜାତୀୟତାବାଦୀ ସଂସ୍କୃତିକୁ ପୁନଃ ଆବିଷ୍କାର କରୁଛନ୍ତି । ସାହିତ୍ୟ, ନାଟକ, ଚଳଚ୍ଚିତ୍ର ଓ ସଙ୍ଗୀତ ଆଦିର ସେ ଦେଶଗୁଡ଼ିକରେ ଯେଉଁ ପରମ୍ପରା ରହିଛି ତାହାର ପୁନରୁଦ୍ଧାର କରାଯାଇଛି । ଏସିଆ ଓ ଆଫ୍ରିକାରେ ସାଂସ୍କୃତିକ ପରମ୍ପରା ସକ୍ରିୟ ହୋଇଛି । ୪୦ବର୍ଷ ତଳେ ଆମେରିକା କହିଲା ଯାହା ଏ ମହାଦେଶଗୁଡ଼ିକରେ ଲୋକେ ବୁଝୁଥିଲେ, ତାହା ଏବେ ଅନ୍ୟ ଅର୍ଥ ସୃଷ୍ଟି କରିଛି । ଜଗତୀକରଣର ଗତି ଓ ଦିଗ ଯାହା ହେଉନା କାହିଁକି, ଆଜି ଆମକୁ ଆମର ସାଂସ୍କୃତିକ ପରିଚୟକୁ ଅକ୍ଷତ ରଖିବାକୁ ଆହ୍ୱାନ ଆସିଛି । ଏହି ସାଂସ୍କୃତିକ ପରିଚୟ ଆମ ମହାନ୍ ସମ୍ପଦ ଓ ଅମୂଲ୍ୟ ସମ୍ପତ୍ତି । ପୁଞ୍ଜିବାଦର ଢ଼ାଞ୍ଚା ଯେତେ ଦୃଢ଼ ହେଉ ପଛକେ ଓ ତାହାର ସମର୍ଥନରେ ଯେତେ ଅନୁଷ୍ଠାନ ଗଢ଼ି ଉଠୁ ପଛକେ, ଆମର ଚିରାଚରିତ ସାଂସ୍କୃତିକ ଅନୁଷ୍ଠାନଗୁଡିକ ଅତୁଟ ରୁହନ୍ତୁ ଓ ଆମର ମୂଲ୍ୟବୋଧର ସଂରକ୍ଷଣ ପାଇଁ ମାର୍ଗଦର୍ଶକ ହୁଅନ୍ତୁ । ଏହା ଆମେ ଆଶା କରିବା ।

## (୩)

ଆପଣମାନେ ଜାଣିଛନ୍ତି ଯେ ଆର୍ଥିକ ଜଗତୀକରଣ ଦ୍ୱାରା ଯେତିକି ବିପଦ ଏ ପୃଥିବୀରେ ଦେଖାଦେଇଛି, ସେତିକି ବିପଦ ସାଂସ୍କୃତିକ ଜଗତୀକରଣ ଦ୍ୱାରା ସୃଷ୍ଟି ହୋଇସାରିଛି । ଆମର ସାଂସ୍କୃତିକ ଦୁର୍ଗ ଭୁଷୁଡି ପଡୁଛି । ସାଧାରଣ ମଣିଷଙ୍କ ସାଂସ୍କୃତିକ ନିରାପତ୍ତା ସବୁକ୍ଷେତ୍ରରେ ବିପନ୍ନ ହୋଇପଡିଛି । ଆମ ଅଲକ୍ଷ୍ୟରେ ଆମର ଅତି ଆପଣାର ସାଂସ୍କୃତିକ ରୁଚି, ସ୍ୱାଦ ଓ ବିବିଧତାକୁ ସଭିଏଁ ହରାଇ ବସିଛେ । ଆଜି ଲୋକକଳା, ଲୋକନୃତ୍ୟ, ଲୋକସଂଗୀତ ପୂର୍ବଭଳି ଲୋକପ୍ରିୟ ହେଉନାହିଁ । ଏହାକୁ ନେଇ ଯେଉଁ ଉଚ୍ଚ ପରମ୍ପର ଥିଲା ତାହା ଭାଙ୍ଗି ଯାଇଛି । ଆମ ସମସ୍ତଙ୍କର ସାଂସ୍କୃତିକ ଅଭିଧାନରେ ଏବେ କେବଳ ଗୋଟିଏ ଶବ୍ଦ ରହିଛି ଓ ତାହା ହେଉଛି ପପ୍ କଲଚର୍ । ସେଥିପାଇଁ ଶାସ୍ତ୍ରୀୟ ସଂଗୀତ କେହି ଶୁଣୁନାହାନ୍ତି । ଓଡ଼ିଶୀ ଓ ଭାରତନାଟ୍ୟମ୍ ଭଳି ଉଚ୍ଚକୋଟୀର ନୃତ୍ୟ କେବଳ ଧନୀ ଗୋଷ୍ଠୀର ବିଳାସ ସାମଗ୍ରୀ ହୋଇଯାଇଛି । ଭାଗବତ ବହି କେହି ପଢୁନାହାନ୍ତି ଆଉ ଯଦିଓ ଆଧୁନିକ ଗୁରୁ ଓ ବାବାମାନେ ବିଭିନ୍ନ ପ୍ରକାରର ପ୍ରବଚନ ଦେବା ବନ୍ଦ କରି ନାହାନ୍ତି । ଯୋଗଶାସ୍ତ୍ର ବଦଳରେ ପଶ୍ଚିମ ଦେଶମାନଙ୍କରୁ ଆମଦାନ ହେଉଥିବା ବିଭିନ୍ନ

ଏରୋବିକ କ୍ରୀଡ଼ା କସରତ ଏବେ ଲୋକପ୍ରିୟ ହେଉଛି । କର୍ମ, ଯୋଗଚିନ୍ତା ବଦଳରେ କର୍ମକୋଳାର ଚିନ୍ତା ଅଧିକ ବ୍ୟାପକ ହୋଇଛି ।

ସାଂସ୍କୃତିକ ବଜାରୀକରଣର ଶିକାର ଆମେ ସମସ୍ତେ ହୋଇଛେ । ଏ ବଜାରୀକରଣର ପ୍ରତ୍ୟେକ ଦିଗକୁ ଓ ଦର୍ଶନକୁ ଆମକୁ ବୁଝିବାକୁ ହେବ । ଆଉ ମଧ୍ୟ ପୃଥିବୀର ସବୁ ଇଲାକାକୁ ପ୍ରସାରିତ ହୋଇ ସାରିଥିବା ସାଂସ୍କୃତିକ ବଜାରର କ୍ରେତା ଓ ବିକ୍ରେତାଙ୍କୁ ବି ବୁଝିବାକୁ ହେବ । ଏ ବଜାରରେ ବିପଣୀର ସାମଗ୍ରୀ ଓ ସେଗୁଡିକର ଉତ୍ପାଦନର ମୂଳକେନ୍ଦ୍ର ଗୁଡିକୁ ଅଧ୍ୟୟନ କରିବାକୁ ହେବ । ଏ ସାମଗ୍ରୀ ଭିତରେ ଅଛନ୍ତି ସଂଗୀତର ସିଡି ଓ କ୍ୟାସେଟ୍, ଚଳଚ୍ଚିତ୍ରର ସିଡି ଓ କ୍ୟାସେଟ, ଇଣ୍ଟରନେଟ୍ ସାଇଟ୍, ବିଭିନ୍ନ ଥିମ୍ ପାର୍କ / ବିଳାସବ୍ୟସନର ପାର୍କ । ଏହାସବୁ ପ୍ରାୟ ଆମେରିକାର ବହୁରାଷ୍ଟ୍ରୀୟ କର୍ପୋରେସନ୍‌ମାନେ ତିଆରି କରିଥାଆନ୍ତି ଓ ଅତି ସଂଘବଦ୍ଧ ଭାବେ ବିକ୍ରୟ କରିଥାଆନ୍ତି । ସେସବୁ କର୍ପୋରେସନ୍‌ଗୁଡିକ ଆନ୍ତର୍ଜାତିକ ବଜାରକୁ ଆୟତ୍ତ କରିବା ପାଇଁ ସବୁପ୍ରକାର ରଣନୀତିର ଆଶ୍ରୟ ନେଇ ଥାଆନ୍ତି । ହଲିଉଡ୍‌ର ଫିଲମ୍‌ଟିଏ ସାରା ପୃଥିବୀରେ ସବୁ ଦର୍ଶକକୁ ଆକର୍ଷଣ କରିପାରୁଛି । ଏକ ଅଧ୍ୟୟନରୁ ଜଣା ପଡିଛି ଯେ 'ଟାଇଟାନିକ' ଭଳି ଚଳଚ୍ଚିତ୍ର ଚୀନ୍ ଓ ଭାରତରେ ଅନେକ ଲୋକପ୍ରିୟ ହୋଇଛି ଓ ବିଭିନ୍ନ ସ୍ଥାନୀୟ ଭାଷାରେ ମଧ୍ୟ ଡ଼ବିଂ ହୋଇଛି । ଆମେରିକାର ପପ୍ ଓ ରକ୍ ସଂଗୀତ ଆମ ଦେଶରେ ବହୁ ସଂଗୀତ ପ୍ରେମୀ ସୃଷ୍ଟି କରିଛି । ସେ ଦେଶରେ ତିଆରି ସିଡି ଆମ ଦେଶରେ ଲକ୍ଷ ଲକ୍ଷ ସଂଖ୍ୟାରେ ବିକ୍ରି ହୋଇଛି । ହିନ୍ଦୀ ଚଳଚ୍ଚିତ୍ର ଓ ସଂଗୀତ ଏବେ ସବୁଦେଶରେ କ୍ରେତା ଓ ଦର୍ଶକମାନଙ୍କୁ କିଣି ସାରିଛି । ମୋର ଦେଶ ବିଦେଶରେ ବନ୍ଧୁମାନେ ସାହାରୁଖ୍ ଖାନ୍‌ଙ୍କୁ ଆମ ଦେଶରେ ବିଶିଷ୍ଟ ଲେଖକ ବା କଳାକାର ବା ସଂଗୀତଜ୍ଞଙ୍କଠାରୁ ଅଧିକ ଜାଣିଛନ୍ତି ଓ ତାଙ୍କର ଅଭିନୀତ ଚଳଚ୍ଚିତ୍ର ଦେଖୁଛନ୍ତି । ସବୁ ଜନମାନସକୁ କବଳିତ କରିବା ପାଇଁ ଷଡ଼ଯନ୍ତ୍ର ଚାଲିଛି । ହଲିଉଡ୍ ଓ ବଲିଉଡ୍ ଉଭୟଙ୍କର ଭୂମିକା ବିଶେଷ ଭିନ୍ନ ନୁହେଁ ଏ ଦିଗରେ । ସମସ୍ତଙ୍କର ଅଭିରୁଚି ଓ ଚିନ୍ତାଧାରା ଯେମିତି ଏକାହୁଏ ତାହା ପାଇଁ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଦ୍ୱାରା ଗବେଷଣା ଚାଲିଛି । ଆମର ମଧ୍ୟବର୍ତ୍ତୀ ଶ୍ରେଣୀଙ୍କ ଜୀବନଶୈଳୀ ଓ ମୂଲ୍ୟବୋଧ ପ୍ରାୟ ସମାନ ହୋଇ ସାରିଲାଣି । ଏ ବଜାରୀକରଣରେ ମଧ୍ୟ ହଜାର ହଜାର କୋଟି ଟଙ୍କାର ପୁଞ୍ଜି ଖଟା ଯାଇଛି ।

ବର୍ତ୍ତମାନ ସ୍ଥାନୀୟ ହସ୍ତକଳା ଓ ପର୍ଯ୍ୟଟନ ମଧ୍ୟ ବଜାରୀକରଣ ପ୍ରକ୍ରିୟାରେ ବିଶେଷ ସ୍ଥାନ ପାଇଛି । ବିଭିନ୍ନ ଆଦିବାସୀଙ୍କ ହସ୍ତକଳା, ପୋଷାକପତ୍ର, ଗହଣା ଅଳଙ୍କାର ଆଦିସବୁ ହସ୍ତକର୍ମର ପରିସର ଭିତରେ ନାହିଁ । ତାହ ଫାକ୍ଟ୍ରୀରେ ପ୍ରଚୁର ପରିମାଣରେ ଉତ୍ପାଦିତ ହୋଇ ବଜାରକୁ ଛଡାଯାଉଛି । ଆପଣ ଯଦି ସୁପର୍ ମାର୍କେଟ ବା ସପିଂ ମଲ୍‌କୁ ଯିବେ ଏଇ ହସ୍ତକଳା ସବୁ ବିକ୍ରି ହେଉଥିବାର ଦେଖିବେ । ଏହା ହସ୍ତ ନିର୍ମିତ କି ଫାକ୍ଟ୍ରୀ ଦ୍ୱାରା ଉତ୍ପାଦିତ ତାହା ଜାଣି ପାରିବେ ନାହିଁ । ବହୁରାଷ୍ଟ୍ରୀୟ କମ୍ପାନୀମାନେ ଏପ୍ରକାର ବଜାରରେ ଯଥେଷ୍ଟ ପୁଞ୍ଜି ଖଟାଉଛନ୍ତି । ଲାଭର ପରିମାଣ ମାତ୍ରାଧିକ । ସେଇଭଳି ପର୍ଯ୍ୟଟନକୁ ଶିଳ୍ପ ହିସାବରେ ମାନ୍ୟତା ଦିଆଯାଉଛି ଓ ଆମର ସାଂସ୍କୃତିକ ସମ୍ପଦକୁ ବିକାକିଣାର ସାମଗ୍ରୀ ରୂପେ ବ୍ୟବହାର କରାଯାଇଛି । ସବୁ ପର୍ଯ୍ୟଟକ ଆମର କଳା ସଂସ୍କୃତିର ପୂଜାରୀ ନୁହନ୍ତି । ସବୁ ପର୍ଯ୍ୟଟନସ୍ଥଳୀ ଆଉ ଆମର ଐତିହ୍ୟ ଓ ସଂସ୍କୃତିର ପୀଠସ୍ଥଳ ବୋଲି ସ୍ୱୀକାର କରାଯାଉନାହିଁ । ବଜାରୀକରଣର ଜୀବାଣୁ ଏବେସବୁ ଅଞ୍ଚଳକୁ ସଂକ୍ରମିତ ହୋଇ ସାରିଛି ଓ ଆମେ ରୋଗଗ୍ରସ୍ତ ହୋଇ ସାରିଛେ ।

ଜଣେ ବୁଦ୍ଧିଜୀବୀ ଓ ସାହିତ୍ୟ ସମାଲୋଚକ କଥା ଛଳରେ କହିଛନ୍ତି ଯେ ଆମ ଦେଶ ଏବେ ବିଶେଷଜ୍ଞ ଓ ପରିଚାଳକଙ୍କ ଦେଶ ହୋଇଯାଇଛି ଓ ଆମେ ସାହିତ୍ୟର ମ୍ୟାନେଜର ରୂପେ ନିଜକୁ ଗଢୁଛେ । ସୃଜନୀଶକ୍ତି ଯେମିତି ଭୟଙ୍କର ଭାବେ ହ୍ରାସ ପାଇଛି । ଜନତାଙ୍କ ଉଦ୍ଦେଶ୍ୟରେ ଲୋକପ୍ରିୟ 'ବେଷ୍ଟ ସେଲର୍ସ' ଲେଖିବାକୁ ସବୁ ସାହିତ୍ୟିକ ଯେମିତି ଅଣ୍ଟାଭିଡିଛନ୍ତି । ବିଶ୍ୱ ବଜାରରେ ସାହିତ୍ୟ ଓ ସୃଜନାତ୍ମକ କୃତି ବିକ୍ରୟ କରିବାକୁ ଯେମିତି ଆଜିର ଲେଖକ ଗୋଷ୍ଠୀ ବେଶୀ ଆଗ୍ରହୀ । ବିଶ୍ୱ ସାହିତ୍ୟରେ ସକ୍ରେଟିସ୍, ସେକ୍ସପିଅର୍, ଟଲ୍‌ଷ୍ଟୟ, ଦସ୍ତୋଭସ୍କି, ଡିକେନ୍‌ସ, ହ୍ୟୁଗୋ, ହର୍‌ମାନ୍ ହେସ୍, କାମ୍ୟୁ, ଟାଗୋର୍, ବଙ୍କିମଚନ୍ଦ୍ର, ପ୍ରେମ୍‌ଚାନ୍ଦ ଆଦିଙ୍କ ଭଳି ଲେଖକ ବାହାରୁ ନାହାନ୍ତି ଯାହାଙ୍କର ଲେଖା ସାରା ପୃଥିବୀକୁ ଆନ୍ଦୋଳିତ କରିବ । ଦିନଥିଲା ଲେଖକ ଶୋଷଣ, ଅତ୍ୟାଚର, ଯୁଦ୍ଧର ବିଭୀଷିକା, ମଣିଷର କର୍ମ କଷଣ ଓ ଅସହାୟତାକୁ ନେଇ ଏକ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି କରୁଥିଲା । ଲେଖକ ଅନ୍ୟାୟର ପ୍ରତିରୋଧ କରୁଥିଲା ଓ ମାନବବାଦର ସପକ୍ଷରେ ଲଢି ପ୍ରାଣ ଦେବାକୁ କୁଣ୍ଠା ପ୍ରକାଶ କରୁନଥିଲା । ଆଜିର ଲେଖକ ଜଗତୀକରଣକୁ

ଯେମିତି ମୁଣ୍ଡ ନୁଆଇଁ ସ୍ୱାଗତ କରୁଛି । ପୁଞ୍ଜିପତିମାନଙ୍କର ଆଶ୍ରୟନେଇଥିବା ଲେଖକଙ୍କ ସଂଖ୍ୟା କିଛି କମ୍ ନୁହେଁ । ଯେତେସବୁ କବି, ଗାଳ୍ପିକ ଓ ନାଟ୍ୟକାରମାନେ ସାହିତ୍ୟ ସାଧନା କରି ପୁରସ୍କାରରେ ସମ୍ମାନିତ ହେଉଛନ୍ତି, ସେମାନେ ସେ ପୁରସ୍କାର ପଛରେ ଯେଉଁ କଳା ପୁଞ୍ଜି ଓ ଶୋଷଣର ପ୍ରକ୍ରିୟା ରହିଛି ତାହା ବୁଝୁ ନାହାନ୍ତି । ଜଗତୀକରଣ ଓ ସାମ୍ରାଜ୍ୟବାଦ ବିରୋଧରେ ଲଢୁଥିବା, ନିର୍ବାସୀତ ହୋଇଥିବା ବା ନିର୍ଯ୍ୟାତୀତ ହୋଇଥିବା ଲେଖକମାନଙ୍କୁ ଗଣି ହୋଇଯିବ । ନାଇଜେରିଆରେ ଲେଖକ କେନ୍ ସାରୋୱିବାଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଥିଲା । ଓଲେ ସୋୟିଙ୍କା, ତାଙ୍କ ଦେଶରୁ ନିଜର ମତବାଦକୁ ଜାହିର କରି ନିର୍ବାସୀତ ହୋଇଛନ୍ତି । ଆମ ଦେଶରେ ସ୍ୱର୍ଗତ ଶିବରାମ କରନ୍ତ ଓ ଅରୁନ୍ଧତୀ ରାୟଙ୍କୁ ଛାଡି ଦେଲେ ଆଉ ଜଣେ ହେଲେ ଲେଖକ ଜଗତୀକରଣ ବିରୁଦ୍ଧରେ ସ୍ୱରତୋଳନ କରିବା ମୁଁ ଶୁଣି ନାହିଁ । ସରକାରଙ୍କଠାରୁ ପଦ୍ମଶ୍ରୀ, ପଦ୍ମଭୂଷଣ ପାଇବା ଏବଂ ବିଭିନ୍ନ ଶିଳ୍ପପତିମାନଙ୍କଠାରୁ ପୁରସ୍କାରର ଶିରୋପା ପିନ୍ଧିବାକୁ ଲେଖକମାନଙ୍କ ଭିତରେ ପ୍ରତିଯୋଗିତା ଚାଲିଛି । ଆମ ଓଡ଼ିଶାର ଲେଖକଙ୍କର ବ୍ୟକ୍ତିତ୍ୱମାନଙ୍କୁ ସମୀକ୍ଷା କରିଲେ ଏହା ସ୍ପଷ୍ଟ ଜଣାପଡୁଛି । ସମସ୍ତେ ନହେଲେ ବି ନୋବେଲ୍ ପୁରସ୍କାର ପ୍ରାପ୍ତ ଅନେକ ଲେଖକ କିନ୍ତୁ ବାସ୍ତବରେ ଭିନ୍ନ । ଲଢିବା ସେମାନେ ଜାଣନ୍ତି ଓ ଏହାର ଫଳାଫଳ ମଧ୍ୟ ହୃଦୟଙ୍ଗମ କରନ୍ତି । କିନ୍ତୁ ଲେଖିବାର ସାଲିସ୍ କରନ୍ତି ନାହିଁ । ସେଇଥିପାଇଁ ପୃଥିବୀର ସଂସ୍କୃତି ଓ ସାହିତ୍ୟ ଜଗତୀକରଣର ଆକ୍ରମଣର ମୁକାବିଲା ଅନେକ କ୍ଷେତ୍ରରେ କରିପାରିଛି । ଲେଖକର ସ୍ୱାଧୀନତା ଏବେ ସୁଦ୍ଧା ମରିନାହିଁ ।

ବିଶ୍ୱବାଣିଜ୍ୟ ସଂଗଠନରେ ସାଂସ୍କୃତିକ ବଜାରୀକରଣ ମଧ୍ୟ ତର୍କ ବିତର୍କର ପରିସୀମା ଭିତରକୁ ଆସିଛି । ଉରୁଗୁଏ ରାଉଣ୍ଡ ଆଲୋଚନାରେ ସଂସ୍କୃତି ସମ୍ବନ୍ଧୀତ ଜିନିଷର ବିକାକିଣା ଉପରେ କଟକଣା ଜାରି କରାଯାଇଛି ଓ ଆର୍ଥିକ ସାମଗ୍ରୀ ଭଳି ସାଂସ୍କୃତିକ ସାମଗ୍ରୀକୁ ନିଆଯିବ ନାହିଁ ବୋଲି ମତ ପ୍ରକାଶ ପାଇଛି । ଏହା ଫଳରେ କୌଣସି ଦେଶ ନିଜର ସାଂସ୍କୃତିକ ସମ୍ପଦ ରକ୍ଷାକରିବା ପାଇଁ ଅନ୍ୟ ଦେଶର ସାଂସ୍କୃତିକ ସାମଗ୍ରୀର ଆମଦାନୀ ଉପରେ ନିୟନ୍ତ୍ରଣ ରଖିପାରିବ । ଏହାକୁ 'ସାଂସ୍କୃତିକ ବ୍ୟତିକ୍ରମ' ବୋଲି ନାମିତ କରାଯାଇଛି । ଏହାର ଅର୍ଥହେଲା ଯେ ସଂସ୍କୃତି ଅନ୍ୟ ଜିନିଷ ଭଳି ବିକାକିଣା ଓ ବେପାରଯୋଗ୍ୟ ନୁହେଁ । ଏହା ବଜାରର ପରିଧି ବାହାରେ ପ୍ରସାରିତ । ସାଂସ୍କୃତିକ ସାମଗ୍ରୀମାନେ ମୂଲ୍ୟବୋଧ ଓ ଚିନ୍ତନର ପରିପ୍ରକାଶ ।

ସାଂସ୍କୃତିକ ଐତିହ୍ୟ ଗୋଟାଏ ମଣିଷ ସମାଜ, ଜାତି ଓ ସଭ୍ୟତାର ଫଳକ ଓ ଗୋଟାଏ ଦେଶ ଓ ନାଗରିକଙ୍କ ବିବିଧତାର ପ୍ରତୀକ । ୧୯୯୯ ମସିହାରେ ୟୁନେସ୍କୋ ଦ୍ୱାରା ଆୟୋଜିତ ଏ ସମ୍ମିଳନୀ ମାଧ୍ୟମରେ ଜନମତ ସୃଷ୍ଟି କରିଛି ଯେ ସାଂସ୍କୃତିକ ମୂଲ୍ୟବୋଧ ଅର୍ଥନୈତିକ ମୂଲ୍ୟବୋଧ ଭିତରେ ନିଶ୍ଚିହ୍ନ କେବେହେଲେ ହେବନାହିଁ । ଗ୍ୟାଟ୍‌ରେ ଅତି ସତର୍କତାର ସହ ଉଲ୍ଲେଖ କରାଯାଇଛି ଯେ 'ସାଂସ୍କୃତିକ ବ୍ୟତିକ୍ରମ' ଦୃଷ୍ଟିରୁ ଜାତୀୟ ସାଂସ୍କୃତିକ, କଳାତ୍ମକ, ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ସମ୍ପଦଗୁଡ଼ିକର ବଜାରୀକରଣ କରାନଯାଇ ସୁରକ୍ଷା କରାଯିବ । ସବୁଦେଶ ଏଥିରେ ପ୍ରାୟତଃ ସହମତ ହୋଇଛନ୍ତି ।

କିନ୍ତୁ ଆନ୍ତର୍ଜାତିକ ସ୍ତରରୁ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଦ୍ୱାରା ଯେଉଁଭଳି ସାଂସ୍କୃତିକ ବଜାରୀକରଣ ଚାପ ପଡ଼ିଛି, ଏହା ବିପକ୍ଷରେ ସ୍ଥାନୀୟ ଓ ଜାତୀୟ ସ୍ତରର ଏକ ରଣନୀତିର ଆବଶ୍ୟକତା ରହିଛି । ଜାତୀୟ ସ୍ତରରେ ଏକ ସୀମା ନିର୍ଦ୍ଧାରଣ କରିବା ଉଚିତ୍ ବୋଲି ମତ ପ୍ରକାଶ ପାଇଛି । ଏହାର ଅର୍ଥ ହେଲା ଯେ ଜାତୀୟ ସ୍ତରରେ କେଉଁ ଜିନିଷ ଆମଦାନୀ ହେବ, କେଉଁଭଳି ଟିକସ୍ ଦେବାକୁ ପଡ଼ିବ, ବୌଦ୍ଧିକ ସମ୍ପତ୍ତି ସମ୍ପର୍କିତ ଅଧିକାରର କେଉଁଭଳି ରୂପରେଖ ହେବ ଓ ବିଦେଶୀ ପୁଞ୍ଜି ନିବେଶ କେତେ ହେବ ସେ ସବୁ ପାଇଁ ସ୍ପଷ୍ଟନୀତି ନିର୍ଦ୍ଧାରଣ କରିବା ନିତାନ୍ତ ଅପରିହାର୍ଯ୍ୟ ହୋଇ ପଡ଼ିଛି । କପିରାଇଟ୍ ପାଇଁ କଠୋର ଆଇନ୍ ମଧ୍ୟ କରିବାର ଅଛି । ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଏକ ବିଶ୍ୱ ସାଂସ୍କୃତିକ ପାଣ୍ଠି କଥା କଳ୍ପନା କରାଯାଇପାରେ । ଯେଉଁଠି ସାଂସ୍କୃତିକ ବଜାରୀକରଣର ଖରାପ ପ୍ରଭାବ ପଡ଼ିଛି, ସେ ସ୍ଥାନମାନଙ୍କରେ ଏ ପାଣ୍ଠି ବିନିଯୋଗ କରି ସଂସ୍କୃତିକୁ ଓ ସାଂସ୍କୃତିକ ସାମଗ୍ରୀମାନଙ୍କୁ ସୁରକ୍ଷା ଦେବାକୁ ପ୍ରସ୍ତାବ ରହିଛି । କଲ୍‌ଚର ଭଲ୍‌ଚର (Culture Vulture)ଙ୍କ କବଳରୁ ଲୋକଙ୍କୁ ସୁରକ୍ଷା ଦେବା ଏକ ଆନ୍ତର୍ଜାତିକ ଦାୟିତ୍ୱ ବୋଧ ବୋଲି ସ୍ୱୀକାର କରିବାର ଅଛି ।

ଆମେ ଆମର ଜାତିର, ମୂଲ୍ୟବୋଧର ଏବଂ ଅଦ୍ୱିତୀୟ ପରିଚୟର ସୂଚକାଙ୍କକୁ ବାରମ୍ବାର ବିଚାରକୁ ନେବା । କେତେ କୋଟି ବର୍ଷରୁ ଜୀବଜଗତ ଏକ ବିବିଧତା ଓ ନିର୍ଦ୍ଦିଷ୍ଟ ସ୍ଥିତି ନେଇ ବିକଶିତ ହୋଇଛି । ଏହି ବିବର୍ତ୍ତନ ଯୋଗୁଁ ଆମକୁ ମିଳିଛି ପରିବେଶ, ପ୍ରଶାନ୍ତି ଓ ସହାବସ୍ଥାନ । ଗୋଟିଏ ଜୀବ ନିଶ୍ଚିହ୍ନ ହେଲେ ଏଇ

ସହାବସ୍ଥାନର ସନ୍ତୁଳନରେ ପ୍ରମାଦ ଦେଖାଦେଇଛି । ସେଇଭଳି ଆମର ମଣିଷ ସମାଜ ବିଭିନ୍ନ ଘାତ ପ୍ରତିଘାତ ନେଇ ଏକ ସାଂସ୍କୃତିକ ମୋଜାଇକ୍, ଏକ ଅଦ୍ୱିତୀୟ ରଙ୍ଗବେରଙ୍ଗର ଇନ୍ଦ୍ରଧନୁ ସୃଷ୍ଟି କରିଛି । ଏହି ବିବିଧତାର ସୁରକ୍ଷା ଓ ସଂରକ୍ଷଣ ପାଇଁ ଆମେ ସମସ୍ତେ ଉତ୍ତରଦାୟୀ । ମୁଁ ଆଗରୁ ଉଲ୍ଲେଖ କରିଛି ଯେ ସାରା ବିଶ୍ୱର ଚିନ୍ତାଶୀଳ ବ୍ୟକ୍ତି, ରାଜନେତା ଓ ବୁଦ୍ଧିଜୀବୀମାନେ ମଣିଷ ସମାଜର ଅଭିବୃଦ୍ଧି ପାଇଁ ଜୈବ ବିବିଧତା ଓ ସାଂସ୍କୃତିକ ବିବିଧତାର ଅଙ୍ଗାଙ୍ଗୀ ସମ୍ପର୍କ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ଏଥିପାଇଁ ପ୍ରତ୍ୟେକ ଛୋଟବଡ ଦେଶ ଏକ ସାଂସ୍କୃତିକ ନୀତି ପ୍ରଣୟନ କରିଛନ୍ତି । ସାରା ପୃଥିବୀରେ ଏକ ସମାନ ଓ ସମଦୃଷ୍ଟି ସମ୍ପନ୍ନ ସଂସ୍କୃତି ପ୍ରତିଷ୍ଠା ଲାଭ ନକରୁ ଓ ସାଂସ୍କୃତିକ ସାମ୍ରାଜ୍ୟବାଦର ବିଜୟ ଘଟୁ ଏହାପାଇଁ ମଣିଷକୁ ସଂଘର୍ଷ କରିବାକୁ ହେବ ନୂତନ ଭାବେ ।

ଆମର ପିଲାମାନେ ରାମାୟଣ, ମହାଭାରତ ପଢିବେ ବା ୱାଲ୍ଟ ଡ଼ିଜନୀର କମିକ୍ (କାର୍ଟୁନ୍) ପଢିବେ ସେ ବିଷୟରେ ଆମକୁ ନିଷ୍ପତ୍ତି ନେବାକୁ ହେବ । ବାସ୍ତବରେ ଆମର ମୂଲ୍ୟବୋଧ ଓ ସାଂସ୍କୃତିକ ଜଗତୀକରଣ ମୂଲ୍ୟବୋଧ ଭିତରେ ଯେଉଁ ଦଉଡିଟଣା ଖେଳ ଚାଲିଛି ତାହା ଆମର ମୂଲ୍ୟବୋଧ ସପକ୍ଷରେ ନିଶ୍ଚିତ ଭାବେ ବିଜୟ ଆଣିଦେବ ଏଥିରେ ସନ୍ଦେହ ନାହିଁ । ଏଥିପାଇଁ ସାଧାରଣ ମଣିଷ ନୂତନ ଭାବେ ଏବଂ ନୂତନ ପରିପ୍ରେକ୍ଷୀରେ ନିଜପାଇଁ ସାଂସ୍କୃତିକ ପୁନଃ ଆବିଷ୍କାର କରିବା ଜରୁରୀ ହୋଇ ପଡିଛି । ଆମକୁ ନୂତନଭାବେ ଆହ୍ୱାନ ଦେଇ ସ୍ଲୋଗାନ ଦେବାକୁ ହେବ ଯେ 'ଆମ ସଂସ୍କୃତି ଆମ ସମ୍ପଦ', 'ସଂସ୍କୃତି ସୁରକ୍ଷା ଦେଶର ରକ୍ଷା ।' ❑

# ଜଗତୀକରଣ ଓ ଶ୍ରମଜୀବୀଙ୍କ ଭବିଷ୍ୟତ

## (୧)

ଅଶୀ ଦଶକର ପ୍ରାରମ୍ଭରେ ଆମେ ଯେଉଁମାନେ ପରିବର୍ତ୍ତନ ଓ ସ୍ଥାୟୀ ବିକାଶର ପ୍ରକ୍ରିୟାକୁ ଅନୁସନ୍ଧାନ କରୁଥିଲୁ ସେତେବେଳେ କୋଟିକୋଟି ଅସଂଗଠିତ ଶ୍ରମିକଙ୍କ ଶୋଚନୀୟ ଜୀବନ ଓ ଜୀବିକା ବିଷୟରେ ସମ୍ୟକ ଧାରଣା ଅର୍ଜନ କରିଥିଲୁ । ଏଥିପାଇଁ ଦେଶର ବିଭିନ୍ନ ପ୍ରାନ୍ତକୁ ଯିବାକୁ ପଡିଥିଲା । ସଂଗଠିତ ଶ୍ରମିକ ସଂଗଠନ ବା ଟ୍ରେଡ୍ ଇୟୁନିୟନମାନଙ୍କ ସହ ବିଚାର ବିମର୍ଷ କରିବାକୁ ପଡିଥିଲା । କେତେକ କ୍ଷେତ୍ରରେ ତର୍କ ବିତର୍କ ହୋଇଥିଲା ମଧ୍ୟ । ସଂଗଠିତ ହୋଇ ଶ୍ରମିକମାନେ ଶିଳ୍ପ, କୃଷି, ବ୍ୟାଙ୍କ, ବୀମା, ସରକାରୀ ଓ ଘରୋଇ ପ୍ରତିଷ୍ଠାନ ଗୁଡିକରେ ନିଜର କର୍ମକ୍ଷେତ୍ର ଓ ଦରମା ବୋନସ୍ ଆଦି ସୁରକ୍ଷିତ ରଖିପାରୁଥିଲେ ମଧ୍ୟ ଅସଂଗଠିତ ଶ୍ରମିକମାନେ ଗୋଡି ଭଳି ଲକ୍ଷ ଲକ୍ଷ ସଂଖ୍ୟାରେ ନିଜର ଜୀବନ କାଟୁଥିଲେ ଓ ଅତି ଅସୁରକ୍ଷିତ ଓ ଅସହାୟ ଭାବେ ମରିହଜି ଯାଉଥିଲେ । ଭାରି ଅଡୁଆ ଲାଗୁଥିଲା ଯେ ସଂଗଠିତ ଟ୍ରେଡ ଇୟୁନିଅନ୍‌ମାନେ ବିଭିନ୍ନ ରାଜନୈତିକ ଦଳ ସହ ସମ୍ପୃକ୍ତ ହୋଇ ମଧ୍ୟ ଅସଂଗଠିତ ଶ୍ରମିକମାନଙ୍କ ପ୍ରତି ଦରଦୀ ନଥିଲେ । କାର୍ଲ ମାର୍କସଙ୍କ ଡାକ 'ଶ୍ରମିକମାନେ ଏ ହୁଅ' ବା ମାଓ ସେତୁଙ୍ଗଙ୍କ 'କୃଷକ ଶ୍ରମିକ ଲାଲ୍ ସଲାମ' ଆଦିର ପ୍ରଭାବ ଏ ଦେଶରେ ଯଥେଷ୍ଟ ନଥିଲା । ସେ ସମୟରେ ମୋତେ ମହାରାଷ୍ଟ୍ରର 'ଶ୍ରମିକ ସଂଗଠନ' ଗୁଜୁରାଟର 'ସେୱା' ମଧ୍ୟପ୍ରଦେଶର ଛତିଶଗଡ଼, 'ମଜଦୁର ମୁକ୍ତି ମୋର୍ଚ୍ଚା' ବିଭିନ୍ନ ଢଙ୍ଗରେ ପ୍ରଭାବିତ କରିଥିଲା । ବାମପନ୍ଥୀ ଚିନ୍ତାଧାରାର ଏତେ ସମାଲୋଚନା ମୁଁ ପଢିଥିଲି ଯେ ସେମାନଙ୍କର ଦୃଷ୍ଟିକୋଣ ଓ ମତବାଦ ଶ୍ରମିକ ସଂଗଠନମାନଙ୍କ ଉପରେ ପ୍ରତିଫଳିତ ହେଉଥିଲେ ମୁଁ ଖୁବ୍ ଭାରାକ୍ରାନ୍ତ ହୋଇ ପଡିଥିଲି ବିଭିନ୍ନ ଜଟିଳ ପ୍ରଶ୍ନ ଗୁଡିକର ବୋଝରେ ।

କିନ୍ତୁ କୋଟି କୋଟି ଅସଂଗଠିତ ଶ୍ରମିକମାନେ କୃଷି କ୍ଷେତ୍ରରେ ବିଭିନ୍ନ ଛୋଟ ଛୋଟ ଶିଳ୍ପ କାରଖାନାରେ, ଜଙ୍ଗଲରେ ହେଉକି ଘନ ଜନ ବସତିରେ ହେଉ, ମହିଳା ହୁଅନ୍ତୁ ବା ଶିଶୁଶ୍ରମିକ ହୁଅନ୍ତୁ, ଆଦିବାସୀ ହୁଅନ୍ତୁ ବା ଦଳିତ ହୁଅନ୍ତୁ

ସୀମାତୀତ ଭାବେ ନିର୍ଯ୍ୟାତିତ ଓ ଶୋଷିତ ହୋଇ ଆସୁଥିଲେ । ବିକାଶର କୌଣସି ରାସ୍ତା ସେମାନଙ୍କ ପାଖରେ ନଥିଲା । ସବୁଦିନ ମଜୁରୀ ମିଳୁନଥିଲା । ଗୋଟି ହଳିଆ ହୋଇ ସେମାନେ ଅତି ଶୋଚନୀୟ ଭାବେ ଅତ୍ୟାଚାରିତ ହେଉଥିବାର କାହାଣୀ ଦେଶର ବିଭିନ୍ନ ଅଞ୍ଚଳରୁ ଲୋକେ କେମିତି ଗଣମାଧ୍ୟମରେ ପ୍ରକାଶ ପାଉଥିଲା ଏ ସବୁ ସମସ୍ୟାକୁ ଅଧ୍ୟୟନ କରିବାକୁ ଓ ଦାରିଦ୍ର୍ୟ ଦୂରୀକରଣ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାକୁ ପ୍ରଥମଥର ପାଇଁ ସପ୍ତମ ପଞ୍ଚବାର୍ଷିକ ଯୋଜନାରେ ଅସଂଗଠିତମାନେ ଯେଉଁ ସାମାଜିକ, ଆର୍ଥିକ ଓ ସାଂସ୍କୃତିକ ସ୍ତରରେ ଥାଆନ୍ତୁ ପଛକେ ସେମାନଙ୍କର ବିକାଶପଥରେ ସହଯାତ୍ରୀ କରିବାକୁ ହେବ ଓ ମୁଖ୍ୟସ୍ରୋତରେ ସାମିଲ କରିବାକୁ ହେବ ବୋଲି ଗଠନମୂଳକ କାର୍ଯ୍ୟକ୍ରମମାନ ଦିଆଯାଇଥିଲା । ସ୍ୱେଚ୍ଛାସେବୀ ସଂଗଠନମାନଙ୍କୁ ପ୍ରୋତ୍ସାହନ ଦିଆଯାଇଥିଲା । ନ୍ୟାୟାଳୟ ମାନଙ୍କରେ ବିଭିନ୍ନ (ଜନସ୍ୱାର୍ଥ ସମ୍ୱଳିତ ମାମଲା) ପି.ଆଇ.ଏଲ୍ ବିଚାର କରାଯାଇ ଅଂସଗଠିତ ମାନଙ୍କୁ ଉଚିତ୍ ନ୍ୟାୟ ମିଳିଥିଲା । ସର୍ବନିମ୍ନ ମଜୁରୀ ଆଇନରେ ସଂଶୋଧନ କରାଯାଇ ଅଂସଗଠିତମାନଙ୍କୁ ସୁରକ୍ଷା ଦେବାକୁ ଉଦ୍ୟମ କରାଯାଇଥିଲା । ଅଶୀ ଦଶକରେ ଗତିଶୀଳତା ଆମଭଳି ଆଦର୍ଶବାଦୀଙ୍କୁ ଉତ୍‌ପ୍ରେରିତ କରିଥିଲା । ଅସଂଗଠିତମାନଙ୍କୁ ସଂଗଠିତ କରିବା ପାଇଁ ଏବଂ ମୋ ଭଳି ଅନେକ ଯୁବକ ଯୁବତୀ ବିଭିନ୍ନ ଇଲାକାରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ କିଛି ବର୍ଷ ପାଇଁ । କିନ୍ତୁ ରାଜନୈତିକ ଦୃଷ୍ଟିକୋଣର ଅଭାବରୁ ତଥା ପ୍ରଗତିଶୀଳ ପ୍ରୋତ୍ସାହନ ଓ ବିକାଶ କାର୍ଯ୍ୟକ୍ରମର ସୀମିତ ସମ୍ଭାବନା ହେତୁ ଅସଂଗଠିତଙ୍କ ସଂଗଠନ ପ୍ରକ୍ରିୟା ତ୍ୱରାନ୍ୱିତ ହୋଇପାରିନଥିଲା । ଦେଶରେ ଏକ ଢାଞ୍ଚାଗତ ପରିବର୍ତ୍ତନର ପରିକଳ୍ପନାର ଅକାଳମୃତ୍ୟୁ ହୋଇଥିଲା ଯଦିଓ କେଉଁଠି କେଉଁଠି ଅସଂଗଠିତଙ୍କୁ ସଂଗଠିତ କରିବା ଉଦ୍ୟମ ଏଯାବତ୍ ଶେଷ ହୋଇନାହିଁ ।

ଜଗତୀକରଣ ପ୍ରକ୍ରିୟା ଏଦେଶରେ ନବେ ଦଶକରେ ଆରମ୍ଭ ହେବା ପରଠାରୁ ଶ୍ରମିକମାନଙ୍କର ତଥା ଶ୍ରମିକ ସଂଗଠନମାନଙ୍କର ଭବିଷ୍ୟତ କେଉଁଭଳି ହେବ ଅନେକ ପ୍ରଶ୍ନ ଉଠୁଛି । ଗୋଟାଏ ପାର୍ଶ୍ୱରେ କର୍ପୋରେଟ୍ ଓ ପୁଞ୍ଜିପତିମାନେ ଶ୍ରମିକମାନଙ୍କୁ ନ୍ୟୁନ କରୁଛି ଏବଂ ଶ୍ରମଆଇନକୁ କୋହଳ କରି ଶ୍ରମଅଧିକାରକୁ କ୍ଷୁର୍ଣ୍ଣ କରୁଛନ୍ତି । ଶ୍ରମିକମାନଙ୍କୁ ବଳିଦେଇ ମେସିନ୍ ଓ ଅଟୋମେସିନ୍‌ର ପ୍ରକ୍ରିୟା ଢାରି

ରଖିଛନ୍ତି । ଶ୍ରମିକ ସଂଗଠନମାନଙ୍କୁ ଦୁର୍ବଳ କରିବାରେ ସକ୍ଷମ ହୋଇଛନ୍ତି । ଅନ୍ୟପକ୍ଷରେ ଶ୍ରମିକ ସଂଗଠନମାନେ ଶ୍ରମ ଆଇନ୍ କୋହଳ ହେଲେ ବା ଶ୍ରମିକମାନଙ୍କର ଅଧିକାର ଉଲଂଘନ ହେଲେ ପ୍ରତିବାଦ କରିବାର ପାରମ୍ପରିକ କ୍ଷମତା ହରାଇ ବସିଛନ୍ତି । ଜଗତୀକରଣ ପ୍ରକ୍ରିୟାର ପ୍ରଭାବ ଦ୍ୱାରା ଖାଲି ଏଦେଶର ନୁହେଁ, ସାର ପୃଥିବୀରେ ଶ୍ରମିକମାନଙ୍କ ଅଧିକାର ଉପରେ ଆକ୍ରମଣ ଜାରି ରହିଛି ।

ଜଗତୀକରଣ ପ୍ରକ୍ରିୟାରେ ଶ୍ରମର ବଜାର ଦର ଯେଉଁଭଳି ହ୍ରାସ ପାଇଛି ସେଥିରେ କେତୋଟି ଉଲ୍ଲେଖନୀୟ ପ୍ରଭାବ ଦେଖା ଦେଇଛି । ପ୍ରଥମେ ଶ୍ରମ ଓ ମଜୁରୀକୁ ନିୟନ୍ତ୍ରଣ କରାଯାଇଛି ବିଭିନ୍ନ ଦେଶରେ । ଯେଉଁଠି ଶ୍ରମ ଶସ୍ତା ଓ ସହଜରେ ଉପଲବ୍ଧ, ସେଠାରେ ଜଗତୀକରଣ ପ୍ରକ୍ରିୟା ସେତେ ବ୍ୟାପକ ଓ ବିଶ୍ୱ ଅର୍ଥନୈତିକ ବ୍ୟବସ୍ଥା ସେ ଅଞ୍ଚଳରେ ଅଧିକ ସକ୍ରିୟ । ଦ୍ୱିତୀୟରେ ବିକଶିତ ଓ ଶିଳ୍ପ ସମୃଦ୍ଧ ଦେଶମାନେ ଏହି ଶସ୍ତା ଶ୍ରମକୁ ବିନିଯୋଗ କରିବା ପାଇଁ ପୁଞ୍ଜିନିବେଶ କିରବାକୁ ସଦାସର୍ବଦା ଉଦ୍ୟମରତ । ଜଗତୀକରଣର ଇତିହାସକୁ ଅଧ୍ୟୟନକଲେ ଜଣାପଡିବଯେ ହଙ୍ଗକଙ୍ଗ୍, ସିଙ୍ଗାପୁର, ତାଇୱାନ, ଦକ୍ଷିଣକୋରିଆ ଆଦି ଦେଶମାନେ ସେମାନଙ୍କର ଶ୍ରମିକ ସମାଜକୁ ବିଶ୍ୱର ପୁଞ୍ଜିପତିମାନଙ୍କୁ ଅନାୟାସରେ ବିକ୍ରୟ କରିଛନ୍ତି । ତୃତୀୟରେ 'ମୁକ୍ତ ବାଣିଜ୍ୟ ଓ ରପ୍ତାନୀ ଅଞ୍ଚଳ' ଗଢିଉଠିଛି ବିଭିନ୍ନ ଶସ୍ତା ଶ୍ରମିକମାନଙ୍କୁ ନେଇ । ଏ ଅଞ୍ଚଳରେ ମୋଟରଗାଡି, ଜାହାଜ, ଭାରିଶିଳ୍ପ ଆଦି ମଧ୍ୟ ମୁଣ୍ଡ ଟେକିଛି । ଶ୍ରମ ଅର୍ଥନୀତି କେମିତି ଭୂଶୁଡି ପଡିବ ଏ ଅଞ୍ଚଳରେ ତାହା ଆଜି ସମସ୍ତଙ୍କୁ ଜଣାଅଛି । ସାରା ପୃଥିବୀରେ ଏହାଦ୍ୱାରା ଏକ ପ୍ରତିକୂଳ ପରିସ୍ଥିତି ସୃଷ୍ଟି ହୋଇଛି । ବେରୋଜଗାରି ଓ ବେକାରୀ ସବୁଠି ଦେଖାଦେଇଛି । ବିକଶିତ ଦେଶର ପୁଞ୍ଜିପତିମାନେ ନିଜ ଦେଶର ଶିଳ୍ପ ସବୁ ଅବିକଶିତ ଦେଶମାନଙ୍କୁ ସ୍ଥାନାନ୍ତରୀକରଣ କରୁଛନ୍ତି ଓ ଏହା ଫଳରେ ଶ୍ରମିକମାନଙ୍କୁ ନିଜ ଦେଶରେ ଓ ଅନ୍ୟ ଦେଶମାନଙ୍କର ଶୋଷଣ କରିବା ପ୍ରକ୍ରିୟା ଜାରି ରଖିଛନ୍ତି । ଚତୁର୍ଥରେ ପ୍ରତ୍ୟେକ ଦେଶର ଶ୍ରମିକର ମଜୁରି, ସାମାଜିକ ସୁରକ୍ଷା ଗୁରୁତର ଭାବେ ହ୍ରାସ ପାଇଛି । ସାରା ଦେଶର ଜି.ଡି.ପିର ସାମଗ୍ରିକ ଆୟରେ ଶ୍ରମିକମାନଙ୍କର ଭାଗିଦାରୀ କମିବାରେ ଲାଗିଛି । ବିକଶିତ ଓ ଶିଳ୍ପ ସମୃଦ୍ଧ ଦେଶମାନେ ଏବେ ତୃତୀୟ ବିଶ୍ୱ ବିଶେଷକରି ଦକ୍ଷିଣ ପୂର୍ବ ଏସିଆ ଏବଂ ପୂର୍ବ ୟୁରୋପ ଓ ପୂର୍ବତନ ସୋଭିଏତ୍ ଦେଶମାନଙ୍କରେ ବିଶେଷଭାବେ

ପୁଞ୍ଜିନିବେଶକରି ବିଭିନ୍ନ ଶିଳ୍ପ ପ୍ରତିଷ୍ଠା କରିଛନ୍ତି । ଚୀନ ଓ ଭାରତ ଭଳି ଦେଶମାନଙ୍କର ପୁଞ୍ଜିନିବେଶ ବଢ଼ୁଛି ଓ ବହୁରାଷ୍ଟ୍ରୀୟ କର୍ପୋରେସନ ମାନଙ୍କର ଉପସ୍ଥିତି ବହୁଗୁଣରେ ବଢ଼ିଚାଲିଛି । ଜଗତୀକରଣ ପ୍ରକ୍ରିୟା ଏବେ କୌଣସି ଦେଶର ଶ୍ରମିକଙ୍କୁ ଛାଡ଼ି ନାହିଁ ବା କାହାକୁ ସମୃଦ୍ଧ କରିନାହିଁ । ପୁଞ୍ଜିପତିମାନେ କେମିତି ଲାଭ ଉଠାଉଛନ୍ତି, ତାହାର ଉଦାହରଣ ବସ୍ତ୍ର ଓ ଜୋତା ଉଦ୍ୟୋଗକୁ ବିଶ୍ଳେଷଣ କଲେ ଜଣାପଡେ । ଶସ୍ତା ଶ୍ରମିକ ଓ ସୁଲଭ ଶ୍ରମକୁ ବିନିଯୋଗ କରି ବାଙ୍ଗଲାଦେଶ, ଥାଇଲାଣ୍ଡ, ଭିଏତ୍‌ନାମ ଓ ଇଣ୍ଡୋନେସିଆ ଆଦି ଦେଶମାନଙ୍କରେ ଏହା ଅତି କମ୍ ଦାମରେ ଉତ୍ପାଦନ କରି ବହୁରାଷ୍ଟ୍ରୀୟ କମ୍ପାନୀମାନେ ଦଶରୁ ପନ୍ଦରଗୁଣ ଦରରେ ଅନ୍ୟଦେଶ ତଥା ଆର୍ନ୍ତଜାତିକ ବଜାରରେ ବିକ୍ରିକରିବ ।

ମଜୁରି ଓ ଶ୍ରମର ଦର ବିକାଶଶୀଳ ଦେଶମାନଙ୍କରେ ଏକ ଉଦ୍‌ବେଗର କାରଣ ହୋଇରହିଛି । ତୃତୀୟ ବିଶ୍ୱର ଶ୍ରମିକ ଉତ୍ପାଦନ କରି ଆନ୍ତର୍ଜାତିକ ବଜାରର ସମୃଦ୍ଧି ପାଇଁ ନିଜକୁ ଉତ୍ସର୍ଗ କରୁଛି । ବିକଶିତ ଦେଶର ଦୋକାନ ମାଲିକ ହେଉ ଅବା ସେଲସ୍‌ମ୍ୟାନ୍ ହେଉ, ଟ୍ରାନସ୍‌ପୋର୍ଟର ହେଉ ବା ଷ୍ଟୋରେଜ ଏଜେଣ୍ଟ ହେଉ ସେମାନଙ୍କର ଆୟ କେତେ ଶହଗୁଣ ବଢ଼ିଯାଉଛି । ପ୍ରତି ଘଣ୍ଟାରେ ତୃତୀୟ ବିଶ୍ୱର ଶ୍ରମିକ ଶ୍ରମ ବଦଳରେ ଯେତିକି ଆୟ କରୁଛି, ବିକଶିତ ଦେଶରେ ଶ୍ରମିକ ବା ମାଲିକ ଶ୍ରମ ବଦଳରେ କେତେ ଶହ ଗୁଣ ଆୟ କରୁଛି । ଏକଥା ଭାବି ବସିଲେ ଅସମାନତାର ଯେଉଁ ଛବି ଆଙ୍କି ହେଉଛି ତାହା କି ଅସୁନ୍ଦର ଓ ନଗ୍ନ ସଭ୍ୟ ସମାଜ ଲଜ୍ଜାରେ ଭରି ଯାଉଛି ।

ଶ୍ରମ ଓ ଶ୍ରମିକ ଏକ ଭୌଗଳିକ ସୀମା ଅତିକ୍ରମ କରିବା ଏକ ଦୁରୁହ ବ୍ୟାପାର । ଏହା ତୁଳନାରେ ଜଗତୀକରଣ ପ୍ରକ୍ରିୟା ଯୋଗୁଁ ପୁଞ୍ଜି ଆଜି ସୀମା ଓ ସମୟ ମାନୁ ନାହିଁ ବା ଏହାର ନିମ୍ନ ଗତି ନାହିଁ । ପ୍ରତ୍ୟେକ ଦେଶ ତାହାର ଶ୍ରମର ବଜାରକୁ ନିର୍ଦ୍ଦିଷ୍ଟ ପରିସର ଭିତରେ ସଂକୁଚିତ ଓ ସୀମିତ ରଖି ବିଦେଶୀ ପୁଞ୍ଜିକୁ ଆକର୍ଷିତ କରୁଛି । ପୁଞ୍ଜିପତି ବହୁରାଷ୍ଟ୍ରୀୟ କମ୍ପାନୀମାନେ ଏହି ଗଚ୍ଛିତ ଶ୍ରମ ଭଣ୍ଡାରକୁ ଲୁଣ୍ଠନ କରିବା ପାଇଁ ଅହର୍ନିଶ ଉଦ୍ୟମ କରୁଛନ୍ତି । ଅଣକୁଶଳୀ ଶ୍ରମିକର ଜନ୍ମ ଯେଉଁଠି ମୃତ୍ୟୁ ସେଇଠି । ତାହାର ଉପରକୁ ଉଠିବା ଓ ନିଜର ସ୍ଥିତି ଓ ପ୍ରଗତିକୁ ସ୍ଥିର କରିବାର ଭାଗ୍ୟ ଅର୍ଜନ କରିନାହିଁ । ଏପରିକି କୁଶଳୀ ଶ୍ରମିକମାନେ ଏହି

ପ୍ରକ୍ରିୟାରେ ମଧ୍ୟ ଶୋଷିତ ହେଉଛନ୍ତି । ତୃତୀୟ ବିଶ୍ୱର କୁଶଳୀ ଓ ପେଶାଦାର ଶ୍ରମିକମାନେ ଟେଲି ଯୋଗାଯୋଗ ଓ ଇଣ୍ଟରନେଟ୍ ଦ୍ୱାରା ବିକଶିତ ଦେଶମାନଙ୍କରୁ କର୍ମ ଓ ନିର୍ଦ୍ଦିଷ୍ଟ କାର୍ଯ୍ୟ କରୁଛନ୍ତି, କିନ୍ତୁ ତାଙ୍କର ପାରିଶ୍ରମିକ ବିକଶିତ ଦେଶମାନଙ୍କ ଅନୁସାରେ ଯଥେଷ୍ଟ କମ୍ । ଏଥିପାଇଁ ବିଭିନ୍ନ ଶିଳ୍ପ ଓ ପ୍ରତିଷ୍ଠାନ ବିକଶିତ ଦେଶର ପେଶାଦାର ବ୍ୟକ୍ତିଙ୍କୁ ଶସ୍ତାରେ କାମରେ ଲଗାଇ ଅଜସ୍ର ଲାଭ କରିପାରୁଛନ୍ତି । ଏଥିରେ ଡାଟା ପ୍ରୋସେସିଙ୍ଗ୍, ହିସାବ ଆଦି ଅର୍ନ୍ତଭୁକ୍ତ ହୋଇସାରିଛି ।

ଆମ ଦେଶରେ ଜାତୀୟ ଶ୍ରମ ନୀତି ସତ୍ତ୍ୱେ ଶ୍ରମଜୀବିମାନଙ୍କ ଅସହାୟତା ଓ ଦାରିଦ୍ର୍ୟ ଜଗତୀକରଣ ପ୍ରକ୍ରିୟାରେ କିପରି ବଢ଼ିଚାଲିଛି ତାହା ପରବର୍ତ୍ତି ପ୍ରବନ୍ଧରେ ଲେଖିବି ।

(୨)

ଆପଣମାନେ ଦେଖିଛନ୍ତି କି ଜାତୀୟ ରାଜପଥର ପାର୍ଶ୍ୱରେ ଥିବା ଏକ ନାମୀ ତାରକା ହୋଟେଲର ନିକଟରେ ବସୁଥିବା ମଣିଷହାଟକୁ ? ଏକ ଅଭିନବ ଢଙ୍ଗରେ ହେଉଥିବା ଜିଅନ୍ତା ମଣିଷଙ୍କୁ ନେଇ ଚାଲିଥିବା ବ୍ୟବସାୟକୁ ବୁଝିଛନ୍ତି କି ? ସେଠାରେ ବିକାକିଣା ହେଉଥିବା ସାମଗ୍ରୀମାନଙ୍କର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ଜାଣିବାକୁ କେବେ ଚେଷ୍ଟା କରିଛନ୍ତି କି ? ଏ ହୋଟେଲକୁ ସଦାସର୍ବଦା ମଦ୍ୟପୀ ଅମଲାମାନେ ଆସୁଛନ୍ତି । ଆଉ ଆସୁଛନ୍ତି ନାଗରିକ ସମାଜ ଓ ବିଟପୀ ଠିକାଦାରମାନେ । ସେମାନେ ଲଜ୍ଜାରେ କେବେ ମ୍ରିୟମାଣ ହୋଇଛନ୍ତି କି ମଣିଷହାଟର ଘୃଣ୍ୟ କାରବାର ଦେଖି ? ଖାଲି ଭୁବନେଶ୍ୱରରେ ନୁହେଁ, ଆମ ସବୁ ସହରମାନଙ୍କରେ ଏଇଭଳି ମଣିଷ ହାଟ ଲାଗି ରହିଛି ଅନେକ ଦିନରୁ ଓ ବିଶେଷ ଭାବେ ବଢ଼ି ଚାଲିଛି ନୂତନ ଜଗତୀକରଣ ଆରମ୍ଭ ହେବା ସମୟରୁ । ଏ ହାଟରେ ଭରି ରହିଛନ୍ତି କେଉଁ ଦୂର ଦୂରାନ୍ତରରୁ, ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରୁ ଆସିଥିବା ମଣିଷମାନେ । ବିସ୍ଥାପିତ ହୋଇ ଆସିଛନ୍ତି ସେମାନେ, ସର୍ବହରା ହୋଇ ସାରିଛନ୍ତି କେତେ ପୁରୁଷ ଧରି । ଜୀବନ ଓ ଜୀବିକା ନିଜ ଗାଁରେ ଛାଡି ସେମାନେ ପଳାଇ ଆସିଛନ୍ତି ସହରକୁ । ବଞ୍ଚିବାର ସଂଗ୍ରାମ ପାଇଁ ସେମାନେ ସହରାଭିମୂଖୀ ହୋଇଛନ୍ତି । ଏ ମଣିଷ

ହାଟମାନଙ୍କରେ ଅଛନ୍ତି ଶ୍ରମିକ, ଶିଶୁଶ୍ରମିକ, ଦେହଜୀବୀ ଓ ବିଭିନ୍ନ ଉପାୟରେ ପେଟପାଟଣା ପାଇଁ ଲଢୁଥିବା ଅଣକୁଶଳୀ ଶ୍ରମଜୀବୀମାନେ । କିଏ ଆସିଛି ମୟୂରଭଞ୍ଜ, କେଉଁଝରର ଅଞ୍ଚଳରୁ ତ କିଏ ଆସିଛି କନ୍ଧମାଳର ଘୋର ବନସ୍ତ ଭିତରୁ । ଆପଣମାନେ କେବେ ଦେଖିଛନ୍ତି କି ଟିଟିଲାଗଡ, କଣ୍ଟାବାଞ୍ଜି ଷ୍ଟେସନ୍‌ରେ ଦେଶାନ୍ତରୀ ହେଉଥିବା ଅସହାୟ ଦୁଃସ୍ଥ ମଣିଷଙ୍କ ଭିଡ ? ମହିଳାମାନଙ୍କ ମୁଣ୍ଡରେ ଅଖାର ଏକ ବୁଜୁଳୀ, କାଖରେ ଛୋଟପିଲା, ପୁରୁଷ ହାତରେ ଗୋଟିଏ ଛୋଟ ଟିଣ ବାକ୍ସ । ଯୁବକମାନଙ୍କ କାନ୍ଧରେ ରଙ୍ଗ ବେରଙ୍ଗର ରେକ୍‌ସିନ୍ ବ୍ୟାଗ୍ । ମୁହଁରେ ଅନିଶ୍ଚିତତାର ଛାପ । ଶରୀରରେ ଘୋର ଦୁର୍ବଳତା । କଙ୍କାଳସାର ମଣିଷଙ୍କ ହାଉଯାଉ । ମୋ ଭଳି କେହି ଜଣେ ସଚେତନ ବ୍ୟକ୍ତି ସେମାନଙ୍କୁ ହଠାତ୍ ପଚାରି ଦେଲେ କେଉଁ ଆଡେ ଯାଉଛ ବୋଲି, ଭୟଭୀତ ଉତ୍ତର ଆସେ କୁଣିଆ ଘରକୁ । କାହା ମୁହଁରୁ ବାହାରେ ନାହିଁ ସେମାନେ ବିଜୟଓ୍ୱାଡା ବା ହାଇଦ୍ରାବାଦର ଇଟା ଭାଟିକୁ ଯାଉଛନ୍ତି ବା ରାୟପୁର, ଭିଲାଇର ଶିଳ୍ପାଞ୍ଚଳକୁ । ଏଇଭଳି ମଣିଷଙ୍କ ଦେଶାନ୍ତରୀ ହେବା ସବୁଆଡେ ବ୍ୟାପିଛି । ଛତିଶଗଡ଼, ଝାଡ଼ଖଣ୍ଡ, ବିହାର, ପୂର୍ବ ଉତ୍ତର ପ୍ରଦେଶ, ରାଜସ୍ଥାନ । ମଣିଷ ବହାରିଛି କର୍ମ ଅନ୍ୱେଷଣରେ ଏବଂ ଜୀବିକା ଅନୁସନ୍ଧାନରେ । କେରଳକୁ ଯାଉଛି ଆନ୍ଧ୍ର ପ୍ରଦେଶ ଓ ତାମିଲନାଡୁର ଶ୍ରମିକ । ଦାଦନ ଶ୍ରମିକଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି ଏ ଦେଶରେ ସବୁଆଡେ । ଆମ ରାଜ୍ୟ ଓ ରାଷ୍ଟ୍ର କୁଆଡେ ଦ୍ରୁତ ଗତିରେ ଆଗେଇଛି ବିକାଶ ଓ ପ୍ରଗତି ପଥରେ । ଏକଥା ଆପଣ ବିଶ୍ୱାସ କରୁଛନ୍ତି କି ?

ସାରା ପୃଥିବୀରେ ଏଇଭଳି ଦାଦନ ଶ୍ରମିକଙ୍କ ଭିଡଲାଗିଛି ବୋଲି ଖବରକାଗଜ, ଟେଲିଭିଜନ ଓ ପତ୍ରପତ୍ରିକାର ଚମକପ୍ରଦ ଖବର ବେଳେବେଳେ ବାହାରୁଛି । କର୍ମ ଅନୁସନ୍ଧାନରେ ଲୁଚିଛପି ଶ୍ରମିକମାନେ ଗରିବ ଦେଶରୁ ପାଶ୍ଚାତ୍ୟ ଦେଶକୁ ଯିବାବେଳେ କେମିତି ମରିହଜି ଯାଉଛନ୍ତି ତାହାର ଦୁଃଖଦ କାହାଣୀ ଆପଣମାନେ ପଢ଼ିଥିବେ । କିଏ ମାଲ୍‌ବାହୀ ଜାହାଜରେ, କିଏ ବାୟୁରୁଦ୍ଧ ଟ୍ରକ ପଛରେ ଆଉ କିଏ ଚାଲି ଚାଲି ବେଆଇନ୍ ଭାବେ ବିକଶିତ ଦେଶର ସୀମାଲଙ୍ଘନ କରୁଛି ଓ କୁକୁର ଭଳି ମରୁଛି ବା ଗିରଫ ହୋଇ ଜେଲ୍‌ରେ ସଡୁଛି । ଏ ଶ୍ରମିକମାନେ ରୁମାନିଆରୁ ହୋଇପାରନ୍ତି ବା ଚୀନ୍‌ରୁ ଆସିଥାଆନ୍ତି ଅଥବା ଭାରତରେ

ବି ସେମାନଙ୍କର ଯାତ୍ରା ଆରମ୍ଭ କରିଥାଆନ୍ତି । ମରିବା ବା ଜେଲ୍ ଯିବା ଯେମିତି ଏମାନଙ୍କର ଭାଗ୍ୟରେ ଲେଖା ଯାଇଛି । ଗୋଟାଏ ଦରିଦ୍ର ଦେଶର କାଙ୍ଗାଳ ଜନତା ଆଉ ଗୋଟେ ଦେଶରେ ପଶୁଭଳି ଅଥବା ଦ୍ୱିତୀୟ ଶ୍ରେଣୀ ନାଗରିକ ଭଳି ରହିବ ତାହା ଭାବି ହେଉନାହିଁ ।

କିନ୍ତୁ ଏଇ ଶ୍ରମଜୀବୀମାନେ ଗରିବତର ଗୋଷ୍ଠୀରୁ ଯେ ଗରିବତମ ଗୋଷ୍ଠୀ ହୋଇ ଯାଉଛନ୍ତି ଏକଥା ଭାବିଲେ ଖୁବ୍ ଅସହଜ ଲାଗେ । ଏ ଶ୍ରମଜୀବୀମାନେ କିଏ ? ସେମାନେ ହେଲେ କ୍ଷେତରେ କର୍ମରତ କୃଷି ଶ୍ରମିକମାନେ, ଜଙ୍ଗଲରେ ରହୁଥିବା ଆଦିବାସୀମାନେ, ସମୁଦ୍ର ଓ ନଦୀରୁ ବଞ୍ଚୁଥିବା ମତ୍ସଜୀବୀମାନେ, ଘରେ କାମ କରୁଥିବା ଚାକରମାନେ, ଗ୍ୟାରେଜ୍, ହୋଟେଲ, ଦିଆସିଲ୍ କାରଖାନା, ବାଣ କାରଖାନା ଓ କାର୍ପେଟ ଆଦି ଶିଳ୍ପରେ କାମ କରୁଥିବା ଶିଶୁଶ୍ରମିକମାନେ ଏବଂ ମୁଣ୍ଡଝାଳ ତୁଣ୍ଡରେ ମାରି ଖଟୁଥିବା ସ୍ୱରୋଜଗାରୀମାନେ । ଏଇଭଳି ଅନେକଙ୍କୁ ନିଆଯାଇପାରେ ଅସଂଗଠିତ ଶ୍ରମିକ ହିସାବରେ । ଗ୍ରାମାଞ୍ଚଳରେ ସେମାନଙ୍କର ସ୍ଥିତି ସହରାଞ୍ଚଳରେ ରହୁଥିବା ପରିବାରଠାରୁ ଭିନ୍ନ ଯଦିଓ ଜଗତୀକରଣ ପ୍ରଭାବ ଉଭୟ ସହର ଓ ଗାଁରେ ସମାନଭାବେ ପରିଲକ୍ଷିତ ହେଉଛି । ଗାଁରେ ଗାଈ ଛେଳି ଚରାଉଥିବା ପିଲାଟି ଯେପରି ଏହି ବର୍ଗରେ ଅନ୍ତର୍ଭୁକ୍ତ, ସହରରେ ଅଇଳାମଇଳା ଗୋଟାଉଥିବା ପିଲାଟି ସେପରି ମଧ୍ୟ ।

ଆମେ ଆଇନ୍ କାନୁନ୍‌ର ସୀମାରେଖା ଆଲୋଚନା ପରିସର ଭିତରକୁ ନେବା ଓ ଦେଖିବା ଯେ କେତେ ଗୁଡ଼ିଏ ଆଇନ୍ ଏ ଅସଂଗଠିତ ଶ୍ରମିକମାନଙ୍କ ପ୍ରତି ଜାଣିଶୁଣି ଆଉ ଲାଗୁକରାଯାଉ ନାହିଁ । ଗୋଟିଏ ହେଲା କଳକାରଖାନା ଆଇନ୍, (ଫାକ୍ଟୋରିଜ୍ ଆକ୍ଟ ୧୯୪୮), କର୍ମଚାରୀ ବୀମା ଆଇନ୍(ଏମ୍ପଲଇଜ୍ ଷ୍ଟେଟ୍ ଇନ୍ସୁରାନ୍ସ ଆକ୍ଟ ୧୮୪୮), ବୋନସ ଆଇନ୍ (ପେମେଣ୍ଟ ଅଫ ବୋନସ୍ ଆକ୍ଟ ୧୯୬୫), ଭବିଷ୍ୟନିଧି ଆଇନ୍ (ଏମ୍ପଲଇଜ୍ ପ୍ରୋଭିଡେଣ୍ଟ ଫଣ୍ଡ ଆକ୍ଟ ୧୯୭୨), କ୍ଷତିପୂରଣ ଆଇନ୍ (ପେମେଣ୍ଟ ଅଫ ଗ୍ରାଚୁଇଟି ଆକ୍ଟ ୧୯୭୨), ଶ୍ରମିକ ସଂଘ ଆଇନ୍ (ଟ୍ରେଡ ଇଯୁନିଅନ୍ ଆକ୍ଟ ୧୯୨୬), ସର୍ବନିମ୍ନ ମଜୁରି ଆଇନ୍ (ମିନିମମ୍ ୱେଜ୍ ଆକ୍ଟ ୧୯୪୮) । ଜଗତୀକରଣ ପ୍ରକ୍ରିୟା ଯେତିକି ଶକ୍ତିଶାଳୀ ହେଉଛି ଏ ଆଇନ୍ ଗୁଡ଼ିକ ସେତେ ଦୁର୍ବଳ ହେବାକୁ ଲାଗିଛି । ରାଷ୍ଟ୍ର ବା ପ୍ରଶାସନ ସେଗୁଡ଼ିକ ଆଉ ବ୍ୟବହାର କରିବାକୁ ଆଗ୍ରହ ଦେଖାଉନାହାନ୍ତି ବା ଆଇନ୍

କେଉଁଠି ଭଙ୍ଗ ହେଲେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁନାହାନ୍ତି । ଓଡ଼ିଶାରେ ହେଉ ବା ଭାରତରେ ହେଉ ଶ୍ରମ ଆଇନ୍ ଭଙ୍ଗ ଜନିତ କେସ୍ ଗୁଡ଼ିକର ସଂଖ୍ୟା ଦ୍ରୁତ ଗତିରେ ହ୍ରାସ ପାଉଛି ।

ଶ୍ରମିକ ସଂଗଠନ ଆଉ ବଢୁନାହିଁ ବା ସୃଷ୍ଟି ହେଉ ନାହିଁ । ଏ. ଲେଖକ କେତେବର୍ଷ ଧରି ଗ୍ରାମାଞ୍ଚଳରେ ଅସଂଗଠିତ ଶ୍ରମିକମାନଙ୍କୁ ନେଇ ଏକ ଜାତୀୟ ନେଟଓ୍ୱାର୍କକୁ ଅଧ୍ୟୟନ କରି ଆସିଛି । ଅନେକ ସଭା ଓ ସେମିନାର୍ ହେଉଛି ସତ ଉଲ୍ଲେଖନୀୟ ସଫଳତା ଏହା ହାସଲ କରିନାହିଁ । ଅନ୍ୟ ପକ୍ଷରେ ଯଦି ଅସଂଗଠିତ ଶ୍ରମିକମାନେ ଏକାଠି ହୋଇଛନ୍ତି, ସେମାନଙ୍କ ବିରୁଦ୍ଧରେ ଏକ ଦୃଢ଼ ସଂଗଠନ ସୃଷ୍ଟି ହୋଇଛି ପ୍ରତିକ୍ରିୟା ରୂପେ । ବିହାରରେ ରଣବୀର ସେନା ଭଳି ଶ୍ରମିକମାରଣ ସଂଗଠନ ମୁଣ୍ଡଟେକିଛି ଓ ଅସଂଗଠିତମାନଙ୍କ ଉପରେ ଅତ୍ୟାଚାରର ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଛି । ଏପରିକି ଅସଂଗଠିତକୁ ନୃଶଂଶ ଭାବେ ହତ୍ୟା କରିବା ଭାବରେ ଅନେକଙ୍କୁ ଭୟଭୀତ ଓ ଆତଙ୍କିତ କରିଛି । ଛତିଶଗଡ଼ରେ ବଶିଷ୍ଟ ଶ୍ରମିକ ନେତା ଶଙ୍କର ଗୁହା ନିୟୋଗୀଙ୍କୁ ମଧ୍ୟ ଶିଳ୍ପପତିମାନେ ଗୁଳିକରି ହତ୍ୟା କରିଛନ୍ତି । ବିଭିନ୍ନ ଦେଶରେ ମଧ୍ୟ ଅସଂଗଠିତକୁ ଲୁଣ୍ଠନ ଓ ହତ୍ୟା କରାଯାଉଛି । ବ୍ରାଜିଲର ସହରମାନଙ୍କରେ ଶିଶୁଶ୍ରମିକମାନଙ୍କୁ ଓ ରାଜରାସ୍ତା କଡେ ବସବାସ କରୁଥିବା ତରୁଣମାନଙ୍କୁ ଉଚ୍ଚବର୍ଗର ଉଚ୍ଛୃଙ୍ଖଳ ଯୁବଗୋଷ୍ଠୀ ହତ୍ୟା କରୁଛନ୍ତି । ଚୀନ୍‌ରେ କମ୍ୟୁନିଷ୍ଟ ଶାସନ ଥିଲେ ମଧ୍ୟ ଶ୍ରମିକମାନଙ୍କୁ ଶୋଷଣ କରାଯାଉଛି ଓ ସେମାନଙ୍କର ମାନବାଧିକାର ଉଲଙ୍ଘନ କରାଯାଉଛି ବୋଲି ଅନେକ ଅଭିଯୋଗ ଆସିଛି ।

ଜଗତୀକରଣର ପ୍ରଭାବ ବଳରେ ରାଷ୍ଟ୍ର ଶ୍ରମିକମାନଙ୍କୁ ଅତ୍ୟାଚାର କରିବାର ତାଲିକାରେ ପ୍ରଥମେ ଅଛି । ସରକାରୀ କଳରେ ଅନେକ ଠିକା କର୍ମଚାରୀ ଅଛନ୍ତି । ସେମାନେ ପ୍ରତିବାଦ କଲେ ସେମାନଙ୍କୁ ଛଟେଇ କରାଯାଉଛି ଓ ପ୍ରତିବାଦର ସ୍ୱରକୁ ଚାପି ଦିଆଯାଉଛି । ଶିଳ୍ପପତି ଓ ସରକାର, ଜମିଦାର ଓ ଠିକାଦାର ସମସ୍ତେ ଠିକା ଶ୍ରମିକ ରଖିବାକୁ ହିଁ ଚାହୁଁଛନ୍ତି ଓ ନିଜ ମର୍ଜିରେ ଠିକା ଶ୍ରମିକଙ୍କ ଭବିଷ୍ୟତ ନିଷ୍ପତ୍ତି କରୁଛନ୍ତି । ଠିକା ଶ୍ରମିକ ଆଇନ୍ (କଣ୍ଟ୍ରାକ୍ଟ ଲେବର ଆକ୍ଟ ୧୯୭୧)ର ଯଥାର୍ଥତା ଅଛକି ନାହିଁ ଏବେ ସ୍ପଷ୍ଟ ଜଣାପଡୁନାହିଁ ।

ଅସଂଗଠିତ ଶ୍ରମିକମାନେ ସବୁକ୍ଷେତ୍ରରେ କ୍ଷତିଗ୍ରସ୍ତ ହୋଇଛନ୍ତି ଜଗତୀକରଣ ଦ୍ୱାରା । ଖାଦ୍ୟ ନିରାପତ୍ତା ବିପନ୍ନ ହୋଇଛି ବହୁମାତ୍ରାରେ । ଯେତେକ ଅସୁରକ୍ଷିତ

ଓ ବିପଦସଙ୍କୁଳ ଶିଳ୍ପ ଅଛି ସେଠାରେ ଏହି ଅସହାୟ ଗୋଷ୍ଠୀକୁ ନିୟୋଜିତ କରାଯାଉଛି । ନିର୍ମାଣ / କନଷ୍ଟ୍ରକ୍ସନ କ୍ଷେତ୍ରରେ କୋଟି କୋଟି ଶ୍ରମିକ କାର୍ଯ୍ୟରତ ଅଛନ୍ତି । ସ୍ପଷ୍ଟ ଦିବାଲୋକରେ ସେମାନଙ୍କ ପ୍ରତି ପ୍ରଯୁଜ୍ୟ ଆଇନ୍‌କୁ ଉଲ୍ଲଘଂନ କରାଯାଉଛି । ସେମାନଙ୍କୁ ଝୁମ୍ପୁଡିରେ ରହିବାକୁ ବ୍ୟବସ୍ଥା କରାଯାଉ ନାହିଁ । କୌଣସି ଦୁର୍ଘଟଣା ଘଟିଲେ ସ୍ୱାସ୍ଥ୍ୟ ସେବା ବା ବୀମାର ବ୍ୟବସ୍ଥା ନାହିଁ । ମୃତ୍ୟୁ ମୁଖରେ ପଡିଲେ କେହି ପ୍ରତିବାଦ କରିବାର ସାହସ ନାହିଁ । ଉଦାହରଣ ସ୍ୱରୂପ ବଲାଙ୍ଗୀର ଓ ନୂଆପଡାରୁ ହଜାର ହଜାର ଶ୍ରମଜୀବୀ ଆନ୍ଧ୍ର ପ୍ରଦେଶରେ ଇଟା ଭାଟିରେ ଅତି ଘୃଣ୍ୟ ଓ ଆମାନବୀୟ ପରିସ୍ଥିତିରେ ରହି କାମ କରୁଛନ୍ତି ବୋଲି ଗଣମାଧ୍ୟମରେ ପ୍ରକାଶ ପାଇଥିଲେ ମଧ୍ୟ ଓଡ଼ିଶା ସରକାର ଆଖି ବନ୍ଦ କରିଦେଇଛନ୍ତି । ଅସଂଗଠିତ ମହିଳା ଶ୍ରମିକମାନଙ୍କର ଦୂରବସ୍ଥା ଜାଣିଲେ ଆଖିରେ ଲୁହ ଆସିଯିବ । ମତ୍ସ୍ୟ ଶିଳ୍ପର ପ୍ରକ୍ରିୟାକରଣ ହେଉ ବା ଘରୋଇ କାମରେ ନିଯୁକ୍ତି ହେଉ, ସେମାନେ ଗୋଟି ଭଳି ରହିଥାଆନ୍ତି । ଦୀର୍ଘ ସମୟ ଧରି ଖଟିବାକୁ ପଡେ । ଶାରୀରିକ ତଥା ମାନସିକ ଯନ୍ତ୍ରଣାର ଶିକାର ହେବାକୁ ହୁଏ । ଯୌନ ଅତ୍ୟାଚାରର କରୁଣ କାହାଣୀ ମଧ୍ୟ ଅନେକ ସମୟରେ ପ୍ରକାଶିତ ହୁଏ । କୋଟିକୋଟି କୃଷି ଶ୍ରମିକଙ୍କ ଅସହାୟ ଓ ଅସୁରକ୍ଷିତ ଜୀବନ କଥା ଯେମିତି ସମସ୍ତେ ଜାଣି ନଜାଣିଲା ପରି ବ୍ୟବହାର କରିଥାଆନ୍ତି । ଦେଶ, ନାଗରିକ ସମାଜ, ନ୍ୟାୟପତି, ପୁଞ୍ଜିପତିମାନଙ୍କ ମତରେ ଏ କୃଷି ଶ୍ରମିକମାନଙ୍କୁ ଦେଶର ଖାଦ୍ୟ ନିରାପତ୍ତା ପାଇଁ ତ୍ୟାଗ କରିବାକୁ ପଡିବ । କି ତ୍ୟାଗ ଓ କି ଖାଦ୍ୟ ନିରାପତ୍ତ ? ପାଠକମାନେ ବିଚାର କରିବେ ।

ଏବେ ଶିଶୁ ଶ୍ରମିକମାନଙ୍କ କଥା ବିଚାରକୁ ନିଆଯାଉ । ଶିବକାଶୀର ବାଣ ତିଆରି ଶିଳ୍ପ, ମିର୍ଜାପୁରର କାର୍ପେଟ ତିଆରି ଶିଳ୍ପ ଫିରୋଜାବାଦ୍‌ର ଧୂପ କାଠି ତିଆରି ଶିଳ୍ପରେ ଶିଶୁ ଶ୍ରମିକମାନେ କେଉଁଭଳି ନିର୍ଯ୍ୟାତିତ ଓ ଅତ୍ୟାଚାରିତ ହେଉଛନ୍ତି ତାହାର ଦୁଃଖଦାୟକ କାହାଣୀ ଯେ କୌଣସି ବ୍ୟକ୍ତିକୁ ଦୋହଲାଇ ଦେବ । ସାରା ବିଶ୍ୱରେ ଜଗତୀକରଣ ବିରୁଦ୍ଧରେ ଯେଉଁ ଆନ୍ଦୋଳନ ଚାଲିଛି ସେଥିରେ ଶିଶୁ ଶ୍ରମିକମାନଙ୍କ ଦୟନୀୟ ସ୍ଥିତିକୁ ଏକ ଉଦାହରଣ ରୂପେ ଉପସ୍ଥାପନା କରାଯାଉଛି । ସାରାଦୁନିଆରେ ଅସଂଖ୍ୟ ପ୍ରତିବାଦ ମୁଣ୍ଡ ଟେକିଛି ଶିଶୁଶ୍ରମିକ ବ୍ୟବସ୍ଥା ବିରୁଦ୍ଧରେ । କେତେକ ସଫଳତା ମଧ୍ୟ ମିଳିଛି ବୋଲି ସ୍ୱୀକାର କରିବାକୁ ହେବ ।

ଜଗତୀକରଣ ବ୍ୟବସ୍ଥାର ଆହୁରି ମଜଭୁତ ହେବ ବା ଶୀଘ୍ର ଭୁଶୁଡି ପଡିବ ଏହା ସାରା ବିଶ୍ୱର ଶ୍ରମଜୀବୀଙ୍କ ଉପରେ ନିର୍ଭର କରୁଛି । ଶ୍ରମଜୀବୀଙ୍କ ସଂଖ୍ୟା ଦିନକୁ ଦିନ ବଢୁଛି । ପୁଞ୍ଜିପତି ଓ ଜଗତୀକରଣ ସପକ୍ଷବାଦୀଙ୍କ ସଂଖ୍ୟା ସେଭ ଅନୁପାତରେ ବଢୁନାହିଁ । ଶ୍ରମଜୀବୀ ଅସୁରକ୍ଷିତ ଓ ଅସହାୟ ସହ ପୁଞ୍ଜିପତି ଓ ସେମାନଙ୍କ ସମଧର୍ମୀ ଗୋଷ୍ଠୀ ମଧ୍ୟ ଅସୁରକ୍ଷତି । ଯଦି ପୁଞ୍ଜିପତି ଓ ଥିଲାବାଲା ଗୋଷ୍ଠୀଙ୍କ ବ୍ୟାପକ ନିରାପତ୍ତା ବ୍ୟବସ୍ଥା ଓ ସଶସ୍ତ୍ର ଗାର୍ଡମାନଙ୍କ ସଂଖ୍ୟା ମପାଯାଏ, ସେମାନଙ୍କ ସୁଉଚ୍ଚ ପ୍ରାଚୀର ଘେରା ଘର ଓ ବିଶାଳକାୟ ସୁଦୃଢ ଦ୍ୱାରଦେଶ ଆକଳନ କରାଯାଏ, ସେମାନଙ୍କର ନିରାପତ୍ତା କେତେ ବିପନ୍ନ ତାହା ସହଜରେ ଅନୁମାନ କରିହୁଏ ।

ଦ୍ୱିତୀୟ ଜାତୀୟ ଶ୍ରମିକ ମିଶନ ତାଙ୍କର ରିପୋର୍ଟରେ ଅସଂଗଠିତ ଶ୍ରମିକଙ୍କ ବିଷୟରେ କେତେ ତଥ୍ୟ ଓ ବିଶ୍ଳେଷଣ ଉପସ୍ଥାପନା କରିଛନ୍ତି । କିନ୍ତୁ ଅସଂଗଠିତ ମାନଙ୍କ ସଂଗଠନ ସରକାର ବା ପାରମ୍ପରିକ ଶ୍ରମ ସଂଗଠନମାନେ କରିବେ ନାହିଁ । ଏହା ଏକ ସ୍ୱକୀୟ ଓ ସ୍ୱାବଲମ୍ବନଶୀଳ ପ୍ରକ୍ରିୟା ଯାହା ଜଗତୀକରଣର ଉତ୍ତୁଙ୍ଗ ପାଚେରୀ ଭାଙ୍ଗିବାରେ ଦିନେ ନା ଦିନେ ସମର୍ଥ ହେବ । ❑

# ଜଗତୀକରଣ ଓ ଶିକ୍ଷା ଉପରେ ଏହାର ପ୍ରଭାବ ଓ ପ୍ରତିକ୍ରିୟା

ଜଗତୀକରଣର ଅର୍ଥନୈତିକ, ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ପ୍ରଭାବ କ୍ରମେ କେତେ ଗୁରୁତର ହେବାକୁ ଲାଗିଛି ତାହା ଆଦିବାସୀ ଅଞ୍ଚଳକୁ ଆଖି ପକାଇଲେ ସ୍ପଷ୍ଟ ଜଣାପଡ଼େ । ଖାଲି ଆଦିବାସୀ ଅଞ୍ଚଳ ନୁହେଁ, ଅଣ-ଆଦିବାସୀ ଅଞ୍ଚଳ ଯାହା ଗାଆଁ ହୋଇଥାଉ କି ସହର ହୋଇଥାଉ ସେଠି ମଧ୍ୟ ଏହା ସହଜରେ ପରିଲକ୍ଷିତ ହେଉଛି ।

ଜଗତିକରଣର ପ୍ରତିକୂଳ ପ୍ରଭାବ ଯେ କେବଳ ଜୀବନ ଓ ଜୀବିକା ଉପରେ ପଡ଼ିନାହିଁ, ତାହା ନୁହେଁ, ଏହା ମଧ୍ୟ ସାଂସ୍କୃତିକ କ୍ଷେତ୍ରରେ ଅତି ବ୍ୟାପକ ଭାବରେ ପ୍ରସାରିତ ହୋଇସାରିଛି । ସାଧାରଣ ମଣିଷଟିଏ ତାହାର ଜୀବନ ସର୍ବସ୍ୱ ଗୁଣ, ମାନ, ଜ୍ଞାନ ଓ ସ୍ଥିତିକୁ ଅନୁଭବ କରି ପାରୁନାହିଁ । ଅନ୍ୟ ପକ୍ଷରେ ଏହିସବୁ ମୂଲ୍ୟବୋଧକୁ ସେ ହୀନଦୃଷ୍ଟିରେ ଦେଖିବାକୁ ଆରମ୍ଭ କରିଛି ।

ଆଦିବାସୀ ଅଞ୍ଚଳରେ ମୌଳିକ ତଥା ପ୍ରାଥମିକ ଶିକ୍ଷା ଯଥେଷ୍ଟ ପରିମାଣରେ ଉପଲବ୍ଧ ହେବ ନାହିଁ ଏକଥା ଖାଲି ଗବେଷଣାରୁ ନୁହେଁ ଅଥବା ଶିକ୍ଷାବିତ୍‌ମାନଙ୍କ ମୁହଁରୁ ନୁହେଁ, ଆଦିବାସୀମାନଙ୍କ ନିଜ ବର୍ଣ୍ଣନାରୁ ଜାଣି ହୋଇପାରୁଛି । ଯେତେ ପ୍ରକାରର ଶିକ୍ଷା ଆନ୍ଦୋଳନ ଚାଲି ଆସିଛି ଓ ଯେତେ ପ୍ରକାରର ଶିକ୍ଷାନୀତି ପ୍ରଚଳନ କରାଯାଇଛି ସେସବୁ ଅର୍ଥହୀନ ହୋଇପଡ଼ିଛି ଯେମିତି । ଉଦାହରଣ ସ୍ୱରୂପ ସଂପୂର୍ଣ୍ଣ ସାକ୍ଷରତା ଅଭିଯାନକୁ ବିଚାରକୁ ନିଅନ୍ତୁ । ପ୍ରକୃତରେ ସମ୍ପୂର୍ଣ୍ଣ ଶିକ୍ଷା ଅଭିଯାନ ତଥା ସେହିଭଳି ଡି.ପି.ଇ.ପି, ନିଶ୍ଚିତ ଶିକ୍ଷା ଯୋଜନା, ସର୍ବଶିକ୍ଷା ଅଭିଯାନ ଇତ୍ୟାଦିର କେତେ ସୁଫଳ ଆଦିବାସୀମାନଙ୍କୁ ମିଳିଛି, ତାହା ପ୍ରଶ୍ନବାଚୀ ଚିହ୍ନରେ ହିଁ ରହିଯାଇଛି । ଜଗତୀକରଣର ଶିକ୍ଷା ଉପରେ ସର୍ବପ୍ରଥମ ପ୍ରଭାବ ହେଲା ଶିକ୍ଷାର ଘରୋଇକରଣ ଓ ଘରୋଇ ଶିକ୍ଷାନୁଷ୍ଠାନମାନଙ୍କୁ ସବୁସ୍ତରରେ ପ୍ରୋତ୍ସାହନ । ଆଦିବାସୀ ଅଞ୍ଚଳରେ ଖ୍ରୀଷ୍ଟିୟାନ୍ ମିଶିନାରୀମାନେ ହୁଅନ୍ତୁ ବା ବିଶ୍ୱହିନ୍ଦୁ ପରିଷଦ - ଆର୍.ଏସ୍.ଏସ୍‌ଙ୍କ ଦ୍ୱାରା ପରିଚାଳିତ ଘରୋଇ ସ୍କୁଲଗୁଡ଼ିକର ପରିକଳ୍ପନା ଏବଂ ପରିଚାଳନା ଆଦିବାସୀମାନଙ୍କୁ ଦ୍ୱନ୍ଦ୍ୱରେ ପକାଇ ଦେଉଛି ।

ଆଦିବାସୀ ପିଲାଟି ଓ ତା'ର ବାପାମାଆ ଭାବି ପାରୁନାହାଁନ୍ତି ଯେ ସରକାରଙ୍କ ପରିଚାଳିତ ଆଶ୍ରମ ସ୍କୁଲଗୁଡ଼ିକରେ ମଧ୍ୟ ଆଦିବାସୀ ପିଲାଙ୍କୁ ସ୍ଥାନ ମିଳୁନାହିଁ ।

ସେଠି ମଧ୍ୟ ଲାଞ୍ଚ ଓ ସୁପାରିଶର ଘୋର ଆବଶ୍ୟକତା ରହୁଛି । ସ୍କୁଲ ଆଉ ଚାଲୁ ନାହିଁ ଅବା ସେଠି ପାଠ ପଢ଼ିଲେ କିଛି ଶିକ୍ଷା ଅବା ନିଯୁକ୍ତି ମିଳିବ ନାହିଁ । ଆଉ ଏକଥା ନିଶ୍ଚିତ ଯେ ଗରିବ ଆଦିବାସୀଟି କୌଣସି ଘରୋଇ ସ୍କୁଲକୁ ତା'ର ପିଲାକୁ ପଠାଇପାରିବ ନାହିଁ । ବିଶ୍ୱବ୍ୟାଙ୍କ, ଡ଼ି.ଏଫ୍.ଆଇ.ଡ଼ି ଆଦି ଆନ୍ତର୍ଜାତିକ ଅର୍ଥଦାନକାରୀ ସଂସ୍ଥାମାନେ ଯେତେ ସାହାଯ୍ୟ କରନ୍ତୁ ପଛକେ ଅଥବା ସରକାର ନିଶ୍ଚିତ ଶିକ୍ଷା ଆଇନ୍(Education Guarantee Act) ଆଦି ଲାଗୁ କଲେ ମଧ୍ୟ ଆଦିବାସୀ ପିଲାମାନେ ସରକାରୀ ଅଥବା ଘରୋଇ ସ୍କୁଲ ହେଉ, ଶିକ୍ଷାପ୍ରାପ୍ତିରୁ ବଂଚିତ ହୋଇ ରହିବେ । ଜଗତୀକରଣର ଫଳାଫଳ କେତେ ଭୟାନକ ହେବ ସେଇଥିପାଇଁ ଭବିଷ୍ୟତବାଣୀ ମଧ୍ୟ ଦିଆଯାଇ ସାରିଲାଣି ।

ଜଗତୀକରଣର ଶିକ୍ଷାଉପରେ ପ୍ରଭାବ ଦ୍ୱାରା ସୃଷ୍ଟି ହେବ ଏକ ବିରାଟ ଓ ଗଭୀର ଖାଇ ଯାହାକୁ ଆଜିକାଲି ସମସ୍ତେ ଡ଼ିଜିଟାଲ ଡ଼ିଭାଇଡ୍ ବୋଲି ନାମିତ କରିଛନ୍ତି । ଏହାର ଅର୍ଥ ହେଲା, କିଛି ମୁଷ୍ଟିମେୟ ଲୋକ ଯେଉଁମାନେ ଘରୋଇ ବିଦ୍ୟାଳୟକୁ ଯିବେ, ସେହିମାନେ ପ୍ରଥମ ଶ୍ରେଣୀରୁ "କମ୍ପ୍ୟୁଟର ଓ ଇଣ୍ଟରନେଟ୍'' ଜରିଆରେ ସାରା ବିଶ୍ୱର ଜ୍ଞାନଭଣ୍ଡାରକୁ ପ୍ରବେଶ କରିବେ ଅଥଚ ଆଦିବାସୀ ପିଲାଟି ତା'ର ଜୀବନକାଳ ମଧ୍ୟରେ କମ୍ପ୍ୟୁଟର ଓ ଇଣ୍ଟରନେଟ୍ ସୂଚନାର ବିପ୍ଳବରୁ ବଂଚିତ ହୋଇ ରହିବ ।

ଜଗତୀକରଣର ଶିକ୍ଷା ଉପରେ ଅନ୍ୟତମ ପ୍ରଭାବଟି ହେଉଛି ମୂଲ୍ୟବୋଧ ଶିକ୍ଷା ବା value based education । ଜଗତୀକରଣ ସବୁବେଳେ ଚାହିଁବ ଯେ ଶିକ୍ଷା ପ୍ରଚଳିତ ଢ଼ାଂଚାକୁ ଯେମିତି ମଜବୁତ କରୁ । ଏହାର ଅର୍ଥ ହେଲା ଯିଏ ଧନୀ ଅଛନ୍ତି, ସିଏ ବେଶୀ ଧନୀ ହେଉ, ଯିଏ ଗରିବ ଅଛି, ସିଏ ବେଶୀ ଗରିବ ହେଉ । ସବୁ କ୍ଷେତ୍ରରେ ଲାଭଖୋର ମନୋବୃତ୍ତି ବଳବତ୍ତର ରହୁ । ପ୍ରଥମେ ନିଜର ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ଓ ନିରାପତ୍ତା ବିଷୟଟି ମୁଖ୍ୟ ପ୍ରସଙ୍ଗ ହୋଇ ମଧ୍ୟ ରହୁ । ବଜାରୀକରଣ ଦ୍ୱାରା ମଣିଷ, ସମାଜର ସ୍ଥିତି ଏବଂ ଅଭିବୃଦ୍ଧି ନିୟନ୍ତ୍ରିତ ହେଉ । ପ୍ରେମ, ଭାତୃତ୍ୱଭାବ, ସମ୍ବେଦନଶୀଳତା, ସଂପ୍ରୀତି, ପର ପାଇଁ ତ୍ୟାଗ, ସ୍ନେହ, ମମତା ଇତ୍ୟାଦି ଯାହା ଆଦିବାସୀଙ୍କ ଜୀବନ ଦର୍ଶନର ମେରୁଦଣ୍ଡ ତାହା ଜଗତିକରଣ ପ୍ରଭାବରେ ଧୂଳିସାତ ହୋଇଯିବ । ଏଣୁ ଆଦିବାସୀର ଯଦି ନିଜ କଥା ତଥା ନିଜ ପରିବାରର କଥା ଏବଂ ବନ୍ଧୁ କୁଟୁମ୍ବଙ୍କ ପ୍ରତି ଥିବା ତାର ଦୃଷ୍ଟିକୋଣ ବଦଳିଯାଏ, ତାହାହେଲେ ସେ ଆଦିବାସୀ ହୋଇ ରହିବ କି ? ❑

# ଅମଲାତନ୍ତ୍ର ଓ ଜଗତୀକରଣ

ଅମଲାତନ୍ତ୍ରରେ ଥିବା ବନ୍ଧୁ, ଶୁଭେଚ୍ଛୁ ଓ ସୁହୃଦ୍ ଗୋଷ୍ଠୀଙ୍କ ପ୍ରତି ଉଦ୍ଦିଷ୍ଟ ।

ଆଜିକୁ ୨୫ ବର୍ଷ ପୂର୍ବେ କାଶୀପୁରରେ ୧୯୮୦ ମସିହାରେ ମୁଁ ପହଞ୍ଚିବା ପୂର୍ବରୁ ଏବଂ ପରେ ଅମଲାତନ୍ତ୍ର ସହ ମୋର ଘନିଷ୍ଠତା ସ୍ଥାପିତ ହୋଇଛି । ରେଭେନ୍‌ସା କଲେଜରେ ପଢୁଥିବା ବେଳେ ଅନେକ ପରିଚିତ ବନ୍ଧୁ ଅମଲାତନ୍ତ୍ରର ବିଭିନ୍ନ ପଦପଦବୀରେ ଅଧିଷ୍ଠିତ ହୋଇଛନ୍ତି । ତେଣୁ କାଶୀପୁରରେ କାମ ଆରମ୍ଭ କଲାବେଳେ ସେ ପରିଚିତି ଏବଂ ବନ୍ଧୁତା ମୋତେ ମୋ କାର୍ଯ୍ୟକ୍ଷେତ୍ରରେ ବ୍ୟାପକ ସାହାଯ୍ୟ କରିଥିଲା । ସେତେବେଳେ କୋରାପୁଟର ଜିଲ୍ଲାପାଳ ବା ପୋଲିସ ଅଧିକାରୀମାନ ବା ତଳସ୍ତରର କର୍ମଚାରୀ କୁହନ୍ତୁ ଗରିବ ଆଦିବାସୀମାନଙ୍କର ଦୁଃଖ ଦୁର୍ଦ୍ଦଶା ଶୁଣିବାକୁ ତତ୍ପର ହେଉଥିଲେ ଏବଂ ଏହାକୁ ଲାଘବ କରିବା ପାଇଁ ବଳିଷ୍ଠ ପଦକ୍ଷେପ ନେଉଥିଲେ । ସେ ସମୟରେ ଆଦିବାସୀମାନଙ୍କ ଉପରେ ଉତ୍ପୀଡ଼ନ ଓ ଅତ୍ୟାଚାର କରୁଥିବା ପୋଲିସ, ରାଜସ୍ୱ ନିରୀକ୍ଷକ ଏବଂ ଜଙ୍ଗଲ ବିଭାଗୀୟ ଗାର୍ଡ଼ମାନେ କେତେକ କ୍ଷେତ୍ରରେ ନେଇଥିବା ଲାଞ୍ଚକୁ ଫେରାଇଥିଲେ । ନ୍ୟାୟ ଦେବାପାଇଁ ଓ ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନାରୁ ଲାଭ ପାଇବା ପାଇଁ ଗରିବ ଆଦିବାସୀମାନେ ବହୁ ସମୟରେ ଜିଲ୍ଲାପାଳ ଏବଂ ଅନ୍ୟ ପଦସ୍ଥ ଅଫିସରଙ୍କର ଦ୍ୱାରସ୍ଥ ହେଉଥିଲେ । ଏବଂ ଜମାନ ମାନଙ୍କ ଦାଉରୁ ରକ୍ଷାପାଇବା ପାଇଁ ବିଭିନ୍ନ ପ୍ରକାର ଅଭିଯୋଗ ବାଢୁଥିଲେ (ଗୋପୀନାଥ ମହାନ୍ତିଙ୍କ ପରଜା ବହିର 'ଜମାନ'ର ଦୁର୍ଦ୍ଦାନ୍ତ ପରିଚୟ ଦିଆଯାଇଛି) । ୧୯୮୩ ମସିହାରେ ଗୋତି ମୁକ୍ତି ଆନ୍ଦୋଳନ ଓ ମହାଜନୀ କାରବାର ବିରୁଦ୍ଧରେ ଆମେ ଯେଉଁ ଅଭିଯାନ ଆରମ୍ଭ କରିଥିଲୁ ଏବଂ ସେଥିଯୋଗୁଁ ମୋ ଉପରେ ସାହୁକାରମାନଙ୍କର ପକ୍ଷରୁ ମରଣାନ୍ତକ ଆକ୍ରମଣ କରାଯାଇଥିଲା ।

ସେତେବେଳେ ବିଭିନ୍ନ ପଦପଦବୀରେ ରହିଥିବା ଅଧିକାରୀ ବନ୍ଧୁମାନେ ମୋତେ ସୁରକ୍ଷା ଦେବାପାଇଁ ତତ୍ପର ହୋଇ ପଡ଼ିଥିଲେ । ସେମାନେ ସମସ୍ତେ ଭାବୁଥିଲେ ମୁଁ ସେମାନଙ୍କର ମନ ଭିତରର ସ୍ୱପ୍ନଟିକୁ ସାକାର କରିଛି । ସେମାନେ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ପଦବୀରେ ଥିଲେ ମଧ୍ୟ ମୋଠାରୁ ଆଦିବାସୀମାନଙ୍କ ଜୀବନଜୀବିକାକୁ ନେଇ ଉଠୁଥିବା ସମସ୍ୟାକୁ ଜାଣିବାକୁ ଚାହୁଁଥିଲେ । ଏଇଭଳି ଏକ ସମ୍ବେଦନଶୀଳତାର ପରିବେଶ ଗାଁ ସ୍ତରରୁ ମୁଖ୍ୟମନ୍ତ୍ରୀ ବା ପ୍ରଧାନମନ୍ତ୍ରୀଙ୍କ ଦପ୍ତର ପର୍ଯ୍ୟନ୍ତ ବ୍ୟାପିଥିଲା ।

ଏକ ଢ଼ାଞ୍ଚାଗତ ପରିବର୍ତ୍ତନ କଥା ଅମଲାତନ୍ତ୍ରର ନିବୁଜ କୋଠରୀ ଭିତରେ ନରଖି ଆଦିବାସୀ ଓ ଅସଂଗଠିତ ଗରିବଙ୍କ ସଂଗଠନ ବିଷୟ କଥାବାର୍ତ୍ତା କରିବାକୁ ଆଗେଇ ଆସିଥିଲେ ମୋର କେତେକ ବନ୍ଧୁ । କେତେଜଣ ଅଧିକାରୀଙ୍କ ପାଇଁ ଏହା ଏକ ଆଦର୍ଶବାଦୀ ପ୍ରଶ୍ନ ଥିଲା । ଭାରତର ବିଭିନ୍ନ ଅଞ୍ଚଳରେ ମୁଣ୍ଡ ଟେକୁଥିବା ଜନଆନ୍ଦୋଳନଗୁଡ଼ିକୁ ଅମଲାତନ୍ତ୍ରରୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ସାହସ ଓ ସମର୍ଥନ ମିଳୁଥିଲା । ସମାଜ ପରିବର୍ତ୍ତନରେ ସାମିଲ୍ ହେଉଥିବା ଆକ୍ଟିଭିଷ୍ଟି ମାନଙ୍କୁ ସୁରକ୍ଷା ମଧ୍ୟ ମିଳୁଥିଲା ।

୧୯୯୦ରୁ ଅମଲାତନ୍ତ୍ରରେ ଏକ ମୌଳିକ ପରିବର୍ତ୍ତନର ପ୍ରକ୍ରିୟା ଆରମ୍ଭ ହୋଇଛି । ସାମ୍ପ୍ରତିକ ପୃଥିବୀର ଜଗତୀକରଣ ପ୍ରକ୍ରିୟା ଯେଉଁ ଦିନଠାରୁ ତାର ଜାଲ ବିସ୍ତାର କରିଛି ଏବଂ ରାଷ୍ଟ୍ରକୁ ନ୍ୟୁନ ଏବଂ ଦୁର୍ବଳ କରି, ବଜାର ଏବଂ ପୁଞ୍ଜିକୁ ଶକ୍ତିଶାଳୀ କରିଛି ସେହିଦିନଠାରୁ ଅମଲାତନ୍ତ୍ରରେ ଥିବା କର୍ମକର୍ତ୍ତାମାନଙ୍କର ମନୋଭାବ ଏବଂ ଦୃଷ୍ଟିକୋଣ ଦୃତ ଗତିରେ ବଦଳିବାରେ ଲାଗିଛି । ସେଦିନ କଥା ମୋର ମନେ ଅଛି, ଯେଉଁଦିନ ସ୍ୱର୍ଗତ କିଶନ ପଟ୍ଟନାୟକ କେତେଜଣଙ୍କ ସହ ଯୁକ୍ତି କରୁଥିଲେ ଏବଂ କହୁଥିଲେ ଜିଲ୍ଲାପାଳମାନଙ୍କୁ କାହିଁକି ଏତେ କ୍ଷମତା ଦିଆଯାଉଛି ଓ କାହିଁକି ଏ କ୍ଷମତାର ଅପପ୍ରୟୋଗ ହେଉଛି । ଗରିବ ବିରୋଧି ପଦକ୍ଷେପର ଉଦାହରଣମାନଙ୍କୁ ନେଇ କାହିଁକି ବିକଳ୍ପ ଢ଼ାଞ୍ଚା ପ୍ରସ୍ତୁତ କରାଯାଉନାହିଁ । ବାସ୍ତବିକ ଏହିଭଳି ପ୍ରଶାସନ ଓ ବିକାଶ କ୍ଷେତ୍ରରେ ଅମଲାତନ୍ତ୍ରର ପ୍ରଭାବ ଓ ପ୍ରତିଷ୍ଠାକୁ ବିଚାରକୁ ନେଇ ଏକ ବିକଳ୍ପ ଏବଂ ବିଚାର କାହିଁକି କରାଯାଉ ନାହିଁ ? ଏହାର କାରଣ ହେଉଛି ଓଡ଼ିଶାଭଳି ଏକ ଗରିବ ରାଜ୍ୟରେ ଜନମାନସରେ ଅମଲାତନ୍ତ୍ରର ଛାଇ ପ୍ରତି କୋଣ ଅନୁକୋଣକୁ ବ୍ୟାପିଯାଇଛି । ଓଡ଼ିଶାରେ କିଏ ଜିଲ୍ଲାପାଳ ହେବ ଓ ମୁଖ୍ୟ ସଚିବ ହେବ ଏହା ଖବରକାଗଜରେ ପ୍ରକାଶ ପାଉଛି । ଜଣେ ଜଣେ ପ୍ରଭାବଶାଳୀ ଅଫିସରଙ୍କର ସ୍ୱପ୍ନକୁ ଏକ ଇସ୍ତାହାର ଭାବରେ ପ୍ରକାଶ କରିବାକୁ ଦ୍ୱିଧା ପ୍ରକାଶ କରୁନାହାଁନ୍ତି । ସେମାନଙ୍କର ସାହିତ୍ୟ କୃତିକୁ ନେଇ ଜାତୀୟ ଓ ଆନ୍ତର୍ଜାତୀୟ କ୍ଷେତ୍ରରେ ଓଡ଼ିଶାର ଗୌରବ ପ୍ରତିଷ୍ଠା ହୋଇପାରୁଛି । ସମାଜର ପ୍ରଭାବଶାଳୀ ଏବଂ ମତ ସୃଷ୍ଟିକାରୀ ଗୋଷ୍ଠୀ ହିସାବରେ ସେମାନେ ନିଜକୁ ଜାହିର କରୁଛନ୍ତି । ସେମାନେ ମଧ୍ୟ ଗବେଷଣା ଓ ବୌଦ୍ଧିକ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଛନ୍ତି । କ୍ଷମତା ଓ ସଂପତ୍ତି ଭୋଗ କରିବାପାଇଁ ବିଭିନ୍ନ ଇଲାକାରେ ସାମ୍ରାଜ୍ୟ

ବିସ୍ତାର କରୁଛନ୍ତି । ଅମଲାତନ୍ତ୍ରରେ ଥିବା ପାରସ୍ପରିକ ସଂପର୍କ ଓ ଭାତୃତ୍ୱ ଇଟାଲିର ମାଫିଆ ଗ୍ୟାଙ୍ଗଙ୍କ ସହ ତୁଳନା କରାଯାଇପାରେ । ତେଣୁ ଜଣେ ଅଫିସର ଦୁର୍ନୀତିଗ୍ରସ୍ତ ହେଉ ବା ବ୍ୟଭିଚାରରେ ଲିପ୍ତ ହେଉ ତାର ସାମାଜିକ, ଆର୍ଥିକ ଓ ରାଜନୈତିକ ପ୍ରଭାବ କ୍ଷୁର୍ଣ୍ଣ ହେଉନାହିଁ । କିନ୍ତୁ ଓଡ଼ିଶାର ଜନତା ସବୁବେଳେ ଯେମିତି ଚାହିଁବସିଛି କିଏ କେଉଁ ପଦବୀରେ ରହିବ । ମଧ୍ୟବିତ୍ତ ପରିବାରର ବୈଠକଖାନାରେ ମଧ୍ୟ ପ୍ରଶାସକମାନଙ୍କ କଥା ମୁଖ୍ୟ ଆଲୋଚନା ହୋଇପଡ଼ିଛି । ବୁଦ୍ଧିଜୀବୀମାନେ ଆବଶ୍ୟକ ପଡ଼ିଲେ ସେମାନଙ୍କର ଶରଣାପନ୍ନ ହେବାକୁ ପଦପେକ୍ଷ ନେଉଛନ୍ତି । ଏହାଛଡ଼ା ନାଗରିକ ସମାଜ ମଧ୍ୟ ସେମାନଙ୍କ ଆଶ୍ରାରେ ବଞ୍ଚି ରଖିଛନ୍ତି ।

ଜଗତୀକରଣ ପ୍ରକ୍ରିୟାରେ ସାରା ଅମଲାତନ୍ତ୍ରଟି ଯେମିତି ନିଜର ସ୍ଥାନ ଅନାୟାସରେ ନିର୍ଦ୍ଧାରିତ କରିସାରିଛି ଏବଂ ଏହି ପ୍ରକ୍ରିୟାକୁ ସୁଦୃଢ଼ କରିବା ପାଇଁ ତାର ସମସ୍ତ ଜ୍ଞାନକୌଶଳ ଓ ଅଭିଜ୍ଞତା ଯେମିତି ବିନିଯୋଗ କରିଛି । ସେ ନିଜର କାୟମନୋବାକ୍ୟରେ ଜଗତୀକରଣ ପ୍ରକ୍ରିୟାରୁ କିମିତି ଲାଭ ଉଠାଇବା ସେଥିପାଇଁ ପ୍ରଚେଷ୍ଟା କରୁଛି । ଏଇଥିପାଇଁ ସେ ନିଜକୁ ଏକ ବ୍ୟବସାୟ ପ୍ରତିଷ୍ଠାନ ମୁଖ୍ୟଙ୍କ ସହ ତୁଳନା କରୁଛି । ଏବଂ ତାଙ୍କଭଳି ଆୟ ଓ ବ୍ୟୟ, ଜୀବନଶୈଳୀ ଅନୁକରଣ କରିବାକୁ ଚାହୁଁଛି । ଏଥିପାଇଁ ଅର୍ଥର ଆବଶ୍ୟକ ଥିବାରୁ ଦୁର୍ନୀତିକୁ ପ୍ରଶ୍ରୟ ଦେଉଛି । ଏବେ ଯେଉଁ ସଂସ୍କାରର ଢ଼େଉ ମାଡ଼ି ଆସୁଛି ତାକୁ ଫୁଲମାଳ ଦେଇ ସେ ସ୍ୱାଗତ କରୁଛି । ସାଧାରଣ ମଣିଷ ସଂସ୍କାରର ଲାଭକ୍ଷତି, କୁପ୍ରଭାବ କି ସୁପ୍ରଭାବ ବୁଝି ପାରୁନଥିବା ବେଳେ ଅମଲାତନ୍ତ୍ର ତାହାର ସବୁ ଦିଗ ଓ ଗତିଶୀଳତାକୁ ବେଶ୍ ହୃଦୟଙ୍ଗମ କରିପାରୁଛି । ସଂସ୍କାର ପ୍ରକ୍ରିୟାରେ ଅମଲାତନ୍ତ୍ର ପ୍ରଚୁର ଲାଭ ପାଉଛି । ସେମାନଙ୍କର ନିଜର ତଥା ନିଜର ପରିବାରର ସଦସ୍ୟମାନେ ବିଭିନ୍ନ ଉପାୟରେ ଲାଭାଂଶ ଉଠାଉଛନ୍ତି ।

ଗରିବଙ୍କ ବିକାଶ ଏବଂ କଲ୍ୟାଣ ପାଇଁ ତାର ସମୟ ନାହିଁ । ମାନବାଧିକାର କେଉଁଠି ଭଙ୍ଗ ହେଲେ, ଭଙ୍ଗକାରୀଙ୍କୁ ସମର୍ଥନ ଜୁଟାଇବାରେ ଆଗଭର ହୋଇପଡୁଛି । ଆଦିବାସୀ ବିରୋଧୀ ନୀତିମାନଙ୍କୁ ସଫଳ କରିବା ପାଇଁ ସେ ତାର ଅପ୍ରତିହତ କ୍ଷମତା ଠୁଳ କରୁଛି । ପରିବେଶର ସୁରକ୍ଷା କଥା ସେ ଭାବୁନାହିଁ । ରାଜନୈତିକ ଚାପ ତା ଆଗରେ ମୁଣ୍ଡ ନୁଆଉଛି ଏବଂ ତାର ସାଂବିଧାନିକ ଦାୟିତ୍ୱକୁ ବଳି ଦେବାରେ ସେ ପଛାଉ ନାହିଁ ।

ସାଧାରଣ ମଣିଷଟି ଅମଲାତନ୍ତ୍ରରୁ କିଛି ସାହାଯ୍ୟ ପାଇବ ସେ ଆଶା ଆଉ ନାହିଁ । ଏଣୁ, ଏବେ କଳାହାଣ୍ଡିର କଲେକ୍ଟରଙ୍କୁ ସେ କହୁଛି ଷ୍ଟେରଲାଇଟ୍ କଲେକ୍ଟର ଓ ରାୟଗଡ଼ା କଲେକ୍ଟରଙ୍କୁ କହୁଛି ଇଣ୍ଡଲ କଲେକ୍ଟର । ଯେଉଁ ଅଫିସରମାନେ ଆଦିବାସୀମାନଙ୍କୁ ଏକଦା ସମର୍ଥନ ଦେଇ ଆସୁଥିଲେ ସେମାନେ ଆଜି ଯଦି ଠିକାଦାର ଏବଂ ରାଜନୈତିକ ନେତାମାନଙ୍କ ସହ ସାଲିସ କରି ମିଳାମିଶା କଲେ ଓ ଆଦିବାସୀ ଅଞ୍ଚଳରେ ନିୟୋଜିତ ପୋଲିସର ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରକୁ .ନେଇ ଉଲ୍ଲସିତ ହେଲେ, ଏଥିରେ ସାଧାରଣ ଆଦିବାସୀଟି ଆଶ୍ଚର୍ଯ୍ୟ ହେଉନାହିଁ । ଯେଉଁମାନେ ଆଦିବାସୀମାନଙ୍କ ସୁରକ୍ଷା ଓ ଉନ୍ନୟନ ପାଇଁ ଉତ୍ସର୍ଗୀକୃତ ଥିଲେ ଆଜି ଆଦିବାସୀମାନେ ସଂପୂର୍ଣ୍ଣଭାବେ ବିସ୍ଥାପିତ ହୋଇଯାଆନ୍ତୁ ବୋଲି ଯୋଜନା କରୁଛନ୍ତି । ଯେଉଁ ଅଫିସରମାନେ ଜଙ୍ଗଲ ସୁରକ୍ଷା ଓ ଜଙ୍ଗଲରେ ନିଆଁ ଲାଗିଲେ ଜଙ୍ଗଲର ନିଆଁକୁ ଲିଭାଇବାପାଇଁ ନିଜର ପାଣି ବୋତଲକୁ ବ୍ୟବହାର ପାଇଁ ଆଗଭର ହେଉଥିଲେ, ସେମାନେ ଆଜି ଜଙ୍ଗଲ ଏବଂ ଗଛ କାଟିବା ବା ଆଦିବାସୀମାନଙ୍କୁ ହଟାଇବା ପାଇଁ ଚକ୍ରାନ୍ତ କରୁଛନ୍ତି । ମୁଁ କିନ୍ତୁ ନିରାଶ ହୋଇନାହିଁ । ମୋର ବନ୍ଧୁମାନେ ଜଗତୀକରଣର ପ୍ରକ୍ରିୟାର ମାନବବିରୋଧୀ ଗତିବିଧିକୁ ଦିନେ ନା ଦିନେ ନିଶ୍ଚୟ ବୁଝିପାରିବେ ଓ ସେ ମାୟାଜାଲରୁ ନିଜକୁ ମୁକ୍ତ କରି ସାଧାରଣ ମଣିଷଙ୍କ ହିତରେ ନିଜକୁ ନିୟୋଜିତ କରିବେ ଏ ବିଶ୍ୱାସ ମୁଁ କରିଆସିଛି । ମୁଁ ମଧ୍ୟ ବିଶ୍ୱାସ କରୁଛି ଯେ ଝଡ଼, ବନ୍ୟା, ବାତ୍ୟା ଓ ଘୂର୍ଣ୍ଣିବାତ୍ୟା ଆସିଲେ ସେମାନେ ପଛଘୁଞ୍ଚା ଦେବେନାହିଁ ବା ଅନାହାର ମୃତ୍ୟୁ ହେଲେ ତାହାକୁ ଅସ୍ୱୀକାର କରିବେନାହିଁ । ସେମାନେ ଗରିବ, ପତିତ, ଦଳିତ ଓ ଅତ୍ୟାଚାରିତଙ୍କ ସପକ୍ଷରେ ସ୍ୱରଉତ୍ତୋଳନ କରିବେ । ❑

# ଜଗତୀକରଣ ଓ ସାଧାରଣ ମଣିଷଙ୍କ ଶିକ୍ଷା

## (୧)

ଜଗତୀକରଣ ପ୍ରକ୍ରିୟାରେ ସାଧାରଣ ମଣିଷଙ୍କର ଶିକ୍ଷାର ସ୍ତର, ସୁଯୋଗ, ମୂଲ୍ୟବୋଧ ଓ ମୌଳିକ ଅଧିକାର ବଢୁଛି କି ? ଏ ପ୍ରଶ୍ନ ଆଜି ସାରା ବିଶ୍ୱରେ ପଚରାଯାଉଛି ଓ ଉତ୍ତର ମଧ ଖୋଜା ଯାଉଛି । ଯେପର୍ଯ୍ୟନ୍ତ ଜଗତୀକରଣ ପ୍ରକ୍ରିୟା ଲାଗି ରହିଥିବ, ଏ ପଶ୍ନ ମଧ ବିଭିନ୍ନ ପରିପ୍ରେକ୍ଷୀରେ ପଚରା ଯାଉଥିବ । ଜଗତୀକରଣ ପ୍ରକ୍ରିୟାରେ ଜୀବନ ଜୀବିକା ଯେଉଁଭଳି ଗଭୀର ଭାବେ ପ୍ରଭାବିତ ହେଉଛି, ସେଇଭଳି ଶିକ୍ଷା ମଧ ପ୍ରଭାବିତ ହୋଇ ସାରିଛି । ଗାଁ ଗହଳରେ ଯେଉଁଭଳି ଶିକ୍ଷା ବ୍ୟବସ୍ଥା ବର୍ତ୍ତମାନ ପ୍ରଚଳିତ ଅଛି ତାହାକୁ ଅଧୟନ କଲେ ସହଜରେ ଏକଥା ଜଣାପଡିବ । ସାଧାରଣ ମଣିଷଙ୍କର ଶିକ୍ଷା କହିଲେ ଆମେ ଶିକ୍ଷାର ବିଷୟ ବସ୍ତୁ, ଶିକ୍ଷକ, ଶିକ୍ଷାୟତନ ଓ ଶିକ୍ଷାର ମୌଳିକ ଉଦ୍ଦେଶ୍ୟକୁ ବୁଝିଥାଉ । ଜଗତୀକରଣର ଆବର୍ତ୍ତରେ ଏସବୁ ଉପାଦାନ ଗୁଡିକ ପଡିଯାଇ ଧ୍ୱସ୍ତ ବିଧ୍ୱସ୍ତ ହୋଇ ପଡ଼ିଛନ୍ତି ସବୁଆଡ଼େ । ସାଧାରଣ ମଣିଷ ଓ ତାହାର ସମାଜ ଅସଲ ଶିକ୍ଷାରୁ ବଞ୍ଚିତ ହୋଇଛି । ସେ ଚାହୁଁଥିବା ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ କେଉଁଠି ହଜି ଯାଇଛି ଯେମିତି । ସେ ଶିକ୍ଷା ଭିତରେ ଥିବା ମୌଳିକ ମୂଲ୍ୟବୋଧର ଚିହ୍ନବର୍ଣ୍ଣ ଦେଖୁ ନାହିଁ ।

ଯଦି ଜଗତୀକରଣ ପ୍ରକ୍ରିୟା ଲୋକାଭିମୁଖୀ ହୋଇ ଥାଆନ୍ତା ଓ ବିକାଶଧାରାକୁ ସଠିକ୍ ବାଟରେ ନେଇ ଥାଆନ୍ତା, ତାହା ହେଲେ ଏ ପୃଥିବୀରେ କେତେ କ'ଣ ଅସମ୍ଭବ ସବୁ ସମ୍ଭବ ହୋଇ ପଡ଼ିଥାଆନ୍ତା । ଅତିକମ୍‌ରେ ମାନବାଧିକାର ଭଙ୍ଗ ହୁଅନ୍ତା ନାହିଁ । ଧନୀ ଗରୀବଙ୍କ ଭିତରେ ଖାଇ ବଢ଼ନ୍ତା ନାହିଁ । ସାଧାରଣ ଲୋକେ ବିକାଶଧାରାରୁ ଛିଟ୍‌କି ପଡନ୍ତେ ନାହିଁ । ସାମାଜିକ ଅସ୍ଥିରତା ଓ ଅସହାୟତା ବଢ଼ନ୍ତା ନାହିଁ । ଏହି ସହିତ ପରିବେଶର ଅବକ୍ଷୟ ହୁଅନ୍ତା ନାହିଁ କି ଦାରିଦ୍ର୍ୟ ଓ କ୍ଷୁଧା ଏ ପୃଥିବୀରେ ବଢ଼ନ୍ତା ନାହିଁ । କିନ୍ତୁ ଜଗତୀକରଣ ଏବଂ ତତ୍‌ସଲଗ୍ନ ଆଧୁନିକକରଣ ଯୋଗୁଁ ଆଜି ବିଶ୍ୱଜନତା ହନ୍ତସନ୍ତ, ଦାରିଦ୍ର୍ୟ ପ୍ରପୀଡ଼ିତ, ଋଣଗ୍ରସ୍ତ, ବ୍ୟାଧିଗ୍ରସ୍ତ, ବିସ୍ଥାପିତ ଓ ଅସୁରକ୍ଷିତ । ଏସବୁ ହୁଅନ୍ତା ନାହିଁ ଯଦି ଜଗତୀକରଣ ବଜାରର ଭିତ୍ତିଭୂମି ଉପରେ ପ୍ରାଧାନ୍ୟ ନ ଦେଇ ସାଧାରଣ ମଣିଷଙ୍କ ଶିକ୍ଷା ଓ ଅଧିକାର ଉପରେ ବିଶେଷ ଦୃଷ୍ଟି ଦେଇଥାଆନ୍ତା । ଶିକ୍ଷା

କିପରି ସାର୍ବଜନୀନ ହୋଇ ପାରିବ, ଶିକ୍ଷାଦାନ ପଦ୍ଧତି କେମିତି ସହଜ, ସରଳ ଓ ସୁଗମ୍ୟ ହୋଇ ପାରିବ ଓ ଶିକ୍ଷା ବିକାଶ ପ୍ରକ୍ରିୟାରେ ମୂଳାଧାର ହେବ ଏହା ଜଗତୀକରଣ ପରିପ୍ରେକ୍ଷୀରେ ଆଲୋଚନାର ବିଷୟବସ୍ତୁ ହୋଇ ପଡିଛି ।

ତୃତୀୟ ବିଶ୍ୱର ଶିକ୍ଷାନୀତି ଓ ବ୍ୟବସ୍ଥା କିଏ ନିର୍ଦ୍ଧାରଣ କରୁଛି ? ଶିକ୍ଷା କାର୍ଯ୍ୟକ୍ରମ କିଏ ପରିକଳ୍ପନା କରୁଛି ? ପ୍ରତ୍ୟେକ ଦେଶର ଶିକ୍ଷା ଓ ତାହାର ଅଭିବୃଦ୍ଧି ଏବେ ସେ ଦେଶର ଆବଶ୍ୟକତାକୁ ନେଇ ହେଉନାହିଁ । ଶିକ୍ଷାର ଘରୋଇକରଣ ଓ ବଜାରୀକରଣର ଚେର ସବୁଆଡ଼କୁ ବ୍ୟାପି ଯାଇଛି । ଶିକ୍ଷାରେ ପୁଞ୍ଜିନିବେଶକୁ ପ୍ରାଧାନ୍ୟ ଏବେ ଦିଆଯାଉଛି । ଯେଉଁମାନେ ପୁଞ୍ଜିନିବେଶ କରୁଛନ୍ତି ସେମାନେ ବିଶ୍ୱବ୍ୟାଙ୍କ ହୁଅନ୍ତୁ ବା କର୍ପୋରେଟ ହୁଅନ୍ତୁ ଗୋଟିଏ କଥା ଚାହୁଁଛନ୍ତି- ଶିକ୍ଷାର ବଜାରୀକରଣ । ବିଶ୍ୱ ବଜାରରେ ଯେଉଁଭଳି ପେଷାଦାର ବ୍ୟକ୍ତିଙ୍କ ଆବଶ୍ୟକତା ରହିଛି ସେଇଭଳି ବ୍ୟକ୍ତିମାନଙ୍କୁ ସୃଷ୍ଟି କରିବା ପାଇଁ ଶିକ୍ଷା ସଂସ୍କାର ସବୁ ଦେଶରେ ଲଦି ଦିଆଯାଉଛି । ପ୍ରତ୍ୟେକ ଦେଶ ତାଙ୍କର ଜାତୀୟ ବଜେଟ୍‌ରେ ଶିକ୍ଷା ଅନୁଦାନକୁ ହ୍ରାସ କରୁଛନ୍ତି । ଶିକ୍ଷା କ୍ଷେତ୍ରରେ ଯେଉଁ ସବ୍‌ସିଡି ବା ରିହାତି ଥିଲା ତାହାକୁ ବନ୍ଦ କରିବା ପାଇଁ ଚାପ ପ୍ରୟୋଗ କରାଯାଉଛି । ମୁକ୍ତ ଏବଂ ନିଃଶୁଳ୍କ ଶିକ୍ଷା ଆଉ ଗରିବଙ୍କ ହାତ ପାହାନ୍ତାରେ ନାହିଁ । ଶିକ୍ଷା ଲାଭ କରିବାକୁ ଯେଉଁ ଅର୍ଥ ଆବଶ୍ୟକ ପଡୁଛି ତାହା ଗରିବ ପରିବାର ଆଉ ଯୋଗାଡ଼ କରିପାରୁନାହିଁ ଓ ଆପଣା ଛାଏଁ ଶିକ୍ଷା ବ୍ୟବସ୍ଥାରୁ ଅପସରି ଯାଉଛି । ସମସ୍ତଙ୍କ ବିକାଶ ପାଇଁ ଓ ଜ୍ଞାନ ଆହରଣ ପାଇଁ ଶିକ୍ଷାର ଯେ ଘୋର ଆବଶ୍ୟକତା ଅଛି, ଏକଥା ସବୁ ଦେଶର ନେତୃବର୍ଗ ଭୁଲିଯାଇ ସାରିଲେଣି ।

ପ୍ରତ୍ୟେକ ଦେଶରେ ଭୁଲ ହେଉ ବା ଠିକ୍ ହେଉ ଏକ ପାରମ୍ପରିକ ଶିକ୍ଷା ବ୍ୟବସ୍ଥା ଥାଏ । ଜଗତୀକରଣ ପ୍ରକ୍ରିୟାରେ ଏ ଶିକ୍ଷା ପରମ୍ପରା ଭାଙ୍ଗି ଯାଇଛି । ଶିକ୍ଷାର ଘରୋଇକରଣ ଏକ ବ୍ୟାଧି ଯାହା କ୍ୟାନସ୍‌ର ଭଳି ବ୍ୟାପିବାରେ ଲାଗିଛି । ଶିକ୍ଷାରେ ଯେଉଁ ସମ୍ପର୍କ ସଭ୍ୟତା, ସଂସ୍କୃତି, ଜାତୀୟତା ଭାବ, ସ୍ଥାନୀୟ ପରମ୍ପରା ଓ ମୂଲ୍ୟବୋଧ ରହି ଆସିଥାଏ ତାହା ବିପନ୍ନ ହୋଇଛି । ସମସ୍ତେ ଚାହୁଁଛନ୍ତି ଡିଗ୍ରୀ ଏବଂ ସାର୍ଟିଫିକେଟ୍ ଯାହା ତାଙ୍କୁ ଦେଶବିଦେଶରେ ଚାକିରୀ ଯୋଗାଇବାରେ ସାହାଯ୍ୟ କରିବ । ଯାହାକୁ ପଚାରିବ ସେ କହୁଛି ବିଦେଶକୁ ଯାଇ ଚାକିରୀ କରିବ । ଅନ୍ୟପକ୍ଷରେ ଗ୍ୟାଟ୍‌ସ (ଜେନେରାଲ ଆଗ୍ରିମେଣ୍ଟ ଅନ୍ ଟ୍ରେଡ୍ ଆଣ୍ଡ ଟାରିଫ୍ ସର୍ଭିସେସ୍) ଯାହାକି ବିଶ୍ୱ ବାଣିଜ୍ୟ

ସଂଗଠନ(W.T.O.)ର ଏକଅଙ୍ଗ, ସ୍ୱୀକାର କରିଛି ଯେ ବିଦେଶୀ କର୍ପୋରେଟ୍‌ମାନେ ଚାହିଁଲେ ଘରୋଇ ବିଶ୍ୱବିଦ୍ୟାଳୟ ଓ ବୈଷୟିକ ଗବେଷଣା କେନ୍ଦ୍ରମାନ ଯେକୌଣସି ଦେଶରେ ଖୋଲିପାରିବେ । କେଉଁମାନର ଶିକ୍ଷା ଦିଆଯିବ ଓ କେଉଁ ପଦ୍ଧତିରେ ଶିକ୍ଷାଦାନ ହେବ ସେଥିରେ ଦେଶର ବା ଲୋକଙ୍କର କୌଣସି ନିୟନ୍ତ୍ରଣ ରହିବ ନାହିଁ । ଗରିବଙ୍କ ଶିକ୍ଷା କଥା କିଏ ବୁଝିବ ? ବିଦେଶୀ କମ୍ପାନୀ ? ବିଦେଶୀ ସରକାର ? ବିଶ୍ୱବ୍ୟାଙ୍କ ବା ଆନ୍ତର୍ଜାତିକ ମୁଦ୍ରାକୋଷ ? ତୃତୀୟ ବିଶ୍ୱର ଲୋକଙ୍କର ସ୍ୱାର୍ଥ ଓ ସ୍ୱାଧୀନତା ଆଉ ବଜାୟ ରହିବ ନାହିଁ । ଏବେ ନୂତନ ଭାବେ ଶିକ୍ଷା ଦିଗନ୍ତ ସବୁ ନିର୍ଦ୍ଧାରଣ କରଯାଉଛି । ପ୍ରଥମେ କୁହାଯାଉଛି ପବ୍ଲିକ୍-ପ୍ରାଇଭେଟ୍ ପାର୍ଟନରସିପ୍ । ସରକାର ଆଉ ପାରୁନାହାନ୍ତି । ତେଣୁ ଘରୋଇ ସଂସ୍ଥା ଓ କର୍ପୋରେଟ୍‌ମାନଙ୍କୁ ମୌଳିକ ଶିକ୍ଷାରେ ଭାଗ ନେବା ପାଇଁ ପ୍ରୋତ୍ସାହନ ଦିଆଯାଉଛି । ବିଶ୍ୱବ୍ୟାଙ୍କର ନୀତିରେ ଏହା ବେଶ୍ ପ୍ରାଧାନ୍ୟ ଲାଭ କରିଛି । କାହାପାଇଁ କେଉଁ ମୂଲ୍ୟବୋଧର ଶିକ୍ଷା ଆବଶ୍ୟକ ତାହା ଆଉ ବିଚାରକୁ ନିଆଯାଉନାହିଁ ।

ଆମେ ସାଧାରଣ ମଣିଷ ଓ ସେମାନଙ୍କର ଶିକ୍ଷା ଅଧିକାରକୁ ସବୁବେଳେ ବିଚାରକୁ ନେବା । ଜଗତୀକରଣ ହେଉ ବା ନହେଉ ସବୁ ପୁରୁଷ ଓ ସ୍ତ୍ରୀ, ପୁଅ ଓ ଝିଅଙ୍କର ଶିକ୍ଷା ଅଧିକାର ରହିଛି । ସେମାନେ ଯେଉଁ ଆର୍ଥିକ ଓ ସାଂସ୍କୃତିକ ସ୍ତରରେ ଥାଆନ୍ତୁନା କାହିଁକି ସୁଶିକ୍ଷା ଓ ଜ୍ଞାନ ଆହରଣର ଅଧିକାର ସମସ୍ତଙ୍କର ରହିଆସିଛି । କିନ୍ତୁ ଅସଲ କ୍ଷେତ୍ରରେ ତାହା ସମ୍ଭବ ହୋଇନାହିଁ । ଆମେ କେତୋଟି ପ୍ରଶ୍ନ ଉପରେ ଦୃଷ୍ଟିପାତ କରିବା ।

୧) ସମସ୍ତଙ୍କ ପାଇଁ ଶିକ୍ଷା (ଏଡୁକେଶନ୍ ଫର୍ ଅଲ୍) ନାଁରେ କେତେଗୁଡିଏ ଘୋଷଣାନାମା ସାରା ବିଶ୍ୱରେ ଜାରି କରାଯାଇଛି । କିନ୍ତୁ ସାରା ପୃଥିବୀରେ ଅର୍ଦ୍ଧାଧିକ ବ୍ୟକ୍ତି ଗୁଣାତ୍ମକ ଶିକ୍ଷାରୁ ବଞ୍ଚିତ ହୋଇଛନ୍ତି । ଗରିବ ଦେଶମାନେ "ସମସ୍ତଙ୍କ ପାଇଁ ଶିକ୍ଷା" ହାସଲ କରିବା ପାଇଁ ଯେଉଁ ସମ୍ବଳ ଆବଶ୍ୟକ ତାହା ଯୋଗାଡ କରିପାରୁ ନାହାଁନ୍ତି । ଜଗତୀକରଣର ପ୍ରକ୍ରିୟା ଫଳରେ ସାମାଜିକ ଅସ୍ଥିରତା, ଗୃହଯୁଦ୍ଧ ଆଦି ବଢୁଛି । ପୁଞ୍ଜିନିବେଶ ଫଳରେ ବିସ୍ଥାପନ ବଢୁଛି । ଦେଶ ରକ୍ଷା ନାଁରେ ଅସ୍ତ୍ରଶସ୍ତ୍ର କିଣା ହେଉଛି । କିନ୍ତୁ ଶିକ୍ଷାକୁ ମାନ୍ୟତା ଦିଆଯାଉନାହିଁ । ଅନ୍ୟାୟ ଓ ଅସମତାକୁ ଦୂର କରିବା ପାଇଁ ପଦକ୍ଷେପ ନିଆଯାଉ ନାହିଁ । (୨) ଗରିବ ପିଲାଙ୍କ ସ୍କୁଲ ଓ ଧନୀ ପିଲାଙ୍କ ସ୍କୁଲକୁ ତୁଳନା କରିବାର ସମୟ ଆସିଛି । ଆମର ସରକାରୀ ସ୍କୁଲ ଓ ଘରୋଇ ସ୍କୁଲମାନଙ୍କ

ଭିତରେ ଯେତେ ପ୍ରଭେଦ ରହିଛି ତାହା ଭାବି ବସିଲେ ବିଦ୍ରୋହ କରିବାକୁ ଇଚ୍ଛା ହେଉଛି । ଅନେକ ଗରିବ ପିଲା ସ୍କୁଲରେ ନାମ ଲେଖାଇ ପାରୁନାହାନ୍ତି । ଗୋଟାଏ ସମାଜ ଭିତରେ ବା ଗୋଟାଏ କଲ୍ୟାଣକାରୀ ରାଷ୍ଟ୍ରରେ ଧନୀପିଲା ଓ ଗରିବପିଲା ଅତି ନିର୍ଲ୍ଲଜଭାବେ ସ୍ୱତନ୍ତ ଗୋଷ୍ଠୀରେ ଅନ୍ତର୍ଭୁକ୍ତ ହୋଇ ଯାଉଛନ୍ତି । ଗୋଟିଏ ଥିଲାବାଲା ଘରୋଇ ଇଂରାଜୀ ମିଡିୟମ୍ ସ୍କୁଲର ପିଲାମାନେ ପ୍ରଥମ ଶ୍ରେଣୀରୁ କମ୍ପ୍ୟୁଟର ଶିଖୁଛନ୍ତି ଅଥଚ ସରକାରୀ ବିଦ୍ୟାଳୟମାନଙ୍କରେ ବସିବା ପାଇଁ କୌଣସି ଚୌକି ବେଞ୍ଚ ଆଦି ନାହିଁ । (୩) ଜଗତୀକରଣ ଦ୍ୱାରା ଆଜି ଏ ପୃଥିବୀର କୋଟି କୋଟି ଗରିବ ବାସଚ୍ୟୁତ ଓ ଜୀବିକାଚ୍ୟୁତ ହୋଇ ସାରିଛି । ଦାରିଦ୍ର୍ୟ ବିରୁଦ୍ଧରେ ଲଢ଼ିବା ପାଇଁ ଯେଉଁ ଶକ୍ତି, ଜ୍ଞାନ, ରଣନୀତି ଓ ଆତ୍ମବିଶ୍ୱାସର ଆବଶ୍ୟକତା ରହିଛି ତାହା ଶିକ୍ଷାନୀତିରେ ପର୍ଯ୍ୟବେକ୍ଷିତ ହେଉନାହିଁ । (୪) ଦେଶାନ୍ତରୀ ହେଉଥିବା ବ୍ୟକ୍ତିଙ୍କ ସଂଖ୍ୟା ଏବେ ବଢ଼ିବାରେ ଲାଗିଛି ଜଗତୀକରଣ ଯୋଗୁଁ । ଜୀବନ ଜୀବିକା ପାଇଁ ଆଜି ଗରିବ ତାହାର ଭିଟା ମାଟି ଛାଡୁଛି । ନୂଆ ଯାଗାରେ, ନୂଆ ପରିବେଶରେ ଶିକ୍ଷା ଆହରଣ ବେଳେବେଳେ ସମ୍ଭବ ହେଉନାହିଁ । (୫) ଏକ ସର୍ବାଙ୍ଗ ଓ ସମ୍ପୂର୍ଣ୍ଣ ମଣିଷ ତିଆରି ପାଇଁ ଶିକ୍ଷାର ଆବଶ୍ୟକତା କିପରି ରହିଛି ସମସ୍ତେ ଜାଣନ୍ତି । କିନ୍ତୁ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ସାଧାରଣ ମଣିଷର ବ୍ୟକ୍ତିତ୍ୱ ଓ ଆତ୍ମ ବିଶ୍ୱାସକୁ ଖଣ୍ଡ ବିଖଣ୍ଡିତ କରିଦେଇଛି । ମଣିଷ ନିଜର ସ୍ୱାଭିମାନ, ମାନବାଧିକାର, ସ୍ୱାଧୀନ ଚିନ୍ତା ଆଦିକୁ ଯେମିତି ଭୁଲି ଗଲାଣି । ଗୋଟାଏ ସ୍ତରରୁ ଆଉ ଏକ ଉଚ୍ଚସ୍ତରକୁ ଯିବାକୁ ହେଲେ ଏକମାତ୍ର ଅସ୍ତ୍ର ହେଉଛି ଶିକ୍ଷା । କିନ୍ତୁ ଜଗତୀକରଣ ଯେତିକି ବଢୁଛି, ଏ ଅସ୍ତ୍ର ଯେମିତି ଅକାମୀ ହୋଇ ପଡୁଛି, ଏକ ଆତ୍ମ ପରିଚୟର ଅଭାବ ଦେଖାଦେଇଛି । ସାଧାରଣ ମଣିଷଟି ଏ ପୃଥିବୀର ଏକ ସମାନ ନାଗରିକ ଏବଂ ତାହାର ମଧ ସ୍ୱକୀୟ ସ୍ଥିତି ଓ ଅଭିଳାଷ ଅଛି ଏହା ସହଜରେ କହିପାରୁନାହିଁ । (୬) ସମାଜରେ ଶାନ୍ତି ଓ ସହାବସ୍ଥାନ ପାଇଁ ଶିକ୍ଷାର ଆବଶ୍ୟକତା ରହିଛି ଯାହା ଆଜି ଜଗତୀକରଣର ପ୍ରଭାବ ବଳରେ ଧ୍ୱଂସ ପାଇଯାଉଛି । ଏ ପୃଥିବୀରେ ରାମରାଜ୍ୟର ପରିକଳ୍ପନା ଏକ ଇଉଟୋପିଆର ଚିତ୍ର ସବୁବେଳେ ରହି ଆସିଛି । ବିଜ୍ଞାନ, ଧର୍ମ, ଦର୍ଶନ, ରାଜନୀତି ମଣିଷର ସଭ୍ୟତା ଓ ସଂସ୍କୃତିକୁ ସମୃଦ୍ଧ କରି ଆସିଛି । ଏହା ପଛରେ ରହିଛି ଏକ ମୂଲ୍ୟବୋଧ ଶିକ୍ଷା । ଜଗତୀକରଣ ସେ ମୂଲ୍ୟବୋଧକୁ ଧ୍ୱଂସ କରିବା ପାଇଁ ସବୁପ୍ରକାର କୂଟନୀତି ପ୍ରୟୋଗ କରୁଛି । (୭) ଶିକ୍ଷା ମାଆ ପେଟରୁ ଆରମ୍ଭ ହୋଇ ବାପାମାଆ ଓ ପରିବାରର ସରହଦ ଡେଇଁ ବିଶ୍ୱବ୍ୟାପୀ ହୁଏ । ଜଗତୀକରଣ ଏ

ପ୍ରକ୍ରିୟାଟିକୁ ମାରିଦେବାକୁ ବସିଛି । ଶିକ୍ଷାର ବ୍ୟବସାୟୀକରଣ ଯୋଗୁଁ ପରିବାର ଓ ସମାଜ ଆଉ ସମ୍ପୃକ୍ତ ହେଉ ନାହାନ୍ତି । (୮) ଜଗତୀକରଣକୁ ମୁକାବିଲା କରିବାକୁ ହେଲେ ମୌଳିକ ଶିକ୍ଷାର ଉପାଦାନ - ପଠନ, ଲିଖନ ଓ ଗଣିତ ଯଥେଷ୍ଟ ନୁହେଁ । ଏହା ସହିତ ଶିକ୍ଷାରେ ବିଭିନ୍ନ କର୍ମକୌଶଳ, ପରିବେଶ ସୁରକ୍ଷା, ସାଂସ୍କୃତିକ ଓ ଭାଷାଗତ ବିଷୟ ବସ୍ତୁ, ସାମାଜିକ ଐକ୍ୟ ଆଦି ଅର୍ନ୍ତଭୁକ୍ତ ହେବାର ଅଛି । (୯) ଜଗତୀକରଣକୁ ପ୍ରତିହତ କରିବାକୁ ହେଲେ ସଠିକ୍ ଶିକ୍ଷା ସହ ଯୋଗ୍ୟ ଶିକ୍ଷକର ଆବଶ୍ୟକତା ରହିଛି । ହେଲେ ଯୋଗ୍ୟ ଶିକ୍ଷକ କିଏ ? ସେମାନେ କେମିତି ଗଢ଼ା ହେବେ ? ପ୍ରାଥମିକ ସ୍ତରରେ ଏଇ ଯୋଗ୍ୟ ଶିକ୍ଷକଙ୍କୁ ସାରା ପୃଥିବୀରେ ଖୋଜା ଚାଲିଛି । (୧୦) ଶିକ୍ଷା ବ୍ୟବସ୍ଥାରେ ସୂଚନା ଓ ପ୍ରଯୁକ୍ତି ବିଜ୍ଞାନର ଯଥେଷ୍ଟ ଆବଶ୍ୟକତା ରହିଛି । ଜ୍ଞାନର ଯେଉଁ ବିସ୍ଫୋରଣ ହୋଇଛି ଏବଂ ପ୍ରତି ମୂହୁର୍ତ୍ତରେ ଯେଉଁ ପରିବର୍ତ୍ତନ ହେଉଛି ତାହାକୁ ବିଚାରକୁ ନନେବା ଏକ ଗୁରୁତର ଭୁଲ । ଏଥିପାଇଁ ଗରିବଙ୍କ ଶିକ୍ଷା ବ୍ୟବସ୍ଥାରେ ଏକ ବସ୍ତୃତ ଜ୍ଞାନ ଭଣ୍ଡାରରୁ ଅନେକ କିଛି ଉପାଦାନ ମିଶିବାର ଅଛି ।

"ସମସ୍ତଙ୍କ ପାଇଁ ଶିକ୍ଷା", "ଶିକ୍ଷା ଅଧିକାର", "ମୂଲ୍ୟବୋଧ ଭିତ୍ତିକ ଶିକ୍ଷା"କୁ ଜଗତୀକରଣ ସନ୍ଦର୍ଭରେ ଆଉଥରେ ନିରୂପଣ କରିବା ଆବଶ୍ୟକ ହୋଇପଡ଼ିଛି । ଆମେ ଯେତେବେଳେ କାଶୀପୁରରେ ଏକ ଶିକ୍ଷା ଆନ୍ଦୋଳନ ପାଇଁ ପ୍ରସ୍ତୁତ ହେଉଥିଲୁ ସେତେବେଳେ ଆଦିବାସୀ ପିଲାଟି ଆକ୍ଟିଭିଷ୍ଟ ହୋଇ ଶହ ଶହ ବର୍ଷର ଅତ୍ୟାଚାର ବିରୁଦ୍ଧରେ ସଂଘର୍ଷ କରିବେକି ନାହିଁ ପ୍ରଶ୍ନ ପଚାରୁଥିଲୁ । ଏବେ ଜଗତୀକରଣର ରାଜତ୍ୱ ରହିଥିଲାବେଳେ ଏଇ ଆକ୍ଟିଭିଷ୍ଟମାନେ ଯେପରି ଲକ୍ଷ ଲକ୍ଷ ସଂଖ୍ୟାରେ ଜନ୍ମ ନିଅନ୍ତି ତାହା ଆମର ସ୍ୱପ୍ନ ରହିଛି ଓ ରହିବ ।

## (୨)

ଇତିହାସର ପୃଷ୍ଠା ଲେଉଟାଇଲେ ଅନେକ ଏକଛତ୍ରବାଦୀ ଶାସକ ଓ ସେମାନଙ୍କର ଶାସନ ବ୍ୟବସ୍ଥା କଥା ବିଚାରର ପରିଧି ଭିତରକୁ ଆସିଥାଏ । ଜ୍ଞାନ ଓ ବିଜ୍ଞାନକୁ ଅସ୍ତ୍ର କରି ସେମାନଙ୍କର କ୍ଷମତା ଅକ୍ତିଆର କରିବାର ରଣନୀତି ସ୍ପଷ୍ଟ ହୋଇଯାଏ । କମ୍ୟୁନିଷ୍ଟ ହୁଅନ୍ତୁ ବା କ୍ୟାପିଟାଲିଷ୍ଟ ହୁଅନ୍ତୁ, ନାଜି ହିଟଲର୍ ହୁଅନ୍ତୁ ବା ପାଗଳା ନୀରୋ ହୁଅନ୍ତୁ, ସମସ୍ତଙ୍କର ଲକ୍ଷ୍ୟ ଏକା- ସାଧାରଣ ମଣିଷଙ୍କୁ ଅସହାୟ କରି

ରଖିବା । ଏଇ ଅସହାୟତା ବିଷୟରେ ଆର୍ଥର କେସଲର୍ ଏକ ଚମତ୍କାର ବିଶ୍ଳେଷଣ କରିଛନ୍ତି ତାଙ୍କ ବହି 'ଡ଼ାର୍କନେସ୍ ଆଟ୍ ନୁନ୍' ମାଧ୍ୟମରେ । ବହିର ନାୟକ ରୁବାସୋଭ୍ ତା'ର ଜେଲ୍ ଡାଏରୀରେ ଏକ ଯୁକ୍ତି ଉପସ୍ଥାପନା କରିଛି । ସେ କହନ୍ତି ଯେ ଏ ପୃଥିବୀରେ ଗଣତନ୍ତ୍ର ଓ ସ୍ୱାଧୀନତା ସମ୍ଭବ ନୁହେଁ । ଯେତେବେଳେ ବିଜ୍ଞାନ ଓ ବୈଷୟିକ ଜ୍ଞାନ ଦ୍ରୁତ ଗତିରେ ଆଗେଇ ଚାଲିଛି ସେତେବେଳେ ବିଜ୍ଞାନ ଓ ସାଧାରଣ ମଣିଷଙ୍କ ଭିତରେ ଗୋଟାଏ ବଢ଼ନ୍ତି ଖାଇ ସୃଷ୍ଟି ହୋଇଛି । ମଣିଷଟି ବାରମ୍ବାର ଚେଷ୍ଟା କରିଛି ବିଜ୍ଞାନକୁ ବୁଝିବ ଓ ତା' ଉପରେ ନିୟନ୍ତ୍ରଣ ରଖିବ । କିନ୍ତୁ ଏହା ସମ୍ଭବ ହେବାକୁ କେତେ ବର୍ଷ ବା କେତେ ପୁରୁଷ ଲାଗିଯାଉଛି । ଏହି ସମୟ ଭିତରେ ବିଜ୍ଞାନ ପୁଣି ଆଉ କେତେ ପାଦ ଅଗ୍ରଗତି କରିଯାଇଛି ଓ ସୃଷ୍ଟି ହୋଇଥିବା ଖାଇ ବଢ଼ିବାରେ ଲାଗିଛି । ଏହା ଏକ ଭୟାନକ ଫଳାଫଳ ସୃଷ୍ଟି କରିଛି, ଯାହା ହେଉଛି ସାଧାରଣ ମଣିଷଙ୍କ କ୍ରମବର୍ଦ୍ଧିଷ୍ଣୁ ଅସହାୟତା । ଏଇ ଅସହାୟତାକୁ ଲକ୍ଷ୍ୟ କରି କେହି ନା କେହି ବିଜ୍ଞାନକୁ ଅସ୍ତ୍ର କରି ଏକଛତ୍ରବାଦ ଲଦି ଦେବାକୁ ସକ୍ଷମ ହୋଇଛି । ପ୍ରାୟତଃ ସବୁ ଏକଛତ୍ରବାଦୀ ଶାସକ ଏଇ ପରିସ୍ଥିତିରୁ ଜନ୍ମ ନେଇଛନ୍ତି । ଏଣୁ ଏ ପୃଥିବୀରେ ବିଭିନ୍ନ ରାଷ୍ଟ୍ରରେ ପରିବେଶରେ ଏକଛତ୍ରବାଦୀ ଶାସନ ବଢ଼ିବାରେ ଲାଗିଛି । ଆର୍ଥର କେସଲର୍ ୧୯୪୦ ମସିହାରେ ଏଇଭଳି ଯେଉଁ ବିଶ୍ଳେଷଣ କରିଥିଲେ ଆଜି ତାହା କେତେ ସତ୍ୟ ତାହା ସହଜରେ ଅନୁଭବ କରିହେଉଛି ।

ଜଗତୀକରଣ ପ୍ରକ୍ରିୟା ଏକଛତ୍ରବାଦର ପ୍ରତୀକ ନୁହେଁ କି ? କାରଣ ଜ୍ଞାନ ବିଜ୍ଞାନକୁ ଏକ ସୀମିତ ଗୋଷ୍ଠୀର କବ୍‌ଜାରେ ରଖି ଜଗତୀକରଣ ସୃଷ୍ଟି କରିଛି ଏକ ଅତୁଳନୀୟ ଖାଇ ଓ ଏକ ଅସମାନ ସାମାଜିକ ଓ ଅର୍ଥନୈତିକ ଢାଞ୍ଚା । ଏହାକୁ କୁହାଯାଉଛି ଡିଜିଟାଲ୍ ଡିଭାଇଡ୍ । ସାଧାରଣ ଅର୍ଥରେ କହିଲେ, ଡିଜିଟାଲ୍ ଟେକ୍‌ନୋଲୋଜି ଦ୍ୱାରା ସୃଷ୍ଟି ଭେଦଭାବ । ଏହା ତିନୋଟି ସ୍ତରରେ ବ୍ୟାପ୍ତି ହୋଇଛି । ପ୍ରଥମଟି ହେଲା ଟେଲି କମ୍ୟୁନିକେସନ୍, ଦ୍ୱିତୀୟଟି ହେଲା ଟେଲିଭିଜନ୍ ଓ ତୃତୀୟଟି ହେଲା ଇଣ୍ଟରନେଟ୍ । ଏସବୁର ପ୍ରୟୋଗ ଓ ଲାଭକୁ ବାସ୍ତବ ଦୃଷ୍ଟିରୁ ବିଶ୍ଳେଷଣ କରାଗଲେ ଆମକୁ ଏଇ ଡିଜିଟାଲ୍ ଡିଭାଇଡ୍ ବେଶ୍ ସ୍ପଷ୍ଟ ଦେଖାଯିବ । ପ୍ରଥମେ ବିଶ୍ୱସ୍ତରୀୟ ଖାଇକୁ ଇଣ୍ଟରନେଟ୍ ବଢ଼ାଇବାରେ ଲାଗିଛି । ବିକଶିତ ଦେଶମାନେ ବିକାଶଶୀଳ ଓ ଅବିକଶିତ ଦେଶମାନଙ୍କଠାରୁ ବେଶ୍ ଇଣ୍ଟରନେଟ୍ ପ୍ରୟୋଗ କରୁଛନ୍ତି ଓ ଲାଭ ଉଠାଉଛନ୍ତି । ସାମାଜିକ କ୍ଷେତ୍ରରେ ଗୋଟିଏ ସୀମିତ ଗୋଷ୍ଠୀ ସୂଚନା କ୍ଷେତ୍ରରେ ଦାରିଦ୍ର୍ୟର କଷାଘାତରେ

ସଡୁଛନ୍ତି । ଶେଷରେ ଏକ ଗଣତାନ୍ତ୍ରିକ ଢ଼ାଞ୍ଚାରେ କିଛି ବ୍ୟକ୍ତି ଡିଜିଟାଲ୍ ଟେକ୍‌ନୋଲୋଜି ବ୍ୟବହାର କରୁଛନ୍ତି ଓ କିଛି ବ୍ୟକ୍ତି ଏ ସୁଯୋଗ ପାଉନାହାନ୍ତି । ଏଇ ଦୃଷ୍ଟିରୁ ପୃଥିବୀରେ ଏବେ ଲୋକସଂଖ୍ୟାକୁ ଦୁଇ ଭାଗରେ ବିଭକ୍ତ କରାଯାଉଛି । ଗୋଟିଏ ଗୋଷ୍ଠୀ ଯିଏ ସୂଚନା ଓ ଯୋଗାଯୋଗ ବିଜ୍ଞାନ, ଯାହାକୁ ଇଂରାଜୀରେ ଆଇସିଟି ବା ଇନ୍‌ଫର୍ମେସନ୍ ଏଣ୍ଡ କମ୍ୟୁନିକେସନ୍ ଟେକ୍‌ନୋଲୋଜି କୁହାଯାଏ, ତା'ର ଖୁବ୍ ସଦୁପଯୋଗ କରୁଥିବା ବେଳେ ଆଉ ଗୋଟିଏ ଗୋଷ୍ଠୀ ସେଥିରୁ ବଞ୍ଚିତ ହେଉଛନ୍ତି । ଧନୀ ଓ ଦରିଦ୍ରଙ୍କ ଯେପରି ସ୍ୱତନ୍ତ୍ର ପରିଚୟ ରହିଛି ଆଇସିଟିକୁ ନେଇ ସେହିଭଳି ଦୁଇଟି ସ୍ୱତନ୍ତ୍ର ଗୋଷ୍ଠୀ ବର୍ତ୍ତମାନ ପୃଥିବୀ ସାରା ତିଆରି ହୋଇସାରିଛି । ଜ୍ଞାନର ଖାଇ ଏ ଦୁଇ ଗୋଷ୍ଠୀଙ୍କ ଭିତରେ ବଢ଼ିବାରେ ଲାଗିଛି ଜଗତୀକରଣର ପ୍ରଭାବ ଓ ପ୍ରକ୍ରିୟା ଦ୍ୱାରା ।

ଛାତ୍ରାବସ୍ଥାରେ ଏଇ ଦୁଇ ଗୋଷ୍ଠୀ ମଧ୍ୟ ପୃଥକ୍ ଭାବେ ପରିଚିତ ହୁଅନ୍ତି । ସରାକରୀ ସ୍କୁଲ୍‌ର ଗରିବ ଛାତ୍ରଟି ଇଣ୍ଟରନେଟ୍ ବ୍ୟବହାର ସୁଯୋଗ ପାଇନଥିବା ବେଳେ ଘରୋଇ ଓ ଦାମୀ ସ୍କୁଲ୍‌ର ଛାତ୍ରଟି ପିଲାବେଳୁ ଇଣ୍ଟରନେଟ୍ ବ୍ୟବହାର କରୁଛି । (ଇନଫର୍ମେସନ୍ ହାଇୱେ) ଗରିବ ଘରର ପିଲାଟି ଓ ଗରିବ ଦେଶର ଛାତ୍ରଟି ଆଜି ଚାଲିପାରୁନାହିଁ । ଏହାର ଫଳାଫଳ ଭୟଙ୍କର ହୋଇଛି । ଗରିବ ଛାତ୍ରଟି ନା ଇଂରାଜୀ ଜାଣୁଛି ନା ଇଣ୍ଟରନେଟ୍ ବ୍ୟବହାର କରୁଛି । ଅଥଚ ଧନୀ ଛାତ୍ରଟି ଇଂରାଜୀକୁ ଅସ୍ତ୍ର କରି ଇଣ୍ଟରନେଟ୍‌ର ବହୁଳ ବ୍ୟବହାର କରୁଛି । ବିଶ୍ୱର ଅନୁଦାନକାରୀ ସଂସ୍ଥା ଯଥା ବିଶ୍ୱବ୍ୟାଙ୍କ, ଏସିଆନ୍ ଡେଭଲପ୍‌ମେଣ୍ଟ ବ୍ୟାଙ୍କ, ଜାତିସଂଘର ୟୁନିସେଫ୍ ସବୁ ଯେତେ ଚେଷ୍ଟା କଲେ ବି, ଯେତେ ପୁଞ୍ଜି ନିବେଶ କଲେ ବି ଏ ଖାଇବାକୁ କମାଇ ପାରୁନାହାନ୍ତି । ଯେତେବେଳେ ଛାତ୍ରାବସ୍ଥାରେ ଏଇ ତାରତମ୍ୟ ବା ପ୍ରଭେଦ ସୃଷ୍ଟି ହୋଇଛି ତାହା ବୟସ ବଢ଼ିଲା ସଙ୍ଗେ ସଙ୍ଗେ ମଧ୍ୟ ବଢ଼ିବାରେ ଲାଗିଛି । ଆଜିର କୃଷକ, ମତ୍ସ୍ୟଜୀବୀ, ଗୃହର କୁଳବଧୂ, ଗ୍ରାମ୍ୟ ଶିଳ୍ପୀ ଓ ସାଧାରଣ ବ୍ୟକ୍ତି ଏଇ ଖାଇ ଦ୍ୱାରା ପ୍ରଭାବିତ ହୋଇଛନ୍ତି । କେତେକ ଜାଗାରେ ଇନ୍‌ଫର୍ମେସନ୍ ଭିଲେଜ୍ (ଗ୍ରାମ୍ୟ ତଥ୍ୟ କେନ୍ଦ୍ର) ସୃଷ୍ଟି କରାଯାଇ ସାଧାରଣ ଲୋକଙ୍କୁ ଇଣ୍ଟରନେଟ୍ ଆଜି ଶିଖିବା ପାଇଁ ସୁଯୋଗ ସୃଷ୍ଟି କରାଯାଉଛି । ଏ ପରୀକ୍ଷା ବ୍ୟାପକ ଭାବେ ସଫଳ ହୋଇନାହିଁ ଏଯାବତ୍ । ସାରା ପୃଥିବୀରେ ଯେଉଁ ଲକ୍ଷ ଲକ୍ଷ ଗାଁ ରହିଛି, ବିକ୍ଷିପ୍ତ ବସତି ଅଛି, ଦେଶାନ୍ତରୀମାନଙ୍କ କଲୋନୀ ଅଛି, ସେମାନଙ୍କୁ ଇନ୍‌ଫର୍ମେସନ୍ ଗାଁ କରିବା କେତେକ କଷ୍ଟକର ବ୍ୟାପାର ସହଜରେ ଅନୁମାନ କରି ହେଉଛି ।

ଡିଜିଟାଲ୍ ଡିଭାଇଡ୍‌କୁ କମାଇବା ପାଇଁ କି ପଦକ୍ଷେପ ନେବା ଆବଶ୍ୟକ ? ଆଜି ଯଦି ଏଇ ଖାଇ ଶତକଡ଼ା ଶହେ ହୋଇଛି, ଶତକଡ଼ା ଜିରୋ ହେବାକୁ କେଉଁଭଳି ପଦକ୍ଷେପ ନେବାକୁ ହେବ ? କେତେ ବର୍ଷ ଲାଗିଯିବ ଏଥିପାଇଁ ? ସବୁ ଛାତ୍ରଙ୍କୁ ସେମାନଙ୍କ ସ୍କୁଲରେ ଇଣ୍ଟରନେଟ୍ ବ୍ୟବସ୍ଥା ଯୋଗାଇବା ପାଇଁ ଖର୍ଚ୍ଚ ଅଟକଳ କିପରି ହେବ ? ଏଥିନେଇ ସାଧାରଣ ମଣିଷ କଳ୍ପନା ମଧ୍ୟ କରିପାରୁନାହିଁ । ଏ ବ୍ୟବସ୍ଥା ସଫଳ ହେବ କି ନ ହେବ କିଏ କହିବ ? ଏପରି ଏକ ଶିକ୍ଷା ବ୍ୟବସ୍ଥାକୁ ଆମକୁ ମିଳିଛି, ଯେଉଁଠି ସ୍କୁଲ୍ ଘର ନାହିଁ କି ଶିକ୍ଷକ ନାହାନ୍ତି । ସ୍କୁଲ ଘର ଓ ଶିକ୍ଷକ ଥିଲେ ମଧ୍ୟ ଛାତ୍ର ନାହାନ୍ତି । ଛାତ୍ର ଥିଲେ ମଧ୍ୟ ଇଂରାଜୀ ଜାଣି ନାହାନ୍ତି । ଶିକ୍ଷକ ଇଣ୍ଟରନେଟ୍‌ର ବ୍ୟବହାର ଜାଣିଛନ୍ତି କି ନାହିଁ କହି ହେଉନାହିଁ । ଶିକ୍ଷା ଅଧିକାରୀମାନେ ମଧ୍ୟ ଜାଣିନାହାନ୍ତି ଏ ବିଷୟରେ । କିଛି ବର୍ଷ ତଳେ ଭି-ସାଟ୍ ଓ ଏଡୁ-ସାଟ୍ ବୋଲି କାର୍ଯ୍ୟକ୍ରମ ଶିକ୍ଷାର ଅଭିବୃଦ୍ଧି ପାଇଁ କାମରେ ଲଗାଯାଇଥିଲା । ତାହା କେତେଦୂର ସଫଳତା ଆଣିଦେଲା ତାହାର ମୂଲ୍ୟାଙ୍କନ ଠିକ୍ କରାଯାଇନାହିଁ । କେଉଁ କାର୍ଯ୍ୟକ୍ରମ ଏବେ ଆରମ୍ଭ କରାଯିବ, ଯାହା ସୁଫଳ ଆଣି ଦେବ ? ପ୍ରଶ୍ନ ଅନେକ, କିନ୍ତୁ ଉତ୍ତର ନାହିଁ ।

ଜଗତୀକରଣ ବ୍ୟବସ୍ଥା ଓ ବେପାର ପରସ୍ପର ଉପରେ ନିର୍ଭରଶୀଳ । ସେଥିପାଇଁ ସାଇବର୍ ସ୍ପେସ୍ କେବଳ ବଜାରକୁ ନେଇ ସୂଚନା ଓ ତଥ୍ୟରେ ଭରପୂର । ବିକାକିଣା, ବିଜ୍ଞାପନ ଲୋକପ୍ରିୟ ହେବାର ବିଭିନ୍ନ ଉପାୟ ଆଜି ଇଣ୍ଟରନେଟ୍‌ରେ ଭରପୂର ମିଳୁଥିବା ବେଳେ ଶିକ୍ଷାକୁ ସମୃଦ୍ଧ କରିବା ପାଇଁ ଇଣ୍ଟରନେଟ୍‌ରେ ବିଭିନ୍ନ ଶିକ୍ଷଣୀୟ ବସ୍ତୁ, ଲାଇବ୍ରେରୀ, ଦୂରଶିକ୍ଷା ଆଦିର ବ୍ୟବସ୍ଥା ଓ ବ୍ୟବହାର ଯଥେଷ୍ଟ ସଂକୁଚିତ । କେତେଜଣ ଛାତ୍ର ଦୂର ବିଶ୍ୱବିଦ୍ୟାଳୟରେ ଥିବା ବିଶାରଦ ପ୍ରଫେସରମାନଙ୍କୁ ଇଣ୍ଟରନେଟ୍ ଜରିଆରେ ପରାମର୍ଶ କରିପାରିବେ ? ଏଭଳି ପରିସ୍ଥିତିରେ ଶିକ୍ଷାକୁ ଇଣ୍ଟରନେଟ୍‌ରେ କି ମାନ୍ୟତା ଦିଆଯିବ ? ଅଡିଓ ଭିଜୁଆଲ୍ ସାମଗ୍ରୀର ମଧ୍ୟ ଘୋର ଅଭାବ ରହିଛି ଏ ପୃଥିବୀରେ, ଯାହାକୁ ବ୍ୟବହାର କଲେ ଶିକ୍ଷା ପଦ୍ଧତି ଆହୁରି ତ୍ୱରାନ୍ୱିତ ହେବ । ଶିକ୍ଷାର ଗୁଣାତ୍ମକମାନ ବଢ଼ିବା ପାଇଁ ଯେଉଁ ଯେଉଁ ଉପାଦାନ ଆବଶ୍ୟକ ତାହା ସବୁ ଛାତ୍ରଙ୍କ ହାତ ପାଆନ୍ତାରେ ନାହିଁ । ଶିକ୍ଷାକୁ ଅସ୍ତ୍ର କରି ସାମାଜିକ ପରିବର୍ତ୍ତନର ଏକ ବିସ୍ଫୋରଣ କରିବାର ଯେଉଁ ସ୍ୱପ୍ନ ରହିଛି ତାହା ମଧ୍ୟ ସମ୍ଭବ ହେଲାଭଳି ଲାଗୁନାହିଁ ।

ଶିକ୍ଷାର ଜଗତୀକରଣ ଦ୍ରୁତ ଗତିରେ ଚାଲିଛି । କାରଣ ଏହାଦ୍ୱାରା ଆମର ଅନେକ ଶିକ୍ଷିତ ଯୁବକ ଦେଶ ବିଦେଶରେ ଭଲ ଭାବେ ମୋଟା ଦରମାରେ ଚାକିରି

ପାଉଛନ୍ତି ଓ ଅନେକ ଆଶାୟୀ ଛାତ୍ରଙ୍କ ଆଶା ବହୁଗୁଣରେ ବଢ଼ାଇ ଦେଇଛି । କିନ୍ତୁ ଶିକ୍ଷାର ଜଗତୀକରଣର ଅସଲ ଅର୍ଥ କ'ଣ ? ମୋ ଦୃଷ୍ଟିରେ ଧନୀ ହେଉ କି ଗରିବ ହେଉ ସମସ୍ତଙ୍କୁ ସମାନ ଗୁଣର ଓ ମାନର ଶିକ୍ଷା ମିଳିବା ଆବଶ୍ୟକ । ଏହା ମଧ୍ୟ ଏକ ଅଧିକାର । ସାରା ବିଶ୍ୱ ଯଦି ଗୋଟିଏ ଗାଁ ବୋଲି କହନା କରାଯାଇଛି ତା'ହେଲେ ଏଇ ଗାଁର ସବୁ ପିଲାଙ୍କୁ ସମାନ ଶିକ୍ଷା ମିଳିବାରେ ଅସୁବିଧା କ'ଣ ? ସବୁ ପିଲାଙ୍କ ପାଇଁ ଏକାଭଳି ସ୍କୁଲ୍ ବ୍ୟବସ୍ଥା ହେବାରେ ଆପତ୍ତି କ'ଣ ?

ଏଇ ପରିପ୍ରେକ୍ଷୀରେ କେତୋଟି ମୌଳିକ ଗୁରୁତର ପ୍ରଶ୍ନ ଉଠାଯାଇଛି ।

ଡିଜିଟାଲ ଟେକ୍‌ନୋଲୋଜି କ୍ଷେତ୍ରରେ ବଢ଼ନ୍ତି ଖାଇକୁ କମାଯାଇପାରିବ କେମିତି ? ଏଇ ପ୍ରଶ୍ନ ଉଠାଇବା ସହଜ କିନ୍ତୁ ଉତ୍ତର ପାଇବା କଠିନ । ଯେଉଁଠି କୋଟି କୋଟି ଗରିବ ପିଲାଙ୍କ ପାଇଁ ଔପଚାରିକ ସ୍କୁଲ୍ ନାହିଁ ଓ ଉପଯୁକ୍ତ ଶିକ୍ଷା କାର୍ଯ୍ୟକ୍ରମ ଚିନ୍ତା କରାଯାଇ ପାରୁନାହିଁ ସେମାନଙ୍କ ପାଇଁ କ'ଣ କରାଯାଇପାରିବ ?

ସତକୁ ସତ ଯଦି ଏଇ ଖାଇ କମାଯାଇ ପାରିଲା, ତେବେ କ'ଣ ଜଗତୀକରଣ ପ୍ରକ୍ରିୟା ସାଧାରଣ ମଣିଷର ଉପକାରରେ ଆସିବ ? ନୋବେଲ୍ ପୁରସ୍କାର ବିଜେତା ପ୍ରଫେସର ଜୋସେଫ୍ ଷ୍ଟିଗ୍‌ଲିଜ୍ କହିଛନ୍ତି ଯେ ପୃଥିବୀରେ ଅସମାନତା ବଢ଼ାଇବାର ଏକ ମୂଳ କାରଣ ହେଉଛି ଟେକ୍‌ନୋଲୋଜି ବା ବୈଷୟିକ ଜ୍ଞାନ । ତେଣୁ ଏ ଡିଜିଟାଲ୍ ଟେକ୍‌ନୋଲୋଜି ଗରିବଙ୍କ ସପକ୍ଷରେ ବ୍ୟବହାର କରାଯାଇପାରିବ କି ?

ଡିଜିଟାଲ୍ ଟେକ୍‌ନୋଲୋଜି କ'ଣ ସତରେ ଗରିବ ଓ ଧନୀ ଉଭୟଙ୍କୁ ସଶକ୍ତିକରଣରେ ସହାୟକ ହେବ ? ଗରିବଙ୍କ ସ୍ଥିତି ଓ ଅସହାୟତାକୁ ଅଧ୍ୟୟନ କରି ଆଇସିଟିକୁ ନୂଆ ରୂପ ନେଇ ହେବ କି ? ଗରିବ ଓ ଧନୀ ଉଭୟଙ୍କ ସଶକ୍ତିକରଣ ଏକାବେଳେ ସମ୍ଭବ କି ?

ଯଦି ଡିଜିଟାଲ୍ ଟେକ୍‌ନୋଲୋଜି ସମସ୍ତଙ୍କୁ ପ୍ରାପ୍ୟ ହେବ, ସାରା ପୃଥିବୀରେ ଯଦି ଗରିବମାନେ ସେଲ୍ ଫୋନ୍, କମ୍ପ୍ୟୁଟର, ଇଣ୍ଟରନେଟ୍ ବ୍ୟବହାର କରିବେ ତେବେ ଆଇସିଟି ବଜାରରେ ପରିବର୍ତ୍ତନ ହେବ କି ? ଏହା ଶସ୍ତା ଓ ସହଜଲଭ୍ୟ ହେବ କି ? ଆଇସିଟି ମାର୍କେଟ୍‌ର ଅଭିବୃଦ୍ଧି ହେବ ସତ, ଗରିବମାନଙ୍କ ପାଖରେ ଏହା ପହଞ୍ଚିବ କି ?

ସରକାର, ବ୍ୟବସାୟୀ, ସ୍ୱେଚ୍ଛାସେବୀ ସଂଗଠନ, ବୁଦ୍ଧିଜୀବୀ ଓ ଗବେଷକ, ନେତା ଆଦି ସମସ୍ୱରରେ ସମଭାବାପନ୍ନ ହୋଇ ଡିଜିଟାଲ୍ ଡିଭାଇଡ୍‌କୁ କମାଇବାକୁ

ଉଦ୍ୟମ କରିବେ କି ? ଆଜି ପର୍ଯ୍ୟନ୍ତ ଏହା ସମ୍ଭବ ହୋଇନାହିଁ । ଭବିଷ୍ୟତରେ ହେବ କି ? ଯେଉଁ ଅଞ୍ଚଳକୁ ଇଣ୍ଟରନେଟ୍ ବ୍ୟବସ୍ଥା ପହଞ୍ଚୁ ନାହିଁ, ସେଠାରେ କିଏ ଏ ଦାୟିତ୍ୱ ନେବ ?

ଏ ପୃଥିବୀ ସ୍ୱପ୍ନ ଦେଖୁଛି ଯେ ୨୦୧୫ସୁଦ୍ଧା ଦାରିଦ୍ର୍ୟ ଅର୍ଦ୍ଧାଧିକ ଦୂର ହୋଇଯିବ ଓ ଆଉ କେତେ ବର୍ଷ ପରେ ଦାରିଦ୍ର୍ୟ ଦୂରୀକରଣ ପ୍ରକ୍ରିୟା ସମ୍ପୂର୍ଣ୍ଣ ହେବ । କିନ୍ତୁ ଆଇସିଟି ଦାରିଦ୍ର୍ୟ ଦୂରୀକରଣ ପ୍ରକ୍ରିୟାରେ ସବୁ ସମାଧାନର ରାସ୍ତା ଉନ୍ମୋଚନ କରିବ କି ? ଆଇସିଟି ସର୍ବାଙ୍ଗ ସମ୍ପୂର୍ଣ୍ଣ ହେବ କି ? ହଜାର ହଜାର ବର୍ଷର ଦାରିଦ୍ର୍ୟ, ଅନାହାର, ଶୋଷଣକୁ ଇଣ୍ଟରନେଟ୍ ଜରିଆରେ ହଟାଇ ହେବ କି ?

ଭାରତ ଓ ଚୀନ୍ ଭଳି ଦେଶରେ ଡିଜିଟାଲ୍ ଟେକ୍‌ନୋଲୋଜିର ବହୁ ପ୍ରସାର ହେବାରେ ଲାଗିଛି ଓ ଖାଇ କେତେ ମାତ୍ରାରେ କମିଛି ବୋଲି ପରିସଂଖ୍ୟାନରୁ ଜଣାପଡିଛି । ଏହା ଅନ୍ୟ ଗରିବ ଦେଶ ପାଇଁ ଉଦାହରଣ ହେବ କି ?

ଜଗତୀକରଣ ପ୍ରକ୍ରିୟା ଦ୍ୱାରା ଯେଉଁ ବଜାରୀକରଣ ଚାଲିଛି ସେଥିରେ ଗରିବମାନେ ପ୍ରବେଶ କରି ନିୟନ୍ତ୍ରଣ କରିବାର ସମ୍ଭାବନା ରହିଛି । ଏହାକୁ ସମ୍ଭବ କରିବାରେ ଡିଜିଟାଲ୍ ଟେକ୍‌ନୋଲୋଜି କେତେ ଦୂର ସହାୟକ ହେବ ? ଡ଼ିଜିଟାଲ୍ ଟେକ୍‌ନୋଲଜି ଗରିବଙ୍କ ହାତରେ ଏକ ଅସ୍ତ୍ର ହୋଇପାରିବ କି ?

ଜଗତୀକରଣ ପ୍ରକ୍ରିୟା ଯୋଗୁଁ ସାଧାରଣ ମଣିଷଙ୍କ ଶିକ୍ଷା ଓ ଆବଶ୍ୟକୀୟ ଶିକ୍ଷା ଓ ତତ୍‌ସଂଲଗ୍ନ ବ୍ୟବସ୍ଥା ଆଜି ପୃଥିବୀ ସାରା ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଛି । ଏହାର ମୂଳକାରଣ ହେଲା ପୃଥିବୀରେ ସର୍ବବ୍ୟାପୀ ବିରାଜମାନ କରୁଥିବା ଅସମାନତାର ଖାଇ । ଏଇ ଅସମାନତାକୁ ଡିଜିଟାଲ୍ ଟେକ୍‌ନୋଲୋଜି ଦ୍ୱାରା କେତେଦୂର କମାଇ ହେବ ତାହା ଏକ ଆହ୍ୱାନ ହୋଇଛି ।

## (୩)

ଏବେ ଜଣେ ବନ୍ଧୁ ଆଲୋଚନା ଛଳରେ କହୁଥିଲେ ମୁଁ ଲକ୍ଷ୍ୟ କରୁଛି କି ନାହିଁ କେତୋଟି ଘଟୁଥିବା ଉଲ୍ଲେଖନୀୟ ଘଟଣା ଗୁଡ଼ିକୁ ? ସାରା ପୃଥିବୀରେ ଆଉ ଛାତ୍ରମାନେ ଆନ୍ଦୋଳନ କରୁନାହାଁନ୍ତି ଓ ସମାଜ ପରିବର୍ତ୍ତନ ପାଇଁ ଚାଲିଥିବା ସଂଗ୍ରାମରେ ଆଉ ଲମ୍ଫ ଦେଉନାହାନ୍ତି । ଦ୍ୱିତୀୟରେ, ଏ ପୃଥିବୀରେ ପ୍ରଫେସର ଚିତ୍ତରଞ୍ଜନ ଦାସଙ୍କ

ଭଳି ଜ୍ଞାନୀ ଶିକ୍ଷକ ଓ ତେଜସ୍ୱୀ ବାଗ୍ମୀମାନେ ଆଉ ଯୁବଗୋଷ୍ଠୀମାନଙ୍କୁ ଆକର୍ଷିତ କରିପାରୁନାହାଁନ୍ତି । ଏକଥା ସତଯେ ସାମ୍ପ୍ରତିକ ଗୁରୁ, ସ୍ୱାମୀ ଓ ବାବାମାନେ ପ୍ରବଚନ ଦେଉ ଥିଲାବେଳେ ହଜାର ହଜାର ଭକ୍ତ ଓ ଚେଲା କାନଡେରି ଶୁଣୁଛନ୍ତି କିନ୍ତୁ ସମାଜ ସମୀକ୍ଷକମାନଙ୍କ ପାଖରେ ଆଉ ଭିଡ଼ କଦାପି ଜମୁନାହିଁ । ଛାତ୍ର ଓ ଯୁବଗୋଷ୍ଠୀଙ୍କ ମାନସିକତାରେ ସମାଜ ପରିବର୍ତ୍ତନ କେତେକେତେ ବର୍ଷରୁ ଆରମ୍ଭ ହୋଇଛି । ବିଦ୍ରୋହ ଓ ବିପ୍ଳବର ତରଙ୍ଗ ଆଉ ପ୍ରସାରିତ ହେଉନାହିଁ । ନୂତନ ପୀଢ଼ିର ମଣିଷ ନୀରବ ଓ ନିଷ୍କ୍ରିୟ ହୋଇପଡ଼ିଛି । ସବୁ ଅନ୍ୟାୟ ଅତ୍ୟାଚାର ମୁଣ୍ଡପାତି ସହି ନେଉଛି । ଜଣାପଡୁଛି ଯେମିତି ଗୋଟାଏ ପୁରୁଷର ମଣିଷମାନଙ୍କ କ୍ଲୋନିଂ କରି ଦିଆଯାଉଛି, ଯେମିତି ସେମାନେ ନିଜକୁ କ୍ରୀତଦାସ ବୋଲି ମନେ କରୁଥିବେ । ଆଲଡ଼ସ ହକ୍‌ସେଲିଙ୍କ 'ବ୍ରେଭ୍ ନିଉ ୱାର୍ଲ୍ଡ' ବହିରେ ଏଇଭଳି କଥା କହୁଯାଇଛି । ବିଜ୍ଞାନ ଓ ବୈଷୟିକ ଜ୍ଞାନକୌଶଳକୁ ମାଧ୍ୟମକରି ମଣିଷମାନଙ୍କୁ ଫାକ୍‌ଟ୍ରୀରେ ସୃଷ୍ଟିକରାଯାଇ ପାରିବ ଟେଷ୍ଟଟ୍ୟୁବ୍ ଶିଶୁ ଭଳି, ଯେଉଁମାନେ ମାଲିକ ହେବେ ନତୁବା କ୍ରୀତଦାସ ହେବେ । ହକ୍‌ସେଲିଙ୍କ ଭବିଷ୍ୟବାଣୀ ଆଉ ଏକ ବାଟରେ ସତ୍ୟରେ ପରିଣତ ହୋଇଛି । ଆଜିର ଛାତ୍ର କ୍ରୀତଦାସ ହେବାକୁ ଚାହୁଁଛି କାରଣ ସେ ଜଗତୀକରଣର ପ୍ରଭୁତ୍ୱକୁ ସ୍ୱୀକାର କରୁଛି ଓ ଜଗତୀକରଣ ପ୍ରକ୍ରିୟାରୁ ଲାଭ ଉଠାଇବାକୁ ଚାହୁଁଛି । ସେଇଥିପାଇଁ ବାହାର ଦୁନିଆରେ ହେଉ ବା ତାର ଆପଣାର ପୃଥିବୀରେ ହେଉ, ସେ ସଂଘର୍ଷ ଓ ଦ୍ୱନ୍ଦ ଭିତରେ ପଶିବାକୁ ଚାହୁଁନାହିଁ । ଯେମିତି ହେଉ ପଛକେ ଚାକିରୀଟିଏ କରି ନିଜକୁ ସେ ସୁରକ୍ଷିତ ରହିବାକୁ ଚାହୁଁଛି । ସତୁରୀ ଏବଂ ଅଶୀଦଶକରେ ଛାତ୍ରମାନେ ପ୍ରତିବାଦ କରିବାର ନେତୃତ୍ୱ ନେଇଥିଲେ ଏବଂ ନୂତନ ପୃଥିବୀର ପରିକଳ୍ପନା କରିଥିଲେ । ଏବେର ଛାତ୍ର ସମାଜ ଜଗତୀକରଣ ପ୍ରକ୍ରିୟାରେ ସଂଚାଳିତ ପରିକଳ୍ପନାରେ ନିଜକୁ କାୟମନୋବାକ୍ୟରେ ଉତ୍ସର୍ଗୀକୃତ କରିସାରିଛି ।

ଜଗତୀକରଣ ପ୍ରକ୍ରିୟାରେ ମୂଲ୍ୟବୋଧ ଶିକ୍ଷାର ଘୋର ପରିବର୍ତ୍ତନ ହୋଇଛି ଏବଂ ଏହା ଆଉ କେତେବର୍ଷ ଧରି ଚାଲିବ । ଆମର ସମାଜ ଓ ସଂସ୍କୃତିର ମଙ୍ଗ ଧରିଥିବା ଗୁରୁଜନ ଓ ଅଭିଭାବକମାନେ ବୁଝନ୍ତି କି ନାହିଁ, ଜଗତୀକରଣ ଶିକ୍ଷା, ସଂସ୍କୃତି, ଇତିହାସ ମୌଳିକ ମାନବୀୟ ମୂଲ୍ୟବୋଧ, ପାରସ୍ପରିକ ସାର୍ବଜନୀନ ଭ୍ରାତୃଭାବ ଆଦିକୁ ଆମୂଳଚୂଳ ପରିବର୍ତ୍ତନ କରି ଦେଇଛି । ମଣିଷର ଏସବୁ ଗୁଣାତ୍ମକ ପରିପ୍ରକାଶ ଆଉ ଅକ୍ଷୁର୍ଣ୍ଣ ଓ ଅତୁଟ ଅବସ୍ଥାରେ ନାହିଁ । ଆମେ ଯେଉଁମାନେ ଗାନ୍ଧୀ ଓ ପାଉଲୋ ଫ୍ରାଏରୀଙ୍କ

ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇ ସମାଜ ପରିବର୍ତ୍ତନ କରିବାର ପ୍ରୟାସ କରିଥିଲୁ ଏବେ ବୁଝିପାରୁନାହିଁ ଯେ କ'ଣ ସବୁ ଘଟୁଛି ଓ ଘଟିବାକୁ ଯାଉଛି । କାଶୀପୁରରେ ଶିକ୍ଷା ଓ ସମାଜ ପରିବର୍ତ୍ତନର ରାସ୍ତା ନିରୂପଣ କରିବାକୁ ଗଲାବେଳେ ଆମେ ହୃଦ୍‌ବୋଧ କରୁଥିଲୁ ଯେ ଆଦିବାସୀ ପିଲାଟି ଆତ୍ମିଭିଷ୍ଟ ହୋଇ ନିଜର ଆଦିବାସୀ ପଣିଆକୁ ବଞ୍ଚାଇରଖିବ । କାରଣ ତା'ଭିତରେ ଆଦିବାସୀ ପଣିଆଟି ମରିହଜିଗଲେ ସେ ଅତି ସହଜରେ ଓ ସ୍ୱଳ୍ପ ସମୟରେ ନିଶ୍ଚିହ୍ନ ହୋଇଯିବ । ଯେଉଁଭଳି ଶିକ୍ଷା ଓ ଶିକ୍ଷକ ଏକ ଆଦିବାସୀ ଅଞ୍ଚଳରେ ସହଜଲବ୍ଧ ହୋଇଛନ୍ତି, ତାହା କଦାପି ଆତ୍ମିଭିଷ୍ଟ ସୃଷ୍ଟି ନକରି କେବଳ କ୍ରୀତଦାସ ଆଉ କ୍ରୀତଦାସ ସୃଷ୍ଟି କରିବ ।

ଶିକ୍ଷାରେ ମୂଲ୍ୟବୋଧ ଓ ମୂଲ୍ୟ ସମାହିତ ଶିକ୍ଷା କହିଲେ ଆମେ କ'ଣ ବୁଝୁ ? ଅକ୍ଷର ଶିକ୍ଷା, ଗଣିତ ଶିକ୍ଷା, ଇତିହାସ, ଭୂଗୋଳ, ବିଜ୍ଞାନ ଓ ସମାଜବିଜ୍ଞାନ ଆଦି ଜାଣିଗଲେ କ'ଣ ଶିକ୍ଷାର ପ୍ରକ୍ରିୟା ସଫଳ ହୁଏ ? ଧନ୍ଦାମୂଳକ ଶିକ୍ଷା ଦ୍ୱାରା ସତରେ କ'ଣ ଜଣେ ଛାତ୍ର ତା'ର ଜୀବନ ଜୀବିକାର ମାନ ବଢ଼ାଇପାରେ ? ଶିକ୍ଷାର ଅସଲ ଅର୍ଥ ହେଉଛି ମୁକ୍ତି ଓ ସ୍ୱାଧୀନତା ପାଇଁ ଶିକ୍ଷକ । ମହାତ୍ମାଗାନ୍ଧୀ କହିଛନ୍ତି ଯେ ଅସଲ ଶିକ୍ଷାର ଉଦ୍ଦେଶ୍ୟ ମୁକ୍ତି ଓ ଧର୍ମକୁ ସୁରକ୍ଷିତ ରଖିବା । ପାଉଲୋ ଫ୍ରାଏରୀ ଅସଲ ଶିକ୍ଷାରେ ବିବେକୀକରଣକୁ ହିଁ ମୁଖ୍ୟତଃ ଦେଖିଛନ୍ତି । ଅର୍ଥାତ୍ ଶିକ୍ଷା ମଣିଷ ଭିତରେ ଥିବା ଅସଲ ମଣିଷକୁ ଚିହ୍ନିବାରେ ସାହାଯ୍ୟ କରିଥାଏ । ଅସଲ ଶିକ୍ଷା ମଣିଷକୁ ଅମାନବୀୟ କରଣରୁ ରକ୍ଷା କରିଥାଏ ।

କିନ୍ତୁ ଜଗତୀକରଣ ପ୍ରକ୍ରିୟାର ମୂଳ ଉଦ୍ଦେଶ୍ୟ ହେଲା ଏପୃଥିବୀର ବହୁ ଭାଗ ଲୋକଙ୍କ ଅର୍ଥନୀତି ସଂସ୍କୃତି, ଧର୍ମନୀତି, ସାମାଜିକ ସ୍ୱାଧୀନତା, ମଣିଷ ମଣିଷଙ୍କ ଭିତରେ ଥିବା ସମାନତା ଓ ସମ୍ବେଦନଶୀଳତାକୁ ଧ୍ୱଂସ କରିବା । ଜଗତୀକରଣ ପ୍ରକ୍ରିୟା ହେଉଛି ହିଂସା, ଘୃଣା , ଜଣେ ଆଉ ଜଣକୁ ଦଳିଚକଟି ଉପରକୁ ଉଠିବା ଭାବନାକୁ ଦୃଢ଼ୀଭୂତ କରିବା । ଜଗତୀକରଣ ପ୍ରକ୍ରିୟା ଫଳରେ ଶିକ୍ଷାରେ ସାମ୍ପ୍ରଦାୟିକତା, ଆତଙ୍କବାଦ, ଜାତି ଓ ଧର୍ମର ବୈଷମ୍ୟତା ପ୍ରବେଶକରି ପାରିଛି । ସେଇଥିପାଇଁ ଗତ କେତେବର୍ଷରେ ହିଂସା ଓ ଆତଙ୍କବାଦ ସାରା ପୃଥିବୀରେ ବିରାଜମାନ କରୁଛି ସବୁଆଡ଼େ । ହିନ୍ଦୁମାନଙ୍କ ଶିଶୁମନ୍ଦିର ହେଉ ବା ମୁସଲ୍‌ମାନମାନଙ୍କ ମଦ୍ରାସା ହେଉ, ଖ୍ରୀଷ୍ଟିଆନ୍‌ମାନଙ୍କ କନ୍‌ଭେଣ୍ଟ ହେଉ ବା ଇହୁଦୀମାନଙ୍କ ଧର୍ମ ପ୍ରେରିତ ବିଦ୍ୟାଳୟ ହେଉ, ହିଂସା ଓ ଆତଙ୍କବାଦର

ବିହନ ବୁଣାଯାଇଛି ସରଳ କୋମଳମତି ଶିଶୁମାନଙ୍କ ଭିତରେ ଅତି ନଗ୍ନଭାବରେ । ଗୋଟାଏ ଜାତି, ଧର୍ମ, ବର୍ଣ୍ଣର ମହାନତାକୁ ଗୁରୁତ୍ୱ ଦିଆଯାଇ ଅନ୍ୟ ଭୟାନକ ଭାବେ ଏକ ଜାତି, ଧର୍ମ, ବର୍ଣ୍ଣ ପ୍ରତି ଅସହିଷ୍ଣୁ ଭାବ ସୃଷ୍ଟି କରାଯାଉଛି ।

ମୋ ମତରେ ଏ ପୃଥିବୀରେ ଶିକ୍ଷାର ଗୌରବମୟ ଇତିହାସର ଅନେକ ସ୍ମରଣୀୟ ବ୍ୟକ୍ତିତ୍ୱଙ୍କ ଭିତରେ ସର୍ବପ୍ରଥମ ରହିବେ ଗାନ୍ଧିଜୀ । ମୁଁ ପୁରାତନ ଧର୍ମ ସମାହିତ ଗୁରୁକୁଳ ଶିକ୍ଷା କଥା କହିବି ନାହିଁ କାରଣ ଯେ ଗୁରୁକୁଳ ପାଇଁ ଯେଉଁ ଭଳି ଗୁରୁ, ଛାତ୍ର, ଅଭିଭାବକ ଓ ପରିବେଶ ଲୋଡ଼ା ତାହା ଆଜି ଦୁଷ୍ପ୍ରାପ୍ୟ ହୋଇପଡ଼ିଛି । କିନ୍ତୁ ମହାତ୍ମାଗାନ୍ଧୀଙ୍କ ମୌଳିକ ଶିକ୍ଷା ସବୁଦିନ ପାଇଁ ଯଥାର୍ଥ ବୋଲି ପ୍ରମାଣିତ ହୋଇସାରିଛି । ଗାନ୍ଧୀ ଶିକ୍ଷାକୁ ଏକ ମାଧ୍ୟମକରି ବ୍ରିଟିଶ ସାମ୍ରାଜ୍ୟ ବିରୁଦ୍ଧରେ ସଂଗ୍ରାମୀମାନଙ୍କୁ ତିଆରି କରୁଥିଲେ । ସେଇଭଳି ଜଗତୀକରଣ ପ୍ରକ୍ରିୟାକୁ ଲଢ଼ିବାକୁ ସଂଗ୍ରାମୀମାନଙ୍କୁ ଏକ ନୂତନ ଶିକ୍ଷା ପଦ୍ଧତି ଅବଲମ୍ବନ କରିବା ଜରୁରୀ ହୋଇପଡ଼ିଛି । ଗାନ୍ଧୀବାଦୀ ଶିକ୍ଷାର ପ୍ରତିଫଳନ ସେଥିରେ ସମ୍ପୂର୍ଣ୍ଣ ହେବାଛଡ଼ା ଅନ୍ୟ କିଛି ବାଟନାହିଁ । କିନ୍ତୁ ଗାନ୍ଧୀ ଶିକ୍ଷା ବିଷୟରେ ମୌଳିକ ଚିନ୍ତନ କ'ଣ କରିଥିଲେ ଆଜିର ଶିକ୍ଷାବିତ୍ ଓ ଛାତ୍ର, ନେତା ଓ ଅଭିଭାବକମାନେ ସମ୍ଭବତଃ ଜାଣି ନାହାଁନ୍ତି । ଏ ସମୟରେ ସେସବୁକୁ ଆନ୍ତରିକତାର ସହ ମନେପକାଇବା ମୁଁ ଉଚିତ୍ ମନେ କରୁଛି । ନିମ୍ନରେ କେତୋଟିର ଆଲୋଚନା ମୁଁ କରିବାକୁ ଯାଉଛି ।

କ) ଶିକ୍ଷାର ମୌଳିକ ଉଦ୍ଦେଶ୍ୟ ହେଲା ଦେଶପ୍ରମ ଓ ଜାତୀୟତାଭାବ ସୃଷ୍ଟି କରିବା । ଯିଏ ନିଜ ଦେଶକୁ ଭଲପାଇ ପାରେନାହିଁ, ସେହିଁ ଜଗତୀକରଣ ଓ ବଜାରୀକରଣର ଦେଶାତ୍ମବୋଧକ ଭାବେ ସ୍ତାବକ ପାଲଟିଯାଏ । ଜଗତୀକରଣ ଏକ ବହିର୍ଶକ୍ତି । ଏକ ଧ୍ୱଂସକାରୀ ଶକ୍ତି । ଯେଉଁମାନେ ଜଗତୀକରଣକୁ ସ୍ୱାଗତ କରୁଛନ୍ତି ସେମାନେ କେବେହେଲେ ଦେଶପ୍ରେମୀ ନୁହଁନ୍ତି । ସାରା ପୃଥିବୀକୁ ଏକ କୁଟୁମ୍ବ ବା ଗାଁ କହି ଦେଇ ନିଜର ଜାତୀୟତା ଭାବ ମାଟିରେ ମିଶାଇ ଦେବା ଅର୍ଥ ନିଜର କବର ଖୋଳିବା ସହ ସମାନ ।

ଖ) ଶିକ୍ଷା ସାମାଜିକ ମୂଲ୍ୟବୋଧର ବିଚାରକୁ ନେଇ ସାଧାରଣ ଲୋକଙ୍କ ମଙ୍ଗଳପାଇଁ ସହାୟକ ହେଉଛି କି ନାହିଁ ତାହା କଷଟି ପଥରରେ ପରୀକ୍ଷା କରିବା ଘୋର ଆବଶ୍ୟକ ହୋଇପଡ଼ିଛି । ଜଗତୀକରଣ ଯେଉଁଭଳି ଶିକ୍ଷାକୁ ପ୍ରୋତ୍ସାହନ ଦେଇଛି, ସେଥିରେ ବ୍ୟକ୍ତିର ଲାଭ ଓ ସ୍ୱାର୍ଥକୁ ଗୁରୁତ୍ୱ ଦିଆଯାଇଛି । କେଉଁ ଏକ ବିଜିନେସ୍ ଏବଂ

ମ୍ୟାନେଜମେଣ୍ଟ ଅନୁଷ୍ଠାନରୁ ଯିଏ ଉତ୍ତୀର୍ଣ୍ଣ ହୋଇ ବର୍ଷକୁ ଏକ କୋଟି ଟଙ୍କାର ମୋଟା ଦରମାରେ ନିଜର ପେଶା ଜୀବନ ଆରମ୍ଭ କରୁଛି, ସେ କେଉଁବାଟେ ଦିନକୁ ପଚାଶଟଙ୍କା ମଜୁରୀ ପାଉନଥିବା ଶ୍ରମିକଙ୍କୁ ସାହାଯ୍ୟକରୁଛି ? ପାଶ୍ଚାତ୍ୟ ଦେଶରେ ମୋଟା ଦରମାରେ କାମ କରୁଥିବା ଉଚ୍ଚ ଯୋଗ୍ୟତା ସମ୍ପର୍ଣ୍ଣ ବ୍ୟକ୍ତିମାନେ ନିଜର ମାତୃଭୂମିକୁ ଫେରି ଆସିବାକୁ ଚାହୁଁନାହାଁନ୍ତି ।

ଗ) ଗାନ୍ଧୀ କହିଛନ୍ତି ଯେ ଶିକ୍ଷା ମଣିଷ ଭିତରେ ତିନୋଟି ମୌଳିକ ସତ୍ୟ ସଂପନ୍ନ ଗୁଣ ସୃଷ୍ଟିକରିବା ଆବଶ୍ୟକ । ସେଗୁଡ଼ିକ ହେଲା ନିଜେ ନିଜର ଆତ୍ମା ଓ ନିଜର ଭଗବାନଙ୍କୁ ଜାଣିବା । ସାମ୍ପ୍ରତିକ ପରିସ୍ଥିତିରେ ଜଗତୀକରଣ ପୁଞ୍ଜି ଓ ଟଙ୍କା ପଇସାର ଭଗବାନ ସୃଷ୍ଟିକରୁଛି ଯାହାକୁ ମଣିଷ ପୂଜା କରିବା ଆରମ୍ଭ କରିଛି ।

ଘ) ଗାନ୍ଧିଜୀ କହିଛନ୍ତି ଯେ ଶିକ୍ଷାରେ ମଣିଷର ଆତ୍ମା ଓ ଶରୀର ଏକାକାର ହୋଇଥାଆନ୍ତି । ଅର୍ଥାତ ଛାତ୍ରାବସ୍ଥାରୁ ମଣିଷ ନିଜର ଆତ୍ମାକୁ ଚିହ୍ନିବ ଓ ପିଲାଟି ଦିନରୁ କାମଧନ୍ଦା କରି ଦୈହିକ ପରିଶ୍ରମକରି ଆତ୍ମାକୁ ଶୁଦ୍ଧ କରିବ । ଏ ଦୁଇଙ୍କର ସମନ୍ୱୟ ଥିଲେ ଛାତ୍ର ଶିକ୍ଷା କ୍ଷେତ୍ରରେ ନୂତନ ଦିଗ ଦେଖିପାରିବ । ନୂତନ ଚରିତ୍ର ଗଠନ କରିପାରିବ । ନୂତନ ଚରିତ୍ର ବ୍ୟକ୍ତିଗତ ଭାବରେ ଗଠନ ହେଲେ, ଦେଶର ଏକ ନୂତନ ପରିଚୟ ଆସୁଥିବ ।

ଙ) ଅସଲ ଶିକ୍ଷା ସମସ୍ତଙ୍କ ପାଇଁ ଦୟା ଓ ସ୍ନେହ ଭାବ ସୃଷ୍ଟିକରିବ ବୋଲି ଗାନ୍ଧୀ ନିଜେ କହିଛନ୍ତି । ଏ ଦୁଇଟି ଉପାଦାନ ଯଦି ନାହିଁ, ତାହା ଶିକ୍ଷା ପଦବାଚ୍ୟ ନୁହେଁ । କିନ୍ତୁ ଜଗତୀକରଣ ଦ୍ୱାରା ପରିଚାଳିତ ଶିକ୍ଷାରେ ବ୍ୟକ୍ତିକୈନ୍ଦ୍ରିକ ଚିନ୍ତାଧାରା ଏତେ ରହିଛି ଯେ ନିଜର ଜଣାଅଜାଣତରେ ଛାତ୍ରଟି ଅଯୌକ୍ତିକ ପ୍ରତିଯୋଗୀତାରେ ଭାଗ ନେଉଛି ଓ ପ୍ରତିକ୍ରିୟାମାନ ହୋଇପଡୁଛି ।

ଚ) ଶିକ୍ଷା ନିର୍ଭୟ ହେବାକୁ ଶକ୍ତି ଯୋଗାଇବା କଥା । ଆଜିର ଶିକ୍ଷାରେ ସେକଥାଟି ଦେଖିବାକୁ ମିଳୁନାହିଁ । ଏ ସ୍ତମ୍ଭରେ ମୁଁ କେତେବାର ଲେଖିସାରିଛି ଯେ ଆଜିର ମଣିଷ ଭୟାତୁର ଏବଂ ଏକ ଅଜଣା ଆଶଙ୍କାରେ ଆଶଙ୍କିତ । ଜଗତୀକରଣ ଯେଉଁ ମାତ୍ରାରେ ଶିକ୍ଷାର ମେରୁଦଣ୍ଡ ଭାଙ୍ଗି ଦେଉଛି, ସେଥିରେ ଶଙ୍କାକୁଳ ନାଗରିକ ଅସହାୟ ପରିସ୍ଥିତିରେ ପଡ଼ି ଯାଇଛନ୍ତି ।

ଛ) ଶିକ୍ଷା ସାଧାରଣ ମଣିଷକୁ ଦାସତ୍ୱରୁ ମୁକ୍ତ କରୁଛି କି ନାହିଁ ଅଥବା କ୍ରୀତଦାସତ୍ୱ ସୃଷ୍ଟି କରୁଛି ତାହା ବିଚାରକୁ ନେବାର ଅଛି । ପାଉଲୋ ଫ୍ରାଏରୀ ମଧ ଏହିକଥା କହିଛନ୍ତି ଯେ ଶିକ୍ଷା ଦାସତ୍ୱରୁ ମୁକ୍ତି ପାଇଁ, ବନ୍ଧନର ଶୃଙ୍ଖଳକୁ ଭାଙ୍ଗିବା ପାଇଁ ପ୍ରୟୋଗ କରାଯିବା ଉଚିତ୍ ।

ଜ) ଗାନ୍ଧୀ ଦୃଢ଼ସ୍ୱରରେ କହିଛନ୍ତି ଯେ ଶିକ୍ଷା ଓ ସତ୍ୟ ଏକ ମୁଦ୍ରାର ଦୁଇ ଭାଗ । ବୈଜ୍ଞାନିକତତ୍ତ୍ୱ, ଦାର୍ଶନିକ ଚିନ୍ତନ କେତେ ସତ୍ୟ ଉପରେ ପର୍ଯ୍ୟବେସିତ ଜଗତୀକରଣ ପରିଚାଳିତ ଶିକ୍ଷାରେ ନାଁ ଅଛି ସତ୍ୟ ନାଁ ଅଛି ନ୍ୟାୟ ।

ଝ) ଗାନ୍ଧୀ ଏକ ସାମଗ୍ରିକ ବିକାଶର ନକ୍‌ସା 'ନଇତାଲିମ୍'ରେ ଆଙ୍କିଛନ୍ତି । ପରାଧୀନତାର ଦୁର୍ଗମ ପ୍ରାଚୀର ଡ଼େଇଁବାକୁ ହେଲେ ଏ 'ନଇତାଲିମ୍' ବା ନୂତନ ପ୍ରଶିକ୍ଷଣ ସେ ଶିକ୍ଷା ବିଷୟରେ ଦେଖିଛନ୍ତି । ପାଉଲ ଫ୍ରାଏରୀ ମଧ ନୂତନ ମଣିଷର ଆବିଷ୍କାର କରିଛନ୍ତି ବିବେକୀକରଣ ଓ ସାଂସ୍କୃତିକ କାର୍ଯ୍ୟକ୍ରମକୁ ଅସ୍ତ୍ର କରି ।

ଶିକ୍ଷା ଓ ସଂସ୍କୃତିର ଇତିହାସ ହେଉଛି ଏକ ସଭ୍ୟତାର ଇତିହାସ । ଗୋଟାଏ ସଭ୍ୟତା ବଞ୍ଚିରହିଛି କି ମରିହଜି ଯାଇଛି ତାହା ନିର୍ଭର କରିଛି ଶିକ୍ଷା ଓ ସଂସ୍କୃତିର ଅଭିବୃଦ୍ଧି ଉପରେ ଓ ସାଧାରଣ ମଣିଷଙ୍କ ମଙ୍ଗଳମୟ ଜୀବନ ଉପରେ । ଯଦି ଶିକ୍ଷା ଓ ସଂସ୍କୃତି ଠିକ୍ ବାଟରେ ଯାଇ ନାହାଁନ୍ତି, ତାହାହେଲେ ସଭ୍ୟତା ଅତି ସହଜରେ ଭୁଶୁଡ଼ି ଯାଇଛି । ବର୍ତ୍ତମାନର ସମୟ ଜଗତୀକରଣର ସମୟ ବୋଲି ସମସ୍ତଙ୍କୁ ମାନିବାକୁ ବାଧ କରାଯାଉଛି । ସେଇଥିପାଇଁ ଶିକ୍ଷାର ଘରୋଇକରଣ ଦ୍ରୁତଗତିରେ ମାଡ଼ି ଚାଲିଛି । ଏବେ ପାଶ୍ଚାତ୍ୟ ଢ଼ାଞ୍ଚାର ଶିକ୍ଷାକୁ କଦର୍ଥ କରି ଏ ଦେଶ ଉପରେ ଘରୋଇ ସ୍କୁଲ, କଲେଜ ଓ ବିଶ୍ୱ ବିଦ୍ୟାଳୟ ଛତୁ ଫୁଟିଲା ଭଳି ଖୋଲାଯାଇଛି । ଶିକ୍ଷାର ଘରୋଇ ପୁଞ୍ଜିନିବେଶ ବଢ଼ି ଚାଲିଛି । ଶିକ୍ଷାର ବ୍ୟବସାୟୀକରଣ ହେତୁ ଆଜିର ପିତାମାତା ତାଙ୍କର କଷ୍ଟୋପାର୍ଜିତ ଅର୍ଥକୁ ପୁଅଝିଅଙ୍କ ଶିକ୍ଷ ପାଇଁ ଘରୋଇ ପ୍ରତିଷ୍ଠାନ ଗୁଡ଼ିକୁ ଲାଞ୍ଚ (ଶୁଦ୍ଧ ଭାଷାରେ ଡ଼ୋନେସନ୍) ଦେବାକୁ କୁଣ୍ଠା ପ୍ରକାଶ କରୁନାହାଁନ୍ତି । ଆମ ରାଜ୍ୟର ରାଜଧାନୀରେ ଚଞ୍ଚକତା ଓ ଆବର୍ଜନା ଉପରେ ପର୍ଯ୍ୟବେସିତ ଘରୋଇ ଶିକ୍ଷାକେନ୍ଦ୍ରମାନଙ୍କୁ ଅଧୟନ କରିବା ଜରୁରୀ ହୋଇପଡ଼ିଛି ଓ ସେମାନଙ୍କ ମଙ୍ଗ ଧରିଥିବା ଚାନ୍‌ସେଲର୍ / ଡ଼ିନ୍‌ମାନଙ୍କର ଚରିତ୍ର ଚିତ୍ରଣ ସଠିକ୍ ଢ଼ଙ୍ଗରେ କରିବାକୁ ନାଗରିକ ସମାଜ ଆଗେଇ ଆସିବା ଏକ କର୍ତ୍ତବ୍ୟ ବୋଲି ମୁଁ ମନେକରୁଛି । ଏବେ ଜଣେ ପୁଞ୍ଜିପତି ଓ ଶିଳ୍ପପତି

ବିଶ୍ୱର ସର୍ବୋତ୍ତମ ବିଶ୍ୱବିଦ୍ୟାଳୟ ଢ଼ାଞ୍ଚାରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ସରକାରଙ୍କୁ ପ୍ରଭାବିତ କରି ଜମିନେବାକୁ ବସିଲେଣି । ଏହା ନିଶ୍ଚିତ ଭାବେ ଜଗତୀକରଣର ଏକ ପରିପ୍ରକାଶ । କିନ୍ତୁ ପ୍ରଶ୍ନଉଠୁଛି ଏ ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କ ଭିତରେ ସାଧାରଣବର୍ଗର ପରିବାରରୁ କେତେଜଣ ରହିବେ ? ଯାହାର ଅର୍ଥ ଏବଂ କ୍ଷମତା ଅଛି, ସେ କେବଳ ଏଭଳି ଜଗତୀକରଣର ପଙ୍କିଳ ପରିବେଶରୁ ଜନ୍ମନେଉଥିବା ବିଶ୍ୱବିଦ୍ୟାଳୟରେ ସ୍ଥାନ ପାଇବ ଓ ସାମ୍ପ୍ରତିକ ପରିବେଶକୁ ଆହୁରି କଳୁଷିତ କରିବ । ସେ କେବେହେଲେ ସମ୍ମାନିତ ନାଗରିକ ହେବନାହିଁ । ❑

# ଜଗତୀକରଣ ଏବଂ ଆମ ସାଂସ୍କୃତିକ ସମ୍ପଦ ଉପରେ ଆକ୍ରମଣ

ସତୁରୀ ଦଶକର ଶେଷଭାଗରେ ସାରା ପୃଥିବୀରେ ବ୍ରାଜିଲ୍‌ର ଶିକ୍ଷାବିତ୍ ପାଉଲୋ ଫ୍ରାଏରେଙ୍କ ପ୍ରଦତ୍ତ ତାତ୍ତ୍ୱିକ ଓ ଦର୍ଶନ ସମ୍ବନ୍ଧିତ ଆଲୋଚନା ଓ ସମାଜ ପରିବର୍ତ୍ତନର ନୂତନ ଧାରାପାଇଁ ଆବଶ୍ୟକ ରଣନୀତି ମୋ ଭଳି ଅନେକ ଯୁବକ ଯୁବତୀଙ୍କୁ ପ୍ରଭାବିତ କରିଥିଲା । ତାଙ୍କ ମତଥିଲା ଯେ ଯଦି ଦାରିଦ୍ର୍ୟ ଓ କ୍ରୀତଦାସତ୍ୱର ବେଡ଼ିରେ ବାନ୍ଧିହୋଇଥିବା ମଣିଷଟିଏ ତାହାର ସାଂସ୍କୃତିକ ନୀରବତା ଭଙ୍ଗ କରିଦିଏ, ତେବେ ସେ ବିକାଶ ଓ ପରିବର୍ତ୍ତନର ଡୋରି ସମ୍ଭାଳିବାକୁ ସକ୍ଷମ ହେବ । ଏହାର ଅର୍ଥ ହେଲା, ଯଦି ଗରିବ ମଣିଷଟି ନିଜର କର୍ମ ଚିନ୍ତନ କରିଆରେ ନିଜର ସାମଗ୍ରୀକ ସ୍ଥିତିର ପ୍ରକୃତ ଅର୍ଥ ବୁଝିପାରିବ ଓ ତାକୁ ବଦଳାଇବା ସକ୍ଷମ ହେବ । ଏଥିପାଇଁ ଏକ ଶକ୍ତିଶାଳୀ ଓ ମାର୍ଗଦର୍ଶୀ ପୁସ୍ତକ ଲେଖିଥିଲେ । ସ୍ୱାଧିନତା ପାଇଁ ସାଂସ୍କୃତିକ କର୍ମ (କଲ୍‌ଚରାଲ୍ ଆକ୍‌ସନ୍ ଫର୍ ଫ୍ରିଡମ୍) ଯାହାକୁ ମୁଁ ଅନେକ ଥର ପଢ଼ିଛି ଓ ବୁଝିବାକୁ ଚେଷ୍ଟାକରିଛି । ନୂତନ ଶିକ୍ଷା ଓ ଚେତନା ପାଇଁ କେତେକ ସାଂସ୍କୃତିକ କାର୍ଯ୍ୟକ୍ରମ ନିତ୍ୟାନ୍ତ ଆବଶ୍ୟକ । ସଂସ୍କୃତି ଗଢ଼ାହୁଏ କର୍ମ-ଚିନ୍ତନ-କର୍ମ ଚକ୍ରର ଅବାରିତ ଓ ଅପରିମିତ ପ୍ରକ୍ରିୟାରୁ । ଶକ୍ତି ଓ ସ୍ୱାଧୀନତା ପାଇଁ ଦାରିଦ୍ର୍ୟ, ଅନ୍ୟାୟ ଓ ଅତ୍ୟାଚାରର ଶୃଙ୍ଖଳାରୁ ମୁକ୍ତ ହେବା ପାଇଁ ପ୍ରତ୍ୟେକ ଶୋଷିତ ଓ ଅତ୍ୟାଚାରିତ ବ୍ୟକ୍ତିକୁ ତାର ଆପଣାର ସଂସ୍କୃତିର ସଂଜ୍ଞାକୁ ବୁଝିବାକୁ ପଡ଼ିବ ଓ ବଦଳାଇବାକୁ ପଡ଼ିବ । ମାତ୍ର ଦୁଃଖର କଥା ଯେ, ଗତ ୩୦ ବର୍ଷ ଭିତରେ ପରିବର୍ତ୍ତନର ସବୁ ଆଶାକୁ ଧୂଳିସାତ୍ କରି ଏକ ସାଂସ୍କୃତିକ ସାମ୍ରାଜ୍ୟବାଦ ଯେମିତି ଏ ପୃଥିବୀଟାକୁ ସମ୍ପୂର୍ଣ୍ଣ ରୂପେ ଗ୍ରାସ କରିଦେଇଛି । ଜଗତୀକରଣ ଦ୍ୱାରା ଏ ପୃଥିବୀର ବିଭିନ୍ନ ସମାଜ ଓ ସଂସ୍କୃତି ଯେଉଁଭଳି ପ୍ରଭାବିତ ହୋଇଛି ତାହା ଦେଶ, କାଳ, ପାତ୍ର ଓ ପରିବେଶ ସମସ୍ତଙ୍କୁ ଆଜି କ୍ରୀତଦାସ କରି ରଖିବା ସ୍ପଷ୍ଟ ବାରିହେଉଛି । ଗୋଟିଏ ପାର୍ଶ୍ୱରେ ଏ ପୃଥିବୀର ଗରିବ ମଣିଷଟି ସାଂସ୍କୃତିକ ନୀରବତା ଭାଙ୍ଗିପାରିଲା ନାହିଁ । ଅନ୍ୟ ପାର୍ଶ୍ୱରେ ଜଗତୀକରଣ ପ୍ରଭାବରେ ନିଜର ସାଂସ୍କୃତିକ ସମ୍ପଦକୁ ସେ ହରାଇ ବସିଛି । ମଣିଷଟି କେତେ ଅସହାୟ ହୋଇପଡ଼ିଛି ପାଠକମାନେ ଜାଣିପାରୁଥିବେ । ନିମ୍ନରେ କେତୋଟି ଉଦାହରଣକୁ ବିଚାରକୁ ନେବା ।

ଆମ ଆଦିବାସୀ ଅଞ୍ଚଳର ଏକ ସର୍ଭେକ୍ଷଣରୁ ଜଣାପଡ଼ିଛି ଯେ, ସେମାନେ ତାଙ୍କର ପ୍ରିୟ ଖାଦ୍ୟ ମାଣ୍ଡିଆ, ସୁଆଁ, କାନ୍ଦୁଲ ଓ କନ୍ଦାକୁ କ୍ରମଶଃ ଭୁଲିଯିବାକୁ ବସିଲେଣି । ପାରମ୍ପରିକ କାର୍ଯ୍ୟ ବଦଳରେ ଏବେ ଚାଉଳ,ଗହମ ଓ ଅନ୍ୟ କେତେ କିସମରେ ଖାଦ୍ୟଦ୍ରବ୍ୟ ସେ ଅଞ୍ଚଳରେ ଲୋକପ୍ରିୟ ହେବାକୁ ଲାଗିଛି । କେତେ ଜାଗାରେ ଫାଷ୍ଟଫୁଡ୍ ଦୋକାନ ଖୋଲିଲାଣି ମଧ୍ୟ । କେୟାର ଓ ବିଶ୍ୱ ଖାଦ୍ୟ ଯୋଜନା ତରଫରୁ ମଧ୍ୟ ବିଭିନ୍ନ ପ୍ରକାର ଖାଦ୍ୟଗୁଣ୍ଡ ଓ ବିସ୍କୁଟ ଯୋଗାଇ ଦିଆଯାଉଛି । ଗୋଟାଏ ଧାରଣା ସୃଷ୍ଟି କରାଯାଉଛି ଯେ, ମାଣ୍ଡିଆ ହେଉଛି ହୀନ ମଣିଷଙ୍କ ପାଇଁ ଉଦ୍ଦିଷ୍ଟ ଖାଦ୍ୟ । କାରଣ ମାଣ୍ଡିଆ ଅଣଆଦିବାସୀ ଓ ଉଚ୍ଚବର୍ଗର ଲୋକେ ଖାଆନ୍ତି ନାହିଁ । ଏପରିକି ଆଦିବାସୀ ବିଧାୟକ ଓ ସାଂସଦମାନେ ମାଣ୍ଡିଆ କଥା ଆଲୋଚନା କରିଲେ ନାକ ଟେକୁଛନ୍ତି । ସାରା ପୃଥିବୀରେ ଏଭଳି ପାରମ୍ପରିକ ଖାଦ୍ୟ ଓ ପୋଷାହାର ଲୋପପାଇଯିବାକୁ ବସିଛି । ମାକ୍‌ଡୋନାଲଡ୍‌, କେଣ୍ଟୁକି ଫ୍ରାଏଡ୍ ଚିକେନ୍, ଆଦିଙ୍କ ଶାଖାପ୍ରଶାଖା ବଢ଼ିବାରେ ଲାଗିଛି । କୋକାକୋଲା ଆଜି ଗାଁ ଗହଳରେ ମିଳୁଛି । ସହରର ସୁବିଧା ଗାଁରେ ମିଳିବା ଅର୍ଥ ଏଇଆ ବୋଲି ଯୁକ୍ତି ହେଉଛି ।

ଲଦାଖ୍ ହେଉଛି, ହିମାଳୟ ପର୍ବତର ଅଂଶବିଶେଷ । ସେଠାରେ ରହୁଥିବା ବୌଦ୍ଧଧର୍ମ ଅଧିବାସୀମାନଙ୍କର ରହିବା, ଖାଇବା, ପୋଷାକ, ସଙ୍ଗୀତ ସବୁଥିରେ ସ୍ୱାତନ୍ତ୍ର୍ୟ ରହିଛି । କିନ୍ତୁ କିଛିଦିନ ଧରି ଦେଖାଯାଉଛି ଯେ, ସେଠାରେ ସବୁକିଛି ବଦଳିବାରେ ଲାଗିଛି । ଲଦାଖ୍‌ବାସୀ ସିମେଣ୍ଟ କଣ ଜାଣିନଥିଲେ କି କେବେ ବ୍ୟବହାର କରିନଥିଲେ । ସେମାନଙ୍କ ପାରମ୍ପରିକ ବାସଗୃହର ଉପକରଣ ସ୍ଥାନୀୟ ପଦାର୍ଥରୁ ତିଆରି ହୁଏ ଓ ଏଥିରେ ଏକ ସ୍ୱତନ୍ତ୍ର ଢ଼ାଞ୍ଚା ଏବଂ ନିର୍ମାଣ ଶୈଳୀ ରହିଥାଏ । ଆଧୁନିକ ବାସଗୃହ ନାମରେ ବର୍ତ୍ତମାନ ସେଠାରେ ସିମେଣ୍ଟ, କଂକ୍ରିଟ୍ ଘର ଆରମ୍ଭ ହୋଇଗଲାଣି, ଏଇ କେତେବର୍ଷ ମଧ୍ୟରେ । ଏକ ସ୍ୱାବଲମ୍ବୀ ସମାଜ ଏବେ ସେଠାରେ ଅନ୍ୟ ଅଞ୍ଚଳ ଉପରେ ନିର୍ଭର କରିବା ଆରମ୍ଭ କରିଛି । ଯୁବ ଲଦାଖିମାନେ ବାପଅଜା ଅମଳର ଘରେ ରହିବାକୁ ପସନ୍ଦ କରୁନାହାନ୍ତି । ପାରମ୍ପାରିକ ଲଦାଖି ପୋଷାକ କାଁ ଭାଁ କିଏ ପିନ୍ଧୁଛି । ସମସ୍ତେ ପାଶ୍ଚାତ୍ୟ ଦେଶର ଫ୍ୟାସନ୍‌କୁ ଆପଣାଉ କରୁଛନ୍ତି ।

ଆଜି ଆମ ଦେଶର ଗାଁ ଗହଳି ଭିତରେ ପଶିବା ମାତ୍ରେ ଦେଖିବେ ପିଲାମାନେ କ୍ରିକେଟ୍ ଖେଳୁଛନ୍ତି । ବ୍ୟାଟ୍ ବା ଷ୍ଟମ୍ପସ୍ ନଥାଉ, ପ୍ୟାଡ୍ ବା କ୍ରିକେଟ୍ ବଲ୍ ନଥାଉ

ସେଠାରେ ଖେଳ ଚାଲୁଛି । ହାରଜିତ୍ ବାଜି ପଡୁଛି ଓ କେତେ ଗାଁକୁ ନେଇ ଟୁର୍ଣ୍ଣାମେଣ୍ଟ ମଧ୍ୟ ହେଉଛି । ଆବାଳବୃଦ୍ଧବନିତା କ୍ରିକେଟ୍ ମ୍ୟାଚ୍ ଟି.ଭି ବା ରେଡ଼ିଓକୁ ଆଗ୍ରାକରି ଉପଭୋଗ କରୁଛନ୍ତି । ନିଶାଗ୍ରସ୍ତ ଭଳି ବ୍ୟବହାର କରୁଥାନ୍ତି ସେମାନେ । ତେନ୍ଦୁଲ୍କର ଆଦି ଖେଳାଳୀଙ୍କର ଚିତ୍ର ଘରେ ଘରେ, ସ୍କୁଲ ବହିରେ, ସବୁ ତରୁଣଙ୍କ ମାନସ ପଟରେ ଅହର୍ନିଶ ବିରାଜମାନ କରୁଛି । ଏହିଭଳି ପରିବେଶ ମୁଁ ଫିଲିପାଇନ୍ସରେ ମଧ୍ୟ ଦେଖିଛି । ସେଠିକାର ତରୁଣ ଯୁବଗୋଷ୍ଠୀ ବାସ୍କେଟ୍ ବଲ୍ ଖେଳିବା ପାଇଁ ପାଗଳ । ଗାଁ ଦାଣ୍ଡରେ ବାସ୍କେଟ୍‌ବଲ୍ ପଡ଼ିଆ ତିଆରି କରାଯାଉଛି । ପ୍ରତ୍ୟେକ ତରୁଣ ଆମେରିକାର ୟାଙ୍କି ବା ଚିକାଗୋ ବୁଲ୍ ଢାଞ୍ଚାରେ ଡ୍ରେସ୍ ଓ କ୍ୟାପ୍ ପିନ୍ଧୁଛି । ଟିକିଏ ଫୁରସତ୍ ମିଳିଲେ ଗାଁ ଦାଣ୍ଡରେ ବାସ୍କେଟ୍ ବଲ୍ ଧରି ସାଙ୍ଗମାନଙ୍କ ସହ ଖୁସି ଗମାତରେ ଲାଗି ରହୁଛି । ମନେ ହେଉଛି ସାରା ଫିଲିପାଇନ୍ସ ଆମେରିକା ଆଡ଼କୁ ମୁହାଁଉଛି । କାୟ ମନୋବାକ୍ୟରେ ପ୍ରତ୍ୟେକ ଫିଲିପିନୋ ଓ ଫିଲିପିନା ଆମେରିକା ଯିବାକୁ ଯେମିତି ଗୋଡ଼କାଢି ବସିଛି । ଏବଂ ଭାବୁଛି ଆମେରିକାରେ ରହିଲେ, ଯେମିତି ସେମାନଙ୍କୁ ସ୍ୱର୍ଗ ମଳିଯିବ ।

ଉପନିବେଶବାଦର ଏକ ଘୃଣ୍ୟ ଅବଦାନ ଥିଲା ସାଂସ୍କୃତିକ ସମ୍ପଦକୁ ଧ୍ୱଂସ କରିବା । ଯେଉଁଠି ଉପନିବେଶବାଦ ପ୍ରବେଶକରିଛି, ସେଠାରେ ଔପନିବେଶିକମାନେ ସେମାନଙ୍କର ସଂସ୍କୃତି ଜବରଦସ୍ତ ଲଦିଦେବାକୁ ପ୍ରବଳ ଚେଷ୍ଟା କରିଛନ୍ତି ଏବଂ ସଫଳ ହୋଇଛନ୍ତି । ଆଫ୍ରିକା ହେଉଛି ଏହାର ଏକ ଚରମ ଉଦାହରଣ । ସେ ମହାଦେଶରେ ଏପରି ସାଂସ୍କୃତିକ ଅବକ୍ଷୟ ଘଟିଛି ଯେ, ଜଣେ ହେଲେ କେହି ଆଫ୍ରିକାବାସୀ ନିଜର ପରିଚୟ ସମୟରେ ପ୍ରଶ୍ନ ପଚାରୁ ନାହିଁ । ଗୋରାମାନଙ୍କର ଆଚରଣ ଓ ଜୀବନଶୈଳୀ ଅନୁକରଣ କରିବାକୁ ସେ ପଛଘୁଞ୍ଚା ଦେଇନାହିଁ । ଆଫ୍ରିକା ଆଜି ସବୁପ୍ରକାର ସାଂସ୍କୃତିକ ସମ୍ପଦରୁ ବଞ୍ଚିତ ହୋଇ ଯେମିତି ନିଃସ୍ୱ ହୋଇଯାଇଛନ୍ତି । ଆଫ୍ରିକାର ଖାଦ୍ୟାଭାବ ଜନିତ ଦୁର୍ଭିକ୍ଷ ହେଉ କି ଏଡ୍‌ସ ବେମାରୀ ହେଉ, ଗୃହଯୁଦ୍ଧ ହେଉ, ଅଥବା ଜନହତ୍ୟା ହେଉ, ସବୁ ଯେମିତି ଏକ ସାଂସ୍କୃତିକ ସମସ୍ୟାରୁ ଜନ୍ମ ହୋଇଛି । ଜଣେ ଆଫ୍ରିକୀୟ ଆଉଜଣେ ଆଫ୍ରିକୀୟକୁ ଚିହ୍ନିପାରୁ ନାହିଁ । ଭାଷା ଯେମିତି ମରିଯାଇଛି । ସଙ୍ଗୀତର ସ୍ୱର ଯେମିତି ହଜିଯାଇଛି ।

ସତୁରୀ ଦଶକରେ ଏ ପୃଥିବୀର ଯୁବଗୋଷ୍ଠୀଙ୍କୁ କୁଆଡ଼େ ଗୋଟିଏ ଜିନିଷ ବେଶୀ ଆକର୍ଷଣ କରୁଥିଲା । ତାହା ହେଉଛି "ବ୍ଲୁ ଜିନ୍‌ସ" । କମ୍ପାନୀ ଗୁଡ଼ିକ ଥିଲା ଲେଭାଇ ବା ର୍‌ୟାଙ୍ଗଲର୍ । ଏ ବ୍ରାଣ୍ଡର ଜିନ୍‌ସ ଆମ ଭିତରୁ କିଏ କିଣୁଥିଲେ ଆମେ

ସବୁ ମାଗି ପିନ୍ଧୁଥାଉ ଓ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିଥାଉ । ସେତେବେଳେ ଏହି ଧରଣର ଜିନ୍‌ସ କେବଳ ଆମେରିକାରେ ମିଳୁଥିଲା ଓ ଲୁଚାଛପାରେ ଏ ଦେଶକୁ ଆସୁଥିଲା । ଶୁଣାଯାଏ ଭୂତପୂର୍ବ ସୋଭିଏତ୍ ଋଷିଆର ଯୁବଗୋଷ୍ଠୀ ବ୍ଲୁ ଜିନ୍‌ସ ପାଇଁ କୁଆଡେ ପାଗଳ ହୋଇଯାଉଥିଲେ । ସେତେବେଳେ ଅନେକ ଗୁଣ ଦାମ ଦେଇ ବ୍ଲୁ ଜିନ୍‌ସ କିଣିବାକୁ ପଡୁଥିଲା । ଶୁଣାଯାଏ, ଯେ ସେ ଦେଶର ଯୁବତୀମାନେ ଏପରିକି ଦେହବିନିମୟରେ ଜିନ୍‌ସପ୍ୟାଣ୍ଟ ପାଇବାକୁ କୁଣ୍ଠା ପ୍ରକାଶ କରୁନଥିଲେ । ଏବେ ଉତ୍ତର ମେରୁ ଠାରୁ ଦକ୍ଷିଣ ମେରୁ ପର୍ଯ୍ୟନ୍ତ ଟିଟିଲାଗଡ଼ରୁ ଟିମ୍ବକ୍‌ଟୁ ପର୍ଯ୍ୟନ୍ତ ବ୍ଲୁ ଜିନ୍‌ସର ବହୁଳ ବ୍ୟବହାର ଚାଲିଛି । ସମସ୍ତେ ପ୍ରାୟ ଏକାଭଳି ଦିଶୁଛନ୍ତି ଏହାସହ ଯୁବଗୋଷ୍ଠୀ ମୋବାଇଲ୍ ଫୋନ୍‌ଟିଏ ଧରିଛି । ଟି.ଭି. ଚ୍ୟାନେଲରେ ବିଜ୍ଞାପନ ଦ୍ୱାରା ପ୍ରଭାବିତ ହୋଇ ସେମିତି ବେଶପୋଷାକ, ଚାଲିଚଳନ, ଢ଼ଙ୍ଗରଙ୍ଗର ଅନୁକରଣ କରିଛି । ସାରା ପୃଥିବୀର ସବୁ ଯୁବଗୋଷ୍ଠୀ ଯେମିତି ଏକାକାର ହୋଇପଡ଼ିଛନ୍ତି । ଜଗତୀକରଣର ସମର୍ଥକମାନେ ବାରମ୍ବାର କହୁଛନ୍ତି, ଏ ପୃଥିବୀଟି ଗୋଟିଏ ଗାଁ ଏବଂ ପ୍ରତ୍ୟେକ ବ୍ୟକ୍ତି ଜଣେ ଜଣେ ଗ୍ରାମବାସୀ । ସମସ୍ତେ ସମାନଭାବେ ରହିବେ, ସମାନ ପିନ୍ଧିବେ, ସମାନ ଖାଇବେ ଓ ସମାନଭାବେ ଦୃଷ୍ଟିକୋଣ ଓ ମୂଲ୍ୟବୋଧ ରଖିବେ - ଏକ ନୂତନ ରାମରାଜ୍ୟର ଉଦ୍ଭଟ ପରିକଳ୍ପନା । ସମସ୍ତେ ଏକାକାର ହୋଇଯିବେ ।

ସାଂସ୍କୃତିକ ଲଢ଼େଇ ସୁଦୂରପ୍ରସାରୀ ହୋଇଛି, ଜଗତୀକରଣ ପ୍ରକ୍ରିୟାରେ ଗତିଶୀଳତା ଆସିଲାପରେ । ଦେଶଭିତରେ ଓ ବାହାରେ, ଧର୍ମଭିତରେ ଓ ବାହାରେ, ଭାଷା ଭିତରେ ଓ ବାହାରେ, ଐଶ୍ୱରିକ ବିଶ୍ୱାସ ଭିତରେ ଓ ବାହାରେ ସବୁଠି ଦଙ୍ଗା ଓ ଲଢେଇ, ହତ୍ୟା ଓ ଲୁଣ୍ଠନ, ଘୃଣା ଓ ଶତୃତା ଲାଗିରହିଛି । ଏସବୁକୁ ନେଇ ପୃଥିବୀର ମାନବୀୟ ଭୂଗୋଳ ଓ ବୈଚାରିକ ମାନଚିତ୍ର ବଦଳିବାରେ ଲାଗିଛି । ଆମଦେଶରେ ଧର୍ମ, ଭାଷା, ବିଶ୍ୱାସ ଓ ବିଚାରଧାରାକୁ ନେଇ ସଂଘର୍ଷ ବଢୁଛି । ପୃଥିବୀର ସବୁଆଡ଼େ ଗୋଟିଏ ଅପ୍ରାକୃତିକ ଓ ଅମାନୁଷିକ ଉତ୍ତେଜନା ଲାଗିରହିଛି । ସାଂସ୍କୃତିକ ସଂଘର୍ଷର ତିନୋଟି କାରଣ ରହିଛି । ଗୋଟାଏ ହେଲା ଧର୍ମ ରକ୍ଷାକରିବା ପାଇଁ ଲଢ଼େଇ । ଦ୍ୱିତୀୟଟି ହେଲା ଜାତିଗତ ଲଢ଼େଇ । ତୃତୀୟଟି ହେଲା ସାଂସ୍କୃତିକ ଉତ୍କର୍ଷତା ପାଇଁ ଲଢ଼େଇ । ବିଶିଷ୍ଟ ଲେଖକ ଓ ବୁଦ୍ଧିଜୀବୀ ସାମୁଏଲ୍ ହଣ୍ଟିଙ୍ଗ୍‌ଟନ୍ ଏସବୁ ଲଢ଼େଇକୁ ତାଙ୍କ ବହି "ଦ କ୍ଲାସ୍ ଅଫ୍ ସିଭିଲାଇଜେସନ୍" ରେ ବିଶେଷ ଭାବେ ଉଲ୍ଲେଖ କରିଛନ୍ତି । ଏବେ ସାମ୍ପ୍ରତିକ ପୃଥିବୀରେ ଧର୍ମକୁ ନେଇ ଯେପରି ଅଗଣିତ ଲଢ଼େଇ ଚାଲୁରହିଛି, ସେଗୁଡ଼ିକୁ

ସହଜରେ ତାଲିକାଭୁକ୍ତ କରାଯାଇପାରେ । ଲଢ଼େଇ ଚାଲିଛି, ଖ୍ରୀଷ୍ଟୀଆନ୍ ଓ ମୁସଲ୍‌ମାନମାନଙ୍କ ମଧ୍ୟରେ, ଖ୍ରୀଷ୍ଟୀଆନ୍ ଓ ଇହୁଦୀ ମାନଙ୍କ ମଧ୍ୟରେ, ଇହୁଦୀ ଓ ମୁସଲ୍‌ମାନ ମାନଙ୍କ ମଧ୍ୟରେ, ହିନ୍ଦୁ ଓ ମୁସଲ୍‌ମାନ ମାନଙ୍କ ମଧ୍ୟରେ, ସୁନି ଓ ସିୟା ମାନଙ୍କ ମଧ୍ୟରେ, ପ୍ରୋଟେଷ୍ଟାଣ୍ଟ ଓ କ୍ୟାଥୋଲିକ୍ ଙ୍କ ମଧ୍ୟରେ । ବଲ୍କଲଧାରୀ ମହିମାଧର୍ମୀ ଓ କୌପନୀ ଧାରୀ ମହିମାଧର୍ମୀଙ୍କ ମଧ୍ୟରେ । ଜାତିକୁ ଦେଖିଲେ ଉଚ୍ଚଜାତି ଓ ନୀଚଜାତି, ଚୀନା ବାସୀ ଓ ଜାପାନ୍ ବାସୀ, ସ୍ଲାଭ୍ ଓ ତୁର୍କୀ, ଚୀନାବାସୀ ଓ ମାଳୟ ବାସୀ, ଗ୍ରୀକ୍ ଓ ତୁର୍କୀବାସୀ, ସିଂହଳୀ ଓ ତାମିଲ୍, ଋଷିଆ ଓ ଚେଚେନ୍, ସର୍ବ ଓ ବୋସ୍‌ନିଆବାସୀ, ହୁଟୁ ଓ ଟୁଟ୍‌ସା ଆଦି ଲଢ଼େଇକୁ ରକ୍ତାକ୍ତ କରିସାରିଛି । ଲଢ଼େଇରେ ଗଣହତ୍ୟା ହୋଇଛି । ଏହା ଯଦି ଜଣେ ବୁଝିବାକୁ ଚାହିଁବେ ସେ ତାର ମଣିଷପଣିଆ ହରାଇବସିବେ । ସାଂସ୍କୃତିକ ଲଢ଼େଇରେ ଏହି କେତେବର୍ଷରେ ଯେତେଲୋକ ମରିଛନ୍ତି, ତାହା ଇତିହାସ କେବେହେଲେ ଭୁଲିଯିବ ନାହିଁ । ବିଂଶ ଶତାବ୍ଦୀରେ କ'ଣ ପ୍ରଗତି ହୋଇଛି ? ତାହା ସମୀକ୍ଷାରେ ସୀମିତ ନରଖି ଯେତେ ହୋଇଛି ତାହା ଗଣହତ୍ୟା ବିଚାରକୁ ନିଆଯାଏ । ଅବାକ୍ ଲାଗେ ଯେ, ଏକ ବିକଶିତ ଓ ଉନ୍ନତ ସଭ୍ୟତାରେ ଏ ଗଣହତ୍ୟା କିପରି ସମ୍ଭବ ହୋଇଛି । ମରିଛନ୍ତି ଦଶଲକ୍ଷ ଆର୍‌ମେନିଆନ୍, କେତେକୋଟି ଋଷିଆନ୍, ଏକକୋଟିରୁ ଊର୍ଦ୍ଧ୍ୱ ଇହୁଦୀ, ତିରିଶଲକ୍ଷ କାମ୍ବୋଡ଼ିଆବାସୀ, ହଜାର ହଜାର ବୋସ୍‌ନିଆବାସୀ, ରୁଆଣ୍ଡା ଓ ପୂର୍ବ ତିମୋର୍‌ବାସୀ । ଅସଲ ଯୁଦ୍ଧରେ ମରୁଥିବା ସୈନିକ ମାନଙ୍କ ଠାରୁ ଏ ଗଣହତ୍ୟା ଅନେକ ସୀମା ଟପିଯାଇଛି । ଐତିହାସିକ ମାନେ ବାରମ୍ବାର କହିଆସୁଛନ୍ତି ଯେ, ସାଂସ୍କୃତିକ ଉତ୍କର୍ଷତା ଦେଖାଇଥିବା ଜାତି, ନିକୃଷ୍ଟତାର ସଂସ୍କୃତିକୁ ଧ୍ୱଂସ କରିଦେଇଛି ସବୁବେଳେ । ଆର୍ଯ୍ୟମାନେ ଅନାର୍ଯ୍ୟମାନଙ୍କୁ, ଗୋରାମାନେ କଳାମାନଙ୍କୁ, ଗୋରାମାନେ ଲୋହିତ ଭାରତୀୟମାନଙ୍କୁ ମାରି ଖତମ୍ କରିଦେଲା ଭଳି ଜଗତୀକରଣରେ ହୃଷ୍ଟପୁଷ୍ଟ ହେଉଥିବା ସଂସ୍କୃତି, ପଛୁଆ ପଡ଼ିଯାଇଥିବା ସଂସ୍କୃତିକୁ ନିଶ୍ଚିହ୍ନ ଯେ କରିଦେବ ଏକଥା ଭବିଷ୍ୟବାଣୀ ଆକାରରେ ଦିଆସାରିଛି ।

ଏଇଥିପାଇଁ ସ୍ଥାନୀୟ ଓ ଏକାନ୍ତଭାବେ ନିଜସ୍ୱ ସଂସ୍କୃତି ଯାହାପଛରେ ହଜାର ହଜାର ବର୍ଷର ମୂଲ୍ୟବୋଧ ଓ ସ୍ଥାୟୀତ୍ୱ ରହିଛି ଏବେ ତାହାର ମୂଳୋତ୍ପାଟନ ହେବା ଆରମ୍ଭ କରିଛି ଓ ଜଗତୀକରଣ ଏହି ପ୍ରକ୍ରିୟାକୁ ସଫଳ କରିବାରେ ମୂଳଭୂମିକା ଗ୍ରହଣ କରିଛି । ବର୍ତ୍ତମାନ ଆମର ପ୍ରଚଳିତ ସାଂସ୍କୃତିକ କାର୍ଯ୍ୟକ୍ରମ ସବୁ ଆଗାମୀ ଦିନର ସାଂସ୍କୃତିକ ଦାସତ୍ୱକୁ ମଜ୍‌ଭୂତ୍ କରିବାରେ ଲାଗିଛି । ❑

# ଜଗତୀକରଣ ଓ ଆମ ବିବସନା ମାଆ, ଭଉଣୀ

୧୯୮୪ ମସିହା । ଇୟୁରୋପରେ ହଲାଣ୍ଡର ରାଜଧାନୀ ଦି ହେଗ୍ ସହରରେ ଅବସ୍ଥିତ ବିଖ୍ୟାତ ଗବେଷଣା ପ୍ରତିଷ୍ଠାନ 'ଦି ଇନ୍‌ଷ୍ଟିଚ୍ୟୁଟ୍ ଅଫ ସୋସିଆଲ୍ ଷ୍ଟଡିଜ୍' (The Institute of Social Studies)ରେ ମୁଁ ଓ ମୋ ସହଧର୍ମିଣୀ ବିଦ୍ୟା ମାନବାଧିକାର ଉପରେ ଅଧ୍ୟୟନ କରୁଥାଉ । ଆମର ବିଷୟବସ୍ତୁ, ମାନବାଧିକାର ଉପରେ ଆଧାରିତ ବିଭିନ୍ନ ସମସ୍ୟା କେମିତି ସାରା ପୃଥିବୀକୁ ଘେରି ରହିଛି; ତାହାକୁ ଅଧ୍ୟୟନ କରୁଥିଲୁ ଓ ବିଭିନ୍ନ ଦେଶରୁ ଆସିଥିବା ଛାତ୍ରଛାତ୍ରୀମାନଙ୍କ ସହ ଯୁକ୍ତିତର୍କ କରୁଥିଲୁ । ଆମର ଅଧ୍ୟୟନ ବିଷୟରେ ଅନ୍ତର୍ଭୁକ୍ତ ହୋଇଥିଲା ଆମଷ୍ଟରଡ଼ାମ୍ ସହରର ରେଡ଼ ଲାଇଟ୍ ଡ଼ିଷ୍ଟ୍ରିକ୍ଟ ଯାହା ପୃଥିବୀ ପ୍ରସିଦ୍ଧି ଏକ ବୃହତ ବେଶ୍ୟାଳୟ । ଏହି ବେଶ୍ୟାଳୟମାନଙ୍କୁ ସାରା ପୃଥିବୀର ସବୁ ଅଞ୍ଚଳରୁ ଓ ଦେଶ ମହାଦେଶରୁ ମହିଳାମାନଙ୍କୁ ଆମଦାନୀ କରାଯାଇଥାଏ, ଯେଉଁମାନଙ୍କର ସବୁଠାରୁ ବେଶୀ ମାନବାଧିକାର ଉଲଂଘନ କରାଯାଇଛି ବୋଲି ଆମକୁ କୁହାଯାଇଥାଏ । ବେଶ୍ୟାଳୟଗୁଡ଼ିକ ଗୋଟାଏ ଷ୍ଟ୍ରିଟ୍‌ର ଦୁଇ ପାର୍ଶ୍ୱରେ ଅବସ୍ଥିତ ହୋଇଛନ୍ତି । ଦ୍ୱାର ସାମ୍ନାରେ ଲାଲ୍‌ବତୀ । ଦ୍ୱାରକୁ ଲାଗି ଏକ ଗ୍ଲାସ୍ କୋଠରୀ ଯେଉଁଠି ଛିଡ଼ା ହୋଇଥାଆନ୍ତି ରୂପଜୀବୀ ଅର୍ଦ୍ଧନଗ୍ନ ଅବସ୍ଥାରେ ଓ ପ୍ରଦର୍ଶିତ କରିଥାଆନ୍ତି ସେମାନଙ୍କର ଦେହ ଓ ରୂପ । ଲେଖା ହୋଇଥାଏ କେଉଁ ଦେଶରୁ ସେ ଆସିଛନ୍ତି ଓ ବୟସ କେତେ । କେଉଁଠି କେଉଁଠି ଦର ମଧ୍ୟ ଲେଖା ଯାଇଥାଏ । ଆଉ କେଉଁଠି 'ପିପ୍ ସୋ' 'ଲାଇଭ୍ ସୋ' ଆଦିର ମଧ୍ୟ ବିଜ୍ଞାପନ ଝୁଲୁଥାଏ । ସନ୍ଧ୍ୟା ନଇଁ ଆସିଲେ ସେ ରାସ୍ତାରେ ଜନକୋଳାହଳ ବଢ଼ିଯାଏ ଠିକ୍ ଦୈନିକ ବଜାର ଭଳି । ଦଲାଲ୍‌ମାନେ ଓ ପୁଲିସ୍‌ମାନେ ଅବଶ୍ୟ ପଇଁତରା ମାରୁଥାଆନ୍ତି । ଯିବା ଆସିବା ଗ୍ରାହକମାନଙ୍କର ସେଥିପ୍ରତି ନଜର ନଥାଏ । ଗ୍ରାହକମାନଙ୍କ ସହ ମଧ୍ୟ ଆସିଥାଆନ୍ତି ଅନେକ ପର୍ଯ୍ୟଟକ । ଆମ ଭଳି ଆଗ୍ରହୀ ଛାତ୍ର ଛାତ୍ରୀ ମଧ୍ୟ ପ୍ରତି ସନ୍ଧ୍ୟାରେ ସେ ଆଡ଼କୁ ଆସୁଥିବେ । ବେଶ୍ୟାଳୟର ଗୋଟିଏ ପଟେ ଆମ୍‌ଷ୍ଟରଡ଼ାମ୍ ସହରର ପୁରୁଣା ବନ୍ଦର । ସମ୍ଭବତଃ ଅନେକ ଦିନରୁ ବନ୍ଦରକୁ ଆସୁଥିବା ନାବିକ ଓ ସୈନିକ, ଯାତ୍ରୀ ଓ ବ୍ୟବସାୟୀ ନିଜର କାମନାର ଜ୍ୱାଳା ଉପଶମ କରିବା ପାଇଁ ଏ ବେଶ୍ୟାଳୟ ପ୍ରତିଷ୍ଠା କରିଛନ୍ତି ଓ ଅନେକ ରୂପଜୀବୀକୁ ଆସିବାକୁ ସୁଯୋଗ ଦେଇଛନ୍ତି । ବେଶ୍ୟାଳୟର ଅନ୍ୟ ପାର୍ଶ୍ୱରେ

ନିଶାଖୋର ଡ୍ରଗ୍ ଆଡ଼ିକ୍ଟମାନଙ୍କର ଆଡ୍ଡା । ସବୁ ହତ୍ୟା ଓ ଲୁଟ୍‌ପାଟ୍ ସେଠି ହୁଏ ବୋଲି ଆମକୁ ଗାଇଡ୍ କରୁଥିବା ପ୍ରଫେସର୍ ସତର୍କ କରିଦେଇ ଥାଆନ୍ତି । ସେଦିନ ସନ୍ଧ୍ୟାରେ ଆମ୍‌ଷ୍ଟ୍ରଡ଼ାମ୍‌କୁ ଦେଖିଲା ପରେ ମୁଁ ଓ ମୋ ସହଧର୍ମିଣୀ କେଜାଣି କାହିଁକି ବାନ୍ତି କରିବାର ତୀବ୍ର ଇଛା କରିଥିଲୁ । ସେ ନଗ୍ନ ଓ ଅବର୍ଣ୍ଣନୀୟ ଦୃଶ୍ୟ ଆମ ମନରେ ଅନେକ ଭାବାନ୍ତର ସୃଷ୍ଟି କରିଥିଲା । ଅନେକ ଡ଼େରିରେ ଆମେ ସେଦିନ ରାତିରେ ଫେରିଥିଲୁ କିନ୍ତୁ କେଉଁ ଏକ ଅଜଣା ଭୟ, ଉଦ୍‌ବେଳନ ଓ ଅଶାନ୍ତ ଚିନ୍ତାଧାରା ଆମକୁ ରାତ୍ରିସାରା ଶୋଇବାକୁ ଦେଇନଥିଲା । ଦେହ ଓ ରୂପକୁ କିପରି ଗୋରୁହାଟପରି ବିକ୍ରିବଟା କରାଯାଏ ତାହା ଆମେ ବୁଝିପାରୁ ନଥିଲୁ । ଆମ ଦେଶର ବମ୍ବେ କଲିକତା ଓ ଦିଲ୍ଲୀଭଳି ସହରମାନଙ୍କରେ ଏଇଭଳି ବେଶ୍ୟାଳୟ ସବୁ ରହିଛି ବୋଲି ଆମ ପ୍ରଫେସର ମତାମତ ଦେଇଥିଲେ ଓ ସାରା ପୃଥିବୀରେ ଏ ବେଶ୍ୟାବୃତ୍ତି କିଛି ନୂଆ ନୁହେଁ ବୋଲି ବିଭିନ୍ନ ଅଧ୍ୟୟନର ସହାୟତା ନେଇ ସେ ପ୍ରମାଣ କରୁଥିଲେ । ସେ ସପ୍ତାହରେ ଆମ ଗବେଷଣା ପ୍ରତିଷ୍ଠାନର ଦୁଇଜଣ ତରୁଣ ଗବେଷକ ଥାଇଲାଣ୍ଡର୍ 'ସେକ୍ସ ଟୁରିଜିମ୍' ଓ ନେପାଳର 'ମହିଳା ଟ୍ରାଫିକିଙ୍ଗ' ଉପରେ ଦୁଇଟି ସେମିନାର ଦେଇଥିଲେ ଓ ସେ ଦେଶମାନଙ୍କର ସାମାଜିକ, ଆର୍ଥିକ, ସାଂସ୍କୃତିକ ଓ ଆଇନ୍‌ଗତ ସ୍ଥିତିକୁ ବିଶ୍ଳେଷଣ କରି ପ୍ରମାଣ କରିବାକୁ ଚାହିଁଥିଲେ ଯେ ସ୍ୱେଚ୍ଛାରେ ମହିଳାମାନେ ବେଶ୍ୟାବୃତ୍ତି କ୍ୱଚିତ୍ କରିଥାଆନ୍ତି । ଅପହରଣ, ବଳପ୍ରୟୋଗ ଓ ପ୍ରଲୋଭନ ଜରିଆରେ ଗରିବ ବର୍ଗର ମହିଳାମାନଙ୍କୁ ବଶ କରି ବେଶ୍ୟାବୃତ୍ତିରେ ନିୟୋଜିତ କରାଯାଇଥାଏ । ଏହା ଏକ ସଂଗଠିତ ଅପରାଧ ଓ ମାନବାଧିକାର ଉଲଂଘନର ଜ୍ୱଳନ୍ତ ଉଦାହରଣ । ଅଶୀ ଦଶକରେ ଆମେ ଏ ସମସ୍ୟାକୁ ଭଲଭାବେ ବୁଝିପାରିଥିଲୁ । ଜଗତୀକରଣ ପ୍ରକ୍ରିୟା ଆରମ୍ଭପରେ ନବେଦଶକରେ ତାହା ଏତେ ଜଟିଳ ଓ ଅମାନବୀୟ ହୋଇପଡ଼ିଛି ଯେ ଏବେ ବୁଝିବା ସମ୍ଭବ ହେଉନାହିଁ । ବିଭିନ୍ନ ସ୍ତରରେ ଅଧ୍ୟୟନ ହେଉଛି ସତ, କିନ୍ତୁ କେଉଁଭଳି ଓ କେଉଁମାତ୍ରାରେ ମହିଳାମାନଙ୍କୁ ବେଶ୍ୟାବୃତ୍ତିରେ ବିନିଯୋଗ କରାଯାଉଛି ତାହାର ସଠିକ୍ ଅଟ୍‌କଳ କରାଯାଇ ପାରୁନାହିଁ । ଜାତିସଂଘର ଏକ ରିପୋର୍ଟରେ କୁହାଯାଇଛି ଯେ ବର୍ତ୍ତମାନ ମହିଳାମାନଙ୍କର ସ୍ଥାନାନ୍ତରୀକରଣ ଓ ଦେହ ଜନିତ ବ୍ୟବସାୟ ପାଞ୍ଚ ଲକ୍ଷ କୋଟି ଟଙ୍କାରୁ ଅଧିକ । ଆଉ ଏକ ଅଧ୍ୟୟନରେ କୁହାଯାଇଛି ଯେ ଯୌନ ବ୍ୟବସାୟ ପୃଥିବୀର ସାମରିକ ବଜେଟଠାରୁ ଅଧିକ । ଗୋଟାଏ ସ୍ଥାନରୁ ମହିଳାମାନଙ୍କୁ ଆଣି ଅନ୍ୟ ଏକ ସ୍ଥାନରେ ବିକ୍ରୟ କରିବାର

ଏକ ସ୍ୱୀକୃତ ରେଟ୍ ଅଛି । ପୂର୍ବ ଇୟୁରୋପ ତଥା ପୂର୍ବତନ ସୋଭିଏତ୍ ଋଷିଆର ମହିଳାମାନଙ୍କର ରେଟ୍ କୁଆଡେ ସର୍ବାଧିକ । ଷ୍ଟକ୍ ଏକ୍ସଚେଞ୍ଜ ଭଳି କିଣାବିକା ଲାଗିଥାଏ ।

ଦେହ ବ୍ୟବସାୟ ଏକ ଗୁରୁତର ଅପରାଧ ଓ ଏଥିରେ ସମ୍ପୃକ୍ତଥିବା ବ୍ୟକ୍ତିମାନେ ଅପରାଧି ଓ ସମାଜ ବିରୋଧୀ । କିନ୍ତୁ ଏ ଅପରାଧ ପଛରେ ଏତେ ଗୋପନୀୟତା ଅଛି ଓ ଗତ କେତେ ବର୍ଷ ଭିତରେ ଏହାର ବ୍ୟାପ୍ତି ଓ ମାତ୍ରା ଏତେ ବଢ଼ିଛି ଯେ ଯେତେ ଚେଷ୍ଟା କରିଲେ ମଧ ଏହାର ସବୁଦିଗକୁ ବୁଝିବା ସମ୍ଭବ ହେଉନାହିଁ । ଏଇଥିପାଇଁ ଏ ଆନ୍ତର୍ଜାତିକ ଅପରାଧକୁ ନିରାକରଣ କରିବା ଏକ କଷ୍ଟକର ବ୍ୟାପାର ହୋଇପଡ଼ିଛି ।

ମହିଳାମାନଙ୍କ 'ଟ୍ରାଫିକିଙ୍ଗ' ଏକ ନୂତନ କ୍ରୀତଦାସତ୍ୱର ପରିପ୍ରକାଶ । ଯେଉଁ ଢ଼ଙ୍ଗରେ ମହିଳାମାନଙ୍କୁ ଗୋଟିଏ ସ୍ଥାନ୍ ଆଣି ଅନ୍ୟ ସ୍ଥାନରେ କ୍ରୀତଦାସ ଭଳି ରଖାଯାଏ ତା'ପଛରେ କେତେ ପ୍ରକାରର କାରଣ ଅଛି । କିନ୍ତୁ ସର୍ବପ୍ରଥମ କାରଣ ହେଉଛି ମହିଳାମାନଙ୍କ ସମାଜିକ ଓ ଆର୍ଥିକ ଅସହାୟତା । ଏଇଥିପାଇଁ ସେମାନଙ୍କୁ ସହଜରେ ଶୋଷଣ ଓ ନିର୍ଯ୍ୟାତିତ କରିବା ସମ୍ଭବ ହୁଏ । 'ଟ୍ରାଫିକର୍'ମାନେ ଗରିବ ବର୍ଗର ମହିଳାମାନଙ୍କୁ ସହଜରେ କରଗତ କରି ଥାଆନ୍ତି । କେଉଁଠି ଅର୍ଥ ଲୋଭଥାଏ ତ କେଉଁଠି ବଳ ପ୍ରୟୋଗ କରାଯାଏ । କିନ୍ତୁ ମହିଳାଟି ଥରେ ଏ ଶୋଷଣର ଶିକାର ହେଲେ ଆଉ କେବେ ଯନ୍ତାରୁ ବାହାରି ପାରେନାହିଁ । ଯେତେବେଳେ ତାହାର ବଜାର ଦର କମିଯାଏ ଅଥବା ସେ ବ୍ୟବହାରଯୋଗ୍ୟ ବସ୍ତୁ ହୋଇ ରହେନାହିଁ, ଏକ ଅଦରକାରୀ ବସ୍ତୁ ହିସାବରେ ତାହାକୁ ଫିଙ୍ଗି ଦିଆଯାଏ ରାସ୍ତା କଡ଼ରେ । ଏହି କ୍ରୀତଦାସତ୍ୱ ପ୍ରକ୍ରିୟାର ଆରମ୍ଭ ଓ ଶେଷ ଏଇଭଳି ହୋଇଥାଏ ।

ଜଗତୀକରଣ ପ୍ରକ୍ରିୟାରେ ପୃଥିବୀର ବିଭିନ୍ନ ସ୍ଥାନ ବିଶେଷରେ ଶିଳ୍ପ କାରଖାନା ସବୁ ଗଢ଼ିଉଠୁଛି ଯେଉଁଠାରେ ଶ୍ରମିକ ଓ ମ୍ୟାନେଜର, ବିଶେଷଜ୍ଞ ଓ ପରାମର୍ଶଦାତାଙ୍କ ସଂଖ୍ୟା ଅଚାନକ ବଢ଼ିଯାଉଛି । ଏସବୁ ପୁରୁଷବହୁଳ ପରିବେଶରେ କାମନା ଓ ଦୈହିକ ଆବଶ୍ୟକତା ଏତେ ସବୁ ବଢ଼ିଯାଉଛି ଯେ ସେଠାରେ ମହିଳାମାନଙ୍କୁ ଆଣି ଦେହ ବ୍ୟବସାୟରେ ଲାଗାଇବା ଏକ ବ୍ୟବସାୟ ହୋଇଯାଉଛି । ଆଜି ପୃଥିବୀର ଶିଳ୍ପାଞ୍ଚଳକୁ ଦୃଷ୍ଟି ନିକ୍ଷେପ କରିଲେ ଏହା ସ୍ପଷ୍ଟ ଜଣାପଡୁଛି । ଏଇଥିପାଇଁ ଦକ୍ଷିଣ ପୂର୍ବ ଏସିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକାର ବିଭିନ୍ନ ଶିଳ୍ପାଞ୍ଚଳରେ ବେଶ୍ୟାଳୟ ବହୁ ସଂଖ୍ୟାରେ

ଖୋଲିବାରେ ଲାଗିଛି । ଏକ ଦ୍ରୁତଗାମୀ ଏବଂ ସମ୍ପ୍ରସାରିତ ଆର୍ଥିକ ବିକାଶର ଫଳାଫଳ ଏହା ନୁହେଁତ ଆଉ କ'ଣ ? ଏବେ କେତେଗୁଡ଼ିଏ ଉଦାହରଣ ନିଆଯାଉ । ବ୍ରିଟେନ୍, ଅଷ୍ଟ୍ରେଲିଆ ଓ ଜାପାନରେ ଗତ କେତେବର୍ଷରେ ଦେହ ବ୍ୟବସାୟ ଅନେକ ଗୁଣ ବଢ଼ିଯାଇଛି ଓ ମହିଳା ଓ ଅଳ୍ପ ବୟସ୍କ ଝିଅମାନଙ୍କୁ ଏଥିରେ ନିଯୋଜିତ କରାଯାଇଛି । ପୂର୍ବ ଓ କେନ୍ଦ୍ରୀୟ ଇୟୁରୋପରେ ଦେହ ବ୍ୟବସାୟ ବର୍ତ୍ତମାନ ସୀମା ଟପିଛି କାରଣ ସେ ଅଞ୍ଚଳରେ ବେପାର ବାଣିଜ୍ୟ ଜନିତ ଅର୍ଥନୀତି ବର୍ତ୍ତମାନ ସବୁ କିଛି ନିର୍ଦ୍ଧାରଣ କରୁଛି । କମ୍ୟୁନିଷ୍ଟ ଶାସନର ପତନ ପରେ ବେଶ୍ୟାବୃତ୍ତି ସେଠାରେ ବିସ୍ତାରିତ ହୋଇସାରିଛି । ଗତ କେତେବର୍ଷରେ ହଙ୍ଗେରୀ ଏ ଦେଶମାନଙ୍କରେ ଦେହ ବ୍ୟବସାୟର ପେଣ୍ଠସ୍ଥଳୀ ହୋଇଛି । ଦେହ ବ୍ୟବସାୟ ସହ ଅଶ୍ଳୀଳ ଓ ଯୌନସମ୍ବନ୍ଧୀୟ ବିଷୟ ବସ୍ତୁ ବା ପର୍ଣ୍ଣୋଗ୍ରାଫି ମଧ୍ୟ ଲାଭଜନକ ବ୍ୟବସାୟ ହିସାବରେ ପ୍ରତିଷ୍ଠା ଲାଭ କରିଛି । ଯୁକ୍ତରାଷ୍ଟ୍ର ଆମେରିକାରେ ବେଶ୍ୟାବୃତ୍ତି ଉପରେ ନିୟନ୍ତ୍ରଣ ଥିଲେ ମଧ୍ୟ ଇଣ୍ଟରନେଟ୍ ଜରିଆରେ ଏ ବ୍ୟବସାୟ ବହୁ ପରିମାଣରେ ବୃଦ୍ଧି ପାଇଛି । ଭିଏତ୍‌ନାମ୍, କାମ୍ବୋଡ଼ିଆ, ଚୀନ୍ ଆଦି ଦେଶରେ ଗତ ଦଶକରୁ ବେଶ୍ୟାବୃତ୍ତିର ଗ୍ରାଫ କ୍ରମଶଃ ବଢ଼ିବାରେ ଲାଗିଛି ଓ ଏହାପଛରେ ଜଗତୀକରଣ ମୁଖ୍ୟକାରଣ ହୋଇଛି । ଆଫ୍ରିକା ମହାଦେଶରେ ଗୃହଯୁଦ୍ଧ ଓ ବିଭିନ୍ନ ଆଭ୍ୟନ୍ତରୀଣ ସଂଘର୍ଷ ଅନେକଙ୍କୁ ବାସଚ୍ୟୁତ କରିଛି ଓ ତାହାର ପ୍ରଭାବ ସ୍ୱରୂପ ମହିଳାମାନଙ୍କୁ ଦେହ ବ୍ୟବସାୟରେ ଲଗାଇବା ସମ୍ଭବ ହୋଇପାରିଛି । ଆନ୍ତର୍ଜାତିକ ଶ୍ରମ ସଂଗଠନ ବା ଆଇ.ଏଲ.ଓ(ILO) ଇଣ୍ଡୋଚାଇନା, ଇଣ୍ଡୋନେସିଆ, ଥାଇଲାଣ୍ଡ ଓ କାମ୍ବୋଡ଼ିଆ ଆଦି ଦେଶମାନଙ୍କରେ ଅଧ୍ୟୟନ କରି ଯେଉଁ ତଥ୍ୟ ପ୍ରକାଶ କରିଛି ତାହା ନିଶ୍ଚିତ ଭାବେ ଚମକପ୍ରଦ । ଦେହ ବ୍ୟବସାୟରୁ ଇଣ୍ଡୋନେସିଆରେ ଆୟ ହେଉଛି ପ୍ରାୟ ତିନି ବିଲିୟନ୍ ଡ଼ଲାର ଅଥବା ବାରହଜାର କୋଟି ଟଙ୍କାରୁ ଊର୍ଦ୍ଧ୍ୱ । ଥାଇଲାଣ୍ଡରେ ପଚିଶ ବିଲିୟନ ଡ଼ଲାର ଅଥବା କୋଡ଼ିଏ ହଜାର କୋଟି ଟଙ୍କାରୁ ବେଶୀ । ଏ ଦେଶ ମାନଙ୍କରେ ବିଦେଶୀ ପର୍ଯ୍ୟଟକମାନଙ୍କୁ ଖୁସି କରିଲା ଭଳି ବେଶ୍ୟାଳୟ ପ୍ରତିଷ୍ଠା କରାଯାଇଛି । ଦେଶର ଆୟ ବଢୁଥିବା ହେତୁ, ସରକାରୀ ଓ ବେସରକାରୀ ସ୍ତରରେ ଏ ବ୍ୟବସାୟକୁ ପ୍ରୋତ୍ସାହନ ମିଳିଛି ।

ଇଣ୍ଟରନେଟ୍‌ରେ ପର୍ଣ୍ଣୋଗ୍ରାଫି ଅଶ୍ଳୀଳତା ଏତେ ମାତ୍ରାରେ ବଢ଼ିଛିଯେ ବର୍ତ୍ତମାନ ଏହା ଏକ ଲାଭଦାୟକ ବ୍ୟବସାୟରେ ପରିଣତ ହୋଇଛି । ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ମହିଳାମାନଙ୍କୁ ଏଥିରେ ନିଯୋଜିତ କରାଯାଇଛି । ଉଲଗ୍ନ ଦେହ ଓ

ଅନ୍ୟାନ୍ୟ ଉତ୍ତେଜନାକାରୀ ଦୃଶ୍ୟ ୱେବକ୍ୟାମ୍ ଜରିଆରେ ପ୍ରସାରିତ କରାଯାଉଛି । ଜଣେ ଦେହଜୀବୀ ନିଜ ଘରେ ବସି ସେ ଦୃଶ୍ୟରେ ଅଭିନୟ କରୁଛି ମାତ୍ର ସେ ଅଳ୍ପକିଛି ପାଉଣା ପାଉଛି । ଦଲାଲ୍‌ମାନଙ୍କ ପକେଟ୍‌କୁ ଏ ବ୍ୟବସାୟ ଲାଭାଂଶ ବିଶେଷଭାବେ ଯାଉଛି । କ୍ରେଡ଼ିଟ୍ କାର୍ଡ଼ ଜରିଆରେ ସବୁକିଛି ସମ୍ଭବ ହୋଇଛି । ଏକ ଅଧ୍ୟୟନରୁ ଜଣାପଡ଼ିଛିଯେ ୧୯୯୫ ମସିହାରେ ଦୁଇଶହରୁ ଉର୍ଦ୍ଧ୍ୱ ୱେବ୍‌ସାଇଟ୍ ବିଭିନ୍ନ ବାଟରେ ଲକ୍ଷ ଲକ୍ଷ ଉପଭୋକ୍ତାଙ୍କ ଯୌନକ୍ଷୁଧା ମେଣ୍ଟାଇବାକୁ ଉଦ୍ୟମରତ ହୋଇଛନ୍ତି । ସେମାନେ ଯୌନ ସମ୍ବନ୍ଧୀୟ କାମୋଦ୍ଦୀପକ ବିଭିନ୍ନ ସାମଗ୍ରୀ ମଧ୍ୟ ଇଣ୍ଟରନେଟ୍ ଜରିଆରେ ବିକ୍ରୟ କରିବାକୁ ଚାହିଁଛନ୍ତି । ୧୯୯୭ ମସିହାରେ ଏଇଭଳି ୱେବ୍‌ସାଇଟ୍‌ର ସଂଖ୍ୟା ଅଠେଇଶହ ହଜାରକୁ ବୃଦ୍ଧି ପାଇଛି । ଯୁକ୍ତରାଷ୍ଟ୍ର ଆମେରିକାରେ ଯେଉଁ ଇ-ବିଜିନେସ୍ ଚାଲିଛି ତାହାର ଶତକଡ଼ା ୬୦ ଭାଗ ହେଉଛି ଯୌନ ସମ୍ବନ୍ଧୀୟ ଏବଂ କେତେ ବିଲିୟନ ଡ଼ଲାର ପୁଞ୍ଜିକୁ ନେଇ ଏ ବ୍ୟବସାୟ ଚାଲିଛି । ଇଣ୍ଟରନେଟ୍ ଜରିଆରେ ମଧ୍ୟ ସେକ୍ସ ଟୁରିଜିମ୍ ବଢ଼ିଛି । ବିଭିନ୍ନ ନେଟ୍‌ୱାର୍କ ଜରିଆରେ ଖବର ଆଦାନପ୍ରଦାନ ହେଉଛି ଓ କେଉଁଠି କେଉଁଭଳି ସାମଗ୍ରୀ ମିଳୁଛି ତାହାର ସୂଚନା ମିଳୁଛି । ତଥ୍ୟ ସମ୍ବଳିତ ଟିକ୍କା ଟିପ୍ପଣୀ ମଧ୍ୟ ଦିଆଯାଉଛି । କୁହାଯାଉଛି ଯେ ଆଫ୍ରିକୀୟ ମହିଳାମାନେ ସେମାନଙ୍କର ଆଦିମତା ପାଇଁ ଉପଭୋଗ୍ୟ ବସ୍ତୁ ଭାବେ ଲୋକପ୍ରିୟ ଓ ଏସୀୟ ମହିଳାମାନେ ସେମାନଙ୍କର ବିନୟ ଓ ସମର୍ପଣ ଭାବ ପାଇଁ ଗ୍ରହଣ ଯୋଗ୍ୟ । ଲାଟିନ୍ ଆମେରିକାର ମହିଳାମାନେ କୁଆଡ଼େ କାମାତୁର ଓ ଇୟରୋପୀୟ ମହିଳାମାନେ କୁଆଡ଼େ ଲଗାମହୀନ । କେଉଁଠି ଯୌନବ୍ୟବସାୟ ସୁଲଭ ଓ ଦର ମୂଲଚାଲ ସମ୍ଭବ ତାହାର ସର୍ବଶେଷ ବିବରଣୀ ମିଳେ ଇଣ୍ଟରନେଟ୍‌ରୁ ।

ଯୌନ ବ୍ୟବସାୟ ବର୍ତ୍ତମାନ ବହୁରାଷ୍ଟ୍ରୀୟ ବାଣିଜ୍ୟ ସ୍ତରରେ ପହଞ୍ଚିଛି ବୋଲି ବିଭିନ୍ନ ଗବେଷଣାରୁ ଜଣାପଡ଼ିଛି । ଯେଉଁ ଦେଶକୁ ଅନ୍ୟଦେଶର ମହିଳାମାନେ ଦେଶାନ୍ତରୀ ହୋଇ ଆସୁଛନ୍ତି ତାଙ୍କୁ ଏହି ବ୍ୟବସାୟରେ ବିଶେଷଭାବେ ବିନିଯୋଗ କରାଯାଉଛି । ଡ଼େନ୍‌ମାର୍କ ହେଉ ବା ଥାଇଲାଣ୍ଡ ହେଉ, ବ୍ରିଟେନ୍ ବା ଜାପାନ ହେଉ, ସେ ଦେଶକୁ ଆସୁଥିବା ଅନ୍ୟଦେଶର ଅଳ୍ପବୟସ୍କା ମହିଳାମାନେ ଯୌନ ବ୍ୟବସାୟରେ ସ୍ୱଳ୍ପ ମଜୁରୀରେ ଦୀର୍ଘ ସମୟ ଧରି କାର୍ଯ୍ୟରତ ହେଉଛନ୍ତି । ଏହା ସେମାନଙ୍କର ଅସହାୟତାର ଅନ୍ୟ ଏକ ଉଦାହରଣ । ଆମ ଦେଶ ଭାରତକୁ ବହୁସଂଖ୍ୟାରେ ଆସୁଥିବା

ନେପାଳ ଓ ବଙ୍ଗଳା ଦେଶର ମହିଳାମାନେ ଏଇଭଳି ଶୋଷଣ ଓ ନିର୍ଯ୍ୟାତନାର ଶିକାର ହେଉଛନ୍ତି । ପୋଲାଣ୍ଡରେ ବୁଲଗାରିଆ ଦେଶର ମହିଳାମାନେ, କାମ୍ବୋଡ଼ିଆରେ ଭିଏତ୍‌ନାମ ମହିଳାମାନେ, ଭିଏତନାମ୍‌ରେ ଚୀନର ମହିଳାମାନେ । ଦକ୍ଷିଣ ଆଫ୍ରିକାରେ ମୋଜାମ୍ବିକ୍‌ର ମହିଳାମାନେ ଦେଶାନ୍ତରୀ ହୋଇ ଆସୁଥିବାରୁ ସେମାନେ ଶସ୍ତାରେ ଯୌନ ବ୍ୟବସାୟରେ ନିୟୋଜିତ କରିବାକୁ ଦଲାଲ୍ ଓ ଯୌନ ବ୍ୟବସାୟୀମାନେ ଅନାୟାସରେ ସକ୍ଷମ ହୋଇପାରୁଛନ୍ତି । ଇୟୁରୋପ ଓ ଆମେରିକାରେ ଏ ଚିତ୍ର ମଧ୍ୟ ଏକାଭଳି । ପଶ୍ଚିମ ଇୟୁରୋପକୁ ଯୌନ ବ୍ୟବସାୟ ପାଇଁ ଏବେ ଅଳ୍ପବୟସ୍କା ମହିଳାମାନେ ଲାଟିନ୍ ଆମେରିକା, କ୍ୟାରିବିଆନ୍, ସବ୍-ସାହାରା ଆଫ୍ରିକା, ଦୂରପ୍ରାଚ୍ୟ, ମଧ୍ୟ ଓ କେନ୍ଦ୍ରୀୟ ଇୟୁରୋପ ଏବଂ ପୂର୍ବତନ ସୋଭିଏତ୍ ଋଷିଆ ଦେଶମାନଙ୍କରୁ ବହୁ ସଂଖ୍ୟାରେ ଆସୁଛନ୍ତି । ଯୁକ୍ତରାଷ୍ଟ୍ର ଆମେରିକାକୁ ଆସୁଛନ୍ତି ଦକ୍ଷିଣପୂର୍ବ ଏସିଆ (ଥାଇଲାଣ୍ଡ ଓ ଫିଲପାଇନ୍‌ସ), ଲାଟିନ୍ ଆମେରିକା (ମେକ୍ସିକୋ, କଲମ୍ବିଆ, ବ୍ରାଜିଲ୍) ଉତ୍ତର ପଶ୍ଚିମ ଆଫ୍ରିକା (ମରୋକ୍‌କୋ, ନାଇଜେରିଆ) ଅଞ୍ଚଳରୁ । ବର୍ତ୍ତମାନ ଯୌନ ବ୍ୟବସାୟ ପୃଥିବୀସାରା ବହୁରାଷ୍ଟ୍ରୀୟ ଓ ବହୁ ଜାତୀୟ ବ୍ୟବସାୟରେ ପରିଣତ ହୋଇ ସାରିଛି । 'ଆଣ୍ଟିସ୍ଲେଭେରି ଇଣ୍ଟରନ୍ୟାସ୍‌ନାଲ୍' ନାମକ ଏକ ସ୍ୱୟଂସେବୀ ସଂସ୍ଥା କେଉଁ ଦେଶରୁ କେତେଜଣ ମହିଳା ଯୌନ ବ୍ୟବସାୟରେ ଜଡ଼ିତ ଅଛନ୍ତି ତାହାର ସର୍ବେକ୍ଷଣ କରିବାକୁ ଚେଷ୍ଟାକରି ବିଭିନ୍ନ ସମୟରେ ବିଭିନ୍ନ ପରିସଂଖ୍ୟାନ ପ୍ରକାଶ କରୁଛନ୍ତି ଓ ତାହା ଜଣେ ପଢ଼ିଲେ ଓ ବୁଝିଲେ ଜଗତୀକରଣର କି ପ୍ରଭାବ ଏ ସମାଜ ଓ ସଭ୍ୟତାରେ ପଡ଼ିସାରିଲାଣି ହୃଦୟଙ୍ଗମ କରିବାକୁ ମୂହୁର୍ତ୍ତେ ମଧ୍ୟ ସମୟ ଲାଗିବ ନାହିଁ ।

## (୨)

ଗଣିକା ଓ ଦେହଜୀବୀମାନଙ୍କର ଜୀବନ ଜୀବିକାକୁ ନେଇ ସାରା ପୃଥିବୀରେ ଅନେକ ତର୍କ ବିତର୍କ ଚାଲିଛି । ଗୋଟାଏ ଗୋଷ୍ଠୀ କହୁଛନ୍ତି ଯେ ଏ ବ୍ୟବସାୟ ପୂରାପୂରି ବନ୍ଦ ହେଉ । ଆଉ ଗୋଟିଏ ଗୋଷ୍ଠୀ କହୁଛନ୍ତି ଯେ ଏ ବ୍ୟବସାୟ ବନ୍ଦ ହେଲେ କେତେ କୋଟି ମହିଳା ଓ ତାଙ୍କର ପରିବାର ପେଟ ଅପୋଷା ରହିବ । ବହୁସ୍ଥାନରେ ଦେହଜୀବୀ ଓ ରୂପଜୀବୀମାନେ ସେମାନଙ୍କର ବୃତ୍ତିକୁ ସମ୍ମାନ ଦିଆଯାଉ ବୋଲି ଦାବିକରି ରାଜରାସ୍ତାକୁ ଓହ୍ଲାଇଛନ୍ତି । ଏ ସଭ୍ୟତାର ସର୍ବପ୍ରାଚୀନ ଧନ୍ଦାକୁ ମାନ୍ୟତା ଦିଆଯିବାକୁ

ଆଇନ୍ କାନୁନ୍ ତିଆରି କରାଯାଉ ବୋଲି ମଧ୍ୟ କେବଳ ଗଣିକାମାନେ ନୁହଁନ୍ତି, ଅନେକ ସକ୍ରିୟ ମହିଳା ସଂଗଠନ ନାଗରିକ ସମାଜ ଓ ରାଜନୈତିକ ମଞ୍ଚ ମଧ୍ୟ ଯୁକ୍ତି ବାଢ଼ିଛନ୍ତି । ଯେତେବେଳେ ଚୀନ୍‌ର ବେଜିଂଠାରେ ୧୯୯୫ ମସିହାରେ ୪ର୍ଥବିଶ୍ୱ ମହିଳା ସମ୍ମିଳନୀ ଆୟୋଜିତ କରାଯାଇଥିଲା, ସେଠାରେ ମହିଳାମାନଙ୍କର 'ଟ୍ରାଫିକିଙ୍ଗ୍'କୁ ନେଇ ଅନେକ ନିଷ୍ପତ୍ତି ନିଆଯାଇଥିଲା ଓ ତାହାର ସାରାଂଶ ମୁଁ ନିମ୍ନରେ ଦେଉଛି । 'ବିଭିନ୍ନ ଦେଶର ସରକାରମାନେ ଏ 'ଟ୍ରାଫିକିଙ୍ଗ୍'କୁ ସମୂଳେ ବନ୍ଦ କରିବା ପାଇଁ ନିମ୍ନଲିଖିତ ପଦକ୍ଷେପ ନେବେ:

୧) ସାରା ବିଶ୍ୱରେ ମହିଳାଙ୍କ 'ଟ୍ରାଫିକିଙ୍ଗ୍' ଓ କ୍ରୀତଦାସତ୍ୱକୁ ଦୂର କରିବା ପାଇଁ ଯେଉଁସବୁ ନିଷ୍ପତ୍ତିମାନ ନିଆଯାଇଛି ତା'କୁ ସମ୍ମାନ ଦେବା । (୨) ଏହାର ମୂଳ କାରଣକୁ ଖୋଜି ଯେଉଁ ପ୍ରକ୍ରିୟା ହେତୁ 'ଟ୍ରାଫିକିଙ୍ଗ୍' (ବିଶେଷକରି ବେଶ୍ୟାବୃତ୍ତି ପାଇଁ) ବଢୁଛି ତାହାର ନିରାକରଣ ପାଇଁ ଆଇନ୍ କାନୁନ୍ ପ୍ରସ୍ତୁତ କରିବା । (୩) ପୃଥିବୀରେ ମହିଳାଙ୍କ 'ଟ୍ରାଫିକିଙ୍ଗ୍'କୁ ବନ୍ଦ କରିବା ପାଇଁ ଯେତେ ନେଟ୍‌ୱାର୍କ ଅଛି ତାହାକୁ ସଂଗଠିତ ଓ ଏକତ୍ରିତ କରିବା । (୪) ଯେଉଁ ମହିଳାମାନେ 'ଟ୍ରାଫିକିଙ୍ଗ୍' ଦ୍ୱାରା ନିର୍ଯାତିତ ଓ ନିଷ୍ପେସିତ, ସେମାନଙ୍କୁ ଥଇଥାନ କରିବା । ଧନ୍ଦାମୂଳକ ପ୍ରଶିକ୍ଷଣ ଦେବା ସହ ଆଇନ୍ ସହାୟତା ମଧ୍ୟ ଦେବାକୁ ବ୍ୟବସ୍ଥା କରିବା । ଏହାଛଡ଼ା 'ଟ୍ରାଫିକିଙ୍ଗ୍'ର ଶିକାର ହୋଇଥିବା ସାମଗ୍ରିକ ଭାବେ ସାମାଜିକ ମହିଳାମାନଙ୍କୁ ସ୍ୱାସ୍ଥ୍ୟ ଓ ମାନସିକ ସେବା ଓ ସହାୟତା ପ୍ରଦାନ କରିବା ।

ଏ ଭିତରେ ଦଶବର୍ଷ ବିତି ଯାଇଛି । ଏସବୁ ଭଲ ଲାଗୁଥିବା ଓ ଭଲ ଶୁଭୁଥିବା ନିଷ୍ପତ୍ତିଗୁଡ଼ିକ କେତେ କାର୍ଯ୍ୟକାରୀ ହୋଇଛି ଓ କେତେ ଗୁରୁତ୍ୱ ଦିଆଯାଇଛି ତାହା ବିଚାରକୁ ନେଲେ ମନକୁ ସ୍ୱତଃ ଦୁଃଖ ଆସିଯାଉଛି । କାରଣ ଜଗତୀକରଣ ପ୍ରକ୍ରିୟାରେ 'ଟ୍ରାଫିକିଙ୍ଗ୍'ର ସଂଖ୍ୟା ଓ ସୀମା କେବଳ ବଢ଼ିବାରେ ଲାଗିଛି । କୌଣସି କ୍ଷେତ୍ରରେ କମିନାହିଁ । ଏକ ପରିସଂଖ୍ୟାନରୁ ଜଣା ପଡ଼ିଥିଲା ଯେ ୨୦୦୦ ମସିହାରେ ଏସିଆରୁ ୨୫୦,୦୦୦, ପୂର୍ବତନ ସୋଭିଏତ୍ ରାଜ୍ୟମାନଙ୍କରୁ ୧୦୦,୦୦୦, ଲାଟିନ୍ ଆମେରିକାରୁ ୧୦୦,୦୦୦, ପୂର୍ବ ୟୁରୋପରୁ ୭୫,୦୦୦ ଏବଂ ଆଫ୍ରିକାରୁ ୫୦,୦୦୦ ମହିଳାଙ୍କୁ ନିଜ ଦେଶରୁ ଅନ୍ୟଦେଶକୁ ବିଭିନ୍ନ ବାଟରେ ନିଆଯାଇ ମୁଖ୍ୟତଃ ଯୌନ ବ୍ୟବସାୟରେ ଲାଗାଯାଇଥିଲା । ସେମାନଙ୍କୁ ପର୍ଯ୍ୟଟନସ୍ଥଳୀ ଅଥବା ସାମରିକ ଘାଟିମାନଙ୍କୁ ନିଆଯାଇ କ୍ରୀତଦାସ ଭଳି ରଖା ଯାଇଥିଲା ।

ଯେଉଁ ଦଲାଲମାନେ ମହିଳା ଓ ତରୁଣୀମାନଙ୍କୁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଚାଲାଣ କରନ୍ତି, ସେମାନେ ବିଭିନ୍ନ ପନ୍ଥା ଅବଲମ୍ବନ କରିଥାଆନ୍ତି । କେତେକ ମନଲୋଭା କଥା ବା ମଧୁର ବଚନ କହି ଆକର୍ଷଣ କରୁଥିବାବେଳେ ଅନ୍ୟମାନଙ୍କୁ ଏକ ନୂଆ ଦେଶ ଓ ସ୍ଥାନର ବର୍ଣ୍ଣନା, ଉତ୍ତମ ସୁବିଧା ଓ ସୁଯୋଗ, କର୍ମ ଓ ପରିବେଶ ସମ୍ପର୍କରେ ଅତିରଞ୍ଜିତ ବିବରଣୀ ଦେଇଥାଆନ୍ତି । କେତେକ ଦଲାଲ୍ ଖବରକାଗଜରେ ବିଜ୍ଞାପନ ଦେଇଥାଆନ୍ତି । କେତେକ ବିବାହ ସମ୍ପର୍କ ଯୋଗାଡ଼ କରୁଥିବା ଯୋଗସୂତ୍ରକାରୀ ସଂସ୍ଥା ମଧ୍ୟ ବିଜ୍ଞାପନର ମାଧ୍ୟମ ବ୍ୟବହାର କରି ଅବିବାହିତା ମହିଳା ଓ ଅଳ୍ପ ବୟସ୍କା ତରୁଣୀମାନଙ୍କୁ ତାଙ୍କ ଜାଲରେ ପକାଇ ଥାଆନ୍ତି । କେତେକ ମହିଳା ଋଣଗ୍ରସ୍ତ ହୋଇ ଦେଶାନ୍ତରୀ ହେବାକୁ ବାଧ୍ୟ ହୋଇଥାଆନ୍ତି । ଆଶାଥାଏ ଯେ ଋଣ ଶୁଝିବା ସମ୍ଭବ ହେବ । ଆର୍ଥିକ ଚାପ ଓ କ୍ଷୁଧାର ତାଡ଼ନା ଏତେ ଅଧିକ ହୋଇଯାଏ ଯେ ଜଣେ ନିଜକୁ ଗୋଟାପଣେ ସମର୍ପଣ କରିବାକୁ ବାଧ୍ୟ ହୋଇଥାଏ । ସାମଗ୍ରିକ ଭାବେ ଦେଖିଲେ ଜଣାପଡ଼େ ଯେ ଦାରିଦ୍ର୍ୟ, ବେକାରୀ, ନିରକ୍ଷରତା, ଜୀବିକା ପାଇଁ ସମ୍ବଳ ଆୟୋଜନର ଅଭାବ ମହିଳାମାନଙ୍କୁ ଯୌନ ବ୍ୟବସାୟ ପାଇଁ ଦେଶାନ୍ତରୀ ହେବାକୁ ବାଧ୍ୟ କରିଥାଏ । ବେଳେବେଳେ ଏ ବ୍ୟବସାୟରେ ଜଣେ ଦଲାଲ୍ ଆଉଜଣେ ବଡ଼ ଚାଲାଣକରି ଆଣିଥିବା ଦଲାଲ୍‌କୁ ମହିଳାମାନଙ୍କୁ ବିକ୍ରୟ କରି ବେଶ୍ ଲାଭ ଉଠାଇଥାଏ, ଯେପରିକି ମହିଳାମାନେ ବେପାର ଯୋଗ୍ୟ ବସ୍ତୁ । ଜଣକ ହାତରୁ ଆଉ ଜଣଙ୍କ ହାତକୁ ଗଲେ ଦର ବଢ଼ିଯିବ । ମହିଳାମାନଙ୍କୁ ନାନା ପ୍ରକାର ହିଂସକ ଅତ୍ୟାଚାରର ସମ୍ମୁଖୀନ ହେବାକୁ ପଡ଼ିଥାଏ । ପାସ୍‌ପୋର୍ଟ ଜବତ କରାଯାଏ । ଶାରୀରିକ ଓ ମାନସିକ ଉତ୍ପୀଡ଼ନ, ଧର୍ଷଣ, ଶାରୀରିକ ନିର୍ଯାତନା ପୁଲିସ୍‌କୁ ହସ୍ତାନ୍ତର ଆଦିର ଧମକ ଦିଆଯାଇଥାଏ । ସ୍ୱଦେଶ ପ୍ରତ୍ୟାବର୍ତ୍ତନର ଭୟ ମଧ୍ୟ ସୃଷ୍ଟି କରାଯାଇ ମହିଳାମାନଙ୍କର ମନୋବଳ ଭାଙ୍ଗି ଦିଆଯାଏ । ଯେତେବେଳେ ଅସହାୟା ମହିଳାଟି ବାହାରର ପୃଥିବୀରୁ ଅଲଗା ହୋଇଯାଏ ଏବଂ ଏକ ଅଜଣା ଦେଶ, ଅଜଣା ପରିବେଶ ଅଜଣା ଭାଷା ସବୁ ତା’ ପାଇଁ ଭୟାନକ ଭାବନା ସୃଷ୍ଟିକରେ । ସେତେବେଳେ ନିଜଦେଶକୁ ଏକ ଅକୁହା ଗ୍ଲାନି ନେଇ ଫେରିବାକୁ ଆଉ ଇଚ୍ଛାହୁଏ ନାହିଁ । ବାଧ୍ୟତଃ ମହିଳାଟି କ୍ରୀତଦାସତ୍ୱକୁ ଶ୍ରେୟସ୍କର ମାନେ । ଶେଷରେ ମରିହଜି ଯାଏ ।

ଆଗରୁ କହି ରଖିଛି ଯେ ଯୌନ ବ୍ୟବସାୟ ହେଉଛି ମାନବାଧିକାରର ଭୟଙ୍କର ଉଲଂଘନ । ଏଥିରେ ଲିପ୍ତ ହୋଇଥିବା ମହିଳାମାନେ ଯେଉଁ ମୌଳିକ ମାନବାଧିକାର

ହରାଇ ବସନ୍ତି ସେଗୁଡ଼ିକ ହେଲା- (କ) ଜୀବନ ଓ ଜୀବିକାର ଅଧିକାର (ଖ) ମୁକ୍ତି ଓ ମାନବିକ ସ୍ୱାଧୀନତାର ଅଧିକାର (ଗ) ନିର୍ଯାତନା ଓ ନିଷ୍ଠୁରତାରୁ ମୁକ୍ତି ପାଇବାର ଅଧିକାର (ଘ) ଘର ଓ ପରିବାର ବସାଇବାର ଅଧିକାର (ଙ) ଶିକ୍ଷା ଅଧିକାର (ଚ) ସ୍ୱାସ୍ଥ୍ୟ ସେବାର ଅଧିକାର । ପ୍ରତ୍ୟେକଟି ଅଧିକାର ଭଙ୍ଗ ହେବା ପଛରେ କାରଣ ଅଛି ଓ ଅଛି ବିଶ୍ଳେଷଣ । ଏ ପୃଥିବୀର ନାଗରିକ ଯିଏ, ପୁରୁଷ ବା ସ୍ତ୍ରୀ ତାହାର ସର୍ବନିମ୍ନ ସାର୍ବଜନୀନ ମାନବାଧିକାର ରହିଛି । ସେ ଯେଉଁଠିନା କାହିଁକି ଥାଉ, ସେଇଠି ସେ ନିଜର ଅଧିକାରରୁ ବଞ୍ଚିତ ହେବା କଥା ନୁହେଁ । ଜଣେ ମହିଳା ନିଜର ଭିଟାମାଟି ଛାଡ଼ି ଅନ୍ୟତ୍ର ଚାଲିଗଲେ ପ୍ରଥମେ ନିଜର ଜୀବନ ଓ ଜୀବିକା ଉପରେ ନିୟନ୍ତ୍ରଣ ହରାଇବସେ । ଯେଉଁମାନେ ଯୌନ ବ୍ୟବସାୟରେ କ୍ରୀତଦାସ ଭଳି ରହିଥାଆନ୍ତି, ନାଁ ଥାଏ ସେମାନଙ୍କର ଜୀବନର ଅର୍ଥ ବା ଜୀବିକାର ସୁଯୋଗ । ସେଇଭଳି ଏ ନିଷ୍ଠୁର ଅମାନୁଷିକ ଯନ୍ତ୍ରଣାରୁ ତାହାକୁ ରକ୍ଷାମିଳେ ନାହିଁ ବା କାହା ଆଗରେ ସେ ନିଜର ଦୁଃଖ କହିପାରେ ନାହିଁ । ସବୁଠାରୁ ଅଧିକ ଗୁରୁତର କଥା ହୁଏ ଏ ମହିଳାମାନଙ୍କ ସ୍ୱାସ୍ଥ୍ୟବସ୍ଥା । ମହିଳାମାନେ ବେଶୀ ମାତ୍ରାରେ ସ୍ୱାସ୍ଥ୍ୟଜନିତ ସମସ୍ୟାର ସମ୍ମୁଖୀନ ହୁଅନ୍ତି । ଏହା ଉଭୟ ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟ ସମ୍ବନ୍ଧିତ । ମହିଳାମାନଙ୍କ ପ୍ରଜନନ ଜନିତ ସ୍ୱାସ୍ଥ୍ୟ ବେଶୀ ପ୍ରଭାବିତ ହୋଇଥାଏ । ଜନ୍ମ ନିୟନ୍ତ୍ରଣ ପାଇଁ କୌଣସି ବ୍ୟବସ୍ଥା ନଥାଏ । କ୍ରମାଗତ ଧର୍ଷଣ ଓ ଇଚ୍ଛା ବିରୁଦ୍ଧରେ ସମ୍ଭୋଗ, ଗର୍ଭପାତ ଆଦି ସମସ୍ୟାର ବୋଟ୍‌ରେ ଯେଉଁ ସ୍ୱାସ୍ଥ୍ୟହାନୀ ଘଟେ ତାହାର ଉପଚାର ହୋଇ ପାରେନାହିଁ । ଯୌନ ରୋଗ ଓ ଏଡ଼ସ୍ ବେମାରୀ ଦ୍ୱାରା ସଂକ୍ରମିତ ହେବା ବହୁଳ ଭାବେ ଦେଖାଯାଏ । କ୍ରମାଗତ ନିର୍ଯ୍ୟାତନା ଓ ଶାରୀରିକ ଯନ୍ତ୍ରଣା ଦ୍ୱାରା ଯୌନ ବ୍ୟବସାୟରେ ସମ୍ପୃକ୍ତ ଥିବା ମହିଳାମାନେ ଗୋଟାଏ ପ୍ରକାରର ଲକ୍ଷଣ ଦେଖାଇ ଥାଆନ୍ତି । ତାହା ଡ଼ାକ୍ତରଙ୍କ ଭାଷାରେ କୁହଯାଏ ପୋଷ୍ଟ-ଟ୍ରମାଟିକ ଷ୍ଟ୍ରେସ୍ । ଏହାର ଚିକିତ୍ସା ଡ଼ାକ୍ତରମାନେ ଜାଣିଥିବେ । ଗଣିକାମାନଙ୍କ ପାଖରେ ଅର୍ଥ କାହିଁ ?

ଜଗତୀକରଣ ପ୍ରକ୍ରିୟାର ପ୍ରଭାବ ଫଳରେ ଯୌନ ବ୍ୟବସାୟ ଏକ ଶିଳ୍ପ ରୂପେ ପରିଗଣିତ ହୋଇଛି । ଗତକାଲି ଅର୍ଥାତ ଜଗତୀକରଣ ଆରମ୍ଭ ହେବାପୂର୍ବରୁ ଗଣିକା ଓ ଗଣିକାଳୟ ଯେଉଁଭଳି ବୁଝାଯାଉଥିଲା ଆଜି ତାହାର ସଜ୍ଞା ଓ ସ୍ଥିତି ସମ୍ପୂର୍ଣ୍ଣ ବଦଳିଯାଇଛି । ଯାହା ପାଖରେ ଅର୍ଥ ଅଛି ସେ ଖୋଜୁଛି ଅଳ୍ପ ବୟସ୍କା, ଆକର୍ଷଣୀୟ ଓ

ସ୍ୱତନ୍ତ୍ର ରୂପ ଓ ଦେହ ଥିବା ମହିଳାମାନଙ୍କୁ । ଏପରିକି ଅପ୍ରାପ୍ତ ବୟସ୍କା ଝିଅମାନଙ୍କୁ ଏ ଯୌନ ବ୍ୟବସାୟରେ ବ୍ୟାପକ ଭାବେ ବ୍ୟବହାର କରାଯାଉଛି । ଯୌନ ପିପାସୁ ଧନୀବର୍ଗଙ୍କ କାମନାର ଲେଲିହାନ ଶିଖାରେ କେତେଯେ ନିଷ୍ପାପ ପ୍ରାଣ ଜଳି ଭସ୍ମ ହୋଇଯାଉଛନ୍ତି ଆଜି ତାହାର ହିସାବ ନାହିଁ ।

ଆକାର ଓ ପ୍ରକାର, ଲମ୍ବା ଓ ଚୌଡ଼ାର କ୍ରମବର୍ଦ୍ଧିଷ୍ଣୁ ଯୌନ ବ୍ୟବସାୟ ପଛରେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଯେତିକି ଭୂମିକା ଅଛି ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାକୋଷ ଆଦି ସଂସ୍ଥାମାନଙ୍କର ହାତ ସେତିକି ଅଛି । କାରଣ 'ପର୍ଯ୍ୟଟନ'ର ସଜ୍ଞା ଆଜି ବଦଳି ଯାଇ ଶିଳ୍ପରେ ପରିଣତ ହୋଇଛି ଓ ସେ ଶିଳ୍ପରେ ପୁଞ୍ଜିନିବେଶର ଆବଶ୍ୟକତା ରହିଛି ଓ ପୁଞ୍ଜିନିବେଶ ପଛରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଯୌନ କାରବାର ବୃଦ୍ଧିର ଯୋଜନା ଓ ଲାଭକାରୀ କାର୍ଯ୍ୟକ୍ରମର ପରିକଳ୍ପନା କରାଯାଉଛି । ବିଭିନ୍ନ ମହାଦେଶର ଗରିବ ଦେଶମାନେ ଏ ପର୍ଯ୍ୟଟନ ଶିଳ୍ପପ୍ରତି ଆଗ୍ରହ ପ୍ରକାଶ କରିବାର ଉଦ୍ଦେଶ୍ୟ ହେଉଛି ଯେ ଯଦି ଯୌନ ବ୍ୟବସାୟ ଜନିତ ଆୟ ବଢ଼ିବ ତାହାହେଲେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ଋଣ ପଇଠ କରିହେବ । ନେପାଳ, ବଙ୍ଗଳାଦେଶ, ଥାଇଲାଣ୍ଡ ଆଦି ଦେଶମାନଙ୍କରେ ଏହିଭଳି ଉପାୟ ସରକାରୀ ସ୍ତରରେ ଅବଲମ୍ବନ କରାଯାଉଛି । ଜଗତୀକରଣର ପ୍ରଭାବରେ କେଉଁମାନେ ବେଶୀ ଶିକାର ହୁଅନ୍ତି ? ଅଧ୍ୟୟନରୁ ଜଣାପଡ଼ିଛି ଯେ ଗୋଟିଏ ଦେଶରୁ ଯୌନ ବ୍ୟବସାୟ ପାଇଁ ସ୍ଥାନାନ୍ତରୀକରଣ ହେଉଥିବା ମହିଳାଙ୍କ ଭିତରେ ଅନେକ ଥାଆନ୍ତି ଅବହେଳିତ ଆଦିବାସୀ ସମ୍ପ୍ରଦାୟ । କାରଣ ଏଇ ବର୍ଗର ମହିଳାମାନେ ଏହି ଶିଳ୍ପ ପାଇଁ ସହଜରେ କଞ୍ଚାମାଲରେ ପରିଣତ ହୋଇଯାଆନ୍ତି । ବିକଶିତ ଦେଶର ପୁରୁଷଙ୍କ ପାଇଁ ଅବିକଶିତ ଦେଶର ମହିଳାମାନେ ଯେମିତି ରାତାରାତି ଉପଭୋଗ୍ୟର ବସ୍ତୁ ହୋଇଯାଆନ୍ତି । ଏକଥା ଦେଖାଦେଇଛି ପୂର୍ବତନ ସୋଭିଏତ୍ ମହାସଂଘର ଥିବା ଦେଶମାନଙ୍କରେ । ନେପାଳ ବା ଥାଇଲାଣ୍ଡର ପାର୍ବତ୍ୟ ଇଲାକାରେ ଥିବା ଅନୁନ୍ନତ ଆଦିବାସୀମାନେ 'ନୂତନ ଶିଳ୍ପର ନୂତନ କଞ୍ଚାମାଲ'ରେ ପରିଗଣିତ ହୋଇଥାଆନ୍ତି ଓ ଏ ଶିଳ୍ପର ମୁଖ୍ୟମାନେ କେବଳ ଉପଭୋଗ୍ୟର ବସ୍ତୁ ପାଆନ୍ତି ନାହିଁ, ପାଆନ୍ତି ସେବା ମଧ୍ୟ । ଏ ଘୃଣ୍ୟ 'ଗୁଡ୍‌ସ ଏବଂ ସର୍ଭିସେସ୍' କଥା ଭାବିଲେ ଜଗତୀକରଣ ପ୍ରକ୍ରିୟାକୁ ବିରୋଧ କରିବାକୁ ପ୍ରତ୍ୟେକ ସଚେତନ ବ୍ୟକ୍ତି ପ୍ରୟାସ କରିବେ । ଆପଣ କୁହନ୍ତୁ, କରିବେକି ନାହିଁ ?

## ସମସ୍ୟା ବଢୁଛି ଓ ସମାଧାନର ରାସ୍ତା କ'ଣ ?

୧୯୯୮ ମସିହାରେ ଜାତିସଂଘର ମାନବାଧିକାର ହାଇକମିଶନର ଏ ସମସ୍ୟା କେତେ ଗୁରୁତର ତାହା ବିଶ୍ୱବାସୀଙ୍କ ସମ୍ମୁଖରେ ଉପସ୍ଥାପନା କରିଥିଲେ । ଦକ୍ଷିଣ ଏସିଆରେ ଥିବା ସାର୍କ ଦେଶମାନେ ମଧ୍ୟ ଏକ ନିଷ୍ପତ୍ତି ନେଇ 'ଟ୍ରାଫିକିଙ୍ଗ୍' ଉପରେ ଅଙ୍କୁଶ ଲଗାଇବାର ପ୍ରୟାସ କରିଥିଲେ । କିନ୍ତୁ ଆନ୍ତର୍ଜାତିକ ସ୍ତରରେ ବିଭିନ୍ନ ସମୟରେ ଏ 'ଟ୍ରାଫିକିଙ୍ଗ୍'କୁ ଗୁରୁତର ସହ ବିଚାର କରିବାକୁ ବିଭିନ୍ନ ସମ୍ମିଳନୀ ହୋଇ ଆସିଛି । ପ୍ରଥମ ସମ୍ମିଳନୀ ହୋଇଥିଲା ୧୯୦୪ ମସିହାରେ । ତା'ପରେ ପରେ ୧୯୧୦, ୧୯୨୧ ଓ ୧୯୩୩ ମସିହାରେ ଏହି ଆନ୍ତର୍ଜାତିକ ସମ୍ମିଳନୀ ଆୟୋଜିତ ହୋଇଛି । ଜାତିସଂଘ ପ୍ରତିଷ୍ଠା ହେଲାପରେ ଏହାର ଆନୁକୂଲ୍ୟରେ ୧୯୪୯ ମସିହାରେ ଏକ ଆନ୍ତର୍ଜାତିକ ସମ୍ମିଳନୀ ଆୟୋଜିତ ହୋଇ 'ଟ୍ରାଫିକିଙ୍ଗ୍' ଓ ତତ୍‌ଜନିତ ଶୋଷଣ ପ୍ରକ୍ରିୟା ଆଲୋଚିତ ହୋଇଥିଲା ଓ ପୃଥିବୀ ସାରା ବିଭିନ୍ନ ପ୍ରକାର ପଦକ୍ଷେପ ନେବାକୁ ପ୍ରସ୍ତାବ ଦିଆଯାଇଥିଲା । ଏହା ଛଡ଼ା ବିଭିନ୍ନ ପ୍ରକାର ଆନ୍ତର୍ଜାତିକ ନିଷ୍ପତ୍ତି ଏହି 'ଟ୍ରାଫିକିଙ୍ଗ୍' ହ୍ରାସ କରିବା ପାଇଁ ମଧ୍ୟ ବିଭିନ୍ନ ସମୟରେ ନିଆ ଯାଇଥିଲା । ସେଗୁଡ଼ିକ ହେଲା- (୧) ସାର୍ବଜନୀନ ମାନବାଧିକାର ଘୋଷଣାନାମା (୨) ନାଗରିକ ଓ ରାଜନୈତିକ ଅଧିକାର ସମ୍ବନ୍ଧୀୟ ଆନ୍ତର୍ଜାତିକ ଅଙ୍ଗୀକାରନାମା (୩) ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଅଧିକାର ସମ୍ବନ୍ଧୀୟ ଆନ୍ତର୍ଜାତିକ ଅଙ୍ଗୀକାରନାମା (୪) ମହିଳାମାନଙ୍କ ବିରୁଦ୍ଧରେ ପକ୍ଷପାତିତା ସମ୍ବନ୍ଧୀୟ ଆନ୍ତର୍ଜାତିକ ଘୋଷଣାନାମା (୫) ଅତ୍ୟାଚାର ଓ ନିଷ୍ଠୁରତା ବିରୋଧରେ ଆନ୍ତର୍ଜାତିକ ଘୋଷଣାନାମା (୬) ଦେଶାନ୍ତରୀ ହେଉଥିବା ଶ୍ରମିକ ସୁରକ୍ଷା ସମ୍ବନ୍ଧୀୟ ଘୋଷଣାନାମା (୭) କ୍ରୀତଦାସ ବିରୋଧରେ ଆନ୍ତର୍ଜାତିକ ସମ୍ମିଳନୀ (୮) ଆନ୍ତର୍ଜାତିକ ଶ୍ରମ ସଂଗଠନର ବେଠି ବେଗାରି ବିରୋଧି ଘୋଷଣାନାମା ଆଦି ଅନେକ କିଛି । ୪ର୍ଥ ବିଶ୍ୱ ମହିଳା ସମ୍ମିଳନୀ ମଧ୍ୟ 'ଟ୍ରାଫିକିଙ୍ଗ୍' ଓ ଯୌନ ବ୍ୟବସାୟ ଉପରେ ଐତିହାସିକ ନିଷ୍ପତ୍ତି ନେଇଥିବା କଥା ମୁଁ ଆଗରୁ ଉଲ୍ଲେଖ କରିଛି ।

କିନ୍ତୁ ଅସଲ କ୍ଷେତ୍ରରେ ଏହି ଆନ୍ତର୍ଜାତିକ ଘୋଷଣାନାମା ପାଣିରଗାରରେ ପରିଣତ ହୋଇଛି ସାରା ବିଶ୍ୱରେ । ଏହାର ମୂଳ କାରଣ ହେଲା ଜଗତୀକରଣ । ସବୁଠାରୁ ଦୁଃଖର କଥା ଯେ 'ଟ୍ରାଫିକିଙ୍ଗ୍'ର ଏକ ଅସଲ ସଜ୍ଞା ଏ ପର୍ଯ୍ୟନ୍ତ ସ୍ଥିର

ହୋଇପାରି ନାହିଁ । ଗୋଟିଏ ପଟେ ଯୌନ ବ୍ୟବସାୟ ଓ ଅନ୍ୟପଟେ ଜୀବନ ଜୀବିକାର ପ୍ରଶ୍ନ- ଯେମିତି ଏ ତର୍କ ଶେଷ ହୋଇନାହିଁ । ଗୋଟାଏ ସଭ୍ୟ ଦେଶ ଓ ଗୋଟାଏ ସଭ୍ୟତାର ଅଥଚ କାହିଁକି ଠୋସ୍ ନିଷ୍ପତ୍ତି ନେଇ ହେଉନାହିଁ ଏବେ ମଧ୍ୟ ବୁଝି ହେଉନାହିଁ । ସାରା ପୃଥିବୀରେ ମହିଳାମାନଙ୍କୁ ବିଭିନ୍ନ ବାଟରେ ଶୋଷଣ କରାଯାଇଛି ଓ ବହୁକ୍ଷେତ୍ରରେ ସର୍ବନିମ୍ନ ମଜୁରୀଠାରୁ କମ୍ ମଜୁରୀ ମିଳୁଛି । ଯେତେକ ଘୃଣ୍ୟ ଓ ନିମ୍ନ ମୂଲ୍ୟର କାମ ଧନ୍ଦାରେ ସେମାନଙ୍କୁ ନିୟୋଜିତ କରାଯାଇଛି । ଏବେ ନୂଆ ଭାବେ ବ୍ୟାଖ୍ୟା କଲାବେଳେ ଦାରିଦ୍ର୍ୟର ମହିଳାକରଣ ବା "ଫେମିନାଇଜେସନ୍ ଅଫ୍ ପୋଭର୍ଟି" ବୋଲି କୁହାଯାଉଛି । କସୋଭ ହେଉ ବା କଲମ୍ବିଆ ହେଉ, ଥାଇଲାଣ୍ଡ ହେଉ ବା ନାଇଜେରିଆ ହେଉ ସବୁଠାରେ ଦାରିଦ୍ର୍ୟର ପରିଭାଷା ଜଗତୀକରଣ ପ୍ରକ୍ରିୟା ଦ୍ୱାରା ସମାନ ହୋଇସାରିଛି ।

ଏବେ ଭାରତ ତଥା ଓଡ଼ିଶାର ସ୍ଥିତି କ'ଣ ? ଆମେ ସମସ୍ତେ କିଛି ଜାଣିଛେ କି ଏ ବିଷୟରେ ?? ବା ଜାଣି ନ ଜାଣିଲା ପରି ହେଉଛେ ???

## (୩)

ଜାତୀୟ ତଥା ରାଜ୍ୟସ୍ତରୀୟ ଖବରକାଗଜର ପୃଷ୍ଠା ଓଲଟାଇଲେ ନିୟମିତ ଭାବେ ମହିଳାମାନଙ୍କୁ ଚାଲାଣକରି ବେଶ୍ୟାଳୟରେ ବିକ୍ରୟ କରାଯାଉଛି ବୋଲି ବିଭିନ୍ନ ସମୟରେ ବିଭିନ୍ନ ଅଞ୍ଚଳରେ ଚାଞ୍ଚଲ୍ୟକର ସମ୍ବାଦ ପ୍ରକାଶିତ ହୋଇଥାଏ । କେଉଁଠି ମହିଳାମାନଙ୍କୁ ଯୌନ ବ୍ୟବସାୟରେ ଲଗାଯାଉଛି ଓ ସେମାନଙ୍କର ସ୍ଥିତାବସ୍ଥାର ଦୁଃଖଦ ଖବର ଜନସାଧାରଣଙ୍କୁ ଆଶଙ୍କିତ କରିଥାଏ । ବେଳେବେଳେ ଚାଲାଣ କରାଯାଉଥିବା ବେଳେ ଷ୍ଟେସନ୍ ବା ବସ୍‌ଷ୍ଟାଣ୍ଡରୁ ଅସହାୟ ମହିଳାମାନଙ୍କୁ ଉଦ୍ଧାର କରାଯାଇଥିବାର ଖବର ମୁଖ୍ୟ ସମ୍ବାଦ ହୋଇଥାଏ । ଏହାଛଡ଼ା ହୋଟେଲମାନଙ୍କ ଉପରେ ପୁଲିସ୍ ଚଢ଼ାଉ କରିଲେ ବିଭିନ୍ନ 'ସେକ୍‌ସ ର୍ୟାକେଟ୍' କେମିତି ଚାଲିଛି ତାହା ମଧ୍ୟ ଲୋକଲୋଚନକୁ ଆସେ । ଛୋଟ ଛୋଟ ସହର କେବଳ ନୁହେଁ, ବଡ଼ ସହର ଓ ନଗରରେ ମଧ୍ୟ 'ସେକ୍‌ସ ର୍ୟାକେଟ୍' କିପରି ବଢ଼ିବାରେ ଲାଗିଛି ତାହା ସଚେତନ ମଣିଷକୁ ବିବ୍ରତ କରେ । କେଉଁ କାରଣରୁ ଗାଁଗହଳିର ମହିଳା ଓ ଅଳ୍ପବୟସ୍କା ଝିଅମାନଙ୍କୁ ଅଣାଯାଇ ବିଭିନ୍ନ ଅଶ୍ଳୀଳ କାର୍ଯ୍ୟରେ ଲଗାଯାଉଛି ଓ ଏ ର୍ୟାକେଟ୍ ପଛରେ ପ୍ରଭାବଶାଳୀ ବ୍ୟକ୍ତିଙ୍କ ଭୂମିକା କିପରି ରହିଛି ତାହାର ରହସ୍ୟ ମଧ୍ୟ ଉନ୍ମୋଚିତ ହୁଏ । ଏବେ ଓଡ଼ିଶା ଭଳି

ଦରିଦ୍ର ରାଜ୍ୟମାନଙ୍କରେ ଏ ର୍‌ୟାକେଟ୍ ଏକ ନିତିଦିନିଆ କଥା ହୋଇଗଲାଣି ଓ ରାଜ୍ୟ ଭିତରେ ଓ ବାହାରେ ଏକ ସୁସଂଗଠିତ ଉପାୟରେ ମହିଳାମାନଙ୍କୁ ଚାଲାଣ କରିବାର ଏକ ପକ୍‌କା ସଡ଼କ ନିର୍ମାଣ ହୋଇଗଲାଣି ।

ଓଡ଼ିଶାରେ ମହିଳାମାନଙ୍କର 'ଟ୍ରାଫିକିଙ୍ଗ୍' ଉପରେ ଏଭିତରେ କେତୋଟି ଅଧ୍ୟୟନ କରାଯାଇ ତାହାର ରିପୋର୍ଟ ପ୍ରକାଶିତ ହୋଇସାରିଲାଣି । ୨୦୦୧ ମସିହାରେ 'ଟାସ୍କଫୋର୍ସ ଅନ୍ ଉଇମେନ୍ ଏଣ୍ଡ ଭାଇଓଲେନ୍‌ସ' ଏବଂ ୨୦୦୩ ମସିହାରେ ଆଇ.ଏସ.ଇ.ଡ଼ି. ନାମକ ସ୍ୱେଚ୍ଛାସେବୀ ସଂଗଠନ ପ୍ରକାଶିତ କରିଥିବା ରିପୋର୍ଟରୁ କେତେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ମିଳେ, ଯାହା ଆଲୋଚନା କରିବାର ଆବଶ୍ୟକତା ରହିଛି । ବିଭିନ୍ନ ଜିଲ୍ଲାରେ ଏ ଟ୍ରାଫିକିଙ୍ଗ୍ ଚେର କେମିତି ବଢ଼ିବାରେ ଲାଗିଛି ଓ କେଉଁ କେଉଁ କାରଣ ଏହା ପଛରେ ଅଛି ତାହାର ସମ୍ୟକ ଆଲୋଚନା କରାଯାଇଛି ଏ ରିପୋର୍ଟ ଗୁଡ଼ିକରେ । କେଉଁ ଜିଲ୍ଲାରୁ ମହିଳାମାନଙ୍କୁ ରାଜ୍ୟଭିତରେ ରାଜ୍ୟବାହାରେ ବିକ୍ରି କରାଯାଇ ବିଭିନ୍ନ ଅନୈତିକ କାର୍ଯ୍ୟରେ ଲଗାଯାଉଛି ତାହାର ବିଶ୍ଳେଷଣ କରାଯାଇଛି । ବିଭିନ୍ନ ପ୍ରକାରର କେସ୍ ଷ୍ଟଡ଼ିଜ୍‌ମାନ ମଧ୍ୟ ନିଆଯାଇଛି । ଓଡ଼ିଶାକୁ ମୁଖ୍ୟତଃ ତିନୋଟି ପ୍ରଭାବିତ ଅଞ୍ଚଳରେ ବିଭକ୍ତ କରାଯାଇଛି । ଗୋଟିଏ ହେଲା ଉପକୂଳବର୍ତ୍ତୀ ଜିଲ୍ଲା, ଦ୍ୱିତୀୟଟି ହେଲା ପଶ୍ଚିମ ଓଡ଼ିଶା ଓ ତୃତୀୟଟି ହେଲା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ । ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରୁ ମହିଳାମାନଙ୍କୁ ଚାକିରୀ ବା ବିବାହ ପ୍ରଲୋଭନ ଦେଖାଇ ଉତ୍ତରପ୍ରଦେଶ, ହରିୟାନା, ପଞ୍ଜାବ ଆଦି ପ୍ରଦେଶକୁ ଚାଲାଣ କରାଯାଉଛି । ଅବଶ୍ୟ କେତେକଙ୍କୁ ଭୁବନେଶ୍ୱର ଓ କଟକ ଆଦି ସହରରେ ବେଶ୍ୟାଳୟରେ ନିୟୋଜିତ କରାଯାଉଛି । ଆମେ ନିମ୍ନରେ କେତୋଟି କେସ୍‌ଷ୍ଟଡ଼ିଜ୍ ଉଦାହରଣ ହିସାବରେ ଦେବାକୁ ଉଚିତ୍ ମନେକରୁଛି ।

୧) ଭଦ୍ରକ ଟାଉନ୍‌ର ଜରୀନା ଖାତୁନ୍ । ବୟସ ୨୦ବର୍ଷ । ରହମାନ ସାହା ମିଛ ବିବାହର ପ୍ରଲୋଭନ ଦେଖାଇ ଉତ୍ତରପ୍ରଦେଶର ଆଲିଗଡ଼ ଜିଲ୍ଲାର ଏକ ଗାଁକୁ ତାକୁ ଆଣିଥିଲେ । ପାପୁ ନାମକ ବ୍ୟକ୍ତି ଏଥିରେ ମଧ୍ୟସ୍ଥତା କରିଥିଲେ । ଜରୀନାର ମାଆ ପାପୁଠାରୁ ଜାଣିବାକୁ ପାଇଲେ ତାଙ୍କ ଝିଅ ଅନ୍ୟ କେଉଁଠି ବିବାହ କରିଛି । ଦୁଇବର୍ଷ ଧରି ଜରୀନାର କିଛି ଖୋଜ୍ ଖବର ନଥିଲା । ମାଆ ଜରୀନାକୁ ଖୋଜି ଖୋଜି ଆଲିଗଡ଼ରୁ ୨୦୦କି.ମି. ଦୂରରେ ସିକନ୍ଦରାବାଦ ପାଖରେ ଠାବ କରିଲେ । ଜରୀନା ଗୋତିଭଳି ଖଟୁଥିଲା ଜଣକ କ୍ଷେତରେ । ଜରୀନାର ସ୍ୱାସ୍ଥ୍ୟ ଭୀଷଣ ଖରାପ ଓ ଗର୍ଭବତୀ ଦେଖି ତା'ର ମାଆ ତାକୁ ଭଦ୍ରକ ଫେରାଇ ଆଣିଥିଲେ । ସିକନ୍ଦରାବାଦରୁ ଜରୀନାର

ମାଲିକଙ୍କ ସମ୍ପର୍କୀୟମାନେ ଆସି ଧମକ ଚମକ ଦେଇଥିଲେ ଜବର ଦସ୍ତି ନେବାକୁ । କିନ୍ତୁ ଜରୀନା ଏବେ ତା'ର ମାଆ ପାଖେ ରହି ଦିନମଜୁରିଆ ହିସାବରେ ଦିନ କାଟୁଛି ।

୨) ବାଲେଶ୍ୱର ଜିଲ୍ଲା ମାଟିଆଳପଡ଼ା ଗ୍ରାମର କୌଶଲ୍ୟା ମହାନ୍ତି । ବୟସ ୨୮ ବର୍ଷ । ଉତରପ୍ରଦେଶର ଏଟାୱା ଜିଲ୍ଲାର ଗଣ୍ଡୱାରା ଗ୍ରାମ ନିବାସୀ ପ୍ରେମ ସିଂ ସହ ବିବାହ ସମ୍ପର୍ଣ୍ଣ ହୋଇଥିଲା ରେମୁଣାର କ୍ଷୀରଚୋରା ଗୋପୀନାଥ ମନ୍ଦିରରେ ୧୯୯୩ ମସିହାରେ । ଭଗିଆ ଜେନା ନାମକ ବ୍ୟକ୍ତି ଏଥିରେ ମଧ୍ୟସ୍ଥି କରିଥିଲେ । କୌଶଲ୍ୟାକୁ ସ୍ୱାମୀର ଗାଁରେ ପହଞ୍ଚିଲାପରେ ଇଟାଭାଟିରେ ଖଟିବାକୁ ପଡ଼ିଲା । କଠୋର ପରିଶ୍ରମ, ଖାଇବାରେ ଅଭାବ ସତ୍ତ୍ୱେ ସେ ତିନୋଟି ସନ୍ତାନର ମାଆ ହେଲା । ସେ ଗାଁକୁ ଫେରି ଦୁଇଟି ପୁଅକୁ ବାପା ମାଆଙ୍କ ପାଖରେ ଛାଡ଼ି ଦେଇଗଲା । ତା'ପରଠାରୁ କୌଶଲ୍ୟାର ଆଉ କିଛି ଖୋଜ୍ ଖବର ନାହିଁ ।

୩) ନୂଆପଡ଼ା ଜିଲ୍ଲାର କୋମ୍‌ନା ବ୍ଲକ୍‌ର ଦିଆନ୍ ମୁଣ୍ଡା ଗାଁର ଦଶମଶ୍ରେଣୀ ଛାତ୍ରୀ ସୀମାବାଇ ସାହୁ । କୁମୁଡ଼ା ହରିଜନ ନାମକ ଦଲାଲ ତାକୁ ପ୍ରଲୋଭିତ କରି ମହାରାଷ୍ଟ୍ରର ନାଗପୁରରେ ତା'ର ଭଉଣୀ ନେଭା ହରିଜନକୁ ପଚାଶ ହଜାର ଟଙ୍କାରେ ବିକ୍ରୀ କରିଥିଲା । ନେଭା ହରିଜନ ବେଶ୍ୟାବୃତ୍ତିରେ ଲିପ୍ତଥିଲା ଓ ସୀମାବାଇକୁ ମଧ୍ୟ ନିୟୋଜିତ କରିଥିଲା । ସୀମାବାଇ ସୁଯୋଗ ଦେଖି ନାଗପୁରରୁ ତା'ର ଗାଁକୁ ଫେରି ଆସିଥିଲା । ପୋଲିସ୍‌କୁ ସୂଚନା ଦିଆଯାଇ ଥିଲେ ମଧ୍ୟ କିଛି ଫଳ ମିଳିଲା ନାହିଁ । କିନ୍ତୁ ପରେ ସୀମାବାଇର ଦୁର୍ଦ୍ଦଶା ଖବରକାଗଜରେ ବାହାରିଲା ପରେ କୁମୁଡ଼ା ହରିଜନକୁ ଗିରଫ କରାଯାଇଥିଲା । ସୀମାବାଇ ଓ ତାହାର ପରିବାରକୁ କିନ୍ତୁ ତା' ଗାଁରେ ବାସନ୍ଦ କରାଯାଇଥିଲା ଏ କୁକର୍ମରେ ନିୟୋଜିତ ହୋଇଥିଲା ବୋଲି ।

୪) କେନ୍ଦ୍ରାପଡ଼ା ଜିଲ୍ଲା ବାନ୍‌ସାର ଗାଁର ସିଦ୍ଧେଶ୍ୱର ଭୂୟାଁ । ୧୯୯୯ ମସିହା ଘୂର୍ଣ୍ଣିବାତ୍ୟା ଦ୍ୱାରା ପ୍ରପୀଡ଼ିତ ହୋଇ ସେ ତା'ର ଝିଅର ବିବାହ କରିପାରୁ ନଥିଲା । ବାଧ୍ୟ ହୋଇ ଉତରପ୍ରଦେଶର ମଥୁରା ଜିଲ୍ଲାର ମହାବୀର ପ୍ରସାଦ ନାମକ ଜଣେ ବ୍ୟକ୍ତିକୁ ସେ ଝିଅକୁ ବିବାହ କରାଇଥିଲା ଓ ଜଣେ ଦଲାଲ୍‌ଠାରୁ ଦଶହଜାର ଟଙ୍କା ପାଇଥିଲା । କିନ୍ତୁ ମଥୁରାରୁ ଖବର ଆସିଥିଲା ଯେ ମହାବୀର ପ୍ରସାଦ ତାହାର ଝିଅକୁ ବେଶ୍ୟାଳୟରେ ବିକ୍ରୀ କରିଛି ।

୫) ଭୁବନେଶ୍ୱର ସହରର ନୀଳାଦ୍ରି ବିହାର ନିକଟସ୍ଥ ହରେକୃଷ୍ଣ ନଗର ବସ୍ତି । କୁନି ବାହାଦୂର ଓ ଛବି ବେହେରା ନାମକ ପନ୍ଦର ବର୍ଷିୟା ଦୁଇଟି ଝିଅ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲେ । ପରେ ସେମାନଙ୍କୁ ବିଜୟାୱାଡ଼ାର ବେଶ୍ୟାଳୟରୁ ଉଦ୍ଧାର

କରାଯାଉଥିଲା । ଝିଅ ଦୁଇଟିକୁ କେହି ଦଲାଲ୍ ପ୍ରଲୋଭିତ କରି ନେଇଯାଉଥିଲା । ଖବରକାଗଜରେ ହଇଚଇ ହେଲାପରେ ପୁଲିସର ସହାୟତାରେ ସେମାନଙ୍କୁ ଠାବ କରାଯାଇଥିଲା ଓ ସେମାନଙ୍କୁ କେଉଁ ଢ଼ଙ୍ଗରେ ଚାଲାଣ କରାଯାଉଥିଲା ତାହା ଲୋକ ଲୋଚନକୁ ଆସିଥିଲା ।

ଓଡ଼ିଶା ଭିତରେ ଓ ବାହାରେ ଏଇଭଳି ଅନେକ ଉପାୟରେ ମହିଳାମାନଙ୍କୁ ଚାଲାଣ କରାଯାଉଛି ବୋଲି ସଂଗୃହୀତ କେସ୍ ଷ୍ଟଡ଼ିଜରୁ ଜଣାପଡ଼ିଛି । ଭୁବନେଶ୍ୱର ମାଳିସାହି ଓ ଅନୁଗୁଳର ଟିକରପଡ଼ା ଭଳି କୁଖ୍ୟାତ ବେଶ୍ୟାଳୟକୁ ଛାଡ଼ି ଅନେକ ସହରର ହୋଟେଲ ଓ ଲଜିଂମାନଙ୍କରେ ମଧ୍ୟ ଅସହାୟା ମହିଳାମାନଙ୍କୁ ଯୌନ ବ୍ୟବସାୟରେ ନିୟୋଜିତ କରାଯାଉଛି ବୋଲି ଗବେଷଣାରୁ ଜଣାପଡ଼ିଛି । ଭୁବନେଶ୍ୱରର କଥା ବିଚାରକୁ ନିଆଯାଉ । ଉତ୍କଳ ବିଶ୍ୱବିଦ୍ୟାଳୟ ବାଣୀବିହାରରେ ଛାତ୍ର ଥିଲାବେଳେ ସତୁରୀ ଦଶକର ପ୍ରଥମ ଭାଗରେ ବେଳେବେଳେ ହେଷ୍ଟେଲ ଖାଇବାର ରୁଚି ବଦଳେଇବା ପାଇଁ ଆମକୁ ସନ୍ଧ୍ୟାରେ ଚାଲି ଚାଲି ଆସିବାକୁ ପଡୁଥିଲା ରାଜମହଲ ହୋଟେଲକୁ । କାରଣ ଏଇ ଗୋଟିଏ ହୋଟେଲ ସେତେବେଳେ ସାରା ଭୁବନେଶ୍ୱର ସହରରେ ନାଁ କରିଥିଲା । ଜଣେ ମାନସିକ ବିକୃତ ବ୍ୟଭିଚାରଗ୍ରସ୍ତ ମୁଖ୍ୟମନ୍ତ୍ରୀ ଓ ତାଙ୍କର ବିଶ୍ୱସ୍ତ ଦୁର୍ନୀତିଗ୍ରସ୍ତ ଅଫିସରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଭୁବନେଶ୍ୱର କାହିଁକି ସାରା ଓଡ଼ିଶାରେ ହୋଟେଲ ଶିଳ୍ପକୁ ପ୍ରୋତ୍ସାହନ ଦିଆଯାଇଥିଲା । ଫଳତଃ ସାନ ବଡ଼ ଅନେକ ହୋଟେଲ ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିଛି ସତ କିନ୍ତୁ ଯୌନ ବ୍ୟବସାୟ ଅନେକ ଗୁଣରେ ବଢ଼ିଯାଇଛି ଓଡ଼ିଶାରେ । ପୁଲିସ୍ ଚଢ଼ାଉ ଲାଗି ରହିଛି । ରାଜ୍ୟସାରା ସ୍ୱେଚ୍ଛାସେବୀ ସଂଗଠନମାନେ ଯୌନ ବ୍ୟବସାୟ ଓ ଏଡ଼ସ୍ ବେମାରୀ ବିରୁଦ୍ଧରେ କାର୍ଯ୍ୟରତ ଅଛନ୍ତି । ଏସବୁ ସତ୍ତ୍ୱେ କିନ୍ତୁ 'ଟ୍ରାଫିକିଙ୍ଗ'ର ପରିସର ଦ୍ରୁତଗତିରେ ବଢୁଛି । ପୁଞ୍ଜିନିବେଶ ସହ ବର୍ତ୍ତମାନ ଶିଳ୍ପୀକରଣ ଯେଉଁଭଳି ବଢୁଛି, ଆଗାମୀ ଦିନମାନଙ୍କରେ କେଉଁଭଳି ଭୟାନକ ପରିସ୍ଥିତି ହେବ ତାହା ଅନୁମାନ କରିହେଉଛି । ସୁପର ସାଇକ୍ଲୋନ ଏ 'ଟ୍ରାଫିକିଙ୍ଗ୍'କୁ କେତେ ଗୁଣରେ ବଢ଼ାଇ ସାରିଛି ଓ ଆଗାମୀ ଦିନରେ ବିସ୍ଥାପନ ଓ ଓଡ଼ିଶାର ଏକ ତରଫା ପ୍ରଗତି ଆମର ମା'ଭଉଣୀମାନଙ୍କୁ ଆହୁରି ଅସହାୟଜନକ ପରିସ୍ଥିତିକୁ ନିଶ୍ଚୟ ଠେଲିଦେବ ଏ ଆଶଙ୍କା ସୃଷ୍ଟି ହୋଇସାରିଛି ।

ଏବେ ସର୍ବଭାରତୀୟ ସ୍ତରରେ ଏ 'ଟ୍ରାଫିକିଙ୍ଗ୍'କୁ ଆମେ ଆଲୋଚନା କରିବା । ଭାରତ ଏଭଳି ଏକ ଦେଶ ଯେଉଁ ଭିତରେ 'ଟ୍ରାଫିକିଙ୍ଗ୍' ତିନୋଟି ସ୍ତରରେ

ହେଉଛି । ପ୍ରଥମଟି ହେଲା ଦେଶ ଭିତରେ । ଦ୍ୱିତୀୟଟି ହେଲା ଦେଶ ଭିତରକୁ ଓ ତୃତୀୟଟି ହେଲା ଦେଶ ବାହାରକୁ । ୨୦୦୨-୨୦୦୩ ମସିହାରେ ଜାତୀୟ ମାନାବାଧିକାର କମିଶନ, ୟୁନିସେଫ୍ ଓ ଇନ୍‌ଷ୍ଟିଚ୍ୟୁଟ୍ ଅଫ ସୋସିଆଲ୍ ସାଇନ୍‌ସେସ୍ ନାମକ ତିନୋଟି ସଂସ୍ଥା ମିଳିତଭାବେ ଏକ ଗବେଷଣାଧର୍ମୀ ରିପୋର୍ଟ 'ଟ୍ରାଫିକିଙ୍ଗ' ଉପରେ ପ୍ରକାଶିତ କରିଥିଲେ, ଯାହା ସାରା ଦେଶରେ ଚହଳ ପକାଇଥିଲା । ଏହି ଅଧ୍ୟୟନରୁ ଜଣା ପଡ଼ିଛି ଯେ ଝାଡ଼ଖଣ୍ଡର ଲକ୍ଷାଧିକ ଯୁବତୀଙ୍କୁ ଏବେ ସଂଗଠିତ ଭାବେ ଦିଲ୍ଲୀ ଭଳି ସହରକୁ ନିଆଯାଇ ବିଭିନ୍ନ ପେଶାରେ ନିୟୋଜିତ କରାଯାଉଛି । କେଉଁଠି ସେମାନେ ଲକ୍ଷପତିଙ୍କ ଘରେ ଚାକରାଣୀ ତ କେଉଁଠି ସେମାନେ ଯୌନକର୍ମୀ । ହରିୟାନା, ପଞ୍ଜାବ, ଉତ୍ତରପ୍ରଦେଶ ଭଳି ପ୍ରଦେଶମାନଙ୍କରେ ମହିଳାମାନଙ୍କ ସଂଖ୍ୟା ବିପଜ୍ଜନକ ଭାବେ ହ୍ରାସ ପାଉଛି । କେତେକ ସ୍ଥାନରେ ଏବେ ୧୦୦୦ ପୁରୁଷରେ ୬୦୦ ମହିଳା ଅଛନ୍ତି । ଉତ୍ତର ଭାରତରେ ଏହା ଏବେ ସମସ୍ତଙ୍କ ପାଇଁ ମୁଣ୍ଡବ୍ୟଥାର କାରଣ ହୋଇଛି । କିନ୍ତୁ ଏହାର ପ୍ରତିକ୍ରିୟାସ୍ୱରୂପ ଏ ଅଞ୍ଚଳକୁ ଓଡ଼ିଶା, ଝାରଖଣ୍ଡ, ଛତିଶଗଡ଼, ମଧ୍ୟପ୍ରଦେଶରେ ପଛୁଆ ଜିଲ୍ଲାମାନଙ୍କରୁ ମହିଳାମାନଙ୍କୁ ବିଭିନ୍ନ ବାଟରେ ଆମଦାନୀ କରାଯାଉଛି ଓ ଧନୀ ପରିବାରରେ କ୍ରୀତଦାସ ଭଳି ନିୟୋଜିତ କରାଯାଉଛି । ଏ ମହିଳାମାନେ ବିଭିନ୍ନ ଶାରୀରିକ ଓ ମାନସିକ ଯନ୍ତ୍ରଣାର ଶୀକାର ହେଉଛନ୍ତି । ଯୌନ ଅତ୍ୟାଚାର ଓ ଶୋଷଣ ମଧ୍ୟ ଲାଗି ରହିଛି ବର୍ଷ ବର୍ଷ ଧରି । ଭାରତ ଭିତରକୁ ନେପାଳ ଓ ବଙ୍ଗଳାଦେଶରୁ ଅସହାୟ ଓ ଗରିବ ମହିଳାମାନେ ବହୁ ସଂଖ୍ୟାରେ ଆସୁଛନ୍ତି କାମଧନ୍ଦା ଅନ୍ୱେଷଣରେ । କିନ୍ତୁ ସେମାନେ ବେଶ୍ୟାଳୟରେ ବିକ୍ରି ହେଉଛନ୍ତି ସେମାନଙ୍କ ଅବସ୍ଥାଚକ୍ର ନେଇ । ଏକ ସଂଗଠିତ ଉପାୟରେ ଏହା ଲାଗିରହିଛି । ଜାତୀୟ ମାନବାଧିକାର କମିଶନଙ୍କ ରିପୋର୍ଟରେ ଏ ବିଷୟରେ ଚର୍ଚ୍ଚା ହୋଇଛି । ଗତ କେତେବର୍ଷଧରି ଭାରତରୁ ବାହାର ଦେଶକୁ ମଧ୍ୟ ମହିଳାମାନଙ୍କୁ ଚାଲାଣ କରାଯାଉଛି । କେରଳ, ହାଇଦ୍ରାବାଦ ଓ ଅନେକ ଛୋଟ ବଡ଼ ସହରରୁ ଅର୍ଦ୍ଧଶିକ୍ଷିତ ମହିଳାମାନଙ୍କୁ ଅନ୍ୟଦେଶରେ କର୍ମ ଯୋଗାଣରେ ପ୍ରଲୋଭନ ଦେଖାଇ ଚାଲାଣ ମଧ୍ୟ କରାଯାଉଛି । ଅନେକ ମହିଳା ବିଭିନ୍ନ ଢ଼ଙ୍ଗରେ ନିର୍ଯ୍ୟାତିତା ହୋଉଛନ୍ତି ବୋଲି ଗଣମାଧ୍ୟମରେ ପ୍ରକାଶିତ ହୋଇଛି । କେତେକ ମହିଳା ଦୂର ପରଦେଶରେ ମୃତ୍ୟୁ ମୁଖରେ ପଡ଼ିଛନ୍ତି ।

ଏସବୁ ଆଲୋଚନା ବିଚାରରୁ ଜଣା ପଡୁଛି ଯେ ମହିଳା ଓ ଅପ୍ରାପ୍ତ ବୟସ୍କା ଝିଅମାନଙ୍କୁ ବିଭିନ୍ନ ବାଟରେ ବିଭିନ୍ନ କାମ ପାଇଁ ଚାଲାଣ କରାଯାଉଛି ଏବଂ ଏ ସମସ୍ୟା

ଜଗତୀକରଣ ପ୍ରକ୍ରିୟା ହେତୁ ବହୁଗୁଣରେ ବଢ଼ିଛି । କିନ୍ତୁ ଏହାର ନିରାକରଣ ପାଇଁ କେଉଁ ଉପାୟ ଅଛି ? ଏ ବିଷୟରେ ବିଭିନ୍ନ ସ୍ତରରେ ଆଲୋଚନା ଚାଲିଛି । ମହିଳା ସଂଗଠନମାନେ କ୍ରମାଗତ ଭାବେ ସକ୍ରିୟ ହୋଇଛନ୍ତି । ରାଜନୈତିକ ସ୍ତରରେ ମଧ୍ୟ ନୀତି ନିର୍ଦ୍ଧାରଣ ପାଇଁ ଉଦ୍ୟମ ହୋଇଛି, ଟ୍ରାଫିକିଙ୍ଗ ସହ ଜୀବନଜୀବିକାର ସମସ୍ୟା, ଆର୍ଥିକ, ସାମାଜିକ, ସାଂସ୍କୃତିକ ସମସ୍ୟା ଓ ସର୍ବୋପରି ମାନବାଧିକାର ସମସ୍ୟା ସଂଶ୍ଳିଷ୍ଟ । ଏଥିପାଇଁ ଅନେକ ସମ୍ବେଦନଶୀଳତାର ଆବଶ୍ୟକତା ରହିଛି ପୃଥିବୀସାରା । ଆମ ଦେଶରେ ଆମ ମା' ଭଉଣୀମାନେ ଉପଭୋଗ୍ୟର ବସ୍ତୁହେବେ, ବେପାର ବାଣିଜ୍ୟର ଅଂଶବିଶେଷ ହେବେ, ଲଜ୍ଜାଜନକ ଭାବେ ନିର୍ଯ୍ୟାତିତା ଓ ଅତ୍ୟାଚାରିତା ହେବେ, ଏହାକୁ ଆମେ ନିଷ୍କ୍ରିୟ ଭାବେ କେବଳ ଲକ୍ଷ୍ୟ କରିବା ନା ପ୍ରତିରୋଧ କରିବା ? ଇତିହାସ କୁହେ ଯେ ଏକ ଲୁଣ୍ଠନକାରୀ ସାମରିକ ବାହିନୀ ଗୋଟାଏ ରାଜ୍ୟଜୟ କରିଲେ ଯେଉଁ ସମ୍ପତିକୁ ଦଖଲକରେ ସେ ତାଲିକାରେ ପ୍ରଥମେ ଥାଆନ୍ତି ମହିଳାମାନେ । ଜଗତୀକରଣ ସମର୍ଥିତ ଶକ୍ତି ଓ ଲୁଣ୍ଠନକାରୀ ସାମରିକ ବାହିନୀ ଭିତରେ କିଛି ପ୍ରଭେଦ ଅଛି କି ? ସେଇଥିପାଇଁ ଆମର ମାଆ ଭଉଣୀମାନେ ଆଜି ବିକ୍ରୟଯୋଗ୍ୟ ବସ୍ତୁରେ ପରିଣତ ହୋଇ ସାରିଛନ୍ତି ।

ମୁଁ ବିଶ୍ୱାସ କରେ ଯେ ଜାତୀୟ ଓ ଆନ୍ତର୍ଜାତୀୟ ସମସ୍ୟାର ସମାଧାନର ଏକ ମାତ୍ର ରାସ୍ତା ହେଉଛି ଜଗତୀକରଣକୁ ବିରୋଧ କରିବା । ଏତତ୍ ବ୍ୟତୀତ ସମାଧାନର ଅନ୍ୟ ଏକ ରାସ୍ତା ହେଉଛି ଏ ପୃଥିବୀରୁ ଦାରିଦ୍ର୍ୟ ଓ ଅସମାନତା ହଟାଇବା । ଯେଉଁମାନେ 'ଟ୍ରାଫିକିଙ୍ଗ' କରୁଛନ୍ତି ଓ ଅର୍ଥଲାଭର ନିଶାରେ ମା' ଭଉଣୀଙ୍କୁ ବିକ୍ରୟ କରୁଛନ୍ତି ସେମାନଙ୍କ ପାଇଁ ଏକ ଗିଲୋଟିନ୍ ତିଆରି କରିବା । ମୁଁ ଆଶା କରିବି ଯେ ଅସହାୟ ମହିଳାମାନଙ୍କୁ ସୁରକ୍ଷା ଦେବାପାଇଁ 'ଟ୍ରାଫିକିଙ୍ଗ୍'ର ଆଇନ୍‌କୁ ଆହୁରି କଡ଼ା କରିବାକୁ ଆମର ନୀତି ନିର୍ଦ୍ଧାରଣ କରୁଥିବା ସାଂସଦମାନେ ପଦକ୍ଷେପ ନେବେ । ମୁଁ ନିବେଦନ କରିବି ଆମ ନାଗରିକ ସମାଜକୁ ଏ ଅନୈତିକ, ଅଯୌକ୍ତିକ ଓ ଅମାନବିକ ପ୍ରକ୍ରିୟା ବିରୁଦ୍ଧରେ ସ୍ୱରୋତ୍ତଳନ କରିବାକୁ । ଅନ୍ୟପକ୍ଷରେ ଯେଉଁ ମା' ଭଉଣୀମାନେ ମୁକୁଳି ଆସୁଛନ୍ତି ଏ 'ଟ୍ରାଫିକିଙ୍ଗ୍'ର ଜାଲରୁ, ସେମାନଙ୍କୁ ଉଚିତ୍ ଥଇଥାନ କରିବାର ସକ୍ରିୟ ଯୋଜନା ମଧ୍ୟ ଆମ ପାଖରେ ରହିଥିବା ଆବଶ୍ୟକ । ସମସ୍ତେ ମନେ ରଖିବା ଉଚିତ୍ ଯେ ସେମାନେ ହୀନା ଓ ଘୃଣ୍ୟା ନୁହଁନ୍ତି । ସେମାନେ ଆମର ନିଜସ୍ୱ, ଆମ ପରିବାରର ଅନନ୍ୟା ଓ ସମ୍ମାନୀୟା । ❑

# ଜଗତୀକରଣ ଓ ପାଣି ସମସ୍ତଙ୍କ ପାଇଁ

ବୁନ୍ଦାଏ ପାଣି ଓ ମହାସମୁଦ୍ର । ଆମ ଅସ୍ତିତ୍ୱର ଏକ ମହାଜାଗତିକ ସମ୍ପର୍କ ଓ ଆମ ଜୀବନଜୀବିକାର ମୁଖ୍ୟସ୍ରୋତ । ସଭ୍ୟତାର ଆରମ୍ଭ ଏଇ ଜଳଉତ୍ସରୁ, ନଦୀ ଉପତ୍ୟକାରୁ । ଜ୍ଞାନ ଓ ବିଜ୍ଞାନ, କଳ୍ପନା ଓ ପରିକଳ୍ପନା, ପ୍ରଜନନ ଓ ପ୍ରଳୟ- ସବୁର ମୂଳରେ ଜଳଚକ୍ର । ସୃଷ୍ଟି ଓ ବିଲୟର ଆଲେଖ୍ୟ ଯେମିତି ଲେଖାଯାଉଛି ସବୁ ସମୟରେ ଏହାକୁ ନେଇ । କିନ୍ତୁ ଏବେ ଏକବିଂଶ ଶତାବ୍ଦୀରେ ଜଳାଭାବ, ଜଳ ସମସ୍ୟା ଓ ଜଳସମ୍ପଦର ପରିଚାଳନାକୁ ନେଇ ଚାଲିଛି ତର୍କବିତର୍କ । ବିଂଶ ଶତାବ୍ଦୀରେ ଯଦି ପେଟ୍ରୋଲିୟମ ତେଲକୁ ନେଇ ହୋଇଥିଲା ଯୁଦ୍ଧ ଓ ଆନ୍ତର୍ଜାତିକ ରାଜନୀତି, ଏକ ବିଂଶ ଶତାବ୍ଦୀରେ ଏବେ ଜଳକୁ ନେଇ ଯୁଦ୍ଧ ଓ ହିଂସା ପୃଥିବୀ ସାରା ବ୍ୟାପିଯିବ ବୋଲି ଭବିଷ୍ୟତବାଣୀ ଶୁଣାଯାଇଛି । ଅନେକ କ୍ଷେତ୍ରରେ ଗାଁଆ ଗାଁଆ ଭିତରେ, ରାଜ୍ୟ ରାଜ୍ୟ ଭିତରେ ଓ ରାଷ୍ଟ୍ର ରାଷ୍ଟ୍ରଭିତରେ ସଂଘର୍ଷର ସୂତ୍ରପାତ ହୋଇ ସାରିଲାଣି ଜଳକୁ କେନ୍ଦ୍ରବିନ୍ଦୁ କରି । ପାଣି ସମସ୍ତଙ୍କୁ ଅନାୟାସରେ ଓ ଆବଶ୍ୟକ ଅନୁସାରେ ମିଳିବ ଏହା ଆଉ ଏ ପୃଥିବୀରେ ସମ୍ଭବ ନୁହେଁ ବୋଲି ସ୍ୱୀକାର କରାଯାଉଛି । ଈଶ୍ୱରଦତ୍ତ ପାଣି ସମସ୍ତଙ୍କ ପାଇଁ ଅଛି ଅଥଚ ଏ ପୃଥିବୀର ଶହେକୋଟିରୁ ଅଧିକ ଲୋକଙ୍କ ପାଇଁ ଜଳକ୍ଲିଷ୍ଟ ଲାଗି ରହିଛି । ସବୁ ଦେଶ ଓ ମହାଦେଶରେ ଆଜି ମଣିଷର ଜଳ ନିରାପତ୍ତା ବିପଦଗ୍ରସ୍ତ ହୋଇସାରିଛି । କେଉଁଠି ହେଲେ ଜଳନୀତି ସାଧାରଣ ମଣିଷକୁ ସୁହାଇଲା ଭଳି ତିଆରି କରାଯାଉ ନାହିଁ । ଯୁକ୍ତରାଷ୍ଟ୍ର ଆମେରିକାରେ ମୁଣ୍ଡପିଛା ଦୈନିକ ୭୦୦ଲିଟର ପାଣି ଖର୍ଚ୍ଚ ହେଉଥିଲାବେଳେ ଜଣେ ମଣିଷକୁ ସର୍ବନିମ୍ନ ଲୋଡ଼ା ହେଉଥିବା ମୁଣ୍ଡପିଛା ୨୦ଲିଟର ପାଣି ଅନେକ ଦେଶରେ ଆଜି ଅଭାବ ହୋଇଯାଇଛି । ଜଳ ସମ୍ପଦର ବିନିଯୋଗରେ ଘୋର ଅସମାନତା ଦେଖାଦେଇଛି । ଜଳ ସମ୍ପଦର ସୁରକ୍ଷା ପାଇଁ ଯେଉଁ କୋଡୋଟି ନୀତି ନିୟମ ରହିଛି ସେଗୁଡ଼ିକର ଉଲଂଘନ କରାଯାଉଛି ସବୁଆଡେ । ସେ ସବୁ ନୀତିକୁ ନିମ୍ନରେ ଉଲ୍ଲେଖ କରାଗଲା ।

୧) ଜଳ ଏ ପୃଥିବୀର ଅଂଶ ବିଶେଷ ଜୀବଜନ୍ତୁ, କୀଟପତଙ୍ଗ, ବୃକ୍ଷଲତା ଓ ମଣିଷ ସମସ୍ତଙ୍କର ଏହା ଉପରେ ଅଧିକାର ଅଛି । (୨) ଜଳ ଯେଉଁଠି ଅଛି ଯେଉଁଭଳି ଅଛି ସେମିତି ରହିବା ଆବଶ୍ୟକ । (୩) ସବୁ ସମୟ ପାଇଁ ଜଳ ସଂରକ୍ଷଣର ଆବଶ୍ୟକତା

ରହିଛି । (୪) ପ୍ରଦୂଷିତ ଜଳର ଯଥାର୍ଥ ଶୋଧନର ଆବଶ୍ୟକତା ରହିଛି । (୫) ଜଳବିଭାଜିକାରେ ଜଳ ସଂରକ୍ଷଣ କରିବା ବିଜ୍ଞାନ ସମ୍ମତ । (୬) ଜଳ ସାଧାରଣ ମଣିଷଙ୍କ ପାଇଁ ଉଦ୍ଦିଷ୍ଟ ସମ୍ପତି, ଯାହାକୁ ସୁରକ୍ଷା କରିବା ଜାତୀୟ ସରକାରଙ୍କ ନୈତିକ ଦାୟିତ୍ୱ । (୭) ଜଳ ମାନବାଧିକାରର ଅଂଶବିଶେଷ । (୮) ଜଳ ସମ୍ପଦର ସୁରକ୍ଷା ନାଗରିକ ଓ ସ୍ଥାନୀୟ ଜନସମାଜଙ୍କ ଦାୟିତ୍ୱ । (୯) ଜଳ ସମ୍ପଦର ସୁରକ୍ଷା ଓ ପରିଚାଳନାରେ ଜନସାଧାରଣ ଓ ସରକାର ସହଭାଗୀ । (୧୦) ଆର୍ଥିକ ଜଗତୀକରଣ ଜଳ ସମ୍ପଦର ସୁରକ୍ଷା କ୍ଷେତ୍ରରେ ମୁଖ୍ୟ ବିପଦ ।

ଜଳ ସମ୍ପଦର ଅଯୌକ୍ତିକ ଓ ଅନୈତିକ ବ୍ୟବହାର ଓ ବିନିଯୋଗ ଆଜି ସାରାପୃଥିବୀରେ ଅନେକ ସଂକଟ ସୃଷ୍ଟି କରିଛି । ସାମାଜିକ ଅସମାନତା ଯଥେଷ୍ଟ ବଢ଼ିଛି ସବୁଆଡେ । କିଏ ପାଣିକୁ ନେଇ ବ୍ୟବସାୟ କରୁଛି ତ କିଏ ଘରେ ସୁଇମିଂପୁଲ୍ ଓ ବଗିଚା ପାଇଁ ପାଣି ବ୍ୟବହାର କରୁଛି । କିଏ ଶିଳ୍ପ କାରଖାନା ପାଇଁ ପାଣି ଦାବି କରୁଛି ତ କିଏ ଖେଳ କୌତୁକ ୱାଟର ସ୍ପୋର୍ଟସ ଏବଂ ଆମ୍ୟୁଜମେଣ୍ଟ ପାର୍କ ପାଇଁ ପାଣି ଆବଶ୍ୟକ କରୁଛି । ବିଶୁଦ୍ଧ ପିଇବା ପାଣି ସମସ୍ତଙ୍କୁ ମିଳିବା ଦାବି ଆଜି ଯଥାର୍ଥ ବୋଲି ଅନେକ ସ୍ୱୀକାର କରୁନାହାନ୍ତି ।

ଜଳ ସମ୍ପଦର ନିରାପତ୍ତା କ୍ଷୁର୍ଣ୍ଣ ହେବା ସଙ୍ଗେ ସଙ୍ଗେ ପୃଥିବୀର ବହୁଭାଗ ଲୋକଙ୍କ ଖାଦ୍ୟ ନିରାପତ୍ତା ଓ ଜୀବିକା ଆଦି ବିପନ୍ନ ହୋଇ ପଡ଼ିଛି । କୃଷି କ୍ଷେତ୍ରରେ ଜଳ ବିନିଯୋଗ ହ୍ରାସ ପାଇଛି ଓ ଖାଦ୍ୟଉତ୍ପାଦନ ଉପରେ ଏହାର କୁପ୍ରଭାବ ଦେଖାଦେଇଛି । ଯେଉଁଠି ଜଳ ଭଣ୍ଡାର ଅଛି ତାହାର ବ୍ୟବସାୟୀକରଣ କରାଯିବାକୁ ଯୋଜନା ଚାଲିଛି ଓ ଶିଳ୍ପମାନଙ୍କୁ କୃଷି ଅପେକ୍ଷା ଅଧିକ ଜଳଯୋଗାଣ କରାଯିବାକୁ ନୀତିଗତ ନିଷ୍ପତି ନିଆଯାଇଛି । ଶିଳ୍ପୀକରଣ ପ୍ରକ୍ରିୟାରେ ଏ ପୃଥିବୀକୁ ଯେଉଁ ମୂଲ୍ୟଦେବାକୁ ହେବ, ତାହା ହେଉଛି ବହୁଭାଗ ଲୋକଙ୍କ ଅନାହାର ଓ ଅଭାବ ଅନାଟନ ।

ପାନୀୟ ଜଳର ଅଭାବ ଜନିତ ରୋଗବେମାରୀ ଆଜି ପୃଥିବୀରେ ବଢ଼ି ଚାଲିଛି । ଏକ ଅଧ୍ୟୟନରେ ଉଲ୍ଲେଖ କରାଯାଇଛି ଯେ ବର୍ଷକୁ ୫୦ଲକ୍ଷରୁ ଅଧିକ ଶିଶୁ ବିଶୁଦ୍ଧ ପାନୀୟଜଳ ନପାଇ ମୃତ୍ୟୁ ମୁଖରେ ପଡୁଛନ୍ତି । ଜଳବାହୀ ରୋଗ ସାରା ପୃଥିବୀରେ ଏତେ ମାତ୍ରାରେ ବଢ଼ିଯାଇଛି ଯେ ଏବେ ଏହାକୁ ନିୟନ୍ତ୍ରଣ କରିବା ସମ୍ଭବ ହୋଇ ପାରୁନାହିଁ ।

ଜଳ ସମ୍ପଦ ଓ ପରିବେଶ ଉଭୟ ପରିପୂରକ । ଜଳସମ୍ପଦ ପ୍ରଦୂଷିତ ହେଲେ ପରିବେଶ ପ୍ରଦୂଷିତ ହେଉଛି ଓ ପରିବେଶ ପ୍ରଦୂଷିତ ହେଲେ ଜଳସମ୍ପଦ ମଧ୍ୟ ପ୍ରଭାବିତ ହେଉଛି । ଜନସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ଖାଦ୍ୟ ଉତ୍ପାଦନ ଓ ବାଣିଜ୍ୟ ବ୍ୟବସାୟର ପରିସର ବଢୁଛି ଓ ଜଳର ଆବଶ୍ୟକତା ଏ ଭିତରେ ବହୁଗୁଣରେ ବଢ଼ିଯାଇଛି । ଏହି କାରଣରୁ ଆବଶ୍ୟକତା ପୂରଣ ପାଇଁ ବିସ୍ତୃତ ଓ ବ୍ୟାପକ ନଦୀବନ୍ଧ ଯୋଜନା କାର୍ଯ୍ୟାନ୍ୱିତ କରାଯାଉଛି । ସାରା ପୃଥିବୀରେ ୧୯୮୦ ମସିହାରେ ୫୦୦୦ଟି ବଡ ଡ୍ୟାମ୍ ଥିଲା । ୨୦୦୦ ମସିହା ଶେଷ ବେଳକୁ ତାହା ବଢ଼ି ଏବେ ୩୮,୦୦୦ରେ ପହଞ୍ଚିଛି । ନଦୀଗୁଡିକ ଏବେ ଏତେ ମାତ୍ରାରେ ପ୍ରଦୂଷିତ ହୋଇଛି ଯେ ଅନେକ ଦେଶରେ ତାହା ମଣିଷର ବ୍ୟବହାର ଯୋଗ୍ୟ ଆଉ ହୋଇପାରୁନାହିଁ । ଏହାର ପ୍ରତିକୂଳ ପ୍ରଭାବ ନଦୀକୂଳରେ ପ୍ରତିଷ୍ଠିତ ଥିବା ସହର ଓ ବସତି ଉପରେ ଏତେ ପଡ଼ିଛି ଯେ ସେଗୁଡ଼ିକ ନିଶ୍ଚିହ୍ନ ହେବାର ଆଶଙ୍କା ବହୁଗୁଣରେ ବଢ଼ି ଯାଇଛି । ଭୂଜଳ ମଧ୍ୟ କ୍ରମାଗତ ଭାବେ ଦୂଷିତ ହେବାରେ ଲାଗିଛି ଓ ଏହା ଫଳରେ ବହୁ ଅଞ୍ଚଳରେ ପିଇବା ପାଣି ମିଳୁନାହିଁ । ନଦୀ ଓ ହ୍ରଦରେ ଥିବା ଜଳସମ୍ପଦ ପ୍ରଦୂଷିତ ହେତୁ କେତେକ ପ୍ରାଣୀ ଓ ଜଳଜ୍ ଉଦ୍ଭିଦଙ୍କ ଅସ୍ତିତ୍ୱ ଲୋପ ପାଇସାରିଲାଣି । ଏହା ପରିବେଶ ସନ୍ତୁଳନରେ ବାଧା ସୃଷ୍ଟି କରିଛି । ପ୍ରତିବର୍ଷ ଯେତିକି ବର୍ଷା ହୋଇ ପୃଥିବୀକୁ ମଧୁର ଜଳ ମିଳୁଛି ତାହାର ପରିମାଣ ହାରାହାରି ୫୦ହଜାର ଘନ କିଲୋଲିଟର । ଜଣେ ମଣିଷକୁ ଲୋଡା ହେଉଛି ଦୈନିକ ୨୦-୨୫ଲିଟର ପାଣି । ଏହି ହିସାବରେ ବୃଷ୍ଟିଜଳ ଅନାୟାସରେ ଯଥେଷ୍ଟ ହୁଅନ୍ତା । କିନ୍ତୁ ବର୍ଷାପାଣିର ବହୁଭାଗ ସମୁଦ୍ରରେ, ଅରଣ୍ୟରେ ପଡୁଛି ଓ ମଣିଷ ତାହାକୁ ବ୍ୟବହାର କରିପାରୁନାହିଁ । ଯାହା ଜମିଉପରେ ପଡୁଛି ତାହର ମୁଖ୍ୟ ଅଂଶ ନଦୀରେ ପ୍ରବାହିତ ହୋଇ ସମୁଦ୍ରରେ ମିଶୁଛି । ଅନ୍ୟ ଏକଭାଗ ଭୂଜଳ ହିସାବରେ ସଂରକ୍ଷିତ ହେଉଛି । ଏଇଥି ପାଇଁ ମଣିଷକୁ ମଧୁର ଜଳ ସହଜରେ ମିଳୁନାହିଁ । ଜନସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ଜଳାଭାବ ବଢୁଥିବାରୁ, ଜଳସମ୍ପଦର ସଂରକ୍ଷଣ ଓ ପରିଚାଳନାକୁ ନେଇ ବିଭିନ୍ନ ପ୍ରକାରର ମତ ଓ ଦୃଷ୍ଟିକୋଣ ସୃଷ୍ଟି ହୋଇଛି ।

ସବୁଠାରୁ ଭୟାନକ ଓ ଅମାନବିକ ଦୃଷ୍ଟିକୋଣ ହେଉଛି ଜଳସମ୍ପଦକୁ ମଣିଷର ନ୍ୟାୟୋଚିତ ଅଧିକାର ବୋଲି ନଭାବି ଏକ ବେପାର ବାଣିଜ୍ୟର ସାମଗ୍ରୀ ବୋଲି ସ୍ୱୀକାର କରିବା । ଏହା ଜଗତୀକରଣ ପ୍ରକ୍ରିୟାର ଅବଦାନ ନୁହେଁତ ଆଉ କ'ଣ ?

ସାଧାରଣ ମଣିଷଙ୍କୁ ବିଶୁଦ୍ଧ ମଧୁର ପାନୀୟ ଜଳ ଯୋଗାଣ ପ୍ରଶ୍ନ ଉଠିଲା ମାତ୍ରକେ ଜଳସମ୍ପଦର ପରିଚାଳନା, ବିନିଯୋଗ ଦର଼ଦାମ ଓ ନିୟନ୍ତ୍ରଣ କଥା ଉଠୁଛି । କୃଷକଙ୍କୁ ଦରକାର ଜଳସେଚନ । ମାତ୍ର ଏ ପ୍ରଶ୍ନ ଉଠିଲା ମାତ୍ରକେ ଜଳର ସେଇ ନିୟନ୍ତ୍ରଣ, ପରିଚାଳନା, ମୂଲ୍ୟ ଓ ରାଜନୀତି ସମ୍ବନ୍ଧିତ ପ୍ରଶ୍ନ ଉଠୁଛି । ଶିଳ୍ପ ଓ ବ୍ୟବସାୟ ବାଣିଜ୍ୟ ପ୍ରଶ୍ନ ଉଠିଲା ମାତ୍ରକେ ଜଳର ମୂଲ୍ୟ ନିର୍ଦ୍ଧାରଣ ପ୍ରଶ୍ନ ସ୍ୱତଃ ମୁଣ୍ଡ ଟେକୁଛି । ଏସବୁର ଯୁକ୍ତି ପ୍ରଦର୍ଶନ କରି କୁହାଯାଉଛି ଯେ ଜଳସମ୍ପଦ ସ୍ୱଚ୍ଛଳ ହେବନାହିଁ ଓ ଯିଏ ଯେତେ ଚାହିଁବ ସେତେ ପରିମାଣର ଜଳ ପାଇବନାହିଁ । ମଧୁର ଜଳ ସମସ୍ତଙ୍କୁ ମୁକ୍ତ ଓ ଅବାଧରେ ମିଳିବକି ନାହିଁ ଏକଥା କିଏ ନିଷ୍ପତି କରିବ ? ଜନ ସାଧାରଣ ? ସରକାର ? ମିଳିତ ଜାତିସଂଘ ? ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାକୋଷ ? ବହୁରାଷ୍ଟ୍ରୀୟ କର୍ପୋରେସନ୍‌ମାନେ ନା ଅନ୍ୟ କିଏ ?

ଅସଲ କ୍ଷେତ୍ରରେ ଦେଖାଯାଉଛି ଯେ ବିଶ୍ୱ ବ୍ୟାଙ୍କ ଜଳକୁ ବେପାର ବାଣିଜ୍ୟ ଓ ବଜାରର ଏକ କ୍ରୟବିକ୍ରୟ ଯୋଗ୍ୟ ସାମଗ୍ରୀ ବୋଲି ନୀତିଗତ ଭାବେ ଘୋଷଣା କରି ଆସିଛି । ଏହା ବିଭିନ୍ନ ବାଟରେ ବିଭିନ୍ନ ଦେଶର ଜଳନୀତିକୁ ପ୍ରଭାବିତ କରିସାରିଛି । ଅନ୍ୟପକ୍ଷରେ ନବେଦଶକରେ ଜାତିସଂଘ ଦ୍ୱାରା ଘୋଷିତ ୧୯୯୦ ମସିହା ସୁଦ୍ଧା ସମସ୍ତଙ୍କ ପାଇଁ ଜଳ ଓ ପରିମଳ ଯୋଜନା ନିରର୍ଥକ ହୋଇ ସାରିଛି । ପୃଥିବୀରେ ଏହା ଉପରେ କେତୋଟି ଆନ୍ତର୍ଜାତିକ ସଂଗଠନ ଜଳକୁ ନେଇ ଗଢ଼ାଯାଇଛି । ସେଗୁଡିକ ହେଲା ୱାର୍ଲଡ଼ କମିଶନ ଅନ୍ ୱାଟର ଫର୍ ଟ୍ୱେଣ୍ଟିଫାଷ୍ଟ ସେଞ୍ଚୁରୀ, ଭିଜନ୍ ୨୧, ୱାଟର ସପ୍ଲାଇ ଆଣ୍ଡ୍ ସାନିଟେସନ୍ କୋଲାବରେଟିଭ୍ କାଉନ୍‌ସିଲ୍, ସୋସିଆଲ୍ ଚାର୍ଟର ଫର୍ ୱାଟର । ସମସ୍ତେ କିନ୍ତୁ ଏକ ସ୍ୱରରେ ଜଳର ବ୍ୟବସାୟୀକରଣ ଓ ମୂଲଚାଲ ପ୍ରସ୍ତାବ ଦେଇଛନ୍ତି ଓ ସିଧାସଳଖ ବଜାର ଦ୍ୱାରା ଜଳସମ୍ପଦ ନିୟନ୍ତ୍ରଣ ହେବ ବୋଲି ସ୍ୱୀକାର କରିଛନ୍ତି । ଜଳ ଯେ ଏକ ମାନବାଧିକାର ଏବଂ ଏକ ସାମାଜିକ ଓ ସଂସ୍କୃତିକ ଅଧିକାର ଏହା ଅତି ଦୁର୍ବଳ ଭାବେ ଘୋଷଣା କରି ପୂର୍ବଯୁକ୍ତିକୁ ପ୍ରାଧାନ୍ୟ ଦେଇଛନ୍ତି । ନାଗରିକ ସମାଜ ଓ ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ସ୍ୱର ଓ ମତାମତକୁ ଉପେକ୍ଷା କରଯାଇଛି । ସାରା ପୃଥିବୀରେ ଅବହେଳିତ ଅଞ୍ଚଳରେ ମାଆ ଭଉଣୀମାନେ ଯେ ଗୋଟେ ମାଠିଆ ପାଣି ପାଇଁ ଦୈନିକ କେତେ କିଲୋମିଟର ଚାଲି ଚାଲି ଯାଉଛନ୍ତି ତାହା ମଧ ବିଚାରକୁ ନିଆଯାଇନାହିଁ । ପାଣି ଯେ ଜୀବନ ଓ ଜୀବିକା ସମ୍ପର୍କିତ ଏକ ମୌଳିକ ମାନବାଧିକାର

ଏହାକୁ ଗ୍ରହଣ କରାଯାଇ ନାହିଁ । ସରକାର ନାଗରିକମାନଙ୍କୁ ମୁକ୍ତ ଓ ନିଃଶୁଳ୍କ ଜଳ ଯୋଗାଣ କରନ୍ତୁ ବୋଲି ଯେଉଁ ଦାବି ହେଉଛି ତାହା ଆଉ ଗ୍ରହଣଯୋଗ୍ୟ ନୁହେଁ ବୋଲି ଏକ ଗୋଷ୍ଠୀ ଯୁକ୍ତି ବାଢ଼ିଛନ୍ତି । ଜଳ ସମ୍ପଦ ଏବେ ଜନସାଧାରଣଙ୍କ ନୁହେଁ ବୋଲି କୁହାଯାଉଛି ।

ବିଶ୍ୱବ୍ୟାଙ୍କ୍ ଜଳ ଓ ପରିମଳ କ୍ଷେତ୍ରରେ ବେଶ୍ ସକ୍ରିୟ ହୋଇଛି କେତେବର୍ଷ ଧରି । ଏଥିରେ ଘରୋଇ ସଂସ୍ଥା ଓ ଘରୋଇ ପୁଞ୍ଜିନିବେଶକୁ ନୀତିଗତ ଭାବେ ପ୍ରାଧାନ୍ୟ ଦିଆଯାଇଛି । ଭିଭେଣ୍ଡି, ସୁଏଜ, ମନ୍‌ସାଣ୍ଟୋ ଆଦି ବହୁରାଷ୍ଟ୍ରୀୟ କମ୍ପାନୀମାନେ ବିଶ୍ୱବ୍ୟାଙ୍କର ଶୁଭ ଦୃଷ୍ଟିରେ ଅଛନ୍ତି । ବିଶ୍ୱବ୍ୟାଙ୍କ ଯୁକ୍ତି ଦେଖାଇଛି ଯେ ସାରା ପୃଥିବୀରେ ବିକାଶଶୀଳ ଓ ଅବିକଶିତ ରାଷ୍ଟ୍ରମାନଙ୍କରେ ଜଳ ସମ୍ପର୍କିତ ଭିତ୍ତିଭୂମି ପ୍ରତିଷ୍ଠା କରି ନାଗରିକମାନଙ୍କୁ ଆବଶ୍ୟକ ପରିମାଣର ଜଳ ଯୋଗାଇବାରେ ବ୍ୟର୍ଥ ହୋଇଛନ୍ତି । ସେଇଥିପାଇଁ ଏବେ ଘରୋଇ ଉଦ୍ୟମକୁ ପ୍ରାଥମିକତା ଓ ପ୍ରୋତ୍ସାହନ ଦିଆଯିବା ଉଚିତ୍ । ଆହୁରି ମଧ୍ୟ ଘରୋଇ ଉଦ୍ୟମ ଓ ପୁଞ୍ଜିନିବେଶ ଫଳରେ ଜଳସମ୍ପଦର ପରିଚାଳନା ଓ ଜଳଯୋଗାଣ ବ୍ୟବସ୍ଥା ସୁଚାରୁ ଢ଼ଙ୍ଗରେ ସମ୍ପାଦିତ ହୋଇପାରିବ । ଗରିବ ଲୋକମାନେ ମଧ୍ୟ ଏ ଘରୋଇକରଣ ପ୍ରକ୍ରିୟାରେ ଲାଭାନ୍ୱିତ ହେବେ ବୋଲି ବିଶ୍ୱବ୍ୟାଙ୍କ ବାରମ୍ବାର ଯୁକ୍ତି କରୁଛି । ସାଧାରଣ ଲୋକେ ଯଦି ଆବଶ୍ୟକ ପରିମାଣର ବିଶୁଦ୍ଧ ମଧୁର ଜଳ ଲୋଡୁଛନ୍ତି ଏକ ଅପାରଗ ଓ ଦୁର୍ନୀତିଗ୍ରସ୍ତ ସରକାର ଏ ଚାହିଦା ମେଣ୍ଟାଇ ପାରିବେ ନାହିଁ ବୋଲି ବିଶ୍ୱବ୍ୟାଙ୍କ ବିଭିନ୍ନ ପରିସଂଖ୍ୟାନ ଓ ଉଦାହରଣ ଦେଇ କହିବାରେ ଲାଗିଛି ।

କିନ୍ତୁ ସତରେ କ'ଣ ଘରୋଇ କର୍ପୋରେସନ୍‌ମାନେ ସାଧାରଣ ଲୋକଙ୍କୁ ଉଚିତ୍ ଦରରେ ଜଳଯୋଗାଣ ବ୍ୟବସ୍ଥା କରିପାରିବେ ? ମୁକ୍ତବଜାର ବ୍ୟବସ୍ଥା କ'ଣ ଜଳର ମୂଲ୍ୟ ନିୟନ୍ତ୍ରଣ କରିବାରେ ସାହାଯ୍ୟ କରିବ ? ଜଳକୁ ନେଇ ଜୀବନ ଓ ଜୀବିକା ସୁରକ୍ଷା କରୁଥିବା ଗରିବ ମଣିଷମାନେ ସେମାନଙ୍କର ଜଳ ନିରାପତ୍ତାକୁ ଅକ୍ଷୁର୍ଣ୍ଣ ରଖି ପାରିବେ ? ଯେଉଁ ଦେଶମାନଙ୍କରେ ବିଶ୍ୱବ୍ୟାଙ୍କ ଆଦିଙ୍କ ପ୍ରରୋଚନାରେ ଘରୋଇ କମ୍ପାନୀମାନେ ଜଳ ସମ୍ପଦର ପରିଚାଳନା ଓ ଜଳଯୋଗାଣ ବ୍ୟବସ୍ଥା ହାତକୁ ନେଇଛନ୍ତି ସେ ଦେଶରେ ସାଧାରଣ ମଣିଷଙ୍କୁ ବହୁ ମୂଲ୍ୟଦେବାକୁ ପଡ଼ିଛି । ଜଳର ଘରୋଇକରଣ ବିଭିନ୍ନ ଦେଶରେ ଅପୂରଣୀୟ କ୍ଷତି କରିସାରିଛି । ଜଳକୁ ଏବେ 'ନୀଳସୁନା' ବା 'ବ୍ଲୁ ଗୋଲ୍ଡ୍' ହିସାବରେ ମାନ୍ୟତା ଦିଆଯାଉଛି କାରଣ ଜଳ ଏକ ଲାଭଜନକ ବ୍ୟବସାୟ

ବୋଲି ପ୍ରତିଷ୍ଠା ଲାଭ କରିସାରିଲାଣି । ଜଳପୁଷ୍ଟ ଅଞ୍ଚଳରୁ ପାଣିନେଇ ଜଳାଭାବ ଥିବା ଅଞ୍ଚଳରେ ବିକ୍ରୟ କରିବା ଏକ ଉତ୍ତମ ବ୍ୟବସାୟ । ଜଳସ୍ରୋତ ପ୍ରଦୂଷଣ ହୋଇଥିବାରୁ ନିର୍ମଳ ବିଶୁଦ୍ଧ ଜଳ ବୋତଲରେ ବିକ୍ରୟ କରିବା ଏକ ଚମକ୍ରାର ଲାଭଜନକ ବିଶ୍ୱାସ । ଏଇଥିପାଇଁ ଜଳ ସମ୍ପଦକୁ ନେଇ ଅନେକ ପ୍ରକାରର ବାଣିଜ୍ୟ ଚୁକ୍ତି ଓ ଆନ୍ତର୍ଜାତିକ ରାଜିନାମା ସ୍ୱାକ୍ଷର କରାଯାଉଛି । ଜନସାଧାରଣ ଓ ସରକାର ଏବେ ନିଜ ଇଲାକାରେ ଥିବା ଜଳ ସମ୍ପଦକୁ ଆପଣାର ନିୟନ୍ତ୍ରଣରେ ରଖି ପାରିବେକି ନାହିଁ ସନ୍ଦେହ ଉପୁଜି ସାରିଛି ।

ଜଳ ସମ୍ପଦ ଓ ତାହାର ସମସ୍ୟାକୁ ଅନୁଧ୍ୟାନ କରିଲେ ଅନେକ ପ୍ରକାରର ପ୍ରଶ୍ନ ଆପଣା ଛାଏଁ ଉଠିବ ନିଶ୍ଚିତ । ପ୍ରଥମଟି ହେଲା ଜଳ ସମ୍ପଦ ଏକ ସର୍ବସାଧାରଣ ସମ୍ପତି କି ନୁହେଁ ? ଦ୍ୱିତୀୟଟି ହେଲା ଜଳ ଏକ ମୌଳିକ ମାନବାଧିକାର କି ନୁହେଁ ? ତୃତୀୟଟି ହେଲା ଜଳ ସମ୍ପଦର ନିୟନ୍ତ୍ରଣ ଓ ପରିଚାଳନା ଦାୟିତ୍ୱ ଜନସାଧାରଣ ଏବଂ ସରକାରଙ୍କ ହାତରେ ରହିବ କି ନାହିଁ ? ଚତୁର୍ଥରେ ଜଳସମ୍ପଦର ଘରୋଇକରଣ ଯଥାର୍ଥ କି ନାହିଁ ? ପଞ୍ଚମ ପ୍ରଶ୍ନ ହେଲା ରାଷ୍ଟ୍ରୀୟ ଜଳନୀତିର ରୂପରେଖ କିପରି ହେବ ?

ଏସବୁ ପର୍ଯ୍ୟାୟ କ୍ରମ ଆଲୋଚନା କରିବାର ଯଥେଷ୍ଟ ଆବଶ୍ୟକତା ମୁଁ ଅନୁଭବ କରୁଛି । ଆପଣମାନେ କରୁଛନ୍ତି କି ? ❑

# ଜଗତୀକରଣ ଓ ଜଳର ଘରୋଇକରଣ

## (୧)

ମୋର ବନ୍ଧୁ ଶ୍ରୀ ଲଳିତ୍ ସୁଜନଙ୍କୁ ସାରାଦେଶ ମନେ ରଖିବ । ତାଙ୍କର ଘର: ରାୟପୁର, ପ୍ରଦେଶ: ଛତିଶଗଡ଼, ପେଶା: ସାମ୍ବାଦିକ, ଆଦର୍ଶବାଦ: ଅନ୍ୟାୟ ବିରୋଧରେ ଲଢ଼ିବା । ଛତିଶଗଡ଼ର ଲୋକପ୍ରିୟ ହିନ୍ଦି ଖବରକାଗଜ 'ଦେଶବନ୍ଧୁ'ର ସେ ସମ୍ପାଦକ ଓ ଜଣେ ନିଆରା ମଣିଷ । ଛତିଶଗଡ଼ ପ୍ରଦେଶରେ ବହୁଥିବା ଶିଓନାଥ ନଦୀର ଘରୋଇକରଣକୁ ନେଇ ଆମ ଦେଶବ୍ୟାପୀ ଏକ ଆଲୋଡନ ସୃଷ୍ଟି ହୋଇଥିଲା ଓ ଆରମ୍ଭ ହୋଇଥିଲା ଏକ ତୀବ୍ର ଜନ ଆନ୍ଦୋଳନ । ଏହାର ନେତୃତ୍ୱ ନେଇଥିଲେ ଶ୍ରୀ ଲଳିତ୍ ସୁଜନ । ଏ ଆନ୍ଦୋଳନର ଇତିହାସ ଜଳର ଘରୋଇକରଣ ବିରୁଦ୍ଧରେ ସୃଷ୍ଟି ହୋଇଥିବା ଜନମତର ଏକ ସ୍ପଷ୍ଟ ଝଲକ । ଜଳର ଘରୋଇକରଣ କହିଲେ କ'ଣ ବୁଝାଯାଏ ତାହା ମଧ୍ୟ ଏ ଆନ୍ଦୋଳନରୁ ଯଥେଷ୍ଟ ଆଭାସ ମିଳିଥିଲା । ଶ୍ରୀ ଲଳିତ୍ ସୁଜନଙ୍କ ସହ ଯେତେଥର ଦେଖା ହୋଇଛି, ସବୁବେଳେ ନଦୀମାନଙ୍କର ଘରୋଇକରଣ କଥା ଆଲୋଚନା କରାଯାଇଛି ଓ ବର୍ତ୍ତମାନର ପରିସ୍ଥିତି ସମୀକ୍ଷା କରାଯାଇଛି । ଶିଓନାଥ ନଦୀର ଘରୋଇକରଣ ବନ୍ଦ ହେବାପରେ ଅନ୍ୟ ନଦୀମାନଙ୍କର ଘରୋଇକରଣ ପ୍ରକ୍ରିୟା କିଛି ମାତ୍ରାରେ ଯେ ଶିଥିଳ ହୋଇଯାଇଛି ଏହା ସ୍ୱୀକାର କରିବାକୁ ହେବ । ଲଳିତ୍‌ଜୀଙ୍କୁ ଦେଖିଲେ ମୋର ମନେ ପଡିଯାଏ ଅନ୍ୟ ସାମ୍ବାଦିକ ଓ ସମ୍ବାଦପତ୍ରମାନଙ୍କୁ ଯେଉଁମାନେ ଆଜି ଘରୋଇକରଣର ମୁଖପତ୍ର ସାଜିଛନ୍ତି । ଧନ୍ୟ ଲଳିତ୍‌ଜୀ !

ଶିଓନାଥ ନଦୀର ଘରୋଇକରଣ ପ୍ରକ୍ରିୟା ପାଠକମାନେ ସବିଶେଷ ଜାଣିବା ଦରକାର ବୋଲି ମୁଁ ଅନୁଭବ କରୁଛି । ଏ ନଦୀଟି ମହାନଦୀର ଉପନଦୀ ଓ ଅନେକ ଶାଖା ପ୍ରଶାଖା ସହ ଦୁର୍ଗ ଜିଲ୍ଲାରେ ପ୍ରବାହିତ ହେଉଛି ଓ ମହାନଦୀର ବା କ୍ୟାଚ୍‌ମେଣ୍ଟର ଶତକଡ଼ା ୪୦ଭାଗରେ ବିସ୍ତୃତ ହୋଇ ଏକ ମୁଖ୍ୟସ୍ରୋତ ହିସାବରେ ପରିଗଣିତ ହେଉଛି । ୧୯୯୮ ମସିହାରେ ତତ୍‌କାଳୀନ ମଧ୍ୟପ୍ରଦେଶ ଔଦ୍ୟୋଗିକ କେନ୍ଦ୍ର ବିକାଶ ନିଗମ ସହ ରାଡିଅସ୍ ୱାଟର ଲିମିଟେଡ ନାମକ ଏକ ଘରୋଇ କମ୍ପାନୀର ଶିଓନାଥ ନଦୀକୁ ନେଇ ଏକ ଚୁକ୍ତି ସାକ୍ଷରିତ ହୋଇଥିଲା । ଏହି ଚୁକ୍ତି ଅନୁସାରେ ରାଡିଅସ୍ ୱାଟର ଲିମିଟେଡ ଶିଓନାଥ ନଦୀର ୨୨.୩କି.ମି. ଦଖଲ କରି ଦୁର୍ଗ ଓ ଭିଲାଇ ସନ୍ନିକଟସ୍ଥ ବରାଇ

ଶିଳ୍ପାଞ୍ଚଳକୁ ଜଳ ଯେଗାଣ କରିବ । ଚୁକ୍ତିକୁ 'ବୁଟ୍' ଚୁକ୍ତି ନାମରେ ନାମିତ କରାଯାଇଥିଲା । ଯାହା ବଳରେ ରାଡିଅସ୍ ୱାଟର କମ୍ପାନୀ ଜଳ ଯୋଗାଣ ପାଇଁ ବିଭିନ୍ନ ଡ୍ୟାମ୍ ଓ ଜଳ ଅମଳ ପ୍ରକଳ୍ପ ନିର୍ମାଣ କରିବ । 'ବୁଟ'ର ଅର୍ଥହେଲା, ପ୍ରକଳ୍ପ ନିର୍ମାଣ, ତାହାର ମାଲିକାନା, ପରିଚାଳନା ଓ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଜଳଯୋଗାଣ । ଏହି ରାଡିଅସ୍ ୱାଟର ଲିମିଟେଡ୍‌ର ମାଲିକ ଥିଲେ ଶ୍ରୀ କୈଳାସ ସୋନି । ତାଙ୍କର ଯୋଜନା ଥିଲା ଯେ ସାରା ଛତିଶଗଡ଼ର ଜଳଯୋଗାଣକୁ ହାତକୁ ନେବା ଓ ଜଳସ୍ରୋତମାନଙ୍କ ସତ୍ତ୍ୱକୁ ନିୟନ୍ତ୍ରଣ କରିବା । ଶିଓନାଥ ନଦୀର ଘରୋଇକରଣ ପ୍ରକ୍ରିୟା ଘୋର ବିରୋଧରେ ସମ୍ମୁଖିନ ହୋଇଥିବା ଯୋଗୁଁ ଏ ଯୋଜନା କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ଶିଓନାଥ ନଦୀର ଘରୋଇକରଣର ବିରୁଦ୍ଧାଭାସ ସୃଷ୍ଟି ହୋଇଥିଲା ନଦୀକୂଳସ୍ଥ ଗ୍ରାମବାସୀଙ୍କଠାରୁ । ଯେଉଁଠି ଡ୍ୟାମ୍ ତିଆରି ହୋଇଥିଲା ତାହାର ଉପରିଭାଗରେ ପାଞ୍ଚଟି ଗ୍ରାମ ଓ ନିମ୍ନଦେଶରେ ଚଉଦଟି ଗ୍ରାମ ଏ ପ୍ରକଳ୍ପ ଦ୍ୱାରା ପ୍ରଭାବିତ ହୋଇଥିଲେ । ଚୁକ୍ତିନାମା ଅସ୍ତ୍ରରେ ସଜ୍ଜିତ ହୋଇ ରାଡିଅସ୍ ୱାଟର ଲିମିଟେଡର ସୁରକ୍ଷା କର୍ମଚାରୀମାନେ ଗ୍ରାମବାସୀଙ୍କ ପମ୍ପସେଟ୍ ଜବତ କରିଥିଲେ । ନଦୀବନ୍ଧର ଉପରି ଭାଗରେ ଥିବା ଗ୍ରାମବାସୀଙ୍କୁ ନଦୀଜଳ ବ୍ୟବହାର କରିବାକୁ ମନା କରାଯାଇଥିଲା । ନଦୀକୂଳରେ ପନିପରିବା ଚାଷ ପାଇଁ ମଧ୍ୟ ଅନୁମତି ମିଳିଲା ନାହିଁ । ଗ୍ରାମବାସୀମାନଙ୍କୁ ନଦୀକୂଳରେ ଟ୍ୟୁବ୍‌ୱେଲ ବସାଇବାକୁ ମନା କରାଗଲା । ମତ୍ସଜୀବୀମାନଙ୍କୁ ମାଛମାରିବା ନିଷିଧ ହୋଇଥିଲା । ଗାଈଗୋରୁ ଓ ମଇଁଷିମାନଙ୍କୁ ପାଣି ପିଇବାକୁ ରୋକାଗଲା । ଗ୍ରାମବାସୀମାନଙ୍କୁ ଲୁଗାପଟା ସଫା କରିବାକୁ ବାରଣ କରାଗଲା । ନଦୀଗର୍ଭରୁ ବାଲି ସଂଗ୍ରହ କରିବାର ଏକଚାଟିଆ ଅଧିକାର କେବଳ ରାଡିଅସ୍ ୱାଟର ଲିମିଟେଡକୁ ମିଳିଥିଲା ଓ ଏହାଫଳରେ ପାର୍ଶ୍ୱ ଦେଶର ପଞ୍ଚାୟତମାନେ ତାଙ୍କର ଆୟ ହରାଇଲେ । ଏଥିପାଇଁ ଭୀଷଣ ଜନମତ ସୃଷ୍ଟି ହୋଇଥିଲା ଓ ତାହା ସାରା ଦେଶକୁ ସମ୍ପ୍ରସାରିତ ହୋଇ ଯାଇଥିଲା ।

ଅନ୍ୟପକ୍ଷରେ ଛତିଶଗଡ଼ ସରକାର ଶିଓନାଥ ନଦୀର ବିକାଶ ପାଇଁ ଓ ଚାଷୀମାନଙ୍କ ଜଳସେଚନ ବ୍ୟବସ୍ଥା ପାଇଁ ଦୁଇଶହ କୋଟି ଟଙ୍କାର ଏକ ଯୋଜନା ପ୍ରସ୍ତୁତ କରିଥିଲେ । ରାଡିଅସ୍ ୱାଟର ଲିମିଟେଡ଼ ବିଭିନ୍ନ କାରଣ ଦେଖାଇ ଓ ଏହାର ଚୁକ୍ତିନାମାକୁ ଅସ୍ତ୍ର କରି ସରକାରଙ୍କୁ ବିରୋଧ କରିବାକୁ ଆରମ୍ଭ କରିଥିଲା । ସରକାର ଏହା ଫଳରେ ଚୁକ୍ତିନାମାର ବିଭିନ୍ନ ଦିଗକୁ ଅନୁସନ୍ଧାନ କରି ପ୍ରମାଣ କରିଥିଲେ ଯେ କୈଳାସ ସୋନି ଓ ରାଡିଅସ୍ ୱାଟର ଲିମିଟେଡ ଗରୁତର ବେଆଇନ୍ କାର୍ଯ୍ୟ କରିଛନ୍ତି ।

ଏହା ଫଳରେ ତଥାକଥିତ ଚୁକ୍ତିନାମାକୁ ଛତିଶଗଡ଼ ସରାକର ୨୦୦୨ମସିହା ଫେବୃଆରୀମାସରେ ବାତିଲ୍ କରିଥିଲେ ଓ ଏକ ଭୟଙ୍କର ଉଦାହରଣରୁ ଏ ଦେଶ ଓ ଦେଶବାସୀ ରକ୍ଷାପାଇଗଲେ । ପରେ ଆଉ ଏକ ଅନୁସନ୍ଧାନରୁ ଜଣାପଡିଥିଲା ଯେ ଛତିଶଗଡ଼ ସରକାର କେବଳ ଶିଓନାଥ ନଦୀର କିଛିଭାଗ ଘରୋଇକରଣ କରିନଥିଲେ । ଏହା ସହିତ ଖାରୁନ୍ ନଦୀ, କେଲୁନଦୀ, ସାଗ୍ରୀ ନଦୀ ଓ ଇନ୍ଦ୍ରାବତୀ ନାଦର କିୟଦଂଶ ଘରୋଇକରଣ କରି ଘରୋଇକମ୍ପାନୀମାନଙ୍କ ହାତକୁ ଟେକି ଦେବାକୁ ଯୋଜନା କରିଥିଲେ । ବ୍ୟାପକ ଜନମତ ଓ ଜାତୀୟ ସ୍ତରରେ ତୀବ୍ର ସମାଲୋଚନାରେ ଅତିକ୍ରାନ୍ତ ହୋଇ ଛତିଶଗଡ଼ ସରକାର ଏ ସବୁ ଚୁକ୍ତିନାମାକୁ ବାତିଲ୍ କରିବାକୁ ବାଧ ହୋଇଥିଲେ । କିନ୍ତୁ ଛତିଶଗଡ଼ର ଘଟଣା ଚକ୍ର ଦେଶରେ ଜଳର ଘରୋଇକରଣ ପାଇଁ ରାସ୍ତା ଉନ୍ମୁକ୍ତ କରିଥିଲା ।

ଜଳର ଘରୋଇକରଣ ଆଜି ନହେଲେ ବି କାଲି ପଅରଦିନ ନିଶ୍ଚିତ ହେବ ଓ ଏ ଦେଶର ଜନ ସାଧାରଣ ପାଣି କିଣିବାକୁ ବାଧ ହେବେ । ଏହା ମୁଁ କହୁନାହିଁ କି ଆପଣ କହୁନାହାଁନ୍ତି ? ଏହା କହୁଛି ବିଶ୍ୱବ୍ୟାଙ୍କ । 'ଇଣ୍ଡିଆସ୍ ୱାଟର ଇକୋନୋମି: ବ୍ରେସିଂ ଫର୍ ଏ ଟର୍ବୁଲେଣ୍ଟ ଫ୍ୟୁଚର' ନାମକ ବହି ବିଶ୍ୱବ୍ୟାଙ୍କ ପ୍ରକାଶନ କରିଛି ଅକ୍ସଫୋର୍ଡ ଇୟୁନିଭରସିଟି ପ୍ରେସ ମାଧ୍ୟମରେ । ଲେଖକମାନେ ହେଲେ ଜନ୍ ବ୍ରିସ୍କୋ ଓ ଆର୍.ପି.ଏସ୍. ମାଲିକ୍ । ଏ ବହିର ମୂଳ ସନ୍ଦେଶ ହେଲା ଯେ ଭାରତର ବହୁମୁଖୀ ଜଳ ସମସ୍ୟାର ସମାଧାନ ପାଇଁ ବର୍ତ୍ତମାନର ବ୍ୟବସ୍ଥା, ଭିତ୍ତିଭୂମି ଓ ମାନସିକତା ଯଥେଷ୍ଟ ନୁହେଁ । ଭବିଷ୍ୟତର ବଢନ୍ତି ସମସ୍ୟାର ସମାଧାନ ପାଇଁ ବିଶ୍ୱବ୍ୟାଙ୍କର ଋଣ ଆବଶ୍ୟକ । ବିଶ୍ୱବ୍ୟାଙ୍କ ଏଇଥିପାଇଁ ଜଳକ୍ଷେତ୍ରରେ ପ୍ରାୟ ତିନିଶହ କୋଡିଏ କୋଟି ଡଲାର ପୁଞ୍ଜି ବିନିଯୋଗ କରିବ ବୋଲି ଯୋଜନା କରିଛି । ଏଥିରେ ଡ୍ୟାମ୍ ନିର୍ମାଣ କରିବା ଓ ବିଶାଳ ଜଳଭଣ୍ଡାର ସୃଷ୍ଟି କରିବାର ପ୍ରସ୍ତାବ ଦିଆଯାଇଛି । ଜଳବିଭାଜିକା କାର୍ଯ୍ୟକ୍ରମକୁ ନ୍ୟୁନ କରି ଏ କଥା ସମ୍ଭବତଃ କୁହାଯାଇଛି । ଜଳ ହିତାଧିକାରୀ ଗୋଷ୍ଠୀ ଉପରେ ପ୍ରାଧାନ୍ୟ ଦିଆଯାଇଛି । ଜଳ ସହ ଜମିର ସମ୍ପର୍କ ରହିବ ନାହିଁ ବୋଲି କୁହାଯାଇଛି, ଜଳର ମୂଲ୍ୟ ଓ ଦରଦାମ୍ ଉପରେ ନିର୍ଦ୍ଦିଷ୍ଟ ମତାମତ ଦିଆଯାଇଛି । ସବୁ ପ୍ରସ୍ତାବର ମୂଳରେ ଅଛି ଯେ ଜନସାଧାରଣ ଯଦି ଆବଶ୍ୟକ ପରିମାଣର ଜଳ ନିୟମିତ ଭାବରେ ପାଇବାକୁ ଆଶା କରୁଥାଆନ୍ତି, ସେମାନଙ୍କୁ ଉଚିତ୍ ମୂଲ୍ୟ ଦେବାକୁ ପଡିବ । ଜଳସମ୍ପଦର ଉତ୍ତମ ପରିଚାଳନା ଓ ଜଳର ବ୍ୟବସାୟଯୋଗ୍ୟ ଗୁଣ ଉପରେ ପ୍ରାଧାନ୍ୟ ଦିଆଯାଇଛି ।

ଜଳ ଉପରେ ଅଧିକାର ଯେ ଏକ ମାନବାଧିକାର ତାହା ସ୍ୱୀକାର କରାଯାଉନାହିଁ । ଜଳ ଉପରେ ସରକାରଙ୍କ ନିୟନ୍ତ୍ରଣ ହ୍ରାସ ପାଇ ଜଳର ଘରୋଇକରଣ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ଲେଖକମାନେ । କିନ୍ତୁ ଜଳର ଏକ ସାମାଜିକ ଗୁରୁତ୍ୱ ରହିଛି ତାହାକୁ କିପରି ଅସ୍ୱୀକାର କରାଯିବ ? ସରକାରଙ୍କ ଏକ ଦାୟିତ୍ୱ ଅଛି ତାହା କିପରି ହ୍ରାସ ପାଇବ ? ଜଳ ବୃଦ୍ଧି ଉତ୍ପାଦନର ଏକ ଅଙ୍ଗବିଶେଷ । ସର୍ବନିମ୍ନ ଖାଦ୍ୟ ଓ ପୁଷ୍ଟିସାର ପାଇଁ କୃଷି ଉତ୍ପାଦନର ଆବଶ୍ୟକତା ଅଛି । ଏହାଛଡା କୃଷକ ତାହାର ବଳକା ଖାଦ୍ୟ ଶସ୍ୟ ବିକ୍ରୟ କରି କିଛିମାତ୍ରାରେ ଲାଭ ମଧ କରୁଛି । ତେଣୁ ଜଳସେଚନ ସର୍ବନିମ୍ନ ଖାଦ୍ୟ ନିରାପତ୍ତା ଓ ଲାଭଜନକ କୃଷି ଉତ୍ପାଦନ ଉଭୟଙ୍କ ଭିତରେ ସନ୍ତୁଳନ ରକ୍ଷା କରିପାରିବ ତାହା ପ୍ରଶ୍ନବାଚକ ଚିହ୍ନରେ ରହିଛି । ମୋଟାମୋଟି ଜଳସମ୍ପଦର ସୁପରିଚାଳନା ପାଇଁ ଆବଶ୍ୟକ ହେଉଥିବା ସଂସ୍କାର ଯେଉଁ ପରିଚାଳନା କରାଯାଉଛି- ବିଶ୍ୱବ୍ୟାଙ୍କ ଜଳର ଘରୋଇକରଣ ଉପରେ କେତେ ଗୁରୁତ୍ୱ ଦେଉଛି ତାହା ଲକ୍ଷ୍ୟକରି ହେଉଛି । ଜଳ ବିକାଶ କ୍ଷେତ୍ରରେ ବିଶ୍ୱବ୍ୟାଙ୍କ ଯେଉଁ ପୁଞ୍ଜିନିବେଶ କଥା ବାରମ୍ବାର କହିଆସୁଛି ଓ ମୋଟା ଅଙ୍କର ଋଣ ଦେବାର ପ୍ରଲୋଭନ ଦେଖାଉଛି ତାହା ଆଜି ବିଭିନ୍ନ ପ୍ରଦେଶକୁ ବିଶ୍ୱବ୍ୟାଙ୍କର ଦ୍ୱାରସ୍ଥ କରିସାରିଛି । ନୀତିନିୟମ ସବୁ ବଦଳରେ ଆଜି ଘରୋଇକରଣର ସ୍ଲୋଗାନ ଦେବାକୁ ବହୁପ୍ରଦେଶ ପ୍ରତିଯୋଗିତା କରୁଛନ୍ତି । ଜଳର ଘରୋଇକରଣ କେବଳ ବିଶ୍ୱବ୍ୟାଙ୍କ କରୁନାହିଁ । ଋଣ ଦେଉଥିବା ଏସିଆନ୍ ଡେଭେଲପ୍‌ମେଣ୍ଟ ବ୍ୟାଙ୍କ ଓ ୟୁରୋପିଆନ୍ ୟୁନିଅନ୍ ଆଦି ସଂସ୍ଥାମାନେ ମଧ ଏକ ସ୍ୱରରେ ଓ ଏକ ନିର୍ଦ୍ଦିଷ୍ଟ ଢ଼ଙ୍ଗରେ କହିବା ଆରମ୍ଭ କରିଛନ୍ତି । ଏମାନଙ୍କ ସହ ସାମିଲ୍ ହୋଇଛନ୍ତି ବହୁରାଷ୍ଟ୍ରୀୟ କମ୍ପାନୀମାନେ । ଏହା କେବଳ ଭାରତବର୍ଷ ନୁହେଁ, ଆଫ୍ରିକା, ଏସିଆ ଓ ଲାଟିନ୍ ଆମେରିକାକୁ ବ୍ୟାପିଯାଉଛି । ବଲିଭିଆରେ ବିଶ୍ୱବ୍ୟାଙ୍କର ଋଣଫଳରେ କୋଚାବାମ୍ବା ସହରରେ ଜଳର ଘରୋଇକରଣ କରାଯାଇଥିଲା ଓ ବିକ୍‌ଟେଲ୍ ନାମକ ଏକ ଘରୋଇ ସଂସ୍ଥାକୁ ଜଳ ଯୋଗାଣ ବ୍ୟବସ୍ଥାର ଏକଚାଟିଆ ଅଧିକାର ନ୍ୟସ୍ତ ହୋଇଥିଲା । ଏହାର ପ୍ରତିବାଦରେ କୋଚାବାମ୍ବା ସହରରେ ଏକ ବଳିଷ୍ଠ ଜନ ଆନ୍ଦୋଳନ ସୃଷ୍ଟି ହୋଇଥିଲା ଓ ଏହାର ତୀବ୍ରତା ଏତେ ବଢ଼ିଥିଲା ଯେ ବିଶ୍ୱବ୍ୟାଙ୍କ ଓ ବିକ୍‌ଟେଲ୍ ଉଭୟେ ସେ ଦେଶରୁ ପରାହତ ହୋଇ ହଟିବାକୁ ବାଧ୍ୟ ହୋଇଥିଲେ । କୋଚାବାମ୍ବା ଜନଆନ୍ଦୋଳନ ଆଜି ଇତିହାସ ସୃଷ୍ଟି କରିଛି ଜଗତୀକରଣ ଓ ଘରୋଇକରଣ ବିରୋଧରେ ।

ଆଫ୍ରିକାର ମୋଜାମ୍ବିକ୍ ଦେଶରେ ବିଶ୍ୱବ୍ୟାଙ୍କ୍, ଆଫ୍ରିକାନ୍ ଡେଭେଲପମେଣ୍ଟ ବ୍ୟାଙ୍କ, ହଲାଣ୍ଡ ସରକାର ତଥା ୟୁରୋପିଆନ୍ ୟୁନିଅନ୍ ଏକ ମିଳିତ ଉଦ୍ୟମ କରି ଜଳ ସମ୍ପଦର ଘରୋଇକରଣ କରିବାରେ ସମର୍ଥ ହୋଇଥିଲେ । ୧୯୯୯ ମସିହାରେ ଏହାର ଫଳସ୍ୱରୂପ ଜଳଯୋଗାଣ ଓ ପରିମଳ ବ୍ୟବସ୍ଥା ବୌଗେଜ୍ ନାମକ ଏକ ଘରୋଇ ସଂସ୍ଥା ହାତକୁ ଟେକି ଦିଆଯାଇଥିଲା । ମୋଜାମ୍ବିକ୍‌ର ଋଣଭାର କୋହଳ କରାଯିବାକୁ ଏ ଘରୋଇକରଣ ଏକ ସର୍ତ୍ତ ବୋଲି ଉପସ୍ଥାପନା କରାଯାଇଥିଲା । ମୋଜାମ୍ବିକ୍ ଭଳି କେନିଆରେ ମଧ୍ୟ ଜଳର ଘରୋଇକରଣ ବ୍ୟବସ୍ଥା ବିଶ୍ୱବ୍ୟାଙ୍କ ତ୍ୱରାନ୍ୱିତ କରିଥିଲା । ବିଶ୍ୱବ୍ୟାଙ୍କ ନେପାଳରେ ଜଳର ଘରୋଇକରଣ ପ୍ରକ୍ରିୟା ପାଇଁ ୧୯୨୦ ମସିହାରୁ ଉଦ୍ୟମରତ । ତେଣୁ ବିଶ୍ୱବ୍ୟାଙ୍କ ତୃତୀୟ ମହାଦେଶର ଶିକ୍ଷା, ସ୍ୱାସ୍ଥ୍ୟ ଓ ଦୁର୍ନୀତି ନିବାରଣ କ୍ଷେତ୍ରରେ ଯେତିକି ପୁଞ୍ଜିନିବେଶ କରିବାକୁ ଆଗ୍ରହୀ, ତାହାଠାରୁ ଅଧିକ ଆଗ୍ରହୀ ଜଳର ଘରୋଇକରଣ ପାଇଁ ଏହା ଆଜି ପୃଥିବୀସାରା ପରିଲକ୍ଷିତ ।

ଜଳର ଘରୋଇକରଣ କ୍ଷେତ୍ରରେ ବିଶ୍ୱବ୍ୟାଙ୍କକୁ ସହଯୋଗ କରୁଥିବା ଦଶଟି ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ଚିହ୍ନିବା ଆବଶ୍ୟକ । ସେମାନଙ୍କୁ 'ବିଗ୍‌ଟେନ୍' ବା 'ବିଶାଳ ଦଶ' ବୋଲି ଆଖ୍ୟାୟିତ କରାଯାଇଛି । ସେମାନେ ହେଲେ ଫ୍ରାନ୍‌ସର ଭିଭେଣ୍ଡି, ସୁଏଜ୍ ଓ ବୌଗେଜ୍, ଯୁକ୍ତରାଷ୍ଟ୍ରର ଏନ୍‌ରୋନ୍ ଯାହା ଆଜି ଧ୍ୱସ୍ତବିଧ୍ୱସ୍ତ, ବିକ୍‌ଟେଲ୍, ୟୁକେର ଆଙ୍ଗ୍ଲିଂକାନ୍ ୱାଟେର, ସେଭର୍ଣ୍ଣ ଟ୍ରିଟ୍, ଥେମ୍‌ସ ୱାଟର, ୟୁନାଇଟେଡ୍, ୱାଟରସ୍ ୟୁଟିଲିଟିଜ୍ ଆଦି । ଆଜି ଏ ବହୁରାଷ୍ଟ୍ରୀୟ କମ୍ପାନୀ ଗୁଡିକ ପୃଥିବୀର ବିଭିନ୍ନ ଦେଶରେ ଜଳ ସମ୍ପଦର ମୁଖ୍ୟ ବ୍ୟବସାୟୀ ଓ ଜଳ ଘରୋଇକରଣର ମୁଖ୍ୟସ୍ତମ୍ଭ । ଜଳର ଘରୋଇକରଣ ପାଇଁ ବିଶ୍ୱବ୍ୟାଙ୍କ ଓ ବହୁରାଷ୍ଟ୍ରୀୟ କମ୍ପାନୀମାନେ ହାତ ମିଳାଇଛନ୍ତି ଓ ବିଶ୍ୱର ଜଳସମ୍ପଦକୁ ହଡପ କରିବା ପାଇଁ ଏକ ସୁସଂଯୋଜିତ କାର୍ଯ୍ୟକ୍ରମର ଆରମ୍ଭ କରିଛନ୍ତି । ଜଳର ବ୍ୟବସାୟରେ ପ୍ରାୟ ଆଠଶହ ବିଲିୟନ ଡଲାର ବା ତିନିଲକ୍ଷ ପଚାଶହଜାର କୋଟି ଟଙ୍କାର କାରବାର ହେବ ବୋଲି ବିଶ୍ୱବ୍ୟାଙ୍କ ଅଟକଳ କରିଛି । ଏଥିରେ ଅଛି ପାନୀୟ ଜଳଯୋଗାଣ, ପରିମଳ ବ୍ୟବସ୍ଥା, ଜଳସେଚନ ଜଳବିଦ୍ୟୁତ ଉତ୍ପାଦନ, ପାରିବେଶିକ ଅଭିବୃଦ୍ଧି ଓ ଜଳକ୍ରୀଡା ଏବଂ ପର୍ଯ୍ୟଟନ । ପ୍ରତ୍ୟେକ ବହୁରାଷ୍ଟ୍ରୀୟ କମ୍ପାନୀର ପରିଚାଳନା ବୋର୍ଡରେ ବିଶ୍ୱବ୍ୟାଙ୍କର ପ୍ରତିନିଧି ଅଂଶଗ୍ରହଣ କରନ୍ତି । ଏଥିରୁ ଅନୁମାନ କରାଯାଇପାରେ ଯେ ବିଶ୍ୱବ୍ୟାଙ୍କର ହାତ କେତେ ପର୍ଯ୍ୟନ୍ତ ପ୍ରସାରିତ ହୋଇଛି । ବିଶ୍ୱବ୍ୟାଙ୍କର ସହାୟତାରେ

ଏ ବହୁରାଷ୍ଟ୍ରୀୟ କମ୍ପାନୀମାନେ କେତେକ ନୀତି ସୃଷ୍ଟ କରନ୍ତି ଯାହା ପାଠକମାନେ ଜାଣିବା ନିତାନ୍ତ ଆବଶ୍ୟକ ।

କ) ଜଳର ଘରୋଇକରଣ ଓ ବିନିୟନ୍ତ୍ରଣ । (ଖ) ଜଳ ସମସ୍ୟାରୁ ଲାଭଜନକ ବ୍ୟବସାୟ । (ଗ) ଜଳ ସମ୍ପଦର ପରିଚାଳନା, କୌଶଳ ଓ ସନ୍ନିହିତ ବୈଷୟିକ ଜ୍ଞାନର ଏକଚାଟିଆ ନିୟନ୍ତ୍ରଣ । (ଘ) ଜଳ ସମ୍ପଦର ବହୁମୁଖୀ ଓ ବହୁଉପଯୋଗୀ ବ୍ୟବହାର ସମ୍ପର୍କରେ ନୀତି ନିର୍ଦ୍ଧାରଣ । (ଙ) ବିଶ୍ୱ ଜଳ ସମ୍ପଦର କ୍ରୟ ଓ ଯୌଥ ପରିଚାଳନା ।

ଏସବୁ ବହୁରାଷ୍ଟ୍ରୀୟ କମ୍ପାନୀ କେଉଁଭଳି ଗୋପନୀୟତା ଓ ଶଠତା ଅବଲମ୍ବନ କରନ୍ତି ତାହା ଜାଣିଲେ ସାଧାରଣ ମଣିଷ ବିଦ୍ରୋହ କରିବାକୁ ସ୍ୱତଃ ଆଗଭର ହେବେ ଯାହା ବଲିଭିଆର କୋଚାବାମ୍ବା ସହରରେ ପ୍ରଦର୍ଶିତ ହୋଇଛି । ଏ କମ୍ପାନୀ ଗୁଡିକର ପ୍ରତିନିଧିମାନେ ଜନତାର ଅଦାଲତରେ ଛିଡା ହୁଅନ୍ତି ନାହିଁ ପ୍ରଶ୍ନୋତ୍ତର ପାଇଁ । ବୁଶ ହୁଅନ୍ତୁ ବା ବ୍ଲେୟାର ହୁଅନ୍ତୁ, ସମସ୍ତ ରାଜକୀୟ ସଦସ୍ୟ ମଣ୍ଡଳୀରେ ସମ୍ମାନୀୟ ସଦସ୍ୟ ଭାବେ ଏମାନେ ତୃତୀୟ ବିଶ୍ୱକୁ ଯାଇଥାଆନ୍ତି ଓ ନିଜ କମ୍ପାନୀର ବ୍ୟବସାୟ ବଢ଼ାଇ ଥାଆନ୍ତି । ଏମାନଙ୍କର ଆର୍ଥିକ ପରିଚାଳନା ସ୍ୱଚ୍ଛ ଓ ନ୍ୟାୟୋଚିତ ନୁହେଁ । ଏନ୍‌ରୋନ୍ କମ୍ପାନୀ ଏହାର ଏକ ଉଦାହରଣ ଯାହା ଦୁର୍ନୀତି ଓ କୁପରିଚାଳନା ପାଇଁ ଆଜି ଭୁଶୁଡି ପଡିଛି । ଅନ୍ୟମାନଙ୍କର ସମୟ ଆସୁଛି ବୋଧ ହୁଏ ।

(୨)

ଏ ବର୍ଷ ଶ୍ରୀ ଅରବିନ୍ଦ କେଜରିୱାଲ୍ ପ୍ରସିଦ୍ଧ ଓ ଏସିଆର ନୋବେଲ୍ ପୁରସ୍କାର ରୂପେ ପରିଗଣିତ ମ୍ୟାଗ୍‌ସାସେ ପୁରସ୍କାର ପାଇଛନ୍ତି ତାଙ୍କର ସୂଚନା ଅଧିକାର ଅଭିଯାନ ପାଇଁ । ଜଣେ ଆୟକର ଅଫିସର ଓ ସରକାରୀ କର୍ମଚାରୀ ହୋଇ ମଧ୍ୟ ତାଙ୍କ ନେତୃତ୍ୱରେ ପରିଚାଳିତ ପରିବର୍ତ୍ତନ ସଂସ୍ଥା ଦିଲ୍ଲୀ ନଗରରେ ନାଗରିକମାନଙ୍କ ସଶକ୍ତିକରଣ ପାଇଁ ସୂଚନା ଅଧିକାର ଆଇନ୍‌କୁ କାର୍ଯ୍ୟକାରୀ କରିବାରେ ଯଥେଷ୍ଟ ସଫଳତା ହାସଲ କରିଛି । ଏଭ ସଫଳତା ତାଲିକା ମଧ୍ୟରେ ସର୍ବଶ୍ରେଷ୍ଠ ହେଉଛି ଦିଲ୍ଲୀ ସରକାରଙ୍କ ଜଳ ଘରୋଇକରଣ ପ୍ରକ୍ରିୟାର ଗୁମର କଥାକୁ ଲୋକଲୋଚନକୁ ଆଣିବା । ଏଥିରେ ବିଶ୍ୱବ୍ୟାଙ୍କ ଓ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର କିପରି ପ୍ରଚ୍ଛନ୍ନ ହାତ ରହିଛି ଓ କାହାର ସ୍ୱାର୍ଥରେ ଦିଲ୍ଲୀ ଜଳବୋର୍ଡ଼ କେଉଁଭଳି ନିଷ୍ପତି ନେଇଛି ତାହାର ରହସ୍ୟ ଉନ୍ମୋଚିତ ହୋଇଛି । ଏହା

ମଧ୍ୟ ଦେଶସାରା ଆଲୋଚିତ ହୋଇଛି ଓ ଆଲୋଡ଼ନ ମଧ୍ୟ ସୃଷ୍ଟି କରିଛି । ଏବେ କିଛି ଦିନ ତଳେ ସୋନିଆ ବିହାରର ଜଳ ବିଶୋଧନାଗାରରୁ ଜଳ ପ୍ରବାହିତ ହୋଇ ଦିଲ୍ଲୀ ବାସିନ୍ଦାଙ୍କୁ ୨୪ଘଣ୍ଟା ପାଣି ମିଳିଲା ବୋଲି ଗଣମାଧ୍ୟମରେ ପ୍ରଚାରିତ ହୋଇ ଜଳର ଘରୋଇକରଣ ବିରୁଦ୍ଧରେ ହେଉଥିବା ସମାଲୋଚନାକୁ ପ୍ରତିହତ କରିବାର ଚେଷ୍ଟା କରାଯାଇଥିଲା । ଗୃହିଣୀମାନେ ଓ ବୟସ୍କ ଗୃହ କର୍ତ୍ତାମାନେ ଏ ଜଳ ଯୋଗାଣ ବ୍ୟବସ୍ଥାରେ କିପରି ଖୁସି ହେଉଛନ୍ତି ସେମାନଙ୍କର ମତାମତ ବାରମ୍ବାର ପ୍ରଚାର କରାଯାଇଥିଲା । କିନ୍ତୁ ଅସଲ କଥା ଯେ ଦିଲ୍ଲୀ ଜଳବୋର୍ଡ଼ ମାଧ୍ୟମରେ ଜଳର ଘରୋଇକରଣ ବ୍ୟବସ୍ଥା ଏଦେଶର ଇତିହାସରେ ଏକ କଳଙ୍କମୟ ଅଧ୍ୟାୟ ସୃଷ୍ଟି କରିଛି ।

ଖୋଦ୍ ରାଜଧାନୀ ଦିଲ୍ଲୀରେ ଜଳର ଘରୋଇକରଣ ବ୍ୟବସ୍ଥାକୁ ସବିଶେଷ ଆଲୋଚନା, ସମାଲୋଚନା ଓ ପର୍ଯ୍ୟାଲୋଚନା କରିବାର ଆବଶ୍ୟକତା ମୁଁ ବାରମ୍ବାର ଅନୁଭବ କରୁଛି । ଏ ପରିପ୍ରେକ୍ଷୀରେ ସାରାଦେଶରେ ଓ ବିଭିନ୍ନ ପ୍ରଦେଶରେ ଜଳର ଘରୋଇକରଣ ପ୍ରକ୍ରିୟା ଉପରେ ନଜର ପକେଇବା ମଧ୍ୟ ଜରୁରୀ ହୋଇ ପଡିଛି । ମୋର କହିବାର ଉଦ୍ଦେଶ୍ୟ ଯେ ଏ ପ୍ରକ୍ରିୟାଟି ଗୋଟିଏ ସହର ବା ଗୋଟିଏ ଗାଁରେ କେବଳ ସୀମିତ ହୋଇ ରହିନାହିଁ । ଏହା ଯେପରି ଏ ଭିତରେ ସବୁ ଅଞ୍ଚଳକୁ ବ୍ୟାପି ଯାଇଛି । ଓଡ଼ିଶା ସମେତ ଯେଉଁ ପ୍ରଦେଶରେ ଘରୋଇକରଣ ପ୍ରାଧାନ୍ୟ ଲାଭ କରିଛି ସେଗୁଡିକ ଆଲୋଚନା ମୁଁ ନିମ୍ନରେ ଦେଉଛି ।

ଓଡ଼ିଶା: ପ୍ରଥମେ ଓଡ଼ିଶା କଥା ବିଚାରକୁ ନିଆଯାଉ । ବିଶ୍ୱବ୍ୟାଙ୍କର ପ୍ରରୋଚନାରେ ଓଡ଼ିଶା ସରକାର ଜଳର ଘରୋଇକରଣକୁ ଅତି ସନ୍ତର୍ପଣରେ ପ୍ରୋତ୍ସାହନ ଦେଉଛନ୍ତି । ଚାଷୀମାନେ ଜଳ ସେଚନକୁ ନିୟନ୍ତ୍ରଣ କରିବେ ଓ ଜଳ ଆବଶ୍ୟକ ପରିମାଣରେ ପ୍ରତ୍ୟେକଙ୍କୁ ବାଣ୍ଟିବେ ଏହା ଏକ ଆଦର୍ଶ ସହଭାଗୀତା ବୋଲି ଧ୍ୱନି ଦେଇ ସରକାର ଓ ବିଶ୍ୱବ୍ୟାଙ୍କ ପାଣି ପଞ୍ଚାୟତ ବ୍ୟବସ୍ଥା କ୍ରିୟାନ୍ୱିତ କରିଛନ୍ତି ଯଦିଓ 'ପାଣି ପଞ୍ଚାୟତ' ମହାରାଷ୍ଟ୍ରରେ ଯୁଗାନ୍ତକାରୀ ପରୀକ୍ଷା । ସ୍ୱର୍ଗତ ଶ୍ରୀ ଭି.ବି. ସାଲୁଙ୍କେ ପ୍ରଥମେ ଅଶୀଦଶକରେ ଏହାକୁ ସଫଳ କରାଇଥିଲେ । ଓଡ଼ିଶାରେ ପାଣି ପଞ୍ଚାୟତର ସଫଳ ରୂପାୟନ ହୋଇଛି ବୋଲି ବିଭିନ୍ନ ସର୍ଭେକ୍ଷଣ ଓ ପରିସଂଖ୍ୟାନରୁ କୁହାଯାଇଛି । କିନ୍ତୁ ପ୍ରସିଦ୍ଧ ସ୍ତମ୍ଭକାର ଶ୍ରୀ ପି.ସାଇନାଥ୍‌ଙ୍କ ତୀକ୍ଷ୍ଣ ବିଶ୍ଳେଷଣ ଓ ପାଣି ପଞ୍ଚାୟତ ଉପରେ ହୋଇଥିବା 'ଜନଶୁଣାଣି'ରୁ ସ୍ପଷ୍ଟ ଜଣାପଡ଼େ ଯେ ଏହା ସାଧାରଣ ଚାଷୀ ଓ ବିଶେଷକରି

ଛୋଟ ଓ ନାମମାତ୍ର ଚାଷୀଙ୍କୁ ଏପର୍ଯ୍ୟନ୍ତ ସାହାଯ୍ୟ କରିନାହିଁ । ଲାଭାନ୍ୱିତ ହୋଇଛନ୍ତି ବଡ଼ଚାଷୀ ଓ କ୍ଷମତା ସମ୍ପର୍କ ପରିବାରମାନେ । ସରକାର ଏ ସମାଲୋଚନାର ଉତ୍ତର ଆଜି ପର୍ଯ୍ୟନ୍ତ ଦେଇ ନାହାନ୍ତି । ଓଡ଼ିଶାରେ ଜଳର ଘରୋଇକରଣ ପ୍ରକ୍ରିୟାର ଅନ୍ୟ ଏକ ଉଦାହରଣ ହେଲା ଯେ ହୀରାକୁଦ ଜଳଭଣ୍ଡାରରୁ ଶିଳ୍ପ ଅନୁଷ୍ଠାନମାନଙ୍କୁ ଜଳଯୋଗାଣ ପାଇଁ ଚୁକ୍ତିନାମା ସ୍ୱାକ୍ଷର । ଖୋଦ୍ ମୁଖ୍ୟମନ୍ତ୍ରୀ ଗତ ବିଧାନ ସଭାର ପ୍ରଶ୍ନୋତ୍ତର ବେଳେ ଯାହା କହିଛନ୍ତି ତାହା କେତେ ଭୟାନକ ଭାବି ହେଉନାହିଁ । ସେ କହିଛନ୍ତି-

'ହୀରାକୁଦ ଯୋଜନାରୁ ବାର୍ଷିକ ୧.୩୦୦ମିଲିୟନ୍ ଏକର ଫିଟ୍ ଜଳ ଜଳସେଚନ ପାଇଁ ଯୋଗାଇ ଦେବା ସଙ୍ଗେସଙ୍ଗେ ବାର୍ଷିକ ୦.୩୨୮୫ ମିଲିୟନ ଏକର ଫିଟ୍ ଜଳ ଶିଳ୍ପାନୁଷ୍ଠାନମାନଙ୍କୁ ଯୋଗାଇ ଦିଆଯାଉଛି । ଏହି ନଦୀବନ୍ଧ ଯୋଜନାରୁ ଜଳଯୋଗାଣ ପାଇଁ ନଅଟି ଅନୁଷ୍ଠାନ ସହ ଚୁକ୍ତିନାମା ସ୍ୱାକ୍ଷରିତ ହୋଇଛି ଏବଂ ଏଥିରେ ବାର୍ଷିକ ୦.୧୫୪୦ ମିଲିୟନ୍ ଏକର ଫିଟ୍ ଜଳ ବିନିଯୋଗ ହେବ ।'

ଶୁଣାଯାଏ ଯେ ଓଡ଼ିଶାରେ ଯେତୋଟି ଜଳଭଣ୍ଡାର ଅଛି ଓ ଯେଉଁ କେତୋଟି ଜଳଭଣ୍ଡାରକୁ ନେଇ ପାଣି ପଞ୍ଚାୟତ ସଫଳତା ଅର୍ଜନ କରିଛି ବୋଲି ସରକାର ଦାବୀ କରୁଛନ୍ତି ସେ ଜଳଭଣ୍ଡାରରୁ ବହୁସଂଖ୍ୟାରେ ଶିଳ୍ପାନୁଷ୍ଠାନମାନେ ଶିଳ୍ପ ପାଇଁ ଜଳନେବାକୁ ଚୁକ୍ତିନାମା ସ୍ୱାକ୍ଷର କରିବାକୁ ଦୃଢ଼ ପଦକ୍ଷେପ ନେଇଛନ୍ତି । ଜଳଭଣ୍ଡାର ଜଳ କାହାର ? ସର୍ବସାଧାରଣଙ୍କର ? ଚାଷୀଙ୍କର ? ସରକାରଙ୍କର ? ସରକାର ଜନତାଙ୍କ ବିନାପରାମର୍ଶରେ ଶିଳ୍ପ ଅନୁଷ୍ଠାନମାନଙ୍କୁ ଜଳଯୋଗାଣ ଘରୋଇକରଣ ଏକ ଜ୍ୱଳନ୍ତ ଉଦାହରଣ । ଆଗାମୀ ଦିନରେ ଶିଳ୍ପାୟନ ପାଇଁ ଯେଉଁ ଅହେତୁକ ଓ ଅବାଞ୍ଛିତ ଆଗ୍ରହ ସୃଷ୍ଟି ହୋଇଛି ଏହାର ଏକ ମୁଖ୍ୟ ପ୍ରଭାବ ହେବ ଜଳର ଘରୋଇକରଣ ପ୍ରକ୍ରିୟାକୁ ଆହୁରି ତ୍ୱରାନ୍ୱିତ କରିବା । ଏଥିରେ ସାଧାରଣ ଜନତା ଓ କୃଷକମାନଙ୍କର ସ୍ୱାର୍ଥହାନୀ ହେବା ନିଶ୍ଚିତ ଏଥିରେ ଦ୍ୱିମତ ହେବାର ନାହିଁ ।

କେରଳ: କେରଳରେ ଜଳର ଘରୋଇକରଣ ପ୍ରଶ୍ନକୁ ନେଇ ଜନଆନ୍ଦୋଳନ ମୁଣ୍ଡ ଟେକିଛି । କୋକାକୋଲା ଯେଉଁଭଳି ଭୂଜଳର ମାତ୍ରାଧିକ ବିନିଯୋଗ କରିଛି ଓ ପରିବେଶକୁ ଦୂଷିତ କରିଛି ତାହା ବିରୁଦ୍ଧରେ ପ୍ଲାଚିମାଡ଼ାଠାରେ ଯେଉଁ ସଫଳ ବିରୋଧାଭାସ ଦେଖାଦେଇଛି ଓ ଏକ ପଞ୍ଚାୟତ ଜଳ ଉପରେ ନିଜର ଅଧିକାର ଜାହିର କରିବାକୁ ଯାଇ ଏକ ଶକ୍ତିଶାଳୀ ବହୁରାଷ୍ଟ୍ରୀୟ କମ୍ପାନୀକୁ ଯେଉଁଭଳି ଚ୍ୟାଲେଞ୍ଜ କରିଛି

ତାହା ସାମାଜିକ ଆନ୍ଦୋଳନର ଏକ ସଫଳ ଉଦାହରଣ ହୋଇଛି । ଏଇ ସ୍ତମ୍ଭରେ ପ୍ଲାଚିମାଡ଼ା ଜଳ ଆନ୍ଦୋଳନ ଏବଂ ଏହାର ନେତୃତ୍ୱ ଦେଇଥିବା କମ୍ରେଡ୍ ଅଜୟନଙ୍କ ସବିଶେଷ କଥା ମୁଁ କିଛି ଦିନ ତଳେ ଲେଖିଥିଲି । କେରଳରେ ଜଳର ଘରୋଇକରଣ ଖାଲି କୋକାକୋଲା କମ୍ପାନୀ ସପକ୍ଷରେ କରାଯାଇ ନାହିଁ, ସରକାର ସେଠାରେ ବିଭିନ୍ନ ପ୍ରକଳ୍ପ ଜରିଆରେ ଏହା ବିଧିବଦ୍ଧ ଭାବେ ରୂପାୟନ କରାଯିବାର ସରକାରୀ ପ୍ରସ୍ତାବ ଦିଆଯାଇଛି । ସେଗୁଡ଼ିକ ହେଲା-

କ) ଏର୍ଣ୍ଣାକୁଲମ୍ ଜିଲ୍ଲାରେ ପେରିୟାର ନଦୀର ଘରୋଇକରଣ ପ୍ରସ୍ତାବ ଯାହାଦ୍ୱାରା କୋଚିନ୍‌ର ଶିଳ୍ପାଞ୍ଚଳକୁ ଜଳଯୋଗାଣ । (ଖ) ପାଲାକାଡ଼୍ ଜିଲ୍ଲାରେ ଥିବା କାର୍ଜକୋଡ଼୍ ଶିଳ୍ପାଞ୍ଚଳକୁ ଜଳଯୋଗାଣ । (ଗ) ଗୁରୁଭାୟୁର ମନ୍ଦିର ଓ ସହରକୁ ଜଳ ଯୋଗାଣ । (ଘ) କୋଟାୟାମ ଜିଲ୍ଲାର କୁମାରକୋମ୍ ପର୍ଯ୍ୟଟନ କେନ୍ଦ୍ରକୁ ଜଳଯୋଗାଣ । (ଙ) ଥିରୁବନ୍ତପୁରମ୍ କୋଭାଲମ୍ ବିଚ୍‌କୁ ଜଳଯୋଗାଣ ।

୨୦୦୩ମସିହାରେ କେରଳ ସରକାର ବିଶ୍ୱ ପୁଞ୍ଜି ନିବେଶ ପାଇଁ ଏକ ସମ୍ମିଳନୀ କରିଥିଲେ ଯେଉଁଥିରେ ଉପରୋକ୍ତ ପ୍ରକଳ୍ପ ଗୁଡ଼ିକ ତାଲିକାଭୁକ୍ତ କରାଯାଇଥିଲା । ଏସବୁ ପ୍ରକଳ୍ପଗୁଡ଼ିକ ଯେତେବେଳେ ସର୍ବସାଧାରଣ ଜାଣିପାରିଛନ୍ତି ସବୁଠାରେ ପ୍ରତିବାଦ କରିଛନ୍ତି । ଏହା ପ୍ରକଳ୍ପ ଗଡ଼ିକର ସଫଳ ରୂପାୟନରେ ପ୍ରଚଣ୍ଡ ବାଧା ସୃଷ୍ଟି କରିଛି । ଏ ଦେଶରେ ସବୁଠାରୁ ସାକ୍ଷର ପ୍ରଦେଶରେ ଘରୋଇକରଣର ସୁଅ ଏମିତି ଛୁଟିବ, କେହି ଆଶା କରିନାହାନ୍ତି । ଏବେ ବାମପନ୍ଥୀ ସରକାର ଶାସନରେ ଅଛନ୍ତି ଓ କୋକାକୋଲାକୁ କେରଳରେ ନିଷିଦ୍ଧ କରାଯାଇଛି ଓ ଜଳର ଘରୋଇକରଣ ପ୍ରସ୍ତାବ ସବୁ ଅଟକି ରହିଛି ।

ତାମିଲନାଡୁ: ତାମିଲନାଡୁରେ ଜଳର ଘରୋଇକରଣ ପ୍ରକ୍ରିୟା ଜୋରସୋରରେ ଆଗେଇ ଚାଲିଛି । ପ୍ରଥମେ ଭବାନୀ ନଦୀ କଥା ବିଚାରକୁ ନିଆଯାଉ ଯାହା କୋଇମ୍ୱାଟୁର ଶିଳ୍ପନଗରୀ ପାଖରେ ପ୍ରବାହିତ ହେଉଛି । ଏଠାରେ କୋକାକୋଲା କମ୍ପାନୀର କିନ୍‌ଲେ ପାଣି ବୋତଲ ତିଆରି କରିବା ପାଇଁ ଦୈନିକ ଆବଶ୍ୟକ ହେଉଥିବା ଦଶଲକ୍ଷ ଲିଟର ଜଳଯୋଗାଣ ପାଇଁ ଅନ୍ନପୂର୍ଣ୍ଣା ହୋଟେଲକୁ ଭବାନୀ ନଦୀରୁ ବିକ୍ରୟ କରାଯାଇଛି । କୋକାକୋଲା କମ୍ପାନୀ ଲିଟର ପିଛା ୭୩ ପଇସା ଦେଇ ପାଣି କିଣୁଛି ଓ କିନ୍‌ଲେ ପାଣିବୋତଲକୁ ଲିଟର ପିଛା ଦଶଟଙ୍କାରେ ବିକୁଛି ।

ଦ୍ୱିତୀୟରେ ପ୍ରସିଦ୍ଧ ତିରୁପୁରର ୨୦୦୦ କୋଟି ଟଙ୍କାର ଟେକ୍‌ସଟାଇଲ୍ ଶିଳ୍ପ ଓ ସହର (ଯାହା ଟି-ସାର୍ଟ ପାଇଁ ପୃଥିବୀ ପ୍ରସିଦ୍ଧ) ପାଇଁ ଆବଶ୍ୟକ ହେଉଥିବା ପାଣି କେମିତି ସହଜରେ ମିଳିପାରିବ ସେଠାରେ ପବ୍ଲିକ୍ -ପ୍ରାଇଭେଟ୍ ପାର୍ଟନରସିପ୍ ବ୍ୟବସ୍ଥା ଚିନ୍ତା କରାଯାଇଛି । ମହେନ୍ଦ କନ୍‌ସୋର୍ଟିୟମ୍ ନାମରେ ଏକ କମ୍ପାନୀ ଗଠନ କରାଯାଇଛି ଯେଉଁଠି ମହେନ୍ଦ୍ର ଏଣ୍ଡ ମହେନ୍ଦ୍ର, ଇୟୁନାଇଟେଡ୍ ଇଣ୍ଟରନ୍ୟାସନାଲ୍, ୱେଷ୍ଟୱାଟର ଏବଂ ବିକ୍‌ଟେଲ ନାମକ ଚାରୋଟି କମ୍ପାନୀ ଅଂଶୀଦାର ଅଛନ୍ତି । ଭାରତ ସରକାର ଓ ତାମିଲନାଡୁ ରାଜ୍ୟ ସରକାର ତିନିଶହ ନବେକୋଟି ଟଙ୍କା ଆର୍ଥିକ ସାହାଯ୍ୟ ଦେଉଛନ୍ତି । ଏଥିରେ ପ୍ରାୟ ୭ହଜାର କୋଟି ଟଙ୍କାର ଋଣ ପ୍ରସ୍ତାବ ରହିଛି ଯାହା ବିଶ୍ୱବ୍ୟାଙ୍କ ଏବଂ ୟୁଏସ୍‌ଏଡ୍ ସଂସ୍ଥା ଜଡିତ ଅଛନ୍ତି । ଏ ପ୍ରକଳ୍ପର ଚାରୋଟି ଉଦ୍ଦେଶ୍ୟ ଅଛି ସେଗୁଡ଼ିକ ହେଲା- କ) ତିରୁପୁର ଶିଳ୍ପ ସହର ଏବଂ ପାଖରେ ଥିବା ୨୧ଟି ପଞ୍ଚାୟତକୁ ଜଳ ଯୋଗାଣ ଖ) ତିରୁପୁରର ୭୦୦ଟି ଲୁଗାକୁ ରଙ୍ଗ ଦେଉଥିବା ୟୁନିଟ୍‌କୁ ଜଳ ଯୋଗାଣ ଗ) ତିରୁପୁର ସହର ପାଇଁ ଏକ ଜଳ ନିଷ୍କାସନ ବ୍ୟବସ୍ଥା ଏବଂ ଘ) ତିରୁପୁର ଆଖପାଖ ୮୦ଟି ବସ୍ତି ପାଇଁ ପରିମଳ ବ୍ୟବସ୍ଥା । ୩୦ ବର୍ଷରେ ସମୁଦାୟ ଋଣ ପରିଶୋଧ କରାଯିବ । ଶିଳ୍ପ ଯେଉଁ ଜଳ ବ୍ୟବହାର କରିବ ତାହା ପାଇଁ ଅଧିକ ଦାମ୍ ଦେବାକୁ ହେବ । ଘରୋଇ ଜଳଯୋଗାଣ ବ୍ୟବସ୍ଥା ସୁଲଭ ହେବ । ଏ ପ୍ରକଳ୍ପ ୬୦କି.ମି ଦୂରରୁ ଭବାନୀ ନଦୀରୁ ଜଳ ଉତ୍ତୋଳନ କରି ତିରୁପୁର ଶିଳ୍ପ ସହରକୁ ଅଣାଯିବ ପାଇପ୍ ମାଧ୍ୟମରେ । ପ୍ରକଳ୍ପ ଏପର୍ଯ୍ୟନ୍ତ ଜଳଯୋଗାଣ କରିନାହିଁ କିନ୍ତୁ ଜଳର ଦର ବଢ଼ିବାରେ ଲାଗିଛି । ତିରୁପୁର ସହରରେ ବସ୍ତ୍ରକୁ ରଙ୍ଗ ଦେଉଥିବା ଶିଳ୍ପାନୁଷ୍ଠାନମାନେ ଉଚ୍ଚ ଦରରେ ପାଣି କିଣିବାକୁ ଅନିଚ୍ଛା ପ୍ରକାଶ କରିଛନ୍ତି । ଏହା ଫଳରେ ଏ ଘରୋଇକରଣ ପ୍ରକ୍ରିୟା ଅନେକ ପ୍ରଶ୍ନ ସୃଷ୍ଟି କରି ସାରିଲାଣି । କୋଇମ୍ବାଟୋର୍ ଶିଳ୍ପାଞ୍ଚଳରେ କିଲୋ ଲିଟର ଜଳ ପ୍ରତି ସାଢ଼େ ତିନିଟଙ୍କା ପଡୁଥିବା ବେଳେ ତିରୁପୁରରେ କିଲୋ ଲିଟର ପିଛା ଛଅଟଙ୍କା ଦେବାକୁ ପଡ଼ିବ ବୋଲି ଜାଣି ଗ୍ରାହକମାନେ ବିରୋଧ ପ୍ରଦର୍ଶନ କରୁଛନ୍ତି । ଅନ୍ୟପକ୍ଷରେ ସରକାର ଏ ପ୍ରକଳ୍ପ ସଫଳ ହେବବୋଲି ବିଭିନ୍ନ ପଦକ୍ଷେପ ନେଉଛନ୍ତି । ଟ୍ୟାଙ୍କର ଜରିଆରେ ତିରୁପୁର ସହରରେ ଜଳ ଯୋଗାଣକୁ ବନ୍ଦ କରିବା ପାଇଁ ଭୂଜଳ ଉତ୍ତୋଳନ ଉପରେ କଟକଣା ଜାରି କରାଯାଉଛି । କିନ୍ତୁ ଜଳର ଘରୋଇକରଣ ଦିଗରେ ଏହା ଏକ ସଫଳ ପରୀକ୍ଷଣ ବୋଲି ପ୍ରମାଣ କରାଯିବାକୁ ଉଦ୍ୟମ ହୋଇଛି ଓ ଏଥିପାଇଁ ସ୍ପଷ୍ଟ ରଣନୀତି ଅବଲମ୍ବନ କରାଯାଇଛି । ପ୍ରଥମେ ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ

ଜଳସ୍ରୋତର ମାଲିକାନା ଏକ ଘରୋଇକମ୍ପାନୀକୁ ଅତି ଚତୁରତାର ସହ ଦିଆଯାଇଛି । ସରକାରଙ୍କ ସହଭାଗିତା ଥିବାରୁ ଘରୋଇକମ୍ପାନୀ ଯେମିତି ସବୁ ନିୟନ୍ତ୍ରଣ କରିପାରିବ ନାହିଁ ଏଇଭଳି ଏକ ଧାରଣା ସୃଷ୍ଟି ହୋଇଛି । ଘରୋଇ କମ୍ପାନୀମାନଙ୍କୁ ବିଭିନ୍ନ ରିହାତି ଦିଆଯାଇଛି ଅତି ସନ୍ତର୍ପଣରେ । ଏବଂ ଜଳଯୋଗାଣ ବ୍ୟବସ୍ଥା କେବଳ ଶିଳ୍ପ ପାଇଁ ନୁହେଁ ଏହା ସାଧାରଣ ଲୋକଙ୍କ ପାଇଁ ଯେ ଉଦ୍ଦିଷ୍ଟ ତାହା ମଧ୍ୟ ଯୋଜନାର ଅନ୍ତର୍ଭୁକ୍ତ ହୋଇଅଛି । ତିରୁପୁରଠାରେ ଚାଲିଥିବା ପବ୍ଲିକ୍-ପ୍ରାଇଭେଟ୍ ପାର୍ଟନରସିପ୍ କେତେ ଯୁକ୍ତିଯୁକ୍ତ ତାହା ଅନେକ ସମାଲୋଚନା ସୃଷ୍ଟି କରିଛି ଓ ଆଜି ସବୁ କ୍ଷେତ୍ରରେ ଏଇ ମଡେଲ୍‌ର ଗୁଣଗାନ କରାଯାଇ ବିକାଶର ସବୁଦ୍ୱାର ଘରୋଇକରଣ ପାଇଁ ଉନ୍ମୁକ୍ତ କରାଯାଇଛି ।

**ମହାରାଷ୍ଟ୍ର:** ଥାନେ ଜିଲ୍ଲାର ଓ୍ୱାଡ଼ାତାଲୁକରେ ପ୍ରତିଷ୍ଠା କରାଯାଇଥିବା ଶିଳ୍ପମାନଙ୍କ ଭିତରେ କୋକାକୋଲାର ଫାକ୍ଟ୍ରୀ ରହିଛି । ଏଥିପାଇଁ ଆବଶ୍ୟକ ହେଉଥିବା ପାଣି କିପରି ସହଜରେ କୋକାକୋଲାକୁ ମିଳିପାରିବ ସେଥିପାଇଁ ମହାରାଷ୍ଟ୍ର ସରକାରଙ୍କ ଜଳସେଚନ ବିଭାଗ ବୈଚିର୍ଣ୍ଣା ନଦୀରେ ଏକ ଡ୍ୟାମ୍ ନିର୍ମାଣ କରିଛନ୍ତି । କୋକାକୋଲା କମ୍ପାନୀ ଦୈନିକ ୩ଲକ୍ଷ ଲିଟର ଜଳ ଏ ଡ୍ୟାମ୍‌ରୁ ନେଉଛି ଯାହା ୭୫ ହଜାର ବାସିନ୍ଦା ବିଶେଷ କରି ସେ ଅଞ୍ଚଳର ଆଦିବାସୀମାନଙ୍କୁ ଜଳ ଯୋଗାଇଥାଆନ୍ତି । ଏହା ବିରୁଦ୍ଧରେ ଜନଆନ୍ଦୋଳନ ମୁଣ୍ଡ ଟେକିଛି ।

**ଉତ୍ତରପ୍ରଦେଶ:** ବାରାଣସୀ ନଗରର ଉପକଂଠରେ ୧୨କି.ମି ଦୂରରେ ମେହେନ୍ଦିଗଞ୍ଜ ବୋଲି ଇଲାକା ଅଛି ଯେଉଁଠି ଜନସାଧାରଣ ଜଳର ଘରୋଇକରଣ ବିରୋଧରେ ସ୍ୱରଉତ୍ତୋଳନ କରିଛନ୍ତି । ଏଠାରେ ମଧ୍ୟ କୋକାକୋଲା ଭୂଜଳକୁ ନେଇ ତାହାର ବ୍ୟବସାୟ ଲାଭଜନକ କରିପାରିଛି । କେରଳର ପ୍ଲାଚିମାଡ଼ା ଭଳି ମେହେନ୍ଦିଗଞ୍ଜ ଗାଁରେ କୋକାକୋଲା ଯୋଗୁଁ ଜଳସ୍ତର ହ୍ରାସ ପାଇଛି ଓ ପରିବେଶ ଦୂଷିତ ହୋଇଛି । କୋକାକୋଲା କମ୍ପାନୀକୁ ଦିଆଯାଇଥିବା ଜମିର କିଛିଭାଗ ସର୍ବସାଧାରଣଙ୍କ ସମ୍ପତି ଯାହାକୁ ସରକାର ଜଳର ଘରୋଇକରଣ ପାଇଁ ହସ୍ତାନ୍ତର କରିଛନ୍ତି । ୨୦୦୩ ମସିହାରେ ମେହେନ୍ଦିଗଞ୍ଜର ବାସିନ୍ଦାମାନେ ଏକ ସଶକ୍ତ ଜନଆନ୍ଦୋଳନ ଆରମ୍ଭ କରିଛନ୍ତି ଓ କେତେ ମଧ୍ୟ ଗିରଫ ହୋଇଛନ୍ତି । ଏବେ ସୁଦ୍ଧା ଜନଆନ୍ଦୋଳନ ଚାଲିଛି ସେଠାରେ ।

**ରାଜସ୍ଥାନ:** ହିନ୍ଦୁସ୍ତାନ୍ ଜିଙ୍କ ଲିମିଟେଡ଼ ନାମକ ଏକ ଶିଳ୍ପ ଅନୁଷ୍ଠାନ ବହୁପରିମାଣରେ

ଆବଶ୍ୟକ କରୁଥିବା ପାଣି କେମିତି ସହଜରେ ମିଳିବ ରାଜସ୍ଥାନ ସରକାର ମନ୍‌ସି-ଓ୍ୱାକାଲ ନଦୀରେ ଡ୍ୟାମ୍ ତିଆରି କରିବା ଯୋଜନା କରିଛନ୍ତି । ସ୍ଥାନୀୟ ଗାଁ ଲୋକଙ୍କ ପ୍ରତିରୋଧ ଯୋଗୁଁ ଏହା ଏପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇନାହିଁ । ଉଦୟପୁର ସହର ପାଇଁ ଜଳଯୋଗାଣ ବ୍ୟବସ୍ଥା ହେଉ ବା ମାର୍ବଲ୍ ଶିଳ୍ପ ପାଇଁ ଆବଶ୍ୟକ ହେଉଥିବା ବହୁପରିମାଣର ଜଳହେଉ, ସରକାରଙ୍କ ଜନସ୍ୱାସ୍ଥ୍ୟ ବିଭାଗ ଓ ହିନ୍ଦୁସ୍ତାନ ଜିଙ୍କ୍ ଲିମିଟେଡ୍ ଭିତରେ ବୁଝାମଣା ହୋଇଥିଲା ଏ ଜଳପ୍ରକଳ୍ପ ନିର୍ମାଣ ପାଇଁ । କିନ୍ତୁ ପ୍ରବଳ ଜନଆନ୍ଦୋଳନ ହେତୁ ଏବଂ ବିସ୍ଥାପିତ ହେବାକୁ ଥିବା ବିଭିନ୍ନ ଗ୍ରାମବାସୀଙ୍କ ଦୃଢ଼ ବିରୋଧାଭାସ ଯୋଗୁଁ ଏ ପ୍ରକଳ୍ପ କାର୍ଯ୍ୟକାରୀ ହୋଇପାରିନାହିଁ ଏଯାବତ୍ ।

ଦିଲ୍ଲୀ: ଦିଲ୍ଲୀରେ ଜଳାଭାବ ଏତେ ପରିମାଣରେ ବଢିଯାଇଛି ବିଭିନ୍ନ ନଦୀରୁ ବିଭିନ୍ନ ରାଜ୍ୟ ଦେଇ ଜଳ ଆଣି ଜଳଯୋଗାଣ ବ୍ୟବସ୍ଥା କରିବା ଦୂରୁହ ବ୍ୟାପାର ହୋଇପଡିଛି । ଏଥିପାଇଁ ସରକାର ତେହରି ନଦୀ ବନ୍ଧ ଯୋଜନା ମଧ୍ୟକୁ ଆଡ୍ କରିଛନ୍ତି । କିନ୍ତୁ ଏତେ ଦୂରରୁ ପାଣି ଆଣି ସମସ୍ତଙ୍କୁ ବାଣ୍ଟିବା ପଛରେ ଘରୋଇକରଣର ଦୃଢ଼ ମାନସିକତା ରହିଛି ବୋଲି ଦିଲ୍ଲୀକୁ ଆବଶ୍ୟକ ହେଉଛି ଦୈନିକ ୮୪୦ ମିଲିୟନ ଗ୍ୟାଲନ୍ । କିନ୍ତୁ ଯମୁନା, ଭାକ୍ରା ଓ ଗଙ୍ଗାନଦୀ ଆଦିରୁ ୟୁପି.ଓ ହରିୟାନା ଦେଇ ଯେଉଁ ଜଳ ଆସୁଛି ଏବଂ ଗଭୀର ନଳକୂପ ଜରିଆରେ ଯେଉଁ ଭୂଜଳ ଉତ୍ତୋଳନ କରାଯାଉଛି ତାହା ଯଥେଷ୍ଟ ନୁହେଁ । ଆବଶ୍ୟକ ପରିମାଣର ଜଳ ପାଇବା ପାଇଁ ଦିଲ୍ଲୀ ସରକାର ବିଭିନ୍ନ ଯୋଜନା କରିଛନ୍ତି ଓ ବଢ଼ନ୍ତି ଜନସଂଖ୍ୟାକୁ ଆଖିରେ ରଖି ଏକ ମାଷ୍ଟରପ୍ଲାନ୍ ଦିଲ୍ଲୀ ଜଳବୋର୍ଡ୍ ମାଧ୍ୟମରେ କରିଛନ୍ତି । ବିଶ୍ୱବ୍ୟାଙ୍କର ମତ ଅନୁସାରେ ଦିଲ୍ଲୀ ପାଇଁ ଅଧିକ ଜଳ ବାହାରୁ ଆଣିବା ଅପେକ୍ଷା ମିଳୁଥିବା ଜଳର ଉତ୍ତମ ଓ ସୁକ୍ଷମ ବଣ୍ଟନର ଆବଶ୍ୟକତା ରହିଛି । ଏଥିପାଇଁ ପୁଞ୍ଜିନିବେଶର ଆବଶ୍ୟକତା ରହିଛି । ଜଳଯୋଗାଣ ଏପରି ହେବା ଆବଶ୍ୟକ ଯେ ୨୪ଘଣ୍ଟା ସମସ୍ତଙ୍କୁ ଜଳ ମିଳୁଥିବ, ବଣ୍ଟନରେ କୌଣସି ଲିକ୍ ରହୁନଥିବ । କିନ୍ତୁ ଦିଲ୍ଲୀ ବାସିନ୍ଦାମାନଙ୍କୁ ଏଥିପାଇଁ ଉଚିତ ପଇସା ଦେବାକୁ ପଡ଼ିବ । ଅର୍ଥାତ ଯିଏ ଜଳର ଠିକ୍ ମୂଲ୍ୟ ଦେଇପାରିବ, ସେ କେବଳ ଏ ଜଳଯୋଗାଣ ବ୍ୟବସ୍ଥାରୁ ଲାଭ ଉଠାଇବ । ସରକାରୀ ମୋହର ଲାଗିଥିବା ଏ ପ୍ରକଳ୍ପ ପଛରେ ଘରୋଇ କମ୍ପାନୀମାନେ ରହି ଏ ଯୋଜନାକୁ କାର୍ଯ୍ୟକାରୀ କରିବେ । ବିଶ୍ୱବ୍ୟାଙ୍କ ଓ ପ୍ରାଇସ୍ ଓ୍ୱାଟର ହାଉସ ନାମକ ଏକ କନ୍‌ସଲ୍ଟାନ୍‌ସି ଫାର୍ମ ଓ ପ୍ରକଳ୍ପର ଲାଭକ୍ଷତି ହିସାବ କରିଛନ୍ତି । ଗରୀବମାନଙ୍କୁ ଶସ୍ତାରେ

ଜଳଯୋଗାଣ ହେବ ଏବଂ ଧନୀ ବର୍ଗଙ୍କୁ ଉଚିତ୍ ଦାମ ଦେବାକୁ ପଡିବ ବୋଲି ପ୍ରକଳ୍ପରେ ଉଲ୍ଲେଖ କରାଯାଇଛି । ପ୍ରତିଘରେ ନୂଆ ନୂଆ ମିଟର ବସାଯିବ । ଏହାକୁ ଯେଉଁ ଚାରୋଟି ବହୁରାଷ୍ଟ୍ରୀୟ କମ୍ପାନୀ ପରିଚାଳନା କରିବେ ସେଗୁଡ଼ିକ ହେଲା କ) ମାନିଲା ୱାଟର ଯାହା ବିକ୍‌ଟେଲ୍‌ର ଏକ ଶାଖା, ଖ) ଡାଗ୍ରେମଣ୍ଟ ଯାହା ସୁଏଜ୍ କମ୍ପାନୀର ଏକ ଶାଖା, ଗ) ଭିଓଲିଆ ଯାହା ଭିଭେଣ୍ଡିର ଏକ ଶାଖା ଏବଂ ଘ) ସଭର୍ । ସାଧରଣ ଲୋକ ଓ ସାଧାରଣ ଅର୍ଥନୀତି ଉପରେ ଏ ସବୁର କି ପ୍ରଭାବ ପଡିବ, ଜଳର କିଲୋଲିଟର ପ୍ରତି କେତେଗୁଣ ମୂଲ୍ୟ ବୃଦ୍ଧି ହେବ ସେସବୁ ଶ୍ରୀ ଅରବିନ୍ଦ କେଜରିୱାଲ୍‌ଙ୍କ ଦ୍ୱାରା ପରିଚାଳିତ 'ପରିବର୍ତ୍ତନ' ସଂସ୍ଥା ବିଶ୍ଳେଷଣ କରି ସାଧାରଣ ଜନତାଙ୍କର ସଚେତନତାର ସ୍ତର ବଢ଼ାଇଛି । ଦିଲ୍ଲୀ ଜଳବୋର୍ଡର ନୀତି ଓ ପ୍ରକଳ୍ପ ଗୁଡ଼ିକ ଆଜି ଜନଶୁଣାଣୀ ମାଧ୍ୟମରେ ମୂଲ୍ୟାଙ୍କନ କରାଯାଇ ଘରୋଇକରଣ ପ୍ରକ୍ରିୟାର ବିରୋଧ କରାଯାଇଛି । ଦିଲ୍ଲୀର ଏଥିପାଇଁ ବିଭିନ୍ନ ଇଲାକାରେ ଝଡ଼ ସୃଷ୍ଟି ହୋଇଛି ଓ ଏ ପ୍ରକଳ୍ପ ସହ ପ୍ରଭାବଶାଳୀ ବ୍ୟକ୍ତିମାନେ କିପରି ସଂପୃକ୍ତ ହୋଇଛନ୍ତି ତାହା ଆଜି ସାଧାରଣ ଲୋକଙ୍କୁ ଜଣାଅଛି । ଏଥିପାଇଁ ପରିବର୍ତ୍ତନ ସଂସ୍ଥାର ସାହାଯ୍ୟ ନେଇ ବିଭିନ୍ନ ପ୍ରତିବାଦ ଓ ସାମାଜିକ ଆନ୍ଦୋଳନ ମାଧ୍ୟମରେ ଦିଲ୍ଲୀର ନାଗରିକ ସମାଜ ଜାଗ୍ରତ୍ ହୋଇଛି । ଘରୋଇକରଣର ରଥ କିଛି ସମୟ ପାଇଁ ଅଟକି ଯାଇଛି ଯେମିତି ? ❑

# ଜଗତୀକରଣ ଓ ମଧ୍ୟମବର୍ଗଙ୍କ ମନୋଭାବ

ମୁଁ ଜଗତୀକରଣ, ଏହାର ପ୍ରଭାବ ଓ ପ୍ରତିକ୍ରିୟା ତଥା ପ୍ରତିକୂଳ ପରିବେଶ ଉପରେ ଲେଖୁଥିବା ଜାଣି ଜଣେ ବିଶିଷ୍ଟ ଅର୍ଥନୀତି ପ୍ରଫେସର ପଚାରିଥିଲେ 'କନ୍‌ଫେସନ୍ ଅଫ ଆନ୍ ଇକୋନୋମିକ ହିଟ୍‌ମ୍ୟାନ୍' ନାମକ ଏକ ବେଷ୍ଟ ସେଲର୍ ବହି ପଢ଼ିଛି କି ନାହିଁ । ବହିଟି ମୋର କିଛି ଦିନ ତଳେ ହସ୍ତଗତ ହୋଇଥିଲା ଓ ମୁଁ ତାକୁ ଆମୂଳଚୂଳ ପଢ଼ିଲି । ବହିଟି କାହିଁକି ବେଷ୍ଟ ସେଲର ହୋଇଥିଲା ତାହା ମଧ୍ୟ ବୁଝି ହେଉଥିଲା । ମୋର ମନେ ହୋଇଥିଲା ଯେ ଜଗତୀକରଣର ମୂଳତତ୍ତ୍ୱ ବୁଝିବାକୁ ହେଲେ ଏ ବହିଟି ସମସ୍ତଙ୍କୁ ପଢ଼ିବାକୁ ହେବ । ଯୁକ୍ତରାଷ୍ଟ୍ର ଆମେରିକା କେବଳ ନୁହେଁ ସାରା ବିଶ୍ୱରେ 'ଇକୋନୋମିକ ହିଟ୍‌ମ୍ୟାନ୍' ମାନେ ବିଭିନ୍ନ ଅବତାର ନେଇ ଆତ୍ମ ପ୍ରକାଶ କରିଛନ୍ତି । ତାଙ୍କର ମୂଳଲକ୍ଷ୍ୟ ହେଲା କଳେବଳେ କୌଶଳେ, ମିଥ୍ୟା ଓ ଜାଲିଆତି, ହତ୍ୟା ଓ ଲୁଣ୍ଠନ, ବ୍ୟଭିଚାର ଓ ଯୌନାଚାର ଜରିଆରେ ଜଗତୀକରଣ ପ୍ରକ୍ରିୟାକୁ ଏବଂ ବିଶ୍ୱର କର୍ପୋରେଟ୍‌ମାନଙ୍କୁ ମାନ୍ୟତା ଦେବା ଓ ସେମାନଙ୍କର ସ୍ୱାର୍ଥ ରକ୍ଷା କରିବା । ଉପନିବେଶବାଦର ଇତିହାସ ପଢ଼ିଲେ ଏହା ସ୍ପଷ୍ଟ ଜଣାପଡେ ଯେ ସ୍ଥାନୀୟ ସ୍ୱାର୍ଥାନ୍ୱେଷୀ ଲୋକ ଓ ପ୍ରଭାବଶାଳୀ ଶକ୍ତିଙ୍କ ସାହାଯ୍ୟରେ ଉପନିବେଶ ପ୍ରତିଷ୍ଠା କରାଯାଇଥାଏ । ଉପନିବେଶବାଦୀମାନେ ପ୍ରାୟ ଶତକଡା ନବେଭାଗ ସମ୍ପତ୍ତି ଓ କ୍ଷମତା ଉପଭୋଗ କରିଥିଲାବେଳେ ସେମାନଙ୍କର ଏଜେଣ୍ଟ ହିସାବରେ କାମ କରୁଥିବା କିଛି ଲୋକଙ୍କ ଶତକଡ଼ା ଦଶଭାଗ ପ୍ରାପ୍ତ ହୋଇଥାଏ । ଏମାନଙ୍କୁ ସାଧାରଣତଃ ମଧ୍ୟମବର୍ଗ ବୋଲି କୁହାଯାଏ । ଭାରତରେ ଇଂରେଜୀମାନେ ଏଇଭଳି ରଣନୀତି ଅବଲମ୍ବନ କରି ବ୍ରିଟିଶ୍‌ରାଜ ପ୍ରତିଷ୍ଠା କରିଥିଲେ । ଇଂରେଜମାନଙ୍କ ବିରୋଧରେ ଯେତେ ସ୍ୱାଧୀନତା ସଂଗ୍ରାମ ହୋଇଥିଲା ତା'କୁ ଭଣ୍ଡୁର କରିବା ପାଇଁ ଏହି ମଧ୍ୟମବର୍ଗୀୟ ଲୋକମାନଙ୍କୁ ବିନିଯୋଗ କରାଯାଇଥିଲା । ବ୍ରିଟିଶ୍ ଶାସନର ମୂଳସ୍ତମ୍ଭ ଏମାନେ ଥିଲେ ଓ ସାଧାରଣ ମଣିଷମାନଙ୍କୁ ଭୟାଚ୍ଛନ୍ନ କରି ରଖିଥିଲେ । ଏହି ମଧ୍ୟମବର୍ଗୀୟ ଲୋକେ ଯଦି ଉପନିବେଶବାଦୀମାନଙ୍କୁ ଯୋଗାଦେଇ ନଥାନ୍ତେ, ସେମାନଙ୍କ ସହ ମିଶି ଗୋଟାଏ ଦେଶର ଧନସମ୍ପତ୍ତି ଲୁଣ୍ଠନ ନକରିଥାଆନ୍ତେ, ତାହାହେଲେ ଆଜି ପୃଥିବୀର ରାଜନୈତିକ ମାନଚିତ୍ର ଅନ୍ୟ କ'ଣ ହୋଇଥାଆନ୍ତା ।

'କନ୍‌ଫେସନ୍ ଅଫ ଆନ୍ ଇକୋନୋମିକ୍ ହିଟ୍‌ମ୍ୟାନ'ର ଲେଖକ ଜନ୍ ପର୍କିନ୍‌ସ ଏକାଧାରାରେ ଜଣେ ଇକୋନୋମିକ ହିଟ୍‌ମ୍ୟାନ, ଜଣେ ବିକଳ୍ପ ଉର୍ଜା କମ୍ପାନୀର ମୁଖ୍ୟ କାର୍ଯ୍ୟନିର୍ବାହୀ, ଜଣେ ଲୋକ ସଂସ୍କୃତି ଓ ପରମ୍ପରାର ଗୁଣଗ୍ରାହୀ ପୂଜାରୀ ଓ ଶେଷରେ ନିଜର ଆତ୍ମଜୀବନୀକୁ ସମ୍ବଳ କରି ଲେଖୁଥିବା ସଫଳ ଲେଖକ । ଜନ୍ ପର୍କିନ୍‌ସଙ୍କ ଗୋଟାଏ ସ୍ୱତନ୍ତ୍ରଧରଣର ପେଶାଦାର ଜୀବନ ଥିଲା । ତାଙ୍କର ମୂଳ ଦାୟିତ୍ୱ ଥିଲା ତୃତୀୟ ବିଶ୍ୱର ନେତୃବର୍ଗଙ୍କୁ ବିପୁଳ ମାତ୍ରାରେ ଋଣନେବା ପାଇଁ ପ୍ରଭାବିତ କରିବା । ଆବଶ୍ୟକ ଥାଉକି ନଥାଉ, ଏ ଋଣ ଦ୍ୱାରା ଦେଶମାନଙ୍କର ଇନ୍‌ଫ୍ରାଷ୍ଟ୍ରକ୍‌ଚର ବା ଭିତ୍ତିଭୂମି କିପରି ଦୃଢ଼ ହେବ ତାହା ବୁଝାଇବା ତାଙ୍କର କାମ ଥିଲା । ଏହା ସହ ଆମେରିକୀୟ କର୍ପୋରେଟ୍‌ମାନେ କିପରି ଠିକା ନେବେ ତାହା ମଧ୍ୟ ନିଷ୍ପତ୍ତି ନେବାରେ ସେ ଏକ ପ୍ରଭାବଶାଳୀ ଭୂମିକା ଗ୍ରହଣ କରୁଥିଲେ । ଏସବୁ ଅନାୟାସରେ ସେ କରାଇ ପାରୁଥିଲେ । ଥରେ କୌଣସି ଦେଶ ଋଣ ଭାରରେ ନଇଁ ପଡିଲେ ଆମେରିକା ଓ ବିଶ୍ୱର ଅନ୍ୟ ସାହାଯ୍ୟକାରୀ ସଂସ୍ଥାମାନେ ସେ ଦେଶର ଅର୍ଥନୀତି, ରାଜନୀତି ଓ ଭବିଷ୍ୟତ ନିର୍ଦ୍ଧାରଣ କରନ୍ତି ଅନାୟାସରେ । ଏହା ଫଳରେ ଏକ ନୂତନ ସାମ୍ରାଜ୍ୟ ପ୍ରତିଷ୍ଠା ସହଜରେ ହୋଇଯାଏ । ଏହି ନୂତନ ସାମ୍ରାଜ୍ୟକୁ ଜଗତୀକରଣ ଭାଷାରେ ଏମ୍ପାୟାର କୁହାଯାଏ । ଏହି ସାମ୍ରାଜ୍ୟର ଗତି ଓ ପ୍ରଗତିକୁ ବୁଝିବାକୁ ଯାଇ ବିଶିଷ୍ଟ ଲେଖିକା ଅରୁନ୍ଧତୀ ରାୟ ଲେଖିଛନ୍ତି 'ଆନ୍ ଅର୍ଡ଼ିନାରି ପର୍ସନ୍‌ସ ଗାଇଡ୍ ଟୁ ଏମ୍ପାୟାର' । ଜନ୍ ପର୍କିନ୍‌ସ ତାଙ୍କ ସ୍ୱୀକାରୋକ୍ତିରେ ଯେଉଁ ଦେଶମାନଙ୍କର ଉଦାହରଣ ଦେଇଛନ୍ତି ସେ ଗୁଡିକ ହେଲା ଇକ୍ୱେଡର, ପାନାମା, ଇଣ୍ଡୋନେସିଆ, ଇରାନ୍, ସାଉଦୀଆରବ ଓ କଲମ୍ବିଆ । ଏହି ଦେଶମାନଙ୍କରେ ସେ 'ଇକୋନୋମିକ ହିଟ୍‌ମ୍ୟାନ୍' ର ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି ଓ ଏ ଦେଶମାନଙ୍କରେ ଆମେରିକା ଓ ପାଶ୍ଚାତ୍ୟଦେଶର କର୍ପୋରେଟ୍‌ମାନେ ଶାସନ ଓ ଅର୍ଥନୀତିର ଡୋରିକୁ କିପରି ହାତକୁ ନେଇଛନ୍ତି ତାହା ଅତି ସ୍ପଷ୍ଟ ଭାବେ ସେ ଆଲୋଚନା କରିଛନ୍ତି । ସେ ଇରାନ୍‌ର ଶାହାଙ୍କ ପତନ, ପାନାମାର ରାଷ୍ଟ୍ରପତିଙ୍କ ହତ୍ୟା, ସାଉଦୀ ଆରବରେ ଅର୍ଥର ଅପବ୍ୟବହାର ଏବଂ ସର୍ବଶେଷରେ ଆମେରିକାର ଇରାକ୍ ଆକ୍ରମଣ ଆଦି ସ୍ୱଚକ୍ଷୁରେ ଦେଖିଛନ୍ତି ଓ ସାକ୍ଷୀ ରହିଛନ୍ତି । ୧୯୮୦ ମସିହାରେ ସେ ଆଇ.ପି.ଏସ୍. ନାମକ ଏକ ଉର୍ଜା କମ୍ପାନୀ ପ୍ରତିଷ୍ଠା କରିଛନ୍ତି ଏବଂ ପ୍ରଚୁର ଅର୍ଥ ଅର୍ଜନ କରିଛନ୍ତି । ୧୯୯୦ ମସିହାରେ ସେ ଆଦିମ ଅଧିବାସୀମାନଙ୍କର ସ୍ୱାର୍ଥରକ୍ଷା ତଥା ମାନବାଧିକାର ପାଇଁ ଆମାଜନ୍ ଅବବାହିକାରେ ନିଜକୁ ନିୟୋଜିତ କରିଛନ୍ତି । ସେ ସମୟରେ ସେ

ପାଞ୍ଚୋଟି ବହି ମଧ୍ୟ ଲେଖିଛନ୍ତି ଏବଂ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ହୋଇ ଯୁବଛାତ୍ରଙ୍କୁ ପାଠ ପଢ଼ାଇଛନ୍ତି । ଡ୍ରିମ୍ ଚେଞ୍ଜ୍ କୋଆଲିସନ୍ ନାମକ ଏକ ବେସରକାରୀ ଓ ଲାଭ ନଥିବା ସଂସ୍ଥା ଗଢ଼ିଛନ୍ତି ଓ ଏବଂ ଲୋକେ କିପରି ସମାଜ ବିକାଶ ପ୍ରତି ଆଗ୍ରହୀ ହେବେ ଓ ନିଜ ଜୀବନକୁ ସାର୍ଥକ କରିବେ ସେ ଦିଗରେ ଉଦ୍ୟମ କରିଛନ୍ତି । ୨୦୦୧ ସେପ୍ଟେମ୍ବର ୧୧ ତାରିଖ ବା ନାଇନ୍ ଇଲେଭେନ୍(୯/୧୧)ର ଦୁଃଖଦ ଘଟଣା ପରେ ସବୁ ଆଶଙ୍କା ଓ ଭୟ ପରିହାର କରି ସେ 'କନ୍‌ଫେସନ୍ ଅଫ ଆନ୍ ଇକୋନୋମିକ ହିଟ୍‌ମ୍ୟାନ' ବହି ଲେଖିଛନ୍ତି ଓ କହିଛନ୍ତି ଯେ ୯/୧୧ ଘଟଣା ପାଇଁ ଆମେରିକା ସରକାରଙ୍କ ନୀତି, ବିଶ୍ୱ ସାହଯ୍ୟକାରୀ ସଂସ୍ଥା ଓ କର୍ପୋରେଟ୍‌ମାନଙ୍କ ଭୂମିକା ଦାୟୀ । ଏ ବହିଟିର ବିଶ୍ଳେଷଣ ସାରା ପୃଥିବୀରେ ଲୋକପ୍ରିୟ ହୋଇଛି ।

ଏ ବହିଟିକୁ ମୁଁ ଏ ସ୍ତମ୍ଭରେ ସବିଶେଷ ଆଲୋଚନା କରୁନାହିଁ । କିଛିଦିନ ତଳେ ଏକ ଓଡ଼ିଆ ସମ୍ବାଦପତ୍ରରେ 'ଇକୋନୋମିକ୍ ହିଟ୍ ମ୍ୟାନ୍' ନାମରେ ଜଣେ ବନ୍ଧୁ ଏକ ପ୍ରବନ୍ଧଟି ଏ ଲେଖିଥିଲେ ଓ ଅତି ସୁନ୍ଦର ଭାବେ ବହିଟିର ବିଶ୍ଳେଷଣ କରିଥିଲେ । ପ୍ରବନ୍ଧଟି ବାହାରିଲା କ୍ଷଣି ଓଡ଼ିଶାର ଜଣେ ବିଶିଷ୍ଟ କବି ଓ ସାହିତ୍ୟିକ କଡ଼ା ଶବ୍ଦରେ 'ଇକୋନୋମିକ୍ ହିଟ୍ ମ୍ୟାନ: ଆତଙ୍କର ଭାଷା' ବୋଲି ସମାଲୋଚନା କରିଥିଲେ । ଆମର ବନ୍ଧୁ ଜଣକ ଏ ସମାଲୋଚନାର ପ୍ରତ୍ୟୁତ୍ତର ଦେଇଥିଲେ ତାଙ୍କର ଏକ ଲେଖା ମାଧ୍ୟମରେ ଯାହାର ନାଁ ଥିଲା 'ଇକୋନୋମିକ୍ ହିଟ୍ ମ୍ୟାନ: ଆତଙ୍କକୁ ସାମ୍ନା କରିବାର ଭାଷା' । ଏ ପ୍ରବନ୍ଧ, ସମାଲୋଚନା ଓ ପର୍ଯ୍ୟାଲୋଚନା ପ୍ରକାଶିତ ହେବା ବେଳେ ମୁଁ ଓଡ଼ିଶାରେ ନଥିଲି । କିଛି ଦିନ ପରେ ଯେତେବେଳେ ଲେଖକ ବନ୍ଧୁଙ୍କ ସହ ଦେଖାହେଲା, ସେ ଅସଲ କାହାଣୀ ବର୍ଣ୍ଣନା କରିଥିଲେ ଓ ବିଶିଷ୍ଟ କବିଙ୍କ ମନୋଭାବ ଉପରେ ନିଜର ମତାମତ ଦେଇଥିଲେ । ଜଣେ ମଧ୍ୟମବର୍ଗୀୟ ଚିନ୍ତା ଓ ଚିନ୍ତନ କ'ଣ ସେ ଆଉ କେତେ ଉଦାହରଣ ମଧ୍ୟ ଦେଇଥିଲେ । ଆଜି ଓଡ଼ିଶା କାହିଁକି ସାରା ପୃଥିବୀରେ ମଧ୍ୟବର୍ଗୀୟ ଚିନ୍ତାଧାରା ଓ ଆଦର୍ଶବାଦ ଆଲୋଚନାର ପରିସରକୁ ଆସି ଯାଇଛି । ଜଗତୀକରଣକୁ ସମର୍ଥନ କରିବାରେ ଏ ଗୋଷ୍ଠୀ ଆଜି ଆଶାତୀତ ଭାବେ ଆଗ୍ରହ ପ୍ରକାଶ କରିଛି । ୨୦୦୬ ମସିହାରେ ଜାନୁଆରୀ ମାସରେ ହୋଇଥିବା ଜଘନ୍ୟ କଳିଙ୍ଗନଗର ହତ୍ୟାକାଣ୍ଡକୁ ଏ ଗୋଷ୍ଠୀ ଖୋଲାଖୋଲି ସମର୍ଥନ କରୁଛି । ବିକାଶ ନାମରେ ଯେଉଁ ବିନାଶ ହେବାକୁ ଯାଉଛି, ତାହା କପୋଳକଳ୍ପିତ ବୋଲି ପ୍ରଚାର କରୁଛି । ବହୁରାଷ୍ଟ୍ରୀୟ କମ୍ପାନୀମାନେ

ଠିକ୍ କାମ କରୁଛନ୍ତି ଓ ଆମ ଦେଶରେ ସାମାଜିକ ବିକାଶକୁ ଉଚିତ୍ ମାର୍ଗ ଦେଖାଉଛନ୍ତି ବୋଲି କହିବାକୁ ଏମାନେ ପଛାଉ ନାହାନ୍ତି । ବିସ୍ଥାପନ ଦ୍ୱାରା ଯେ ଅନେକ ଲୋକଙ୍କ କ୍ଷତି ହେବ ତାହା ସେମାନେ ଦେଖିପାରୁ ନାହାଁନ୍ତି । ବହୁରାଷ୍ଟ୍ରୀୟ କମ୍ପାନୀମାନେ ପ୍ରଦୂଷଣ ସୃଷ୍ଟିକରୁଥିବା ଶିଳ୍ପ ଗୁଡିକୁ କିଭଳି ଲାଭ ପାଇଁ ଏ ଦେଶରେ ସହଜରେ ପ୍ରତିଷ୍ଠା କରୁଛନ୍ତି ସେମାନେ ଦେଖିପାରୁ ନାହାଁନ୍ତି । ପୁଞ୍ଜିନିବେଶ ପଛରେ କି ଉଦ୍ଦେଶ୍ୟ ଅଛି ତାହା ସେମାନେ ବୁଝି ପାରୁନାହାଁନ୍ତି । ଏ ଗୋଷ୍ଠୀ ଭିତରେ ଅଛନ୍ତି ରାଜନୈତିକ ଦଳର ନେତା, ପ୍ରଶାସକ, ଏନ୍.ଜି.ଓ., ସାମ୍ବାଦିକ, ଅଧ୍ୟାପକ ଓ ସାହିତ୍ୟିକ ମଧ୍ୟ । ଏମାନେ ଜାତି ଓ ଶ୍ରେଣୀ ଦୃଷ୍ଟିରେ ବିଭିନ୍ନ ବାଟରେ ବନ୍ଧୁବାନ୍ଧବ ହୋଇ ସାରିଛନ୍ତି । ଜଣେ ଆଉଜଣଙ୍କୁ ସୁରକ୍ଷା ଦେଉଛି । ଜଣେ ଅନ୍ୟଜଣକ ସ୍ୱାର୍ଥ ପାଇଁ ସ୍ୱର ଉତ୍ତୋଳନ କରୁଛି । ଟିକିଏ ତଳୁ ଦେଖିଲେ ଏମାନେ "ଇକୋନୋମିକ୍ ହିଟ୍ ମ୍ୟାନ" ହୋଇଛନ୍ତି । ଆଜି ଓଡ଼ିଶାରେ ଏଇ ଗୋଷ୍ଠୀର ସଂଖ୍ୟା ଯେ ଆଶାତୀତ ଭାବେ ବଢୁଛି ତାହା ସ୍ୱୀକାର କରିବା ଛଡା ଅନ୍ୟବାଟ ନାହିଁ । ଏ ଗୋଷ୍ଠୀରେ କବି, ଲେଖକ ଓ ସାହିତ୍ୟିକଙ୍କ ସଂଖ୍ୟା ମଧ୍ୟ କିଛି କମ୍ ନୁହେଁ ।

ଜଗତୀକରଣ ପ୍ରକ୍ରିୟାରେ ମଧ୍ୟବର୍ଗୀୟ ଲୋକଙ୍କ ସ୍ଥିତି କ'ଣ ? ସେମାନେ ସତରେ ଧନୀବର୍ଗରେ ନିଜକୁ ପ୍ରତିଷ୍ଠିତ କରିବାକୁ ସକ୍ଷମ ହେବେକି ? ସେମାନେ ଗରୀବଙ୍କ ସହ ସାମିଲ୍ ହେବେ କି ? ଜଗତୀକରଣ ପ୍ରକ୍ରିୟାର ଅସଲ ସମର୍ଥକ ରୂପେ ମଧ୍ୟବର୍ଗୀୟ ଲୋକେ ଏବେ ସାମୟିକ ଭାବେ ତୃତୀୟ ମହାଦେଶରେ ସବୁ କ୍ଷମତା ଠୂଳ କରି ସାରିଛନ୍ତି । ସେମାନେ ଜଗତୀକରଣ ସମର୍ଥିତ ଉତ୍ପାଦନ ପ୍ରକ୍ରିୟାରେ ଅଛନ୍ତି । ବିଜ୍ଞାପନରେ ହେଉକି ବାସଗୃହ ତିଆରିରେ ହେଉ, ଶିକ୍ଷା ହେଉକି ବୈଷୟିକ ଜ୍ଞାନ ହେଉ, ସେମାନେ ଆଗରେ ଅଛନ୍ତି ଓ ସବୁପ୍ରକାର ସୁବିଧା ହାସଲ କରୁଛନ୍ତି । ମଧ୍ୟବର୍ଗୀୟ ବ୍ୟକ୍ତି ଏବେ କୌଣସି ଗୋଟାଏ ଅଞ୍ଚଳ ବା ଦେଶ ଭିତରେ ସୀମିତ ନାହାନ୍ତି । ସେମାନେ ଏବେ ଆନ୍ତର୍ଜାତିକ ଶ୍ରେଣୀ ଭାବେ ଗଣା ଯାଉଛନ୍ତି । ଭାରତରେ ହୁଅନ୍ତୁ କି ଯୁକ୍ତରାଷ୍ଟ୍ର ଆମେରିକାରେ ହୁଅନ୍ତୁ, ସେମାନଙ୍କର ଆୟ, ଚାଲିଚଳନ, ରଚି ଓ ବ୍ୟବହାର ସବୁ ପ୍ରାୟ ସମାନ, ସେମାନେ ପେଶାଦାର ଓ ସେମାନଙ୍କର ସମାଜ ପ୍ରତି ଦୃଷ୍ଟିକୋଣରେ ଭିନ୍ନତା ନାହିଁ । ବହୁରାଷ୍ଟ୍ରୀୟ କର୍ପୋରେସନ୍ ମାନେ ବିକଶିତ ବା ଅବିକଶିତ ଦେଶମାନଙ୍କରେ ସେମାନଙ୍କର ପୁଞ୍ଜିନିବେଶ କଲାବେଳେ ସ୍ଥାନୀୟ ମଧ୍ୟମବର୍ଗଙ୍କୁ ଯଥେଷ୍ଟ

ପ୍ରଶୟ ଦେଇଥାଆନ୍ତି । ବହୁରାଷ୍ଟ୍ରୀୟ କର୍ପୋରେସନ୍ ଓ 'ଇଷ୍ଟଇଣ୍ଡିଆ କମ୍ପାନୀ' ଭିତରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ଏକ 'ବାବୁ ସଂସ୍କୃତି'କୁ ପ୍ରୋତ୍ସାହନ ଦେବାରେ ପୃଥିବୀର ସବୁ କର୍ପୋରେସନ୍ ସମଦୃଷ୍ଟି ପ୍ରଦର୍ଶନ କରନ୍ତି । ମଧ୍ୟମବର୍ଗମାନେ ଚାହାଁନ୍ତି କ'ଣ ? ଗୋଟାଏ ଭଲ ଘର, ଗାଡି, ଏୟାରକଣ୍ଡିସନିଙ୍ଗ/ଶୀତତାପ ନିୟନ୍ତ୍ରଣ, ଇଲେକ୍ଟ୍ରୋନିକ ଯନ୍ତ୍ରପାତି, ଭଲ ଖାଦ୍ୟପେୟ, ଦାମୀ ପୋଷାକ, ବିମାନ ଯାତ୍ରା, କଥା କଥାକେ ଟଙ୍କା ପଇସା ସାମାଜିକ ଓ ଆର୍ଥିକ ନିରାପତ୍ତା ସହ ଉତ୍ତମ ସାମାଜିକ ଚଳଣିକୁ ତାଲିକାଭୁକ୍ତ କରାଯାଇପାରେ । ଏସବୁ ପାଇଁ ଗୋଟାଏ ବହୁରାଷ୍ଟ୍ରୀୟ କମ୍ପାନୀ ପାଖରେ ନିଜ ମୁଣ୍ଡ ବିକିବାକୁ ମଧ୍ୟମବର୍ଗ ପଛାଉ ନାହାନ୍ତି । ଆହୁରି ମଧ୍ୟ ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ଗୁଣଗାନ କରିବାକୁ ଧାଡି ଲମ୍ବାଉଛନ୍ତି । ରାଜନୈତିକ ଦଳମାନେ ଚାନ୍ଦା ନେଉଛନ୍ତି । ସରକାରୀ କର୍ମଚାରୀମାନେ ହାତଗୁଞ୍ଜା ନେବା ପାଇଁ ହାତ ବଢ଼ାଉଛନ୍ତି । ସାମ୍ବାଦିକମାନେ ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ଦ୍ୱାରା ସୃଷ୍ଟ ମିଛକୁ ସତକରିବାରେ ନିଜର ଜ୍ଞାନକୌଶଳ ବିନିଯୋଗ କରୁଛନ୍ତି । କଳିଙ୍ଗନଗରରେ ଜମି ଅଧିଗ୍ରହଣ ସମୟରେ ସରକାରୀ ଦଳର ଭୂମିକା କଥା ଉଦାହରଣ ନିଆଯାଇପାରେ । ଓଡିଶାର ସାମ୍ବାଦିକମାନେ ଦକ୍ଷିଣ କୋରିଆ ଯିବା ଅନ୍ୟ ଏକ ଉଦାହରଣ ହୋଇପାରେ । ଏପରିକି କେତେକ କ୍ଷେତ୍ରରେ ସାମାଜିକ କର୍ମକର୍ତ୍ତାମାନେ ମଧ୍ୟ କର୍ପୋରେଟମାନଙ୍କ ଦ୍ୱାରା ଆକର୍ଷଣୀୟ ପୁରସ୍କାର ପାଇବାର ଅନେକ ଉଦାହରଣ ଏବେ ଆମ ପାଖରେ ଅଛି ।

ଏବେ ଜଗତୀକରଣ ପରିବେଶରେ ରାଜନୀତି କଥା ବିଚାରକୁ ନିଆଯାଉ । ବହୁରାଷ୍ଟ୍ରୀୟ କର୍ପୋରେସନମାନଙ୍କ ହିତ ପାଇଁ ରାଜନୀତି ଏବେ ଖୁବ ସକ୍ରିୟ ହୋଇଛି । ଖାଲି ଓଡ଼ିଶା ନୁହେଁ ସାରା ଦେଶରେ ଓ ପୃଥିବୀରେ ଏହା ପ୍ରତିଫଳିତ ହେଉଛି । କାଶୀପୁରରେ ଶିଳ୍ପ ପ୍ରତିଷ୍ଠା ପାଇଁ ସବୁ ରାଜନୈତିକ ଦଳ ଏକତ୍ରିତ ହୋଇଛନ୍ତି ଓ ବିଭିନ୍ନ କମ୍ପାନୀମାନଙ୍କଠାରୁ ବିପୁଳ ଚାନ୍ଦା ଉଠାଉଛନ୍ତି । ଓଡ଼ିଶାରେ ଯେଉଁ ପୁଞ୍ଜିନିବେଶ କରାଯାଉଛି, ସେଥିରୁ ରାଜନୈତିକ ଦଳ ଓ ତାଙ୍କର ନେତୃତ୍ୱ କେତେ ମାତ୍ରାରେ ଲାଭ ଉଠାଇବେ ସାଧାରଣ ଲୋକଙ୍କ ମନରେ ବିଭିନ୍ନ ପ୍ରଶ୍ନ ଉଠୁଛି । ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ପୁଞ୍ଜିନିବେଶ ବେଳେ କାହିଁକି ଏକ ତର୍କ ହେଉନାହିଁ ? କାହିଁକି ଏକ ଜନମତ ସୃଷ୍ଟି ହେଉନାହିଁ ? କାହିଁକି ଗୋଟାଏ ରେଫରେଣ୍ଡମ୍ କରାଯାଉ ନାହିଁ ? ପ୍ରଶାସନକୁ କାହିଁକି ଦୁର୍ନୀତିଗ୍ରସ୍ତ ହେବାକୁ ପ୍ରୋତ୍ସାହନ ଦିଆଯାଉଛି ? କାହିଁକି ଜନମତକୁ ମାନ୍ୟତା

ଦିଆଯାଉନାହିଁ । ବହୁରାଷ୍ଟ୍ରୀୟ କମ୍ପାନୀମାନେ ଏବେ ବିକାଶଶୀଳ ଦେଶମାନଙ୍କର ରାଜନୈତିକ ମୂଲ୍ୟବୋଧ ଦୁର୍ବଳ କରିବାକୁ ସକ୍ଷମ ହୋଇସାରିଛନ୍ତି । କର୍ପୋରେଟ୍ ଷ୍ଟ୍ରାଟେଜୀର ଚକ୍ରବ୍ୟୂହ ଭେଦ କରିବାକୁ କାହାର ଶକ୍ତି ଅଛି ?

ଏବେ କିନ୍ତୁ ଅସଲ କଥା ହେଉଛି ଯେ ଜଗତୀକରଣ ପ୍ରକ୍ରିୟା ଦୁର୍ବଳ ହେବାକୁ ଆରମ୍ଭ କରିଛି ଓ ଏହାର ଗୁରୁତ୍ୱ ଓ ଭବିଷ୍ୟତ ଉପରେ ଅନେକ ପ୍ରଶ୍ନ ଉଠୁଛି । ଆଜି ଜଗତିକରଣର ଅସଲି ମଞ୍ଜି ବୋଲାଉ ଥିବା ଯୁକ୍ତରାଷ୍ଟ୍ର ଆମେରିକା ଭଳି ବିକଶିତ ଦେଶରେ ମଧ୍ୟମବର୍ଗ ସଙ୍କୁଚିତ ହେବାକୁ ବସିଛି । ଧନୀ ଆହୁରି ବେଶି ଧନୀ ହେଉଛି ଓ ଗରିବ ବେଶି ଗରିବ ହେଉଛି । ମଧ୍ୟମବର୍ଗର ଶୋଚନୀୟ ଅବସ୍ଥା ଉପରେ ବିଶେଷ ଗବେଷଣା ଚାଲିଛି । ଆଜି ଯେଉଁମାନେ ଜଗତୀକରଣର ଧ୍ୱଜା ଧରୁଛନ୍ତି ଓ ନାମ କୀର୍ତ୍ତନ କରୁଛନ୍ତି ସେମାନଙ୍କର ଅବସ୍ଥା କ'ଣ ହେବ ? ଯେଉଁ ସରକାରୀ ଅଫିସର ନିଜର ବିବେକକୁ ହତ୍ୟା କରି ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ପାଖରେ ବିକ୍ରୀ ହୋଇ ଯାଉଛି, ଯେଉଁ ରାଜନୈତିକ ନେତା ଏ ଦେଶର ପ୍ରାକୃତିକ ସମ୍ପଦକୁ ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ପାଦ ତଳେ ଭେଟି ଦେଉଛି ଓ ଯେଉଁ ସାମ୍ବାଦିକ ଭାଟ ଭଳି ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ଭଜନକୀର୍ତ୍ତନ କରୁଛି ସେମାନଙ୍କର ମାନସମ୍ମାନ ସାଧାରଣ ଲୋକଙ୍କ ଆଗରେ କେଉଁଭଳି ହେବ, ଏବେ ସ୍ପଷ୍ଟ ଦେଖାଦେଉଛି । ସେମାନେ ଏବେଠାରୁ ସଚେତନ ହେବା ଠିକ୍ ହେବ । ଇତିହାସର ପୁନରାବୃତ୍ତି ନ ହେଉ । ଏ ଦେଶର ଆର୍ଥିକ ଓ ରାଜନୈତିକ ପରାଧୀନତା ପାଇଁ ସେମାନେ ପ୍ରତ୍ୟକ୍ଷ ଭାବେ ଦାୟୀ ନହୁଅନ୍ତୁ । ନିନ୍ଦିତ ନହୁଅନ୍ତୁ ଅଥବା ଖଳନାୟକ ବୋଲି ଆଖ୍ୟାୟିତ ନହୁଅନ୍ତୁ । ❑

# ଜଗତୀକରଣ ଓ ଦୁର୍ନୀତି

## (୧)

ଜଗତୀକରଣର ବିଭିନ୍ନ ଦିଗ ଉପରେ ମୁଁ ଆଲୋକପାତ କରୁଥିବାରୁ ଦୁର୍ନୀତି ବିଷୟରେ ଦୁଇ ପଦ ନଲେଖିବାଟା ଘୋର କାପୁରୁଷତା ହେବ । ଜଗତୀକରଣ ପ୍ରକ୍ରିୟା ଦ୍ୱାରା ଦୁର୍ନୀତି ବଢୁଛି କି କମୁଛି, ତାହାର ସମୀକ୍ଷା ହେବାର ଆବଶ୍ୟକତା ଅଛି । ଏହା ଖାଲି ଆମ ଦେଶ ପରିପ୍ରେକ୍ଷୀରେ ନୁହେଁ, ସାରା ପୃଥିବୀର ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ପରିବେଶ ସଂଦର୍ଭରେ ମଧ୍ୟ ବିଚାର କରିବାର ଅଛି । କିନ୍ତୁ ଦୁର୍ନୀତିର ସଂଜ୍ଞା କ'ଣ ? ଏହା ସାଧାରଣ ଅର୍ଥରେ କ'ଣ ବୁଝାଏ ? କ୍ଷମତାର ଅପବ୍ୟବହାର କରି ବ୍ୟକ୍ତି ଯଦି ନିଜର ସଂକୀର୍ଣ୍ଣ ସ୍ୱାର୍ଥ ଲାଭରେ ମାତେ, ତାହାକୁ ଦୁର୍ନୀତି କୁହାଯାଏ । ଯାହାକି ଅସଂଗତ ଓ ବେନିୟମ । ବ୍ୟକ୍ତି, ସଂସ୍ଥା ବା ବ୍ୟବସାୟୀ ଏହିଭଳି କାମ କଲେ ସେମାନଙ୍କୁ 'ଦୁର୍ନୀତିଗ୍ରସ୍ତ' ବୋଲି କୁହାଯାଏ ।

ଦୁର୍ନୀତିର ରଂଗ, ସ୍ୱାଦ, ଆକାର, ପ୍ରକାର କ'ଣ ? ରାଜନୀତି, ଅମଲାତନ୍ତ୍ର, ବିଚାର ବ୍ୟବସ୍ଥା, ମିଲିଟାରୀ, ବଜାର, ବେପାର, ସାମାଜିକ ଓ ଅର୍ଥନୈତିକ କାର୍ଯ୍ୟକ୍ରମ ଆଦିରେ ଯେଉଁ ସବୁ ଦୁର୍ନୀତି ପଶି ଯାଇଛି; ତାହାର ସ୍ୱତନ୍ତ୍ର ଗୁଣ ଓ ସ୍ୱଭାବ ରହିଛି । କେଉଁଠି ଅର୍ଥ ପାଇଁ ଦୁର୍ନୀତି ତ କେଉଁଠି କ୍ଷମତା ହାସଲ ପାଇଁ ଦୁର୍ନୀତି । କେଉଁଠି ପଦପଦବୀ ପାଇଁ ଦୁର୍ନୀତି ବଢୁଛି ତ ଅନ୍ୟ କେଉଁଠି ବ୍ୟବସ୍ଥାକୁ ଦୁର୍ବଳ କରିବାକୁ ଦୁର୍ନୀତିକୁ ଅସ୍ତ୍ର ରୂପେ ବ୍ୟବହାର କରାଯାଉଛି । ଏକ ଦୁର୍ନୀତିମୁକ୍ତ ସମାଜର ସ୍ୱପ୍ନ ଦେଖିବାକୁ ତଥା ଏହାର ମୂଳୋତ୍ପାଟନ କରିବା ପାଇଁ ଅଣ୍ଟା ଭିଡ଼ିବାକୁ ହେଲେ ଏହି ଦୁର୍ନୀତିର ମାଧ୍ୟମ ଓ ଗତିଶୀଳତାକୁ ବୁଝିବାକୁ ହେବ । ଦୁର୍ନୀତି ଏକ କ୍ୟାନ୍‌ସର୍ । ଏହି କ୍ୟାନ୍‌ସର୍‌କୁ ଦୂର କରିବାକୁ ହେଲେ ଏହାର ଭାଇରସ୍‌ମାନଙ୍କୁ ଚିହ୍ନଟ କରିବାକୁ ହେବ । ଭାଇରସ୍ ଦୂର କରିବା ପାଇଁ ଉପଯୁକ୍ତ ଔଷଧ ମଧ୍ୟ ଖୋଜିବାକୁ ହେବ । ଏଥିପାଇଁ ସାରା ପୃଥିବୀରେ ସଚେତନ ନାଗରିକମାନେ ତତ୍ପର ହୋଇଛନ୍ତି । ହେଲେ ଜଗତୀକରଣ ପ୍ରକ୍ରିୟା ସହ ଦୁର୍ନୀତି ରଥ ମଧ୍ୟ ଆଗକୁ ଗଡ଼ି ଚାଲିଛି ।

ଦୁର୍ନୀତି ବଢୁଛି କି କମୁଛି ଜାଣିବାକୁ ହେଲେ ଅସମାନତା ଓ ଦାରିଦ୍ର୍ୟର କାରଣ ସବୁକୁ ବିଶ୍ଳେଷଣ କରିବାକୁ ହେବ । ଏହା ଖାଲି ଗାଆଁ ସ୍ତରରେ ନୁହେଁ । ଦେଶ ଦେଶ ମଧ୍ୟରେ ବିଶେଷତଃ ଏଥିରେ ତୃତୀୟ ବିଶ୍ୱର ଦେଶମାନଙ୍କୁ ବିଚାରକୁ ନିଆଯିବ ।

ତୃତୀୟ ବିଶ୍ୱ ପାଇଁ ଜଗତୀକରଣ ଆଣି ଦେଇଛି ବେପାରବଣିଜରେ ଅସମାନତା, ଡାଞ୍ଚାଗତ ପୁନର୍ବିନ୍ୟାସ (ଷ୍ଟ୍ରକ୍‌ଚରାଲ୍ ଆଡ଼ଜଷ୍ଟ୍‌ମେଣ୍ଟ୍ ପଲିସୀ) କାର୍ଯ୍ୟକ୍ରମ, ମୁକ୍ତ ବାଣିଜ୍ୟ ଚୁକ୍ତିନାମା । ଏହାଦ୍ୱାରା ସେହିସବୁ ଦେଶରେ ଯେତିକି ଶୋଷଣ ବଢ଼ିଛି, ସେତିକି ଦୁର୍ନୀତି ମଧ୍ୟ । ଧନୀ ଦେଶଗୁଡ଼ିକର ନୀତି ଓ ମନୋଭାବ ମଧ୍ୟ ଏହି ଦୁର୍ନୀତି ବଢ଼ାଇବାରେ ଖୋରାକ ଯୋଗାଇଛି । ଧନୀ ଦେଶଗୁଡ଼ିକରେ ଆଧିପତ୍ୟ ବିସ୍ତାର କରିଥିବା ବହୁରାଷ୍ଟ୍ରୀୟ କମ୍ପାନୀମାନେ ମଧ୍ୟ ଦୁର୍ନୀତିର ଚେର ବଢ଼ାଇବାରେ ଦୃଢ଼ ଭୂମିକା ଗ୍ରହଣ କରିଛନ୍ତି । ଏମାନେ ଲାଞ୍ଚ ଦେବା କଳାରେ ସିଦ୍ଧହସ୍ତ । କେଉଁଠି ଠିକା ନେବେ, କେଉଁଠି ବିଭିନ୍ନ ସାମରିକ ଯନ୍ତ୍ରପାତି ଯୋଗାଇବେ, କେଉଁଠୁ ପ୍ରାକୃତିକ ସଂପଦ ଲୁଟିବେ; ଏସବୁ ସହଜରେ ହାସଲ କରିବାକୁ ଏବଂ ତୃତୀୟ ବିଶ୍ୱର ନେତୃବୃନ୍ଦଙ୍କୁ ପ୍ରଭାବିତ କରିବାକୁ ସେମାନେ ଲାଞ୍ଚ ଦିଅନ୍ତି । ଏକ ଅଧ୍ୟୟନରୁ ଜଣାପଡ଼ିଛି ଯେ ପୃଥିବୀର ଲାଞ୍ଚ କାରବାର ୩୨ ହଜାର କୋଟି ଟଙ୍କାରୁ ଅଧିକ । ଏହା କେବଳ କେତୋଟି ବହୁରାଷ୍ଟ୍ରୀୟ କର୍ପୋରେଟ୍‌କୁ ଅଧ୍ୟୟନ କରି ଅଟକଳ କରାଯାଇଛି । ଜାତିସଂଘର ଅଟକଳ ହେଉଛି ଯେ ଏତିକି ଟଙ୍କାରେ ପୃଥିବୀର ଦାରିଦ୍ର୍ୟ ଅନେକ ମାତ୍ରାରେ କମି ଯିବ । ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ଦୁର୍ନୀତିମୟ କାରବାର ଦ୍ୱାରା ଯେ ତୃତୀୟ ବିଶ୍ୱର ଓ ଏହାର ନାଗରିକମାନଙ୍କ ଉପରେ ଭୟାନକ ପ୍ରଭାବ ପଡ଼ିଥାଏ, ତାହାର ଏକ ତାଲିକା କରିବା ଆବଶ୍ୟକ ହୋଇଛି ।

ପ୍ରଥମେ ବିକାଶ ପ୍ରକ୍ରିୟା ଏକତରଫା ହୁଏ ଏବଂ ଅସମାନତା ଓ ଦାରିଦ୍ର୍ୟ ବଢ଼ିଥାଏ । ଦ୍ୱିତୀୟରେ ଛୋଟ ଛୋଟ ଉଦ୍ୟୋଗଗୁଡ଼ିକ ଲୋପ ପାଇଯାଏ । ତୃତୀୟରେ ଲାଭ ଖାଉଥିବା ଧନରାଶି ସେହି ଦେଶରେ ଦାରିଦ୍ର୍ୟ ଦୂରୀକରଣ ପ୍ରକ୍ରିୟାରେ ଘୋର ବାଧା ସୃଷ୍ଟି କରିଥାଏ । ଚତୁର୍ଥରେ ତୃତୀୟ ଦେଶର ବିକାଶ ଓ ଆର୍ଥିକ ନୀତି ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ସୁହାଇଲା ଭଳି ନିର୍ଧାରଣ କରାଯାଏ । ଦୁର୍ନୀତିର ପ୍ରଭାବକୁ ବଳ କରି କମ୍ପାନୀମାନେ ସର୍ବଦା ଫାଇଦା ଉଠାନ୍ତି । ଏହା ଦ୍ୱାରା ଦେଶର ଘୋର କ୍ଷତି ଘଟେ । ଏହା ଗଣତାନ୍ତ୍ରିକ ପ୍ରକ୍ରିୟାକୁ ଦୁର୍ବଳ କରି ପକାଏ । ପରିବେଶ ନଷ୍ଟ ହେବା ସହ ରାଜନୈତିକ ଓ ଆର୍ଥିକ ପରିବେଶ ମଧ୍ୟ କଳୁଷିତ ହୋଇଯାଏ । ଏସବୁ ବିଷୟରେ କେତେ ସତ୍ୟତା ଅଛି ତାହା ଜାଣିବାକୁ ମହାରାଷ୍ଟ୍ରରେ ପ୍ରତିଷ୍ଠିତ 'ଏନ୍‌ରନ୍' କମ୍ପାନୀ ଏବଂ ଓଡ଼ିଶାରେ କାମ ଆରମ୍ଭ କରିଥିବା 'ଉତ୍କଳ ଆଲୁମିନା ଇଣ୍ଟରନ୍ୟାସନାଲ'କୁ ଉଦାହରଣ ରୂପେ ନିଆଯାଇପାରେ । ଏମାନଙ୍କ ଅଡ଼ିଟ୍ ରିପୋର୍ଟ ଓ ହିସାବପତ୍ର ଦେଖିଲେ ଜଣାପଡ଼େ ଯେ କୋଟିକୋଟି ଟଙ୍କା ଏମାନେ ଲାଞ୍ଚ ଦେଇଛନ୍ତି । 'ଏନ୍‌ରନ୍' କମ୍ପାନୀ

ଲୋକଶିକ୍ଷା (ପବ୍ଲିକ୍ ଏଜୁକେସନ) ପାଇଁ ୬୦ କୋଟି ଟଙ୍କା ଖର୍ଚ୍ଚ କରିଥିଲା । ୧୯୯୯ ମସିହାରେ ଉତ୍କଳ ଆଲୁମିନା ପ୍ରାୟ ୧୬ କୋଟି ଟଙ୍କା ଅନ୍ୟାନ୍ୟ ଖର୍ଚ୍ଚ (ମିସେଲାନିଅସ୍ ଖର୍ଚ୍ଚ) ବୋଲି ଦେଖାଇଥିଲା । ଯାହା ଲାଞ୍ଚ ଛଡ଼ା ବୋଲି ସନ୍ଦେହ କରାଯାଉଛି ।

ବିଶ୍ୱ ଅର୍ଥନୀତିରେ 'ଏନ୍‌ରନ୍' ଭଳି ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକ ଦ୍ୱାରା ଏକ କଳଙ୍କମୟ ଅଧ୍ୟାୟ ସୃଷ୍ଟି ହୋଇଛି । ଆମେରିକାର ପ୍ରଥମ ୧୦ଟି ଧନୀ କର୍ପୋରେଟ୍‌ମାନଙ୍କ ଭିତରେ ଏନ୍‌ରନ୍ ସ୍ଥାନ ପାଇ ଆସୁଥିଲା । ଏପରିକି ରାଷ୍ଟ୍ରପତି ବୁଶ୍ ଓ ତାଙ୍କ ପରିବାରର ସଦସ୍ୟମାନେ ଏହି କମ୍ପାନୀର ପରିଚାଳନାରେ ପ୍ରତ୍ୟକ୍ଷ ଭାବେ ସଂଶ୍ଳିଷ୍ଟ ଥିଲେ । ଯେଉଁମାନେ ଜଗତୀକରଣରେ ବିଶ୍ୱାସ କରନ୍ତି, ସେମାନେ ଏହା ବିଶ୍ଳେଷଣ କରିବାକୁ ମୁଁ ଅନୁରୋଧ କରିବି ଯେ 'ଏନ୍‌ରନ୍' କମ୍ପାନୀ କେଉଁ କର୍ମକାଣ୍ଡ କରି ନିନ୍ଦିତ ହୋଇଛି ଏବଂ ସର୍ବଶେଷରେ ଦେବାଳିଆ ହୋଇଯାଇଛି । ଏହାର ମୁଖ୍ୟ କର୍ମକର୍ତ୍ତାମାନେ କିପରି ଆଇନର ପରିସର ଭିତରକୁ ଆସିଛନ୍ତି ଏବଂ ଶେଷରେ କାରାଦଣ୍ଡ ଭୋଗିଛନ୍ତି । ରାଷ୍ଟ୍ରପତି ବୁଶ୍ ମଧ୍ୟ ନିନ୍ଦିତ ହୋଇଛନ୍ତି ଏଥିରେ ତାଙ୍କର ଭୂମିକା ପାଇଁ । ଯୁକ୍ତରାଷ୍ଟ୍ର ଆମେରିକାରେ କର୍ପୋରେଟ୍‌ଗୁଡ଼ିକ ଉପରେ ଅନେକ ସନ୍ଦେହ ସୃଷ୍ଟି ହୋଇଛି । ସେମାନଙ୍କ ଉତ୍ତରଦାୟିତା ପାଇଁ ନୂଆ ଆଇନରେ ପ୍ରସ୍ତାବ ଦିଆଯାଇଛି । ତୃତୀୟ ବିଶ୍ୱର ଅନେକ ଦେଶକୁ ଉଦାହରଣ ହିସାବରେ ନିଆଯାଇପାରେ । ଯେଉଁଠି କର୍ପୋରେଟ୍‌ମାନେ ଶାସକବର୍ଗ ବା ରାଷ୍ଟ୍ରମୁଖ୍ୟଙ୍କୁ ଦୁର୍ନୀତିଗ୍ରସ୍ତ କରିବାରେ ଅସଲ ଭୂମିକା ଗ୍ରହଣ କରିଛନ୍ତି । ଇଣ୍ଡୋନେସିଆରେ ଫର୍ଡ଼ିନାଣ୍ଡ୍ ମାର୍କସ, ନାଇଜେରିଆରେ ସନି ଆବାୟୋ, ଦକ୍ଷିଣ କୋରିଆରେ ଚୁଂ ଦୋ ହ୍ୱାଂ, ଭାରତରେ ରାଜୀବ ଗାନ୍ଧୀ ଆଦି ରାଷ୍ଟ୍ରମୁଖ୍ୟମାନେ ବହୁରାଷ୍ଟ୍ରୀୟ କର୍ପୋରେଟ୍‌ଙ୍କ ଦୁର୍ନୀତି ଜାଲରେ ଛନ୍ଦି ହୋଇଥିବା କଥା ପୃଥିବୀବାସୀ ଜାଣନ୍ତି । ଏହା ଛଡ଼ା ଆର୍ଜେଣ୍ଟିନା, ବ୍ରାଜିଲ୍, କଲମ୍ବିଆ, ହଙ୍ଗେରୀ, ମେକ୍ସିକୋ, ମରକ୍କୋ, ରୁଷିଆ, ଦକ୍ଷିଣ କୋରିଆ ଓ ଥାଇଲାଣ୍ଡ୍ ଆଦି ଦେଶଗୁଡ଼ିକରେ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକ ଦୁର୍ନୀତିକୁ ପ୍ରୋତ୍ସାହିତ କରି ଆସୁଛନ୍ତି ।

ଅନ୍ୟ ପକ୍ଷରେ ବିଶ୍ୱ ବ୍ୟାଙ୍କ୍ ଓ ଆନ୍ତର୍ଜାତିକ ମୁଦ୍ରାକୋଷ ସେମାନଙ୍କ ନୀତି ଓ ରଣନୀତିରେ ତୃତୀୟ ବିଶ୍ୱରେ ଦୁର୍ନୀତିର ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଛନ୍ତି । ବେଳେ ବେଳେ ସ୍ୱଚ୍ଛତା, ଉତ୍ତରଦାୟିତା ପାଇଁ ଏହି ଦୁଇ ସଂସ୍ଥା ଉଚ୍ଚ ସ୍ୱରରେ ଦୁର୍ନୀତି ବିରୋଧରେ ଦେଖାଣିଆ ରଣହୁଙ୍କାର ଦିଅନ୍ତି ଏବଂ ତୃତୀୟ ବିଶ୍ୱର ଦୁର୍ବଳ ଦେଶଗୁଡ଼ିକୁ ଧମକ ଦିଅନ୍ତି । କିନ୍ତୁ ଅସଲ କ୍ଷେତ୍ରରେ ସେମାନଙ୍କ ନୀତି, ଦୁର୍ନୀତି ଓ ଭ୍ରଷ୍ଟାଚାରକୁ ଅତି ନଗ୍ନ

ଭାବରେ ବଢ଼ାଇଥାଆନ୍ତି । ଏହି ଦୁର୍ନୀତିର ପରିସର କେବଳ ଦକ୍ଷିଣ ଦେଶଗୁଡ଼ିକରେ ସୀମିତ ହୋଇ ନାହିଁ । ଉତ୍ତର ଦେଶଗୁଡ଼ିକରେ ମଧ୍ୟ ବ୍ୟାପି ଯାଇଛି । ସଂସ୍କାର ନାମରେ ଅମଲାତନ୍ତ୍ରକୁ ଏପଟ ସେପଟ କରିବା ଅଥବା ବଜାରୀକରଣ ନାମରେ ଗୋଟିଏ ଦେଶର ଅର୍ଥନୀତିକୁ ଦୁର୍ବଳ କରିବା ଆଦି ଅବଶେଷରେ ଦୁର୍ନୀତିର ସ୍ତର ବଢ଼ାଉଛି । ବିଭିନ୍ନ ଅନୁସନ୍ଧାନରୁ ଜଣାଯାଇଛି ଯେ କର୍ପୋରେଟ୍‌ମାନଙ୍କର ସ୍ଥାନ ଓ ସ୍ୱାର୍ଥ ସୁରକ୍ଷା ପାଇଁ ବିଶ୍ୱବ୍ୟାଙ୍କ୍ ଓ ଆନ୍ତର୍ଜାତିକ ମୁଦ୍ରାକୋଷ ବିଭିନ୍ନ ପ୍ରକାର ରଣନୀତି ପ୍ରୟୋଗ କରିଥାଆନ୍ତି । ଯେଉଁ ଅଞ୍ଚଳରେ କର୍ପୋରେଟ୍‌ମାନେ ପୁଂଜିନିବେଶ ଦ୍ୱାରା ଲାଭ ଉଠାଇବେ, ସେହି ଅଞ୍ଚଳରେ ଭିତ୍ତିଭୂମି ପ୍ରତିଷ୍ଠା ପାଇଁ ଏମାନେ ଆଗେଇ ଆସିବେ । ଓଡ଼ିଶାକୁ ଉଦାହରଣ ହିସାବରେ ନିଆଯାଉ । ଏଠାରେ ଖଣି ଖାଦାନ ଓ ଶିଳ୍ପ ପ୍ରତିଷ୍ଠା ପାଇଁ ଯଥେଷ୍ଟ ସୁଯୋଗ ଥିବାରୁ ଗୋଟିଏ ପ୍ରକାର ଦୀର୍ଘମିଆଦୀ ଯୋଜନାର ଆବଶ୍ୟକତା ରହିଛି । ସେଥିପାଇଁ ଓଡ଼ିଶା ଭଳି ଦରିଦ୍ର ରାଜ୍ୟରେ ବିଶ୍ୱବ୍ୟାଙ୍କ୍, ୟୁଏନ୍‌ଡିପି, ୟୁନିଡ୍ରୋ, ଡି.ଏଫ୍.ଆଇ.ଡି. ଆଦି ସଂସ୍ଥା ପ୍ରଚୁର ସାହାଯ୍ୟ ଓ ଋଣ ଦେଉଛନ୍ତି । ଏବଂ କର୍ପୋରେଟ୍‌ମାନଙ୍କର ସୁବିଧା ପାଇଁ ବିଭିନ୍ନ ନୀତିରେ ସଂସ୍କାର ଆଣୁଛନ୍ତି । ଶାସନ ବ୍ୟବସ୍ଥା ଯେପରି ଦୁର୍ବଳ ହେଉ ଏବଂ ଭ୍ରଷ୍ଟାଚାର ବ୍ୟାପକ ହେଉ, ତାହାକୁ ହିଁ ସେମାନେ ପରୋକ୍ଷ ଭାବେ ସାହାଯ୍ୟ କରୁଛନ୍ତି । ଋଣ ହେଉ ବା ଅନୁଦାନ ହେଉ, ଏହାର ସଦ୍‌ବ୍ୟବହାର ହେଉଛି କି ନାହିଁ, ଯେତିକି ସମୀକ୍ଷା ଆବଶ୍ୟକ, ତାହା ବିକଶିତ ଦେଶ, ବିଶ୍ୱବ୍ୟାଙ୍କ୍ ଓ ଆନ୍ତର୍ଜାତିକ ମୁଦ୍ରାକୋଷ ଆଦି ଶକ୍ତିମାନେ ବାରମ୍ବାର ଆଙ୍ଗୁଳି ଦେଖାଇ ସୂଚିତ କରିଛନ୍ତି ଯେ ତୃତୀୟ ବିଶ୍ୱରେ ବିଭିନ୍ନ ନିୟନ୍ତ୍ରଣ ଥିବାରୁ ଦୁର୍ନୀତି ବଢ଼ୁଛି । ଏଥିପାଇଁ କଷ୍ଟମ୍‌ସ ଓ ଟ୍ୟାକ୍ସ ବ୍ୟବସ୍ଥା, ଶାସନ ଓ ପ୍ରଶାସନ ଆଦିରେ ସଂସ୍କାର ଅଣାଯାଇ ସବୁକୁ ସରଳ ଓ ବେନିୟନ୍ତ୍ରଣ କରାଯାଉ ବୋଲି ବିଭିନ୍ନ ବିକଶିତ ଦେଶ ଉପରେ ଚାପ ବଢ଼ୁଛି । କିନ୍ତୁ ଅସଲ କ୍ଷେତ୍ରରେ ଏହାର ଫଳ ଓଲଟା ହେଉଛି । ବିଶ୍ୱବ୍ୟାଙ୍କ୍ ଓ ଆନ୍ତର୍ଜାତିକ ମୁଦ୍ରାକୋଷ କର୍ତ୍ତୃପକ୍ଷ ନିଶ୍ଚିତ ଭାବେ ଜାଣିଥିଲେ ଯେ ଫିଲିପାଇନ୍‌ର ଫର୍ଡ଼ିନାଣ୍ଡ୍ ମାର୍କସ, ଇଣ୍ଡୋନେସିଆର ଜେନେରାଲ୍ ସୁହାର୍ତୋ, ଦକ୍ଷିଣ କୋରିଆର ରାଷ୍ଟ୍ରପତି ଚୁଂ ଦୋ ହ୍ୱାଂ ଏବଂ ରୋ ତେ ଉ ଏବଂ ଜାଇରେର ଜେସେଫ୍ ମୋବୁଟୁ ଦୁର୍ନୀତିଗ୍ରସ୍ତ ଓ ଏକଛତ୍ରବାଦୀ । ଅଥଚ ସେ ଦେଶଗୁଡ଼ିକରେ ଏ ସଂସ୍ଥାଗୁଡ଼ିକର ଅନୁଦାନ ଓ ସମର୍ଥନ ସୀମାତୀତ ଥିଲା । ଏକଛତ୍ରବାଦୀ ଶାସକମାନେ ସେମାନଙ୍କର ଦେଶର ସମ୍ପତ୍ତିକୁ ଲୁଣ୍ଠନ କରୁଥିଲେ ସ୍ପଷ୍ଟ ଦିବାଲୋକରେ । ସେମାନଙ୍କୁ ବିଶ୍ୱବ୍ୟାଙ୍କ୍ ଓ ଆନ୍ତର୍ଜାତିକ ଅଭୂତପୂର୍ବ ନୈତିକ, ଆର୍ଥିକ ଓ ଆନ୍ତର୍ଜାତିକ

ସମର୍ଥନ ଦେବା ପଛରେ କ'ଣ ରହସ୍ୟ ଅଛି ଜଣେ ସ୍ପଷ୍ଟ ଅନୁମାନ କରିପାରେ । ଏ ସବୁକୁ ବିଶ୍ଳେଷଣ କଲେ ନିମ୍ନଲିଖିତ କଥାଗୁଡ଼ିକ ସ୍ପଷ୍ଟ ବୁଝିହୁଏ । ବିଶ୍ୱବ୍ୟାଙ୍କ୍ ଓ ଆନ୍ତର୍ଜାତିକ ମୁଦ୍ରାକୋଷ ଜାଣିଶୁଣି ଓ ଅତି ସଚେତନତାର ସହ ଦୁର୍ନୀତିଗ୍ରସ୍ତ, ଭ୍ରଷ୍ଟାଚାରୀ, ଏକଛତ୍ରବାଦୀ ଶାସକମାନଙ୍କୁ ସମର୍ଥନ ଦେଇ ଆସିଛି । ଏମାନେ ମଧ୍ୟ ଏହି ମଣିଷ ହତ୍ୟାକାରୀ ଓ ଅତ୍ୟାଚାରୀ ଶାସକମାନଙ୍କର ସାମରିକ କାର୍ଯ୍ୟକଳାପ ଓ ସାଧାରଣ ମଣିଷଙ୍କ ଉପରେ ଦମନ ଅତ୍ୟାଚାର ଓ ଉତ୍ପୀଡ଼ନ ଜାଣି ମଧ୍ୟ ସାହାଯ୍ୟ ଦେବାରେ କୁଣ୍ଠା ପ୍ରକାଶ କରନ୍ତି ନାହିଁ ।

ଏକଛତ୍ରବାଦୀ ଶାସନର ପତନ ହୋଇ ଗଣତାନ୍ତ୍ରିକ ସରକାର ପ୍ରତିଷ୍ଠା ହେଲେ ମଧ୍ୟ ବିଶ୍ୱବ୍ୟାଙ୍କ୍ ଆଜି ସହଜରେ ବିଶ୍ୱାସକୁ ନିଏ ନାହିଁ । ଅଥବା ବିଭିନ୍ନ ପ୍ରକାର ଲାଭହୀନ ପ୍ରକଳ୍ପ ଓ ଅସଙ୍ଗତ ପୁଂଜି ଏ ଦେଶମାନଙ୍କରେ ଲଦି ଦେଇ ଦେଶକୁ ଋଣଗ୍ରସ୍ତ କରି ଦିଏ । ଦୁର୍ନୀତିର ଜାଲ ଏହିଭଳି ପ୍ରସାରିତ ହୁଏ ବିଶ୍ୱବ୍ୟାଙ୍କ୍ ଦ୍ୱାରା । ଏ କଥା ସତ ଯେ ବିଶ୍ୱବ୍ୟାଙ୍କ୍ ଦୁର୍ନୀତି ସକାଶେ ଅନେକ ଋଣକୁ ଅକାମୀ କରିଛି ବା ବାତିଲ୍ କରିଛି । ଏ ଦେଶଗୁଡ଼ିକ ହେଲା, ଚାଦ୍, କେନିଆ, କଙ୍ଗୋ, ଭାରତ, ବାଙ୍ଗ୍ଲାଦେଶ, ଆର୍ଜେଣ୍ଟିନା ଓ ୟେମେନ୍ । କିନ୍ତୁ ସବୁ ପ୍ରଚେଷ୍ଟା ସତ୍ତ୍ୱେ ବିଭିନ୍ନ ବିକାଶଶୀଳ ଦେଶରେ ଥିବା ସ୍ୱଳ୍ପ ବେତନ ଭୋଗୀ ସରକାରୀ କର୍ମଚାରୀ, କମ୍ପାନୀମାନଙ୍କୁ ଲାଞ୍ଚ ଦେବା କଳାଟଙ୍କା କାରବାର ପ୍ରତି ବିଶ୍ୱବ୍ୟାଙ୍କ୍ ଆଖି ବୁଜି ଦେଇ ନିଜର ଅସହାୟତା ପ୍ରମାଣ କରି ଦେଉଛି । ଦୁର୍ନୀତି ନିବାରଣ ପାଇଁ ବିଶ୍ୱବ୍ୟାଙ୍କ୍ ଓ ଆନ୍ତର୍ଜାତିକ ମୁଦ୍ରାକୋଷ ଅନେକ ପଦକ୍ଷେପ ନେବାକୁ ନିଶ୍ଚିତ ଚେଷ୍ଟା କରୁଛନ୍ତି । ଶାସନ ଓ ପ୍ରଶାସନର ସ୍ୱଚ୍ଛତା, ପାରଦର୍ଶିତା ଓ ଉତ୍ତରଦାୟିତା ଉପରେ ଗୁରୁତ୍ୱର ଦ୍ୱାହି ଦେଇ ସର୍ବନିମ୍ନ ଗୁଣାତ୍ମକ ମୂଲ୍ୟବୋଧ କଥା କେବଳ କହି ଆସୁଛି ।

ଆନ୍ତର୍ଜାତିକ ସେବା ସଂସ୍ଥାମାନଙ୍କରେ ଦୁର୍ନୀତି ଓ ବ୍ୟଭିଚାର କେତେ ବଢ଼ିଛି, ତାହାକୁ ଜଣେ ଜାଣିଗଲେ ସେ ନିଶ୍ଚେ ଦୁଃଖ ଓ ଅନୁଶୋଚନା କରିବ । ଗ୍ରାହାମ୍ ହ୍ୟାନ୍‌କକ୍ ନାମକ ଜଣେ ବିଶ୍ୱଶ୍ରେଣୀୟ ସାମ୍ବାଦିକ ଗୋଟିଏ ବହି ଲେଖିଛନ୍ତି ଯାହାର ନାମ ହେଉଛି "ଲର୍ଡ୍‌ସ୍ ଅଫ୍ ପୋଭର୍ଟି" । ଏଥିରେ ଅତି ସ୍ପଷ୍ଟତାର ସହ ବର୍ଣ୍ଣନା କରାଯାଇଛି ଯେ ଗରିବଙ୍କ ନାମରେ ଆନ୍ତର୍ଜାତିକ ସଂସ୍ଥାମାନେ କେଉଁଭଳି ଦୁର୍ନୀତି ଭ୍ରଷ୍ଟାଚାରରେ ସଂପୃକ୍ତ ହେଉଛନ୍ତି । ଏ ପୃଥିବୀର କୋଟିକୋଟି ଗରିବ ଲୋକ ଆଶା କରୁଛନ୍ତି ଖାଦ୍ୟ ଓ ଜୀବନ ବଞ୍ଚାଉଥିବା ଔଷଧ, ପ୍ରାକୃତିକ ଦୁର୍ବିପାକରେ ଜୀବନଜୀବିକାର ପୁନଃପ୍ରତିଷ୍ଠା । ଇଥିଓପିଆ,

ସୁଦାନ, ସୋମାଲିଆ ଆଦି ଦେଶରେ ଅନାହାର ଓ ଦୁର୍ଭିକ୍ଷ ଲାଗି ରହିଛି ଏବଂ ସେହି ସବୁ ଦେଶକୁ ଯେଉଁ ଆନ୍ତର୍ଜାତିକ ସାହାଯ୍ୟ ଆସିଛି – ସେଥିରେ ଦୁର୍ନୀତି, ଭ୍ରଷ୍ଟାଚାର ଓ ବ୍ୟଭିଚାରର ଗୋଟିଏ ଲେଖାଏଁ ନୂଆ ଅଧ୍ୟାୟ ଯୋଡ଼ି ହୋଇ ଯାଇଛି । ତାହାକୁ ମୁଁ ଆଗାମୀ ସ୍ତମ୍ଭଗୁଡ଼ିକରେ ଲେଖିବାର ପ୍ରୟାସ କରୁଛି ।

(୨)

ଜଗତୀକରଣ ଆଳରେ ଆନ୍ତର୍ଜାତିକ ସଂସ୍ଥାମାନଙ୍କ ଭିତରେ ଦୁର୍ନୀତି ଓ ଭ୍ରଷ୍ଟାଚାର ଯେତେ ମାତ୍ରାରେ ବଢ଼ିଛି, ତାହା ଜାଣିଲେ ଯେକେହି ଦୁଃଖ ଅନୁଶୋଚନାରେ ସ୍ତମ୍ଭୀଭୂତ ହୋଇଯିବେ । ଗ୍ରାହାମ୍ ହାନ୍‌କକ୍ ନାମକ ଜଣେ ବିଶ୍ୱଶ୍ରେଣୀୟ ସାମ୍ବାଦିକ ତାଙ୍କର "ଲର୍ଡ୍‌ସ୍ ଅଫ୍ ପୋଭର୍ଟି" ବହିରେ ଯାହା ସବୁ ବର୍ଣ୍ଣନା ଓ ବିଶ୍ଳେଷଣ କରିଛନ୍ତି, ତାହା ହୃଦୟଙ୍ଗମ କଲେ ଆନ୍ତର୍ଜାତିକ ସେବା ସଂସ୍ଥାମାନଙ୍କ ପ୍ରତି ଘୃଣା ଓ ବିଦ୍ୱେଷ ଭାବ ସୃଷ୍ଟି ହେବ । ଆନ୍ତର୍ଜାତିକ ସେବା ସଂସ୍ଥାମାନେ ସେବା ଓ ଗରିବଙ୍କ ପ୍ରତି ଦରଦଭାବ ଦେଖାଇବାକୁ ସୃଷ୍ଟି ହୋଇଛନ୍ତି କି କେତେକ ପେସାଦାର ବ୍ୟକ୍ତିଙ୍କ ସ୍ୱାର୍ଥ ସାଧନ ପାଇଁ ତିଷ୍ଠି ରହିଛନ୍ତି, ତାହା ଏବେ ପ୍ରଶ୍ନ ହୋଇ ଦେଖାଦେଇଛି । ବହିଟିରେ ଅତି ସ୍ପଷ୍ଟତାର ସହ ବର୍ଣ୍ଣନା କରିଛନ୍ତି ଯେ ଗରିବଙ୍କ ନାମରେ ଆର୍ନ୍ତଜାତିକ ସେବା ସଂସ୍ଥା ଓ ସେଥିରେ କର୍ମରତ ଥିବା ଅଧିକାରୀମାନେ ବିଭିନ୍ନ ପ୍ରକାର ଦୁର୍ନୀତି ଓ ଭ୍ରଷ୍ଟାଚାରରେ ସଂପୃକ୍ତ ।

ବିଭିନ୍ନ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ କାରଣରୁ ତୃତୀୟ ବିଶ୍ୱରେ ଶାସନଗାଦିରେ ବସିଥିବା ସରକାରମାନେ ସେ ଦେଶର ଗରିବଙ୍କ ବିକାଶ ଓ ପ୍ରଗତି ପାଇଁ ସକ୍ଷମ ହେଉ ନାହାନ୍ତି । ଏଥିପାଇଁ ଆନ୍ତର୍ଜାତିକ ସେବା ସଂସ୍ଥାଙ୍କ ଦ୍ୱାରସ୍ଥ ହେବାକୁ ପଡୁଛି ସେମାନଙ୍କୁ । ପ୍ରାକୃତିକ ଦୁର୍ବିପାକ ଅକସ୍ମାତ୍ ଆସିଥିଲେ ଏହି ଦେଶଗୁଡ଼ିକ ନିଜକୁ ଘୋର ଅସହାୟ ମନେ କରୁଛନ୍ତି । ଦୁର୍ବିପାକର ମୁକାବିଲା କରିବାକୁ ଓ କ୍ଷତିଗ୍ରସ୍ତ, ପୀଡ଼ିତ ମଣିଷମାନଙ୍କୁ ଆଶୁ ସାହାଯ୍ୟ ପାଇଁ କେଜାଣି କାହିଁକି ଏ ଦେଶଗୁଡ଼ିକ ସମର୍ଥ ନୁହନ୍ତି । ଏଥି ପାଇଁ ଆନ୍ତର୍ଜତିକ ସେବା ସଂସ୍ଥାମାନଙ୍କୁ ଆଗେଇ ଆସିବାକୁ ଏବଂ ସର୍ବବିଧ ସାହାଯ୍ୟ କରିବାକୁ ପ୍ରଭାବିତ ଦେଶମାନେ ଅନୁରୋଧ କରି ଥାଆନ୍ତି । କେଉଁଠି ପ୍ରାକୃତିକ ଦୁର୍ବିପାକ, ଗୃହଯୁଦ୍ଧ, ବିସ୍ଥାପନ, ରୋଗ, ମହାମାରୀ. ଅନାହାର, ରାଜନୈତିକ-ଅର୍ଥନୈତିକ ସଂକଟ ଉପୁଜିଲେ, ଆନ୍ତର୍ଜାତିକ ସେବା ସଂସ୍ଥାମାନେ ମଧ୍ୟ ତାହାକୁ ଜନସାଧାରଣଙ୍କ ଆଗରେ ଉପସ୍ଥାପନ କରି ସହୃଦୟ ସାହାଯ୍ୟ ଲୋଡ଼ିଥାଆନ୍ତି । ଏହା

ଛଡ଼ା ବିଭିନ୍ନ ପନ୍ଥା ଅବଲମ୍ବନ କରି ଚାନ୍ଦା ସଂଗ୍ରହ କରିଥାଆନ୍ତି । ବିଭିନ୍ନ କ୍ଷେତ୍ରର ଉଚ୍ଚଆୟକାରୀ ବର୍ଗର ଟିକସଦାତାମାନେ ଆନ୍ତର୍ଜାତିକ ସେବା ସଂସ୍ଥାର ପାଣ୍ଠି ସଂଗ୍ରହକୁ ସାହାଯ୍ୟ କରିଥାଆନ୍ତି । ପ୍ରଭାବିତ ଓ ପୀଡ଼ିତ ବ୍ୟକ୍ତିମାନଙ୍କ ଖାଦ୍ୟ, ପିଇବାପାଣି, ଗୃହ, ଔଷଧ ଓ ବିଭିନ୍ନ ଜରୁରୀକାଳୀନ ସାମଗ୍ରୀ ପାଇଁ ଏହି ପାଣ୍ଠି ବ୍ୟବହାର ହେବ ବୋଲି ପ୍ରଚାର କରାଯାଇଥାଏ । ସ୍ୱଳ୍ପମିଆଦୀ, ଜରୁରୀକାଳୀନ ସାହାଯ୍ୟ ଠାରୁ ଆରମ୍ଭ ହୁଏ ଦୀର୍ଘମିଆଦୀ ରଚନାତ୍ମକ ବିକାଶ କାର୍ଯ୍ୟକ୍ରମ । ଯେଉଁଥିରେ ଥଇଥାନ ବି ସାମିଲ ଅଛି । ତେଣୁ ଅଗଣିତ ପ୍ରଭାବିତ ଲୋକଙ୍କ ନିରାପତ୍ତା ଓ ଜୀବନ ଜୀବିକା ପ୍ରସଙ୍ଗ ଜଡ଼ିତ ବୋଲି ଜାଣିବା ପରେ ବହୁସଂଖ୍ୟକ ଦୟାର୍ଦ୍ର ବ୍ୟକ୍ତି ଆଗେଇ ଆସି ସମ୍ବଳ ଗ୍ରହଣ ପ୍ରକ୍ରିୟାରେ ସାମିଲ ହୁଅନ୍ତି । ବିଭିନ୍ନ ବିକଶିତ ଦେଶର ସରକାରମାନେ ମଧ୍ୟ ଆଗେଇ ଆସନ୍ତି ଆର୍ନ୍ତଜାତିକ ସେବା ସଂସ୍ଥାମାନଙ୍କୁ ସାହାଯ୍ୟ ଦେବାକୁ ଓ ସମ୍ବଳ ଯୋଗାଡ଼ କରାଇବାକୁ । କେତେକ ବଦାନ୍ୟ ଦେଶ  ତାଙ୍କର ଜି.ଡି.ପି.ର କେତେକାଂଶ ମଧ୍ୟ ସହାୟତା ରୂପେ ଦାନ କରିଥାନ୍ତି । ଜାତିସଂଘର ସଂସ୍ଥାମାନେ ଯଥା:- ୟୁନିସେଫ୍, ୟୁନିଫେମ୍, ୱାଲର୍ଡ୍ ଫୁଡ୍ ପ୍ରୋଗ୍ରାମ୍, ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ, ବିଶ୍ୱ ଖାଦ୍ୟ ଓ କୃଷି ସଂସ୍ଥା, ଆନ୍ତର୍ଜାତିକ ଶ୍ରମ ସଂଗଠନ ଆଦି ସଂସ୍ଥାମାନେ ମଧ୍ୟ ଏପରି ପ୍ରକ୍ରିୟାରେ ସଂପୃକ୍ତ ଅଛନ୍ତି ।

ବିଭିନ୍ନ ଅଧ୍ୟୟନରୁ ଜଣାପଡ଼ିଛି ଯେ ଦୁର୍ନୀତି ଭ୍ରଷ୍ଟାଚାର ଓ ଅନୁଦାନର ଅପବ୍ୟବହାର ପ୍ରାୟତଃ ସବୁ ଆନ୍ତଜାର୍ତିକ ସେବା ସଂସ୍ଥାକୁ ବ୍ୟାପି ଯାଇଛି । କେଉଁଠି ବିଭିନ୍ନ ରିଲିଫ୍ ସାମଗ୍ରୀ ବାଟମାରଣା କରି ଅନ୍ୟତ୍ର ବିକ୍ରି ଦିଆଯାଉଛି ତ କେଉଁଠି ନିମ୍ନମାନର ସାମଗ୍ରୀ ବଣ୍ଟା ଯାଉଛି । କେଉଁଠି ଦେଶୀ ସାମଗ୍ରୀ ବଣ୍ଟନ ହେଉଛି ତ ଅନ୍ୟ କେଉଁଠି କିଛି ବି ପହଞ୍ଚୁ ନାହିଁ । ପ୍ରଭାବିତ ଲୋକଙ୍କ ଆବଶ୍ୟକତାକୁ ଯେତେବେଳେ ବିଚାରକୁ ନିଆଯାଏ ନାହିଁ, ଏହି ଭଳି ବିଭ୍ରାଟ ଆପେ ସୃଷ୍ଟି ହୁଏ । ଅତଏବ ଗରିବମାନଙ୍କୁ ଆହୁରି ଗରିବ ହେବା ପାଇଁ ବାଧ୍ୟ କରାଯାଏ । ଅନୁଦାନର ସୁଷମ ବଣ୍ଟନ ଓ ଯଥାର୍ଥ ବିନିଯୋଗକୁ ଗୁରୁତ୍ୱ ଦେବାକୁ ହେଲେ ଦୁର୍ନୀତିର ମୁକାବିଲା କରିବାକୁ ପଡ଼ିଥାଏ । ଆର୍ନ୍ତଜାତିକ ସଂସ୍ଥାରେ କେମିତି ଦୁର୍ନୀତିର ଶିରାପ୍ରଶିରା ଶାଖା, ପ୍ରଶାଖା ବ୍ୟାପିଛି, ତାହା ସମସ୍ତେ ଜାଣିବା ଆବଶ୍ୟକ । ଗ୍ରାହାମ୍ ହାନ୍‌କକ୍‌ଙ୍କ "ଲର୍ଡ୍‌ସ୍ ଅଫ୍ ପୋଭର୍ଟି" ବହିରେ ବିଭିନ୍ନ ସତ୍ୟ ଓ ତଥ୍ୟର ଅବତାରଣା ହୋଇଛି । ସୋମାଲିଆ ଦେଶର ଅନାହାର ଦୁର୍ଭିକ୍ଷ ବେଳେ ଅନେକ ଆନ୍ତର୍ଜାତିକ ସେବା ସଂସ୍ଥା ଆଗେଇ ଆସିଥିଲେ ସାହାଯ୍ୟ କରିବା

ପାଇଁ । ଏ ସଂସ୍ଥାମାନେ ସୋମାଲିଆର ରାଜଧାନୀ 'ମୋଗାଦିଶୁ' ସହରରେ ସମବେତ ହୋଇ ଖୋଲିଥିଲେ ସୁଉଚ୍ଚ ଅଟ୍ଟାଳିକାରେ ଦପ୍ତରମାନ । ଯାତାୟାତ କରୁଥିଲେ ସୌଖୀନ କାର୍‌ରେ । କର୍ମକର୍ତ୍ତା ଦରମା ନେଉଥିଲେ ଜଣପିଛା ପ୍ରାୟ ଦୁଇ କୋଟି ଟଙ୍କା ବା ୫୫ହଜାର ଡଲାର । ମିଳୁଥିଲା ଟିକସ ରିହାତି ସହ ମଦ ଓ ଅନ୍ୟାନ୍ୟ ସାମଗ୍ରୀ । ସୋମାଲିଆ ଦେଶର ଜଣେ ସରକାରୀ କର୍ମଚାରୀଙ୍କୁ ଏହି ଭଳି ଦରମା ଓ ସୁବିଧା ସୁଯୋଗ ତାଙ୍କର ସର୍ବମୋଟ ୫୫ ବର୍ଷର ଚାକିରିକାଳ ମଧ୍ୟରେ ହୁଏତ ମିଳି ପାରିଥାଏ । ଆଜିକାଲି କର୍ପୋରେଟ୍ କର୍ମଚାରୀମାନଙ୍କ ଭଳି ଆନ୍ତର୍ଜାତିକ ସେବା ସଂସ୍ଥାର କର୍ମଚାରୀମାନେ ଖୋଜନ୍ତି ବଡ଼ବଡ଼ ବଙ୍ଗଳା, ଗଲ୍‌ଫ୍ ଖେଳ ପଡ଼ିଆ; ସୁଇମିଂପୁଲ୍, ବନ୍ଧୁତା ସ୍ଥାପନ ପାଇଁ ବିଭିନ୍ନ କ୍ଲବ୍, ସେମିନାର ଆୟୋଜନ ପାଇଁ ପଞ୍ଚତାରକା ହୋଟେଲ୍ । ଖାଇବା ପାଇଁ ଉଚ୍ଚକୋଟୀର ରେସ୍ତୋରାଁ । ଖାଲି ମୋଗାଦିଶୁ ସହର ନୁହେଁ, ତୃତୀୟ ବିଶ୍ୱର ସବୁ ଦେଶଗୁଡ଼ିକର ରାଜଧାନୀରେ ଏହିଭଳି ସମାନ ଦୃଶ୍ୟ ଦେଖିବାକୁ ମିଳୁଛି, ଗରିବଙ୍କ ବିକାଶ ପାଇଁ ଏହିଭଳି ଆୟୋଜନ ଚାଲିଛି । କର୍ମକର୍ତ୍ତାମାନଙ୍କ ଦୃଷ୍ଟିକୋଣ ଓ ବିଚାରଧାରା, ସ୍ଥାନୀୟ ସାମାଜିକ ସ୍ଥିତି ଓ ଆର୍ଥିକ ଦୁର୍ଗତି ଠାରୁ କେତେ ଦୂର ତାହା ସହଜରେ ଅନୁମାନ କରିହେବ । ଏ କଥା ନିରାଟ ସତ୍ୟ ଯେ 'ଅକ୍‌ସ୍‌ଫାମ୍' ଭଳି କେତେକ ଆନ୍ତର୍ଜାତିକ ସେବା ସଂସ୍ଥା, ଗରିବ ଜନତାଙ୍କ ଦୁଃଖ ଦୁର୍ଦ୍ଦଶାକୁ ହୃଦୟଙ୍ଗମ କରି ଅଯଥା ଖର୍ଚ୍ଚ କରନ୍ତି ନାହିଁ । ବରଂ ମିତବ୍ୟୟୀ ଉଦାହରଣ ଦିଅନ୍ତି, ଯାହାକି ଅନ୍ୟମାନେ ସାଧାରଣତଃ ଗ୍ରହଣ କରି ନଥା'ନ୍ତି । ଏପରି ସଂସ୍ଥାଗୁଡ଼ିକର କ୍ଷେତ୍ରବିବରଣୀ ମଧ୍ୟ ଅନେକ ସମୟରେ ଅନ୍ୟ ସାହାଯ୍ୟକାରୀ ସଂସ୍ଥାମାନେ ଗ୍ରହଣ କରିନଥାନ୍ତି ।

ଆନ୍ତର୍ଜାତିକ ସେବାସଂସ୍ଥାଙ୍କ ଅସଲ ଉଦ୍ଦେଶ୍ୟ ହେଉଛି ଗରିବଙ୍କ ପାଇଁ ଉଦ୍ଦିଷ୍ଟ ଧନରେ କିଛି ସୁଖ ସ୍ୱାଚ୍ଛନ୍ଦ୍ୟ ଉପଭୋଗ କରିବା । ଆନ୍ତର୍ଜାତିକ ସେବା ସଂସ୍ଥାରେ କର୍ମରତ ବ୍ୟକ୍ତିମାନେ ସତରେ କ'ଣ ଗରିବଙ୍କ ପାଇଁ ଚିନ୍ତିତ ଓ ଉତ୍ସର୍ଗୀକୃତ ? ଏ ପ୍ରଶ୍ନର ଏକ ସିଧା ଉତ୍ତର ଅଛି - ସ୍ୱଳ୍ପ କେତେ ଜଣଙ୍କୁ ଛାଡ଼ି ଦେଲେ ଅନ୍ୟମାନେ କେବଳ ମୋଟା ଦରମା ଓ ଅନ୍ୟ ସୁବିଧା ପାଇଁ ଏ ଚାକିରି କରିଥାଆନ୍ତି । କନସଲ୍‌ଟାଣ୍ଟ୍ ବା ପରାମର୍ଶଦାତାମାନେ ଗରିବଙ୍କ ପାଇଁ ଲୁହ ଝରାନ୍ତି ନାହିଁ ବା ସମ୍ବେଦନଶୀଳ ହୁଅନ୍ତି ନାହିଁ । ବରଂ ଅର୍ଥ ଲାଳସା ସେମାନଙ୍କ ଜୀବନ ଜୀବିକା ହୋଇଥାଏ । ଏଥିରେ କାହାର ସନ୍ଦେହ ଅଛି କି ? ସେବାନିବୃତ୍ତ ବ୍ୟକ୍ତିମାନେ ସାଧାରଣତଃ ପରାମର୍ଶଦାତା ଭୂମିକାରେ ରହିବାକୁ ବେଶୀ ଲାଳାୟିତ ହୁଅନ୍ତି । ଆଦର୍ଶବାଦ ବା ମାନବିକ ଚିନ୍ତାଧାରାର ସେଇଠି

ମୃତ୍ୟୁ ହୁଏ । ଦୟା ଅନୁକମ୍ପା, ସହଭାଗିତା ଓ ସ୍ନେହ ବଦଳରେ ବ୍ୟକ୍ତିଗତ ସ୍ୱାର୍ଥ, ଲୋଭ ଓ ପ୍ରତିଯୋଗିତା ଗୁରୁତ୍ୱପୂର୍ଣ୍ଣ ହୋଇ ଉଠେ । ଆଉ ନମ୍ରତା ଓ ନମନୀୟତା ସ୍ଥାନରେ ଚାଟୁକାରିତା ଓ ଅହମିକତା ଆଗୁଆ ହୋଇ ଠିଆ ହୁଏ । ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ, ବିଶ୍ୱ ଖାଦ୍ୟ ଓ କୃଷି ସଂଗଠନ, ଆନ୍ତଜାତିକ ଶ୍ରମ ସଂଗଠନ ଆଦି ସଂସ୍ଥାଗୁଡ଼ିକରେ ବିଭିନ୍ନ ପ୍ରଭାବଶାଳୀ ବ୍ୟକ୍ତିମାନେ ବର୍ଷ ବର୍ଷ ଧରି କ୍ଷମତାକୁ ଅକ୍ତିଆର କରି ରଖି ପୃଥିବୀର ଅଗଣିତ ଗରିବଙ୍କ ଭାଗ୍ୟବିଧାତା ହେଉଛନ୍ତି । ଏମାନଙ୍କୁ ମିଳୁଥିବା ସୁବିଧା ସୁଯୋଗର ଏକ ସାନ ତାଲିକା କଲେ ସମ୍ଭବତଃ ଏହିପରି ନିଶ୍ଚୟ ହେବ -

୧. କର୍ମଚାରୀଙ୍କ ପିଲାମାନେ ପଢ଼ିବାକୁ ଶିକ୍ଷା ଅନୁଦାନ, ୨. ରୋଗ ହେଲେ ୯ ମାସର ପୂରା ଦରମା ଓ ୯ ମାସର ଅଧା ଦରମା ସହ ଛୁଟି ବ୍ୟବସ୍ଥା; ୩. ଚାକିରିରେ ଶୀଘ୍ର ପଦୋନ୍ନତି; ୪. ପରିବାରକୁ ଛୁଟି ଓ ଭଡ଼ା ପାଇଁ ସୁଯୋଗ; ୫. ଟିକସ ରହିତ ଅବସରକାଳୀନ ଭତ୍ତା (ପେନ୍‌ସନ୍) ।

ଗରିବଙ୍କ ନାମରେ ଆସୁଥିବା ଅନୁଦାନକୁ ବାଟମାରଣା କରିବାର ଏକ ସୁଚିନ୍ତିତ ଉପାୟ ନୁହେଁ ତ ଆଉ କ'ଣ ? ସମସ୍ତେ ଚାହାନ୍ତି ବିଦେଶୀ ବିଶେଷଜ୍ଞ ବା ଫରେନ୍ ଏକ୍ସପର୍ଟ । ଗୋଟାଏ ଦେଶର ସମସ୍ୟାକୁ ସେହି ଦେଶର ଲୋକ ବା ସେହି ଦେଶର ଚିନ୍ତାଧାରା ଦ୍ୱାରା ସମାଧାନ କରି ପାରିବ ନାହିଁ । ଅଥଚ ବିଦେଶୀ ଚିନ୍ତା ଓ ବିଦେଶୀ କର୍ମଚାରୀ ସବୁ ପ୍ରଶ୍ନର ଉତର ଦେଇ ପାରିବେ, ସବୁ ରାସ୍ତା ଦେଖାଇ ପାରିବେ ଏବଂ ସବୁ ଜ୍ଞାନକୌଶଳର ଭଣ୍ଡାର ହୋଇ ଉପସ୍ଥିତ ରହିବେ, ଏହା ଭାଗ୍ୟର ବିଡ଼ମ୍ବନା ନୁହେଁ ତ ଆଉ କ'ଣ ? ଏହା ଛଡ଼ା ଏ ବିଦେଶୀ ଏକ୍ସପର୍ଟ ଓ ସେମାନଙ୍କର ସଂସ୍ଥାମାନେ ଏବେ ସ୍ଥାନୀୟ ଲୋକମାନଙ୍କୁ ସଂଶ୍ଲିଷ୍ଟ କରି ବିଭିନ୍ନ ପ୍ରକଳ୍ପମାନଙ୍କୁ କାର୍ଯ୍ୟକାରୀ କରୁଛନ୍ତି । ଅନୁଦାନ ଓ ପରିଚାଳନାକୁ ନିୟନ୍ତ୍ରଣ କରୁଛନ୍ତି । ଏକ ତରଫା ନିଷ୍ପତ୍ତି ନେଉଛନ୍ତି । ଏମିତିରେ ସବୁ କ୍ଷେତ୍ରରେ ଦୁର୍ନୀତି ପ୍ରବେଶ କରିଯାଇଛି । ଉପରୁ ତଳକୁ ଆସୁଥବା ଅନୁଦାନର ପରିଚାଳନାରେ ଏ ଦୁର୍ନୀତିକୁ ରୋକି ହେବ କି ?

ଆନ୍ତର୍ଜାତିକ ସେବାସଂସ୍ଥାମାନଙ୍କର ଅନ୍ୟ ଏକ ଗୁଣ ହେଲା ବିଦେଶୀ ଯନ୍ତ୍ରପାତି ଆମଦାନୀ କରିବା ଏବଂ ବିଦେଶୀ ବିଶେଷଜ୍ଞମାନଙ୍କୁ ନିଯୁକ୍ତି ଦେବା । ଏଥିପାଇଁ କେଉଁଠି ନା କେଉଁଠି ବ୍ରିଟିଶ୍ ଟ୍ରକ୍, ରୁଷିଆନ୍ ଟ୍ରାକ୍ଟର, ଜର୍ମାନ୍ କଳକବ୍ଜା, ଜାପାନୀ କାର୍, ଆମେରିକୀୟ ହାର୍ଡ଼ୱେର୍ ଆଦି ଆମଦାନୀ କରିବାକୁ କେହି ଦ୍ୱିଧା ପ୍ରକାଶ କରୁ ନାହାନ୍ତି । ଆନ୍ତର୍ଜାତିକ ସେବା ସଂସ୍ଥାମାନେ ଯେଉଁ ଦେଶରୁ ଆସିଥାଆନ୍ତି, ସେହି ଦେଶମାନଙ୍କର

କଳକବ୍ଜା, ଯନ୍ତ୍ରପାତି କିଣନ୍ତି । ଯେକୌଣସି ବାଟରେ ସେମାନେ ଶତକଡ଼ା ୮୦ ଭାଗ ଅନୁଦାନ କିପରି ନିଜ ଦେଶକୁ ଫେରିବ, ସେମିତି ଯୋଜନା କରୁ ଥାଆନ୍ତି ।

୯୦ ଦଶକରେ ତୃତୀୟ ବିଶ୍ୱକୁ ବିକଶିତ ଦେଶସମୂହର ସାହାଯ୍ୟ ପରିମାଣ ଥିଲା ୬୦ ବିଲିଅନ୍ ଡଲାର୍ । ଅର୍ଥାତ୍ ୨୪୦ ହଜାର କୋଟି ଟଙ୍କା । ଏହାର ପ୍ରକୃତ ସଦ୍‌ବ୍ୟବହାର ପାଇଁ ଏ ପୃଥିବୀର ଦାରିଦ୍ର୍ୟର ସଂପୂର୍ଣ୍ଣ ମୂଳୋତ୍ପାଟନ ହୋଇ ସାରନ୍ତାଣି । ସମସ୍ତଙ୍କୁ ଖାଦ୍ୟ, ବସ୍ତ୍ର, ବାସଗୃହ, ରୋଜଗାର, ପିଇବାପାଣି, ସ୍ୱାସ୍ଥ୍ୟ ଓ ଶିକ୍ଷା ସୁବିଧା ନିଶ୍ଚିତ ମିଳି ଥାଆନ୍ତା । କିନ୍ତୁ ଆଜି ସେସବୁର ଲକ୍ଷ୍ୟ ହାସଲ ଘୁଞ୍ଚି ଘୁଞ୍ଚି ଯାଉଛି । ଏହାର ମୂଳ କାରଣ ହେଉଛି ପ୍ରତ୍ୟେକ ବିକାଶଶୀଳ ଦେଶରେ ଚୌର୍ଯ୍ୟ ବୃତ୍ତି ବୃଦ୍ଧି । ରାଷ୍ଟ୍ରମୁଖ୍ୟମାନଙ୍କ ଠାରୁ ଆରମ୍ଭ କରି ରାଷ୍ଟ୍ରବାସୀ ଜନସାଧାରଣଙ୍କ ପର୍ଯ୍ୟନ୍ତ ସବୁଠି ଦୁର୍ନୀତିର ଜାଲ ବିଛାଡ଼ି ହୋଇଯାଇଛି । ଗରିବତମ ଦେଶର ଗରିବତମ ବ୍ୟକ୍ତି ପାଖରେ ଏ ବିଶାଳ ଅନୁଦାନର କେତେ ଭାଗ ପହଞ୍ଚୁଛି ? ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ହେବା କ୍ଷଣି କହିଥିଲେ ଯେ ଟଙ୍କାର ୧୬ ପଇସା ଲୋକଙ୍କ ପାଖରେ ପହଞ୍ଚୁଛି ଏବଂ ବାକି ଅଂଶ ବାଟମାରଣା ହେଉଛି । ଏହା କେବଳ ଭାରତ ଭଳି ଗଣତନ୍ତ୍ର ଦେଶରେ ନୁହେଁ, ଏକଛତ୍ରବାଦୀ ବା ସାମରିକ ଶାସନ ଚାଲିଥିବା ଦେଶରେ ମଧ୍ୟ ପରିଲକ୍ଷିତ । ଜଗତୀକରଣର ପ୍ରଭାବରେ ସୁଇଜରଲାଣ୍ଡର ବ୍ୟାଙ୍କ୍‌ମାନଙ୍କର ଧନରାଶି ଅଭୂତପୂର୍ବ ବଢ଼ିବାରେ ଲାଗିଛି । ଯଦି ଏ ରାଷ୍ଟ୍ରର ବ୍ୟାଙ୍କ୍‌ମାନେ ପ୍ରକୃତ ସତ୍ୟ ଉନ୍ମୋଚନ କରନ୍ତେ, ତେବେ କାହାର କଳାଧନ ଗଚ୍ଛିତ୍ ଅଛି ଜଣା ପଡ଼ନ୍ତା । ।

ଆନ୍ତର୍ଜାତିକ ସେବା ସଂସ୍ଥାମାନଙ୍କର ସହଯୋଗୀ ଭାବେ ତୃତୀୟ ବିଶ୍ୱରେ ସ୍ୱେଚ୍ଛାସେବୀ ସଂସ୍ଥା(ଏନ୍‌ଜିଓ) ତଥା ନାଗରିକ ସମାଜ ସଂସ୍ଥାମାନେ ଛତୁ ଫୁଟିଲା ଭଳି ମୁଣ୍ଡ ଟେକୁଛନ୍ତି । ଉଭୟଙ୍କ ମଧ୍ୟରେ କ୍ଷୀରନୀର ସଂପର୍କ ଗଢ଼ି ଉଠିଛି । ଜଗତୀକରଣ ପ୍ରକ୍ରିୟାର ଏହା ଏକ ଅବଦାନ । ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କୁ କର୍ପୋରେଟ୍ ଢାଞ୍ଚାରେ ପରିଚାଳିତ ହେବା ପାଇଁ ପ୍ରବର୍ତ୍ତାଇବାକୁ ବିଭିନ୍ନ ପ୍ରକାର ପ୍ରଲୋଭନ ଦିଆଯାଉଛି । ଏନ୍‌ଜିଓମାନଙ୍କୁ 'ଠିକାଦାର' ଭଳି ଟେଣ୍ଡର ପକାଇବାକୁ କୁହାଯାଉଛି । ଟେଣ୍ଡର ସହ ପର୍ସେଣ୍ଟେଜ୍(ପିସି) ଦେବାକୁ ଚାପ ପଡୁଛି । ବେଳେବେଳେ ଏହି ପିସି ଶତକଡ଼ା ୪୦ ଭାଗ ଅନୁଦାନ ପର୍ଯ୍ୟନ୍ତ ସୀମା ଛୁଉଁଛି । ଏହି ଭଳି ବାଟରେ ବିକାଶ ମାଠିଆରେ କଣା ବଢ଼ିବାରେ ଲାଗିଛି । ଆଜିର ଆନ୍ତର୍ଜାତିକ ସେବାସଂସ୍ଥାମାନଙ୍କର ମତିଗତି ଯାହା ଗାଆଁ ଗହଳିରେ କାମ କରୁଥିବା ସାନସାନ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କ ମନୋବୃତ୍ତି ସେୟା ।

ଉଦାହରଣ ସ୍ୱରୂପ ଓଡ଼ିଶାରେ ଏବେ ସ୍ୱେଚ୍ଛାସେବୀମାନଙ୍କର ଯେଉଁ ହୋଟେଲ ପ୍ରେମ ବଢୁଛି, ଅର୍ଥାତ୍ ହୋଟେଲରେ ସେମିନାର କର୍ମଶାଳା ଆୟୋଜନ କରିବା ଏବଂ ହୋଟେଲରେ ଅନୁଦାନ ଦେଇଥିବା ସଂସ୍ଥାମାନଙ୍କର ସେବା କରିବା - ଏହି ଆନ୍ତର୍ଜାତିକ ସେବାସଂସ୍ଥାମାନଙ୍କ ପ୍ରୋତ୍ସାହନରେ ହିଁ ହେଉଛି ।

ଆନ୍ତର୍ଜାତିକ ସେବା ସଂସ୍ଥା ହୁଅନ୍ତୁ କିଂବା ଆମର ଜାତୀୟ ସ୍ତର ବା ଗାଆଁସ୍ତରରେ କାମ କରୁଥିବା ଅଗଣିତ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କ କାର୍ଯ୍ୟ କଳାପ ଉପରେ ଆଖି ରଖିଛି "ଟ୍ରାନ୍ସପାରେନ୍ସୀ ଇଣ୍ଟରନ୍ୟାସନାଲ୍" । ପ୍ରତିବର୍ଷ ଅଧ୍ୟୟନ କରି ଏହି ସଂସ୍ଥା ଦୁର୍ନୀତି ଓ ଭ୍ରଷ୍ଟାଚାରର ବିଭିନ୍ନ ଦିଗ ଉପରେ ଆଲୋକପାତ କରୁଛି । ଟୀକା ଓ ଟିପ୍ପଣୀ ମଧ୍ୟ ଦେଉଛି । କିନ୍ତୁ ଏହାକୁ ସାଧାରଣ ଲୋକ ପାଖରେ ପହଞ୍ଚାଇବା ଦିଗରେ ସଂପୃକ୍ତ ସଂସ୍ଥାଗୁଡ଼ିକ ନୀରବ ରହୁଛନ୍ତି । ତେଣୁ ସାଧାରଣଲୋକଙ୍କ ପକ୍ଷରୁ ପ୍ରତିବାଦ ହେଉ ନାହିଁ । କେଉଁ ରାସ୍ତାରେ ଗଲେ ସ୍ୱଚ୍ଛତା ଓ ସାଧୁତା ଅକ୍ଷୁନ୍ନ ରହିବ ? ମୋ ମତରେ ଏକ ଆଚାର ସଂହିତା ଆବଶ୍ୟକତା ରହିଛି ଆନ୍ତର୍ଜାତିକ ସେବା ସଂସ୍ଥା ପାଇଁ । ଏହି ସଂହିତା କାର୍ଯ୍ୟକାରୀ ହେଲେ ଜଗତୀକରଣ ଜାଲକୁ କାଟି ଏମାନେ ଗରିବତମ ଦେଶର ଗରିବତମ ବ୍ୟକ୍ତି ପାଖରେ ନିଶ୍ଚୟ ପହଞ୍ଚିପାରନ୍ତେ ।

(୩)

ଦୁର୍ନୀତି ସଚରାଚରେ ଏ ପ୍ରାଣୀଜଗତକୁ ଗ୍ରାସ କରିଛି । କାହାର ଏଥିରେ ସନ୍ଦେହ ଥିଲେ ତାଙ୍କୁ ଆମ ବାଳିକା ବିଦ୍ୟାଳୟର ଛାତ୍ରୀମାନଙ୍କ ଏକ ଅଭିନୟ ଦେଖିବାକୁ ମୁଁ ଅନୁରୋଧ କରିବି । ଏଥର ବାର୍ଷିକୋତ୍ସବରେ 'ଅଗ୍ରଗାମୀ ମୁକ୍ତଜ୍ଞାନକୁଟୀର'ର ଛାତ୍ରୀମାନେ ଏକ ଏକାଙ୍କିକା ଉପସ୍ଥାପନ କରିଥିଲେ ସେମାନଙ୍କର ଅଭିଭାବକ ଓ ଗ୍ରାମବାସୀଙ୍କ ସାମ୍ନାରେ । ପ୍ରତି ଛାତ୍ରୀଙ୍କ ବୟସ ଦଶବର୍ଷରୁ ବେଶୀ ନୁହେଁ । ଏକାଙ୍କିକାର ବିଷୟ ବସ୍ତୁ ଥିଲା ଜଙ୍ଗଲର ପଶୁପକ୍ଷୀଙ୍କ ବାର୍ଷିକ ରାଜା ନିର୍ବାଚନ । ଏ ବର୍ଷର ରାଜା ହେଲା ଭାଲୁ । ଜଙ୍ଗଲରେ ମାଙ୍କଡମାନେ ପକ୍ଷୀମାନଙ୍କର ନୀଡସବୁ ଭାଙ୍ଗିବା ଏକ ଅଭ୍ୟାସ । ଗଛଡାଳରେ ବସା ବାନ୍ଧିବା କ'ଣ ଏକ ଅନ୍ୟାୟ କାର୍ଯ୍ୟ ? ଏଥିରେ ବ୍ୟଥିତ ହୋଇ ସବୁପକ୍ଷୀ ସାମୂହିକ ନିଷ୍ପତ୍ତି ନେଲେ ଯେ ଜଙ୍ଗଲ ରାଜାଙ୍କୁ ନିଜର ଗୁହାରି ଜଣାଇବେ । ଏଥରର ଭାଲୁ ରାଜା ନିଶ୍ଚୟ ନ୍ୟାୟ ଦେଇ ପକ୍ଷୀ ଭଳି ପ୍ରଜାଙ୍କୁ ସୁରକ୍ଷା ଦେବ । ପକ୍ଷୀମାନଙ୍କ ବିଚାରକୁ କିନ୍ତୁ ଏକ ଶୃଗାଳ ଶୁଣି ନେଇଥିଲା । ସେ ତତ୍କ୍ଷଣାତ୍

ଯାଇ ମାଙ୍କଡମାନଙ୍କୁ କହିଲା ଯେ ପକ୍ଷୀମାନେ ଭାଲୁ ରାଜାଙ୍କ ପାଖରେ ଗୁହାରି କରିବେ । ଭାଲୁ ରାଜା ନ୍ୟାୟବନ୍ତ ଓ ପ୍ରଜାବତ୍ସଳ । ସେ ମାଙ୍କଡ଼ମାନଙ୍କୁ ନିଶ୍ଚିତ ଦଣ୍ଡ ଦେବ । ମାଙ୍କଡମାନେ ଶୃଗାଳର ପରାମର୍ଶ ଲୋଡିଲେ । ଶୃଗାଳ କହିଲା, ଭାଲୁ ରାଜାର ସିଂହାସନ ପଛପଟେ କଦଳୀ କାନ୍ଧିଟିଏ ଲାଞ୍ଚ ରୂପେ ରଖିଦେଲେ ମାଙ୍କଡ଼ମାନଙ୍କୁ ଆଉ ଦଣ୍ଡ ମିଳିବ ନାହିଁ । ଏ ପରାମର୍ଶ ଅନୁସାରେ ମାଙ୍କଡମାନେ ଭାଲୁରାଜାର ସିଂହାସନ ପଛପଟେ ମସ୍ତବଡ କଦଳୀ କାନ୍ଧିଟିଏ ଅତି ସନ୍ତର୍ପଣରେ ରଖିଦେଲେ । ନିର୍ଦ୍ଧାରିତ ଦିନ ଭାଲୁ ରାଜା ପକ୍ଷୀମାନଙ୍କ ଅଭିଯୋଗର ବିଚାର ପାଇଁ ରାଜସଭା ଡାକିଥିଲା ଓ ବଣର ସମସ୍ତ ପଶୁ ପକ୍ଷୀ ଉପସ୍ଥିତ ଥିଲେ । ପକ୍ଷୀମାନେ ନିଜର କରୁଣ କାହାଣୀ ବଖାଣିଲେ - ବସା ଭାଙ୍ଗିଯିବା ଦ୍ୱାରା ଶାବକ ଓ ଅଣ୍ଡାଗୁଡ଼ିକ କିପରି ନଷ୍ଟ ହେଲେ । କିପରି ନିରାଶ୍ରୟ ହୋଇପଡିଲେ । ମାଙ୍କଡମାନେ ଯୋଡ ହସ୍ତରେ ଭାଲୁରାଜାଙ୍କୁ ଆଗପଛ ବିଚାରକୁ ନେଇ ନ୍ୟାୟ ଦେବାକୁ ଅନୁରୋଧ କଲେ । ଖାଲି ଆଗକୁ ଦେଖିଲେ ଠିକ୍ ନ୍ୟାୟ ଦେଇ ପାରିବେ ନାହିଁ । ଶୃଗାଳ ଓ ଅନ୍ୟ ପଶୁମାନେ ଏକଥାରେ ସହମତ ହେଲେ । ଭାଲୁ ରାଜା ପଛକୁ ଦେଖିଲେ । ରସୁଆଳ ପାଚିଲା କଦଳୀ କାନ୍ଧି । ଆଗପଛ ବିଚାରର ତାତ୍ପର୍ଯ୍ୟ ବୁଝିଗଲେ । ରାୟ ଦେଲେ, ମାଙ୍କଡମାନଙ୍କ କିଛି ଦୋଷ ନାହିଁ । ସେମାନଙ୍କର ଯିବା ଆସିବା ରାସ୍ତାରେ ପକ୍ଷୀମାନେ ଅନ୍ୟାୟ ଭାବେ ବସା ବାନ୍ଧିଛନ୍ତି । ମାଙ୍କଡମାନେ ସଂପୂର୍ଣ୍ଣ ନିର୍ଦ୍ଦୋଷ । ପକ୍ଷୀମାନେ ଓ ପଶୁମାନେ ଏପରି ବିଚାରରେ ହତବାକ୍ ହୋଇଗଲେ । ଲାଞ୍ଚ ପାଇ ରାଜା ବି ଏପରି ଅନ୍ୟାୟ ରାସ୍ତାରେ ଯାଇପାରନ୍ତି, ଏ କଥା ସମସ୍ତେ ବୁଝିଲେ । ସମସ୍ତେ ପୁଣି ଏକତାବଦ୍ଧ ହୋଇ ପ୍ରତିବାଦ କଲେ । ଆଗାମୀ ନିର୍ବାଚନରେ ଭାଲୁ ରାଜାଙ୍କୁ ପ୍ରତ୍ୟାଖ୍ୟାନ କରିବାକୁ ନିଷ୍ପତ୍ତି ନେଲେ । ସେଦିନର କୁନିକୁନି ବାଳିକାମାନଙ୍କର ଅଭିନୟ ଥିଲା ବେଶ୍ ସାଂକେତିକ । ଏହାର ବାର୍ତ୍ତା ସମସ୍ତଙ୍କ ମନକୁ ଛୁଇଁ ଥିଲା ।

ଦୁର୍ନୀତିର ସମସ୍ତ ଅଭେଦ୍ୟ ଓ ଅବୋଧ ପରିଭାଷା ଆଜି ଏମିତି ସମସ୍ତଙ୍କ ସାମନାରେ ଖୋଲି ଯାଇଛି । ଗାଁଗାଁରେ ଆଜି ଚାଲିଛି ପର୍ସେଣ୍ଟେଜ୍ ବା ପିସି କାରବାର । ବିପିଏଲ୍ କାର୍ଡଟିଏ ପାଇଁ ହଜାରେ ଟଙ୍କା; ବାର୍ଦ୍ଧକ୍ୟ ଭତ୍ତା ପାଇଁ ହଜାରେ; ଇନ୍ଦିରାଆବାସ୍ ଘର ସହାୟତା କରାଇ ଦେବାକୁ ତିନି ହଜାର ଲାଞ୍ଚ ଦେବାକୁ ସତେ ଅବା ସରକାରୀ ଅର୍ଡ଼ର ଦିଆଯାଇଛି । ଯିଏ ଲାଞ୍ଚ ନେଉଛି ସେ ଗୋଟିଏ ନିର୍ଦ୍ଦିଷ୍ଟ ଉତ୍ତର ଦେଉଛି ଯେ ଉପର ହାକିମଙ୍କୁ ଦେବାକୁ ପଡୁଛି । ପୁଣି ଉପର ହାକିମଙ୍କୁ ପଚାରନ୍ତେ ସେ କହନ୍ତି, ମନ୍ତ୍ରୀଙ୍କୁ ଦେବାକୁ ପଡୁଛି । ଏହି କ୍ରମରେ ମନ୍ତ୍ରୀଙ୍କ ଉତ୍ତର ହେଲା, ପାର୍ଟିଚାନ୍ଦା ଦେବାକୁ

ପଡୁଛି; ନିର୍ବାଚନରେ କରିଥିବା ଖର୍ଚ୍ଚ ଅର୍ଥ ଆଦାୟ ହେଉଛି । ଲାଞ୍ଚର ଶିକୁଳି ଏଭଳି ଲମ୍ବା । ତାହାର ଆରମ୍ଭ ଓ ଶେଷ ଜାଣିବା କଷ୍ଟକର । ଯିଏ ଲାଞ୍ଚ ଦେଉଛି ଓ ଯିଏ ଲାଞ୍ଚ ନେଉଛି ଏଥିରେ କୌଣସି ନୈତିକତାର ଲାଞ୍ଛନା ନାହିଁ ବା ଅନୁଶୋଚନା ନାହିଁ । ଲାଞ୍ଚ ନେବା ଓ ଦେବା ଏକ ନିତିଦିନିଆ ଅଭ୍ୟାସ ହୋଇଛି ।

ଆମର ସାମ୍ପ୍ରତିକ ରାଜନୈତିକ ଇତିହାସରେ ଏକ ପ୍ରଚଳିତ ଧାରା ରୂପେ ଦୁର୍ନୀତି ଭ୍ରଷ୍ଟାଚାର ବଢ଼ି ଚାଲିଛି । ଓଡ଼ିଶାର ରାଜନୈତିକ ଏହି ଇତିହାସର ଏକ କଳା ଅଧ୍ୟାୟ ହେଉଛି ଦୁର୍ନୀତି । ଏବେ ଗତ ୨୫ ବର୍ଷଧରି ଦୁର୍ନୀତିକୁ ତୃଣମୂଳ ସ୍ତରକୁ ନେବାକୁ ଯେମିତି ଜଣକ ପରେ ଜଣେ ମୁଖ୍ୟମନ୍ତ୍ରୀ ଓ ତାଙ୍କର ପରିବାରର ସଦସ୍ୟମାନେ ସେମାନଙ୍କର ରାଜନୈତିକ ଜୀବନର ମୁଖ୍ୟଲକ୍ଷ୍ୟ ବୋଲି ନୀରବ ଘୋଷଣା କରିଛନ୍ତି । ଜଣେ ମୁଖ୍ୟମନ୍ତ୍ରୀ ୧୪ବର୍ଷ ଶାସନଗାଦିରେ ଥିଲେ ଓ ତାଙ୍କ ସମୟରେ ପଟ୍ୱାରୀ ଗ୍ରାମସେବକ ସ୍ତରରୁ ଲାଞ୍ଚ ସଂଗୃହିତ ହୋଇ ତାଙ୍କର ବ୍ୟକ୍ତିଗତ ଏକାଉଣ୍ଟ ବା ଜମାଖାତାକୁ ଯାଉଥିଲା । ଏ ମହାଶୟ ଶାସନଗାଦିରେ ସୁରକ୍ଷିତ ରହିବା ପାଇଁ ବିରୋଧୀଦଳର ନେତାଙ୍କୁ ମାସିକ ଭତ୍ତା ଦେଉଥିଲେ । କେନ୍ଦ୍ର ଶାସନରେ ଥିବା ନେତାମାନଙ୍କୁ ମଧ୍ୟ ସୀମାତୀତ ଲାଞ୍ଚ ଦେଇ ଭାରତରେ ରେକର୍ଡ଼ କରିଥିଲେ । ଏବେ ଯେଉଁ ଶାସନ ଚାଲିଛି ଉପର ଠାଉରିଆ ଭାବେ ଦୁର୍ନୀତି ନିୟନ୍ତ୍ରଣ କରିବାର ଅଭିନୟ ଚାଲିଛି । ଦୁର୍ନୀତି ନିବାରଣର ସର୍ବୋଚ୍ଚ କର୍ମକର୍ତ୍ତାମାନେ ଆତ୍ମନିଷ୍ଠ ଭାବେ କର୍ତ୍ତବ୍ୟରତ ନିଶ୍ଚିତ । କିନ୍ତୁ ଦୁର୍ନୀତି ନାମକ ବ୍ୟାଧି କମିବାର କୌଣସି ଲକ୍ଷଣ ଦେଖା ଯାଉ ନାହିଁ । ଦୁର୍ନୀତିର ପରିଭାଷା କେବେ କେଉଁଠି ବଦଳିଛି କେବଳ । ଏବେ ଯେଉଁ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଆମ ପ୍ରଦେଶକୁ ଆସୁଛନ୍ତି ଓ ଫୁଲମାଳ ପିନ୍ଧୁଛନ୍ତି । ସେମାନେ ପ୍ରଥମରୁ ଏକ ସଉଦା ମୂଳଚାଳ କରି ସାରିଛନ୍ତି । ସେମାନେ କେତେ ଅଂଶ ଲାଞ୍ଚ ଦେବେ ଏବଂ ତା'ବଦଳରେ କେତେ ଓ କ'ଣ ପାଇବେ ତାହା ଧାର୍ଯ୍ୟ ହୋଇ ସାରିଚି । ଜଣେ ବରିଷ୍ଠ ଶାସନସଚିବ ଓ ତାଙ୍କ ସହଯାତ୍ରୀ ହୋଇଥିବା ଗୃହସଚିବଙ୍କ ସହ ଅନେକ କର୍ମକର୍ତ୍ତା ଯଦି ଲାଞ୍ଚ ନେଇ ନଥାନ୍ତେ, ତେବେ କାଶୀପୁର ଭଳି ଦୁର୍ଗମ ଅଞ୍ଚଳକୁ ଆସି ଏକ ବହୁରାଷ୍ଟ୍ରୀୟ କମ୍ପାନୀ ପାଇଁ ସେମାନେ ସମର୍ଥନ ଯୋଗାଡ କରି ନଥା'ନ୍ତେ । ଆଉଜଣେ ବରିଷ୍ଠ ଶାସନସଚିବ ଗୋଟାଏ ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ମାଲିକ ସହ ଜମି ଖୋଜିବାକୁ ରାଜସ୍ୱନିରୀକ୍ଷକର ଭୂମିକା ନେଇ ନଥା'ନ୍ତେ ।

ନେତା ଓ ମନ୍ତ୍ରୀମାନେ ଶାସନଗାଦିରେ ଥିଲାବେଳେ ସବୁବେଳେ ହିସାବ କରୁଥାଆନ୍ତି ଯେ ସେମାନଙ୍କ ଭାଗରେ କେତେ ପଡ଼ିବ । କାଶୀପୁରରେ 'ଆଇଫାଡ୍' ପ୍ରକଳ୍ପରେ ୬୦କୋଟି ଖର୍ଚ୍ଚ ହୋଇଥିଲା । ଜଣେ ଆଦିବାସୀ ମନ୍ତ୍ରୀ ତାଙ୍କର ପର୍ସୋନେଲ୍ କୁଆଡେ ଗଲା ବୋଲି ପ୍ରାୟ ଗୋଟିଏ ଦିନରେ ଖୋଲାଖୋଲି ଦଶକୋଟିରୁ ବେଶୀ ଟଙ୍କାର ବିଲ୍ ପାସ୍ କରି ଉଠାଇ ନେଲେ । ଗରିବ ଆଦିବାସୀଙ୍କ ନାମରେ ଆସିଥିବା ଆନ୍ତର୍ଜାତିକ ସାହାଯ୍ୟକୁ ଆତ୍ମସାତ କରାଯାଇଥିବାରୁ ଓଡ଼ିଶାର ଦୁର୍ନୀତି ଇତିହାସରେ ଏ ଦିନଟି ସବୁଠାରୁ ବେଶୀ ନିନ୍ଦନୀୟ ଦିନ ବୋଲି କୁହାଯାଇପାରେ । ଜଳସେଚନ ବିଭାଗରେ ମଧ୍ୟ ଯେଉଁଭଳି ଦୁର୍ନୀତି ହୋଇଛି ତାହା ଓଡ଼ିଶାବାସୀଙ୍କୁ ଚକିତ କରି ଦେଇଛି । ଏକଦା ସିରାଜୁଉଦିନ୍ ବୋଲି ଖଣିମାଲିକ କେତେ କ'ଣ ଲାଞ୍ଚ ଦେଇଥିଲେ ତାହା ପାଇଁ ତଦନ୍ତ କମିଶନ୍ ବସିଥିଲା ଓଡ଼ିଶାରେ । କିନ୍ତୁ ଆଜିର ଦୁର୍ନୀତିର ଲମ୍ବା ଫର୍ଦ ଦେଖିଲେ ତାହା ଏକ ପ୍ରହସନ ଥିଲା ବୋଲି ମାନିବାକୁ ହେବ । ଯେଉଁ ବହୁରାଷ୍ଟ୍ରୀୟ କମ୍ପାନୀମାନେ ହଜାର ହଜାର କୋଟି ଟଙ୍କା ପୁଞ୍ଜିନିବେଶ କରୁଛନ୍ତି ତାହାର ଏକ ଶତକଡ଼ା ପ୍ରାୟ ୫୦୦କୋଟି ହେବ । ତହିଁରୁ ୧୫ରୁ ୬୦ ପ୍ରତିଶତ ପର୍ଯ୍ୟନ୍ତ ହାତଗୁଂଜା ଦେବାକୁ ହେବ ବୋଲି ସଂପୃକ୍ତ କଂପାନୀବାଲାଏ ହିସାବ କରି ନେଇଥାଆନ୍ତି ।

ଓଡ଼ିଶାରେ ଦୁର୍ନୀତି କେତେ ସହଜ ତାହା ଉପରେ ଥରେ ମୋତେ ଜଣେ ମାଲୟାଲୀ (କେରଳ ନିବାସୀ) ବ୍ୟବସାୟୀ ତାଙ୍କ ଅନୁଭୂତି କହୁଥିଲେ, "ଗୋଟାଏ କୁକୁଡ଼ା ରୋଷ୍ଟ୍ ଏବଂ ଗୋଟାଏ ବୋତଲ ବିଅର ଦେଇ ଓଡ଼ିଶାରେ ଯେକୌଣସି ନେତା ବା ଅଫିସରଙ୍କ ଠାରୁ କାମ ଆଦାୟ କରିହେବ । ଏହା ହେଉଛି ସର୍ବନିମ୍ନ ଲାଞ୍ଚ ।" ଓଡ଼ିଶାର ନେତା ଓ ଅଫିସରମାନେ ଏଇଭଳି କିଣି ହେଉଛନ୍ତି କି ନାହିଁ ସେମାନେ ନିଜକୁ ପଚାରି ସାର୍ଟିଫିକେଟ୍ ଦେବେ । କ୍ଷମତାରେ ଥିବା ବ୍ୟକ୍ତିମାନେ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀଙ୍କ ସ୍ତରର ଉଚ୍ଚାଦର୍ଶ ଦେଖାଇଛନ୍ତି କି ନାହିଁ ନିଶ୍ଚେ ଆତ୍ମସମୀକ୍ଷା କରିବେ । ଅବଶ୍ୟ ଓଡ଼ିଶାବାସୀ ଲକ୍ଷ୍ୟ ଅଲକ୍ଷ୍ୟରେ ରାଜ୍ୟର ପ୍ରତ୍ୟେକ ବ୍ୟକ୍ତି ଓ ଅନୁଷ୍ଠାନଙ୍କୁ ନିଶ୍ଚୟ ଦୁର୍ନୀତିର ମାପକାଠିରେ ମାପୁଥିବେ ।

ସ୍ୱାଧୀନତା ପରର ଓଡ଼ିଶା ଓ ଭାରତବର୍ଷ ଭିତରେ କ୍ରମବର୍ଧିଷ୍ଣୁ ଦୁର୍ନୀତି ଉପରେ ଅନେକ ଅଧ୍ୟୟନ ହୋଇ ସାରିଚି । ଅନେକ ଘଟଣା ଓ ଦୁର୍ଘଟଣା ଏ ଭିତରେ ଲୋକଙ୍କ ସ୍ମୃତିପଟରୁ ଲିଭିଗଲାଣି । ୧୯୪୮ ମସିହାରେ ଏକ ଦୁର୍ନୀତି ପ୍ରଥମେ ଏ ଦେଶରେ ଲୋକ ଲୋଚନକୁ ଆସିଥିଲା । ଏହାଥିଲା ପ୍ରତିରକ୍ଷା ବିଭାଗର ସୈନ୍ୟବାହିନୀ ପାଇଁ

ଜୀପ୍ କିଣା । କଶ୍ମୀର ଅପରେସନ୍ ପାଇଁ ଦରକାର ହେଉଥିଲା ଜୀପ୍ ଓ ତତ୍‌କାଳୀନ ଲଣ୍ଡନର ଭାରତୀୟ ହାଇକମିଶ୍‌ନର୍ ସ୍ୱର୍ଗତ କ୍ରିଷ୍ଣ ମେନନ୍ କୌଣସି ନିୟମକାନୁନ୍ ନମାନି ଏକ ବିଦେଶୀ କମ୍ପାନୀ ଠାରୁ ଜୀପ୍‌କିଣା ସଉଦା କରି ଦୁର୍ନୀତିର ନୂଆ ଅଧ୍ୟାୟ ଆରମ୍ଭ କଲେ । ପରେ ଏହାର ତଦନ୍ତ ଦାବୀ କଲେ ବିରୋଧୀ ଦଳମାନେ । ଅଥଚ ପଣ୍ଡିତ ନେହରୁ କ୍ରିଷ୍ଣ ମେନନ୍‌ଙ୍କୁ ଏତେ ଭଲ ପାଉଥିଲେ ଯେ ପରେ ତାଙ୍କୁ ପ୍ରତିରକ୍ଷା ମନ୍ତ୍ରୀ ପଦବୀରେ ବସାଇ ଥିଲେ । ୧୯୫୦ ମସିହାରେ ମୁଦ୍‌ଗଲ ମାମଲା, ୧୯୫୭ ମସିହାରେ ମୁଦ୍ରା ମାମଲା, ୧୯୬୩ରେ ପ୍ରତାପ୍ ସିଂ କାଇରନ୍ ମାମଲା ଓ ମାଲଭିୟା-ସିରାଜୁଦ୍ଦିନ୍ ମାମଲା ସେସମୟରେ ଚହଳ ପକାଇଥିଲା । କଂଗ୍ରେସ ସରକାର ଏ ସବୁକୁ ଘଣ୍ଟଘୋଡାଇ କେନ୍ଦ୍ରମନ୍ତ୍ରୀ, ମୁଖ୍ୟମନ୍ତ୍ରୀଙ୍କୁ ସୁରକ୍ଷା ଦେଇଥିଲା । ଖୋଦ୍ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହରୁ ଏହାର ନେତୃତ୍ୱ ନେଇଥିଲେ ଏବଂ ନିଜର ସଚ୍ଚୋଟ ବ୍ୟକ୍ତିତ୍ୱ ଉପରେ ଅନେକ ପ୍ରଶ୍ନବାଚୀକୁ ପ୍ରଶ୍ରୟ ଦେଇଥିଲେ । ଏହାପରେ ତାଙ୍କର ଝିଅ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଚର୍ଚ୍ଚାର ପରିସରକୁ ଆସିଥିଲେ । ନଗରୱାଲ ମାମଲାରେ ଯେଉଁଥିରେ ତାଙ୍କ ନାମରେ 'ଷ୍ଟେଟ୍‌ବ୍ୟାଙ୍କ୍ ଅଫ ଇଣ୍ଡିଆ'ରୁ ୬୦ଲକ୍ଷ ଉଠାଯାଉଥିଲା । ଏହାର ଅନୁସନ୍ଧାନରେ କିଛି କୂଳକିନାରା ମିଳି ନଥିଲା । ତା'ପରେ ଫେୟାରଫାକ୍ସ, ଏଚ୍‌ବିଜେ ପାଇପ୍‌ଲାଇନ୍, ଏଚ୍‌ଡିକେ ସବମେରିନ୍ କିଣା ଭଳି ଦୁର୍ନୀତି ସଂଶ୍ଳିଷ୍ଟ କାରବାର ଲୋକଲୋଚନକୁ ଆସିଥିଲା । ବୋଫର୍ସ କେସ୍‌ରେ ଖୋଦ୍ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ଦୁର୍ନୀତିଗ୍ରସ୍ତ ଥିଲେ ବୋଲି ସନ୍ଦେହ ସୃଷ୍ଟି ହୋଇଥିଲା ।

ପୂର୍ବତନ ପ୍ରଧାନମନ୍ତ୍ରୀ ନରସିଂହ ରାଓ ଦୁର୍ନୀତି ଅଭିଯୋଗରେ ଅଭିଯୁକ୍ତ ହୋଇ ରାଜନୈତିକ ଇତିହାସରେ କଳାତାଲିକାଭୁକ୍ତ ହୋଇଥିଲେ । ତାଙ୍କ ସମୟରେ ୧୯୯୦ରେ ୨୫୦୦ କୋଟି ଟଙ୍କାର ଏୟାରବସ୍ କିଣା, ୧୯୯୨ରେ ହର୍ଷଦ୍ ମେହେଟା ସିକୁରିଟି ସ୍କାମ୍ ଓ ଗୋଲଡ୍‌ଷ୍ଟାର ଷ୍ଟିଲ୍ ବିବାଦ, ୧୯୯୬ରେ ଝାଡଖଣ୍ଡ ମୁକ୍ତି ମୋର୍ଚ୍ଚା ବା ଜେ.ଏମ୍.ଏମ୍. ଲାଞ୍ଚ ମାମଲା, ହାୱଲା ମାମଲା ଓ ୟୁରିଆ ସ୍କାମ୍ ଆଦି ବିଭିନ୍ନ ଦୁର୍ନୀତିମୂଳକ ମାମଲା ପ୍ରତ୍ୟେକ ଭାରତୀୟଙ୍କ ମୁହଁରେ କଳା ବୋଳି ଥିଲା । ୨୦୦୦ ମସିହା ପରେ ତହେଲକା ଆଦିରେ ଅନେକ କିଛି ଦୁର୍ନୀତିର ମୁଖା ଖୋଲା ଯାଇଛି ଏବଂ ଉଚ୍ଚ ସ୍ତରରେ କେମିତି ଦୁର୍ନୀତି ଚାଲିଛି ତାହାର ପର୍ଦ୍ଦାଫାଶ୍ ହୋଇଛି । ସାଧାରଣ ଜୀବନରେ ଦୁର୍ନୀତି ଏତେ ବ୍ୟାପକ ହୋଇଛି ଯେ ଚିଫ୍ ଭିଜିଲାନ୍ସ କମିଶନର ପଦବୀ ସୃଷ୍ଟି କରାଯାଇଛି ଏବଂ ପ୍ରତ୍ୟେକ ମନ୍ତ୍ରଣାଳୟ ଓ ସରକାରୀ ଦପ୍ତରମାନଙ୍କରେ

ଭିଜିଲାନ୍ସ ଅଫିସର ନିଯୁକ୍ତି ଦିଆଯାଇଛି । କେନ୍ଦ୍ର ତଦନ୍ତ ବ୍ୟୁରୋ କେତେ ଦୁର୍ନୀତି ମାମଲା ହାତକୁ ନେଇଛି ତାହାର ହିସାବ ନାହିଁ । ପ୍ରତ୍ୟେକ ରାଜ୍ୟରେ ଓ ଦେଶରେ ଲୋକପାଳ ନିଯୁକ୍ତ କରାଯାଇଛି ରାଜନୈତିକ ଓ ଅମଲାତନ୍ତ୍ରର ଦୁର୍ନୀତିର ଅନୁସନ୍ଧାନ କରିବା ପାଇଁ । ସୁପ୍ରିମ୍‌କୋର୍ଟ ମଧ୍ୟ ସକ୍ରିୟ ହୋଇଛି ଦୁର୍ନୀତି ଜନିତ ମାମଲାଗୁଡିକରେ ଗୁରୁତ୍ୱପୂର୍ଣ୍ଣ ରାୟ ଦେଇ । ଏ ସବୁ ସତ୍ତ୍ୱେ ଦୁର୍ନୀତିର ସ୍ତର ଓ ପରିମାଣ କମିଛି ବୋଲି କେହି ଦାବୀ କରି ପାରିବେ କି ?

ଦୁର୍ନୀତିକୁ ବ୍ୟାଖ୍ୟା କରିବାକୁ ଯାଇ ଭାରତର ପ୍ରଥମ ମୁଖ୍ୟ ଭିଜିଲାନ୍ସ କମିଶନର ଶ୍ରୀଯୁକ୍ତ ଏନ୍. ଭିଟଲ୍ କହିଛନ୍ତି ଯେ ଏହା ଏକାଧାରରେ ଗରିବ ଜନତାଙ୍କ ବିରୋଧୀ, ଦେଶବିରୋଧୀ ଓ ବିକାଶବିରୋଧୀ । ତାଙ୍କ ମତରେ ଶହେକୋଟି ଜନସଂଖ୍ୟା ଭିତରୁ ଶତକଡ଼ା ୨୬ଭାଗ ଗରିବୀରେଖା ତଳେ ଅଛନ୍ତି ଏବଂ ଦୁର୍ନୀତି ସେମାନଙ୍କୁ ଉପରକୁ ଉଠିବାକୁ ଦେଉନାହିଁ । ଉଦାହରଣ ଦେଇ ସେ କହିଛନ୍ତି ଯେ ସାଧାରଣ ବଣ୍ଟନ ବ୍ୟବସ୍ଥା ବା ପି.ଡି.ଏସ୍‌ରେ ଶତକଡ଼ା ୩୦ଭାଗ ଚାଉଳ ଓ ଶତକଡ଼ା ୩୬ଭାଗ ଚିନି କଳାବଜାରରେ ବିକ୍ରୀ ହେଉଛି । ଦୁର୍ନୀତି ମାଧ୍ୟମରେ ଦେଶ ବିରୋଧୀ କାର୍ଯ୍ୟକ୍ରମକୁ ପ୍ରୋତ୍ସାହନ ଦିଆଯାଉଛି । ହାୱାଲା ମାଧ୍ୟମରେ କାଶ୍ମୀର ଉଗ୍ରପନ୍ଥୀଙ୍କୁ ଆର୍ଥିକ ସାହାଯ୍ୟ ଦେବାଟା ଦୁର୍ନୀତିର ଅନ୍ୟ ଏକ ପରିପ୍ରକାଶ । ସମସ୍ତ ବିକାଶ କାର୍ଯ୍ୟକ୍ରମରେ ଦୁର୍ନୀତି କେମିତି ବ୍ୟାପକ ହୋଇଛି ଶ୍ରୀଯୁକ୍ତ ଭିଟଲ ତାହାର ଉଦାହରଣ ଦେଇଛନ୍ତି । ଭାରତର ଶତକଡ଼ା ୪୦ଭାଗ ଧନ କଳାଧନ ହିସାବରେ ଗଛିତ ଅଛି । ଏବଂ ଏହା ଉପରୁ କୌଣସି ଟିକସ୍ ଆଦାୟ ହୋଇ ପାରୁନାହିଁ । ଏ ଟିକସ ଆଦାୟ ହେଲେ ଭାରତର ବିକାଶ ପ୍ରକ୍ରିୟା ଆହୁରି ତ୍ୱରାନ୍ୱିତ ହୁଅନ୍ତା ନିଶ୍ଚିତ । ସାରାପୃଥିବୀରେ ଭାରତ ଏକ ଦୁର୍ନୀତିଗ୍ରସ୍ତ ଦେଶ ହିସାବରେ ତାଲିକାର ୬୯ତମ ସ୍ଥାନରେ ଅଛି ।

କାଶୀପୁର, ଓଡ଼ିଶା ଓ ଭାରତ ବର୍ଷକୁ ଲକ୍ଷ୍ୟ କରି ଆନ୍ତର୍ଜାତିକ ପରିସ୍ଥିତିକୁ ଆଲୋଚନା ପରିସରକୁ ଅଣାଯାଇପାରେ । ଜଗତୀକରଣର ଶିକାର ହୋଇଥିବା ଲୋକେ ଓ ରାଷ୍ଟ୍ର ଯେ ଦୁର୍ନୀତିଗ୍ରସ୍ତ ଏବଂ ଦୁର୍ନୀତିର ପରିସର ଆହୁରି ବ୍ୟାପକ ହୋଇଛି ବୋଲି ହୃଦୟଙ୍ଗମ କରିବାକୁ ଗବେଷଣାର ଆବଶ୍ୟକତା ନାହିଁ । ଆମ ଦେଶରେ ବା ରାଜ୍ୟରେ ଦୁର୍ନୀତି ନିବାରଣ ବିଭାଗ ଓ ଅଧିକାରୀମାନେ ଯେତେ ନିଷ୍ଠାପର ଓ ଅଙ୍ଗୀକାରବଦ୍ଧ ହେଲେ ମଧ୍ୟ, ଦୁର୍ନୀତିକୁ ରୋକି ପାରିବେ କି ? ଜଗତୀକରଣ ପ୍ରକ୍ରିୟାରେ ଯେ ଦୁର୍ନୀତି ଅପରିହାର୍ଯ୍ୟ, ତାହା ବହୁ ଦିନରୁ ପ୍ରମାଣିତ ହୋଇ ସାରିଛି । ❑

# ଜଗତୀକରଣ ଓ ଗାନ୍ଧୀବାଦ

ସାମ୍ପ୍ରତିକ ପୃଥିବୀରେ ଯେଉଁ ଆଡକୁ ଦେଖିବ, ସେଆଡେ କେବଳ ଧ୍ୱଂସ ଓ ମୃତ୍ୟୁର ତାଣ୍ଡବଲୀଳା ଲାଗି ରହିଛି । ହିଂସା ଓ ଅସତ୍ୟ ରାଜୁତି କରୁଛି ଓ ଜାତିଜାତି, ଦେଶଦେଶ, ମଣିଷମଣିଷ ଭିତରେ ବିଭେଦ ଓ ଦ୍ୱେଷ ବଢିବାରେ ଲାଗିଛି । ରାଜନୀତି କୁହନ୍ତୁ, ଅର୍ଥନୀତି କୁହନ୍ତୁ ବା ସଂସ୍କୃତି କୁହନ୍ତୁ, ସବୁ ଯେମିତି ଖଣ୍ଡ ବିଖଣ୍ଡିତ ହୋଇଯାଇଛି । ଜଣେ ଆଉ ଜଣକୁ ଗଭୀର ସମୁଦ୍ରରେ ଠେଲି ଦେଇ ଯେମିତି ବଞ୍ଚିବାକୁ ଚାହୁଁଛି । ଜଣକୁ ଲୁଣ୍ଠନ ଓ ହତ୍ୟା କରି ଆଉ ଜଣେ ଯେମିତି ସୁଖ ଓ ସମୃଦ୍ଧିର ସୌଧ ଗଢିବାକୁ ସ୍ୱପ୍ନ ଦେଖୁଛି । ସମାଜ ଓ ସଭ୍ୟତା ଗଢିବାରେ ଯେଉଁ ପ୍ରେମ, ଭାତୃତ୍ୱ, ସହଯୋଗ ଓ ସମ୍ବେଦନଶୀଳତା ମୂଳ ଭୂମିକା ଗ୍ରହଣ କରିଛନ୍ତି ତାହା ସବୁ ଏ ଜଗତରୁ ଜଗତୀକରଣ ଦ୍ୱାରା ନିଶ୍ଚିହ୍ନ ହୋଇ ଯାଉଛି ।

କିନ୍ତୁ ଏସବୁ ସତ୍ତ୍ୱେ କେଉଁଠି ନା କେଉଁଠି ହିଂସାତ୍ମକ ଓ ଅହିଂସା ଉପାୟରେ ପ୍ରତିରୋଧ ହେଉଛି ଜଗତୀକରଣ ବିରୁଦ୍ଧରେ । ଏବେ ଦକ୍ଷିଣ ଆମେରିକାର ଦେଶ ବଲିଭିଆରେ ଜନସାଧାରଣ ଏକାଠି ହୋଇ ପୃଥିବୀର ଏକ ଶକ୍ତିଶାଳୀ ବହୁଦେଶୀୟ କମ୍ପାନୀ 'ବିକ୍‌ଟେଲ୍'କୁ ହଟାଇ ଦେଇଛନ୍ତି । ସେ ଦେଶର ନବ ନିର୍ବାଚିତ ରାଷ୍ଟ୍ରପତି ଆମେରିକାର ପୁଞ୍ଜି ଆଗରେ ମୁଣ୍ଡ ନୋଇଁ ନାହାନ୍ତି ଓ ଶପଥ ନେଲାବେଳେ ମହାନ୍ ବିପ୍ଳବୀ ଗୁଏରେରାଙ୍କୁ ମନେ ପକାଇ କାନ୍ଦିପକାଇଛନ୍ତି । (ବଲିଭିଆର କୋଚାବାମ୍ବା ଜନ ଆନ୍ଦୋଳନ କଥା ସ୍ୱତନ୍ତ୍ରଭାବେ ଲେଖାଯିବ ଏ ପରିପ୍ରେକ୍ଷୀରେ) । ଏ ଗୋଟାଏ ବହୁମୁଖୀ ଆନ୍ଦୋଳନର ଝଲକ ।

ଅନ୍ୟପାର୍ଶ୍ୱରେ ଯଦି ଆମର ଜାତିର ପିତା ମହାତ୍ମା ଗାନ୍ଧୀ ଆଜି ବଞ୍ଚିଥାଆନ୍ତେ, ତେବେ ଜଗତୀକରଣ ବିରୁଦ୍ଧରେ ଏକ ଅହିଂସା ଆନ୍ଦୋଳନର ନିଶ୍ଚିତ ନେତୃତ୍ୱ ନେଇଥାଆନ୍ତେ । ବ୍ରିଟିଶ୍ ସାମ୍ରାଜ୍ୟ ଓ ପୁଞ୍ଜିବାଦ ତଥା ଉପନିବେଶବାଦକୁ ଅହିଂସା ଓ ସତ୍ୟାଗ୍ରହର ଅସ୍ତ୍ରରେ ଲଢି ଜିତିବାର ଯେଉଁ ଉଦାହରଣ ଦେଇଛନ୍ତି ତାହା

ବର୍ତ୍ତମାନର ସମସ୍ୟାଗୁଡ଼ିକର ସମାଧାନର ପନ୍ଥାପାଇଁ ପ୍ରେରଣା ହୋଇଯାଇଛି । ଏବେ ଗାଁଗୁଡ଼ିକ ଆଉ ସ୍ୱାବଲମ୍ବୀ ହୋଇନାହିଁ । ଏବେ ଜୀବନଶୈଳୀ ବଦଳିଯାଇ ଉପଭୋକ୍ତାର ଜୀବନ ହୋଇପଡ଼ିଛି । ଜୀବନ ଜୀବିକା ଓ ସହଧର୍ମୀ ମୂଲ୍ୟବୋଧ ଆଜି ନିରର୍ଥକ ହୋଇପଡ଼ିଛି ପୁଞ୍ଜିବାଦ ଓ ମେସିନ୍‌ବାଦ ଏକ ଭୟଙ୍କର ରାକ୍ଷସ ଭଳି ଆମ ସମସ୍ତଙ୍କୁ ଗିଳିବାରେ ଲାଗିଛି ।

ଗାନ୍ଧୀବାଦକୁ ଅନୁସରଣ କରି ଅନେକ ପ୍ରତିବାଦର ଆନ୍ଦୋଳନ ଏବେ ପୃଥିବୀରେ ଏକ ଭିନ୍ନ ସ୍ୱର ସୃଷ୍ଟି କରିଛନ୍ତି । ସେଗୁଡ଼ିକ ହେଲା ସବୁଜ ପରିବେଶ ପାଇଁ ଆନ୍ଦୋଳନ, ନିରାମିଷ ଆନ୍ଦୋଳନ, ଉପଭୋକ୍ତାବାଦ ବିରୋଧୀ ଆନ୍ଦୋଳନ ଶ୍ରମଜୀବୀ ଆନ୍ଦୋଳନ । ଏସବୁ ଆନ୍ଦୋଳନରେ ଅହିଂସା, ସତ୍ୟାଗ୍ରହ, ଅସହଯୋଗ, ନୀରବ ପ୍ରତିବାଦ ଯାତ୍ରା ଭଳି ଗାନ୍ଧୀବାଦୀ ରଣନୀତି ଗ୍ରହଣ କରାଯାଇଛି ।

ଯେତେବେଳେ ନବ ଉଦାରୀକରଣକୁ ମାଧ୍ୟମ କରି ପୁଞ୍ଜିବାଦ ଏକ ନୂତନ ରୂପରେ ଆବିର୍ଭାବ ହୋଇଛି ଓ ନବ ସାମ୍ରାଜ୍ୟବାଦକୁ ଜାହିର୍ କରିବାକୁ ଅହର୍ନିଶ ଉଦ୍ୟମ କରୁଛି । ସେତେବେଳେ ଆମେ ମାଡ଼ି ଆସୁଥିବା ଶିଳ୍ପୀକରଣ ଏବଂ ବଜାରୀକରଣକୁ ମୁଣ୍ଡନୋଇଁ ସ୍ୱାଗତ କରିବା କି ? ଶାସନ ନୀତିକୁ ନିୟନ୍ତ୍ରଣ କରୁଥିବା ପୁଞ୍ଜି ଓ ଆମର ନୀତିନିୟମର ମାର୍ଗ ଦର୍ଶକ ପାଲଟିଥିବା ବିଶ୍ୱବ୍ୟାପୀ ପୁଞ୍ଜିପତିର ଜାଲରେ ପଡ଼ି ଯିବା କି ? ପୂର୍ବକୁ ଦେଖ, ପଶ୍ଚିମକୁ ଦେଖ, ଉତ୍ତରକୁ ଦେଖ ବା ଦକ୍ଷିଣକୁ ଦେଖ, ସବୁଠି ଲୁଣ୍ଠନର ଲୀଳା ଚାଲିଛି । ଦେଶ ପରେ ଦେଶ ନିଜର ସାର୍ବଭୌମତ୍ୱକୁ ଜଳାଞ୍ଜଳୀ ଦେଇ ପୁଞ୍ଜିନିବେଶ ପାଇଁ ରାସ୍ତା ଉନ୍ମୋଚନ କରୁଛନ୍ତି ଓ ବଜାରର ବହୁ ସାରଣୀଯୁକ୍ତ ରାଜରାସ୍ତା ପାଇଁ ଭିତ୍ତିଭୂମି ପ୍ରସ୍ତୁତ କରୁଛନ୍ତି ।

ଜଗତୀକରଣକୁ ବୁଝିବାକୁ ହେଲେ ବଜାର ଓ ବେପାରକୁ ବୁଝିବାକୁ ପୁଞ୍ଜି ଓ ବେପାରୀକୁ ବିଶ୍ୱର ରଙ୍ଗ ମଞ୍ଚରେ ବୁଝିବାକୁ ହେବ । ଆଉ ବୁଝିବାକୁ ହେବ ଅସମାନତାର ଅସଲ ରୂପକୁ ଓ ଏହାର ବହୁରୂପୀ ପରିବ୍ୟାପ୍ତିକୁ । ଜଗତୀକରଣର ଏହା ଆମ ସମସ୍ତଙ୍କୁ ପ୍ରଥମେ ଉପହାର । ଧନୀ ଓ ଗରିବ ଦେଶମାନଙ୍କ ମଧ୍ୟରେ ଯେଉଁ ଅସମାନତା ଥିଲା ତାହାର ଏକ ଅଟକଳ ଅର୍ଥନୀତିଜ୍ଞମାନେ କରିଛନ୍ତି । ୧୮୨୦ ମସିହାରେ ଏହା ଥିଲା ଶତକଡ଼ା ୩:୧ । ୧୯୧୩ ମସିହାରେ ଏହା

ହେଲା ଶତକଡ଼ା ୧୧:୧ । ୧୯୫୦ ମସିହାରେ ଏହା ହେଲା ଶତକଡ଼ା ୩୫:୧ । ୧୯୯୦ରେ ଏହା ହୋଇଛି ଶତକଡ଼ା ୭୨:୧ । ଏହା ଏକ ସାଙ୍କେତିକ ପରିଭାଷା ଭଳି ବୁଝି ହେଉଛି ସହଜରେ । ଧନୀ ଓ ଗରିବଙ୍କ ଭିତରେ ଅସମାନତାର ଖାଇ ଦୃତ ଗତିରେ ବଢ଼ୁଛି । ସାରା ପୃଥିବୀ ପାଇଁ ୨୦୨୦ ମସିହାରେ ଯେଉଁ ସ୍ୱପ୍ନ ରହିଛି ତାହା କ'ଣ ହୋଇଥିବ ସହଜରେ ଅନୁମାନ କରି ହେଉଛି । ଗାନ୍ଧବାଦୀ ଆନ୍ଦୋଳନ ଜରିଆରେ ଏ ଅସମାନତାକୁ ଦୂର କରିହେବ ଏହାଛଡା ଅନ୍ୟ ରାସ୍ତା ନାହିଁ ।

ଜଗତୀକରଣର ପରିବେଶ ଭିତରେ ମାନବାଧିକାରର ସୁରକ୍ଷା ଆଉ ସମ୍ଭବ ହେଉନାହିଁ । ସବୁଆଡେ ଏହାର ଉଲ୍ଲଂଘନ ହେଉଛି । ପୁଞ୍ଜିବାଦ ଓ ସାଧାରଣ ମଣିଷଙ୍କ ମୁକ୍ତି ଓ ସ୍ୱାଧୀନତା ସହଯାତ୍ରୀ କେବେ ନୁହନ୍ତି । ପୁଞ୍ଜି ଧନସମ୍ପତି ସୃଷ୍ଟିକରେ ସତ; କିନ୍ତୁ ସ୍ୱାଧୀନତା ପାଇଁ ଗ୍ୟାରେଣ୍ଟି ଦିଏ ନାହିଁ । ଦିଏ ନାହିଁ ସାମାଜିକ ନ୍ୟାୟ, ସାମ୍ବିଧାନିକ ଅଧିକାର ଓ ମୌଳିକ ମାନବୀୟ ମୂଲ୍ୟବୋଧ । ପୁଞ୍ଜିବାଦ ଯେଉଁଠି ଜୟଲାଭ କରୁଛି ଓ ସଫଳତାର ଧ୍ୱଜା ଉଡାଇଛି, ସେଇଠି ଯେ ଗଣତନ୍ତ୍ରର ବିଜୟ ହେଉଛି ଏହା ସ୍ୱୀକାର କରିହବ ନାହିଁ । ମାନବାଧିକାରର ସୁରକ୍ଷା ପାଇଁ ନାଗରିକ ସମାଜକୁ ଲଢିବାକୁ ହେବ । ରାଷ୍ଟ୍ରଗୁଡିକର ଏକଛତ୍ରବାଦୀ ଶାସନ ଦ୍ୱାରା ଗଣତାନ୍ତ୍ରିକ ମୂଲ୍ୟବୋଧର ହତ୍ୟା କରାଯାଇଛି । ତାହାକୁ ବିରୋଧ କରିବାକୁ ହେବ ସାମାଜିକ ଆନ୍ଦୋଳନ ଜରିଆରେ । ଗାନ୍ଧୀଙ୍କ ଅହିଂସା, ସତ୍ୟାଗ୍ରହ ଓ ଅସହଯୋଗ ଆନ୍ଦୋଳନକୁ ଆଧାର କରି ଏକ ବିଶ୍ୱବ୍ୟାପୀ ଆନ୍ଦୋଳନ ଗଢି ଉଠିବ । ଏଥିରେ ସାରା ବିଶ୍ୱର ଗରିବ ଗୋଷ୍ଠୀ ଏକ ଧନୀ ଦେଶର ବିବେକଧର୍ମୀ ନାଗରିକମାନେ ମୁଖ୍ୟ ଭୂମିକା ନେବେ । ପରାଙ୍ଗକୁଷ୍ଟ ଜଗତୀକରଣର ମୂଳୋତ୍ପାଟନ ହୋଇ ପାରିବ ।

ଜଗତୀକରଣ ଦ୍ୱାରା ଧ୍ୱଂସ ପାଉଥିବା ପରିବେଶ ଗାନ୍ଧୀବାଦୀ କର୍ମଚିନ୍ତନ ଦ୍ୱାରା ସୁରକ୍ଷା କରିହେବ । ଏବେ ଧ୍ୱଂସ ପାଉଥିବା ଜଙ୍ଗଲ, ଧ୍ୱସ୍ତବିଧ୍ୱସ୍ତ ହେଉଥିବା ମାଟି, ପ୍ରଦୂଷିତ ହେଉଥିବା ଜଳସ୍ରୋତ ଓ ବାୟୁ, ଉତପ୍ତ ହେଉଥିବା ପୃଥିବୀ ଓ ବଦଳୁଥିବା ବିଶ୍ୱ ଜଳବାୟୁ, ବିସ୍ଥାପିତ ହେଉଥିବା ଜନ ସମାଜ ଓ ବ୍ୟାପୁଥିବା ମହାମାରୀକୁ ରୋକିବାକୁ ହେଲେ ଗାନ୍ଧୀଙ୍କ 'ସରଳ ଜୀବନ ଓ ଉଚ୍ଚ ଚିନ୍ତା'ର ପନ୍ଥା

ଅନୁସରଣ କରିବାକୁ ହେବ । ପ୍ରକୃତିକୁ ଭଲ ପାଇବାକୁ ହେବ । ମାଟି ଆମର ମାଆ ଓ ପୃଥିବୀ ଆମର ପିତା- ଏକଥାକୁ ସର୍ବାଙ୍ଗଭାବେ ମାନ୍ୟତା ଦେବାକୁ ହେବ ।

ଜଗତୀକରଣ ଦ୍ୱାରା ମାନସିକ ସ୍ତରରେ ଯେଉଁ ଉପନିବେଶବାଦ ଲଦି ଦିଆଯାଇଛି ତାହା ପଶ୍ଚିମଦେଶମାନଙ୍କର ପୁଞ୍ଜିବାଦୀ ମୂଲ୍ୟବୋଧରୁ ସୃଷ୍ଟି ହୋଇଛି । ସାମାଜିକ, ଅର୍ଥନୈତିକ, ଧର୍ମନୈତିକ, ସାଂସ୍କୃତିକ, ଐଶରୀକ ସ୍ତରରେ ଏବେ ଯେଉଁ ଚିନ୍ତାଧାରା ସମସ୍ତଙ୍କୁ ଗ୍ରାସ କରିଛି ଏବଂ ଏହାକୁ ନେଇ ଯେଉଁ ସଂସ୍ଥା ଓ ସଂଗଠନମାନ ଗଢି ଉଠୁଛି, ସେମାନଙ୍କୁ ବିଶ୍ଲେଷଣ କରିଲେ ଆମେ ସମସ୍ତେ କେମିତି ଏ ପୁଞ୍ଜିବାଦୀ ଚିନ୍ତାଧାରାର ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ କ୍ରୀତଦାସ ହୋଇଛେ, ତାହା ହୃଦ୍‌ବୋଧ କରିହେଉଛି । ପୁରାତନ ଉପନିବେଶବାଦର ଡାଞ୍ଚା ମାନସିକ ଓ ଭୌତିକ ସ୍ତରରେ ଯେମିତି ପରିବର୍ତ୍ତନ ହେବାର ଆଉ ଆଶା ନାହିଁ । ଏବେ ମତବାଦର କଥା ଆଲୋଚନା କରାଯାଉ । ଡାରଓ୍ୱିନ୍‌ଙ୍କ ବଳଶାଳୀ ଜୀବର ଅନ୍ୟମାନଙ୍କୁ ନିଶ୍ଚିହ୍ନ କରି ବଞ୍ଚି ରହିବାର ଯୋଗ୍ୟତା, ଗୋଟାଏ ଧର୍ମ, ବର୍ଣ୍ଣ ଓ ଜାତି ଅନ୍ୟକୁ ଲୁଣ୍ଠନ ଓ ବଶ୍ୟ କରିବାର ଅଧିକାର, ଗୋଟାଏ ମତବାଦ ଅନ୍ୟମତ କାହାକୁ ଯୁଦ୍ଧଂଦ୍ୱାହି ଦେଇ ଧୂଳିସାତ୍ କରିବାର ପ୍ରକ୍ରିୟା, ଆମ ସମସ୍ତଙ୍କୁ ଆଜି ସେମିତି ଅସହାୟ କରି ଦେଉଛି ।

ଚାଲନ୍ତୁ ଆମେ ଗାନ୍ଧୀଙ୍କୁ ପୁଣିଥରେ ଆବିଷ୍କାର କରିବା ଓ ଗାନ୍ଧୀବାଦକୁ ଆପଣାର କରିବା । ଗାନ୍ଧୀଙ୍କ ମୌଳିକ ଦର୍ଶନ ଓ କର୍ମ ଚିନ୍ତନକୁ ଆମେ ଜଗତୀକରଣ ବିରୁଦ୍ଧରେ ଅମୋଘ ଅସ୍ତ୍ର କରିବା । ପ୍ରଥମେ ଶିଳ୍ପୀକରଣକୁ ବିଚାରକୁ ନିଆଯାଉ । ଗାନ୍ଧୀ ଶିଳ୍ପ ପ୍ରତିଷ୍ଠା କ୍ଷେତ୍ରରେ ଯେଉଁ ବିଚାରଧାରା ରହିଛି ତାହା ହେଉଛି ଶିଳ୍ପ ଓ ଯନ୍ତ୍ର ମଣିଷକୁ କ୍ରୀତଦାସ କରିବା ଓ ଅସମାନତା ସୃଷ୍ଟି କରିବା । ଶିଳ୍ପର ସଖୀ କଣ୍ଢେଇ ହେବା ଓ ବ୍ୟକ୍ତିର ସ୍ୱାଭିମାନ ଓ ସ୍ୱାବଲମ୍ବନଶୀଳତା ହରାଇବା ଗାନ୍ଧୀଙ୍କ ବିଚାରରେ ଗ୍ରହଣଯୋଗ୍ୟ ନଥିଲା ।

ଦ୍ୱିତୀୟରେ ଗାନ୍ଧୀ ସ୍ୱାବଲମ୍ବନଶୀଳତା ଉପରେ ଯେଉଁ ଗୁରୁତ୍ୱ ଦେଇଥିଲେ ଏବଂ ଗାଁରେ ରାମରାଜ୍ୟ ଓ ଗ୍ରାମ୍ୟ ଗଣତନ୍ତ୍ରର ସ୍ୱପ୍ନ ଦେଖୁଥିଲେ ତାହା କାର୍ଯ୍ୟକାରୀ ହେଲେ ବର୍ତ୍ତମାନର ଜଗତୀକରଣକୁ ପ୍ରତିରୋଧ କରିହେବ । ସହରୀକରଣର

ପ୍ରକ୍ରିୟା ଯେଉଁଭଳି ଦ୍ରୁତଗତିରେ ବଢୁଛି ଓ ଗ୍ରାମ୍ୟ ଜନତା ଯେମିତି ଗାଁ ଛାଡି ସହରକୁ ପଳାୟନ କରୁଛି ତାହା ଯଦି ରୋକିବାକୁ ହେବ ତାହା ହେଲେ ଗାନ୍ଧୀଙ୍କ ରାମରାଜା ପ୍ରତିଷ୍ଠା ଉପରେ ଗୁରୁତ୍ୱ ଦେବାକୁ ହେବ । ଗାନ୍ଧୀ କୁଟୀର ଓ ହସ୍ତଶିଳ୍ପ ଉପରେ ପ୍ରାଧାନ୍ୟ ଦେଉଥିଲେ । ଜଗତୀକରଣ ପ୍ରକ୍ରିୟା ଦ୍ୱାରା ସେ ଶିଳ୍ପ ଓ ସେ ଶିଳ୍ପୀ ଯେମିତି ନିଶ୍ଚିହ୍ନ ହେବାକୁ ବସିଛି । ତାହାର ପୁନରୁଦ୍ଧାର ନିତାନ୍ତ ଆବଶ୍ୟକ । ଗାନ୍ଧୀ ସୂତାକାଟି ଖଦୀବସ୍ତ୍ରକୁ ପ୍ରୋତ୍ସାହନା ଦେଇ ବ୍ରିଟିଶ୍ ସାମ୍ରାଜ୍ୟକୁ ପରାସ୍ତ କରିଥିଲେ । ଏବେ ସେଥିରୁ ଆମକୁ ଶିକ୍ଷା ଗ୍ରହଣ କରିବାକୁ ହେବ । ସର୍ବୋଦୟ ଚିନ୍ତାଧାରକୁ ନୂତନ ସଂଜ୍ଞା ଦେବାକୁ ହେବ । ମଣିଷକୁ ଭଲ ପାଇବାକୁ ହେବ । ଆଦାମ୍ ସ୍ମିଥ୍ (Adam Smith) ଯେଉଁ ସ୍ୱାର୍ଥପଥ ଓ ବ୍ୟକ୍ତିକୈନ୍ଦ୍ରୀକ ଓ ଲାଭଖୋର ମଣିଷର ପରିକଳ୍ପନା କରି ଏ ପୃଥିବୀକୁ ଏବେ ଧ୍ୱଂସ ଓ ଅମାନବୀୟ ରାସ୍ତାରେ ଯାଉଛି ତାହାର ଗତିପଥ ବଦଳେଇ ଗାନ୍ଧୀଙ୍କ ରାସ୍ତାରେ ନେବାକୁ ହେବ । ❑

# ଜଗତୀକରଣ, ଓଡ଼ିଶା ଓ ନାଗରିକ ସମାଜ

ଓଡ଼ିଶାରେ ଜଗତୀକରଣର ପ୍ରକ୍ରିୟା ତୀବ୍ରରୁ ତୀବ୍ରତର ହେବାରେ ଲାଗିଛି ଓ ଏହା ଓଡ଼ିଆମାନଙ୍କର ଆର୍ଥିକ, ରାଜନୈତିକ ଓ ସାଂସ୍କୃତିକ ମେରୁଦଣ୍ଡ ଦୋହଲାଇ ଦେଉଛି । ଏବଂ ଅନେକ କ୍ଷେତ୍ରରେ ବିଭିନ୍ନ ପ୍ରକାର ଅସ୍ଥିରତା ଦେଖା ଦେଇଛି । ଯେ କୌଣସି ପ୍ରକାର ପରିସଂଖ୍ୟାନ ନିଆଯାଉ ସେଥିରେ ଜଣା ପଡୁଛି ଓଡ଼ିଶାର ସ୍ଥିତି ଅନେକ ପ୍ରଦେଶ ତୁଳନାରେ ଯଥେଷ୍ଟ ଦୁର୍ବଳ ଅଛି । ଓଡ଼ିଶାରେ ସମସ୍ତ ପ୍ରକାର ପ୍ରାକୃତିକ ସମ୍ପଦ ଥାଇ ମଧ୍ୟ ଏ ରାଜ୍ୟ କାହିଁକି ଏତେ ଦାରିଦ୍ର୍ୟ ଭିତରେ ରହିଛି ? ତାହା ଉପରେ ବିଭିନ୍ନ ମହଲରୁ ମତାମତ ଦିଆଯାଉଛି । କିନ୍ତୁ ଅସଲ କାରଣ ହେଉଛି କେହି ଜାଣିବାକୁ ଚାହୁଁ ନାହାନ୍ତି । ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପ୍ରଫେସର ମନୋରଞ୍ଜନ ମହାନ୍ତି ଓ ଓଡ଼ିଶାର ଡ଼କ୍ଟର ବିଜୟ ବହିଦାର 'ଓଡ଼ିଶା ଦରିଦ୍ର କାହିଁକି' ଏକ ବହି କିଛି ବର୍ଷ ତଳେ ଲେଖିଥିଲେ । ସାଂପ୍ରତିକ ପରିସ୍ଥିତିକୁ ବିଚାରକୁ ନେଇ ସେହିଭାବେ ଆଉ ଏକ ପୁସ୍ତକ ଲେଖାଯିବାର ଯେ ଅନେକ ଆବଶ୍ୟକତା ଅଛି, ଏକଥା ମୁଁ ତାଙ୍କୁ ବୁଝାଇବା ପାଇଁ ଚେଷ୍ଟା କରିଛି । କିନ୍ତୁ ସବୁ ଓଡ଼ିଆ ଜାଣିଲା ଓ ବୁଝିଲା ଭଳି ସେପରି ଏକ ପୁସ୍ତକ ଏ ପର୍ଯ୍ୟନ୍ତ ଲେଖା ହୋଇନାହିଁ । ସମ୍ଭବତଃ ଖୁବ ଶୀଘ୍ର କିଏ ନା କିଏ ଲେଖିବ ମୁଁ ଆଶା କରୁଛି କାରଣ ଓଡ଼ିଶାର ସ୍ଥିତି ନିମ୍ନଗାମୀ ହେବା ଅପରିହାର୍ଯ୍ୟ ହୋଇପଡିଛି ।

ପ୍ରଥମେ ଆମେ ନିଜକୁ ବୁଝିବାକୁ ଚେଷ୍ଟା କରିବା । ଜଗତୀକରଣ କହିଲେ ଆମେ କ'ଣ ବୁଝୁ ଏବଂ ଏହାପରେ ଆମେ ନାଗରିକ ସମାଜ କହିଲେ କ'ଣ ବୁଝୁ

"ଜଗତୀକରଣର ଅସଲ ଅର୍ଥ କ'ଣ ? ଏହା ଏପରି ଏକ ପ୍ରକ୍ରିୟା ଯାହା ଆନ୍ତର୍ଜାତିକ ବାଣିଜ୍ୟ, ପୁଞ୍ଜି, ବୈଷୟିକ ଜ୍ଞାନ ଓ ସୂଚନା ଆଦି ବଳରେ ବଳୀୟାନ ହୋଇ ପୃଥିବୀରେ ସାମଗ୍ରିକ ବଜାରକୁ ନିୟନ୍ତ୍ରଣ କରିଥାଏ । ଜଗତୀକରଣ ସ୍ଥାନୀୟ ସ୍ଥାନ, କାଳ ପାତ୍ର, ଦେଶ ପ୍ରଦେଶର ସୀମା ମାନିନଥାଏ । ବାଣିଜ୍ୟ ବେପାର ଦ୍ୱାରା ସାରା ବିଶ୍ୱବାସୀଙ୍କ ଜୀବନ ଜୀବିକାକୁ ନିଜର ନିୟନ୍ତ୍ରଣ ପରିସରଭୁକ୍ତ କରିଥାଏ । ଚାହିଁଲେ ରଖେ, ଚାହିଁଲେ ଭାଙ୍ଗେ । ଅଚାନକ ଏହା ଯେପରି ଏକ ଘୂର୍ଣ୍ଣିବାତ୍ୟା ଭଳି

ପ୍ରବାହିତ ହୋଇଛି ଓ ସମସ୍ତଙ୍କୁ ପ୍ରଭାବିତ କରିଛି । ଏହାକୁ ସ୍ୱାଗତ କରିବା ପାଇଁ ଅନେକ ଲୋକ ବାହାରି ପଡିଛନ୍ତି । କହୁଛନ୍ତି ଯେ ଧରନ୍ତୁ ଆପଣ ଆପଣ ଷ୍ଟେସନ୍‌ରେ ଛିଡା ହୋଇଛନ୍ତି ଓ ଟ୍ରେନ୍ ଛାଡୁଛି । ଆପଣ ଚଢିବେ କି ନାହିଁ ଦ୍ୱନ୍ଦରେ ପଡିଛନ୍ତି । ଆପଣଙ୍କ ନିଷ୍ପତ୍ତି ଉପରେ ଟ୍ରେନ୍ ଛାଡିବା ନିର୍ଭର କରୁନାହିଁ । ଟ୍ରେନ୍‌ଟି ଛାଡିଦେବ ନିର୍ଦ୍ଧାରିତ ସମୟରେ । ଆପଣ ନ ଚଢିଲେ ଆପଣଙ୍କ କ୍ଷତି । ଆପଣଙ୍କ ପାଖରେ ସମୟ ନାହିଁ । ଟ୍ରେନ୍ କେଉଁ ଗତିରେ ଯିବ, ଦୁର୍ଘଟଣାଗ୍ରସ୍ତ ହେବ କି ନାହିଁ, ଯାତ୍ରା ସୁରକ୍ଷିତ କି ନୁହେଁ, ଏସବୁ ଭାବିବା ପାଇଁ ସୁଯୋଗ ଓ ସମୟ ନାହିଁ । ଜଗତୀକରଣ ପ୍ରକ୍ରିୟା ଠିକ୍ ଟ୍ରେନ୍ ଛାଡିବା ଭଳି, ନୁହେଁ କି ? ନ ହେଲେ କାହିଁକି ଜଗତୀକରଣକୁ ଗୋଟାଏ ପରେ ଆଉ ଗୋଟାଏ ଦେଶ, ସାମ୍ରାଜ୍ୟ ଓ ସଭ୍ୟତା ଏପରି ଫୁଲମାଳ ଦେଇ ସ୍ୱାଗତ କରୁଛନ୍ତି ?”

କିନ୍ତୁ ଅନେକ ପ୍ରଶ୍ନ କରୁଛନ୍ତି ଏହା ବୈଧତା ନେଇ, ପ୍ରାସଙ୍ଗିକତା ନେଇ, ମାନବିକତା ନେଇ । ଏହା ଲୋକାଭିମୁଖୀ କି ନୁହେଁ ପଚରା ଯାଉଛି । ବିରୋଧାଭାସ ବଢିବାରେ ଲାଗିଛି ଦୁନିଆସାରା । ଧନୀ ଓ ଗରିବଙ୍କ ଭିତରେ ବିଭେଦ ଓ ବିଦ୍ୱେଷ ଯାହା ବଢୁଛି, ଜଗତୀକରଣ ତାହା ଆହୁରି ବ୍ୟାପକ କରିବ ବୋଲି ସମସ୍ତେ ଭାବୁଛନ୍ତି । ସାମାଜିକ ନିରାପତ୍ତା କ୍ଷୁର୍ଣ୍ଣ ହେବ ଓ ବିଶ୍ୱର କ୍ଷୁଧା ଆହୁରି ପ୍ରବଳତର ହେବ, ଏହା ସ୍ପଷ୍ଟ ଦେଖି ହେଉଛି । ବେଶି ପ୍ରଭାବିତ ହେବେ ଗରିବ, ମହିଳା ଓ ଶିଶୁମାନେ । ଲୋକେ ବାସଚ୍ୟୁତ ହେବେ, ବଢିବ ଶିଶୁ ଶ୍ରମିକମାନଙ୍କ ବ୍ୟଥା ।

ଜଗତୀକରଣର ପ୍ରଭାବ ପାଞ୍ଚୋଟି କ୍ଷେତ୍ରରେ ଭୟାନକ ହେବ ବୋଲି ବିଶେଷଜ୍ଞମାନେ ଘୋଷଣା କରିଛନ୍ତି । ଏଗୁଡିକ ହେଲା ଆର୍ଥିକ, ବୈଷୟିକ, ସାଂସ୍କୃତିକ, ରାଜନୈତିକ ଓ ପାରିବେଶିକ । ଗୋଟିଏ ସହ ଅନ୍ୟଟି ଅଙ୍ଗାଙ୍ଗୀ ଭାବେ ଜଡିତ ହୋଇଛି । ଗୋଟିଏର ପ୍ରଭାବ ଅନ୍ୟଟିର ପ୍ରଭାବକୁ ଅତି ଉତ୍କଟ କରୁଛି । ପ୍ରଦୂଷଣର ସୀମା ଟପିଯିବ କଳ୍ପନା ଓ ନିୟନ୍ତ୍ରଣର ବାହାରକୁ ।

ସାଧାରଣ ଅର୍ଥରେ ନାଗରିକ ସମାଜ ଏପରି ଏକ ବ୍ୟକ୍ତିବିଶେଷଙ୍କ ସମାଜ ଯାହା ରାଷ୍ଟ୍ର ଏବଂ ବଜାର ଆକ୍ରମଣକୁ ବିରୋଧ କରିବା ବା ନାଗରିକ ପ୍ରତି ଦୃଷ୍ଟିକୋଣ ବଦଳାଇବ । ଆହୁରି ସରଳ କହିବାକୁ କହିଲେ ବୁଝିବାକୁ ହେବ ରାଷ୍ଟ୍ର ଓ ବଜାର ଉଭୟ ନାଗରିକମାନଙ୍କୁ ଦୁର୍ବଳକରି ପ୍ରତିଷ୍ଠା ଲାଭ କରିବା ପାଇଁ

ଚାଲିଛନ୍ତି । ଏବେ ଜଗତୀକରଣ ପ୍ରକ୍ରିୟାରେ ବଜାର ଓ ପୁଞ୍ଜି ରାଷ୍ଟ୍ରକୁ ଦୁର୍ବଳ କରି ସବୁଠାରୁ ପରାକ୍ରମଶାଳୀ ଶକ୍ତି ରୂପେ ଛିଡା ହେଉଛି । ସର୍ବଶ୍ରେଷ୍ଠ ବୁଦ୍ଧିଜୀବୀ ଶ୍ରୀ ନୋଅମ୍ ଚୋମିସ୍କି କହିଛନ୍ତି ଯେ- ନାଗରିକମାନଙ୍କୁ ବଳିଦେଇ ବା ତାଙ୍କ ଉପରେ ସବାର ହୋଇ ବଜାରର ବେପାର ଆଧିପତ୍ୟ ବିସ୍ତାର କରିଛି । ଏହାର ବେଳେ ଗୋଟିଏ ଉଦ୍ଦେଶ୍ୟ ଅଛି - ବ୍ୟବସାୟ ଓ ବାଣିଜ୍ୟରୁ ସର୍ବାଧିକ ଲାଭ ଉଠାଇବା ।

ଓଡ଼ିଶାର ସାଂସ୍କୃତିକ ଚିତ୍ରକୁ ଅନୁଧ୍ୟାନ କଲେ କେତୋଟି କଥା ସ୍ପଷ୍ଟ ଜଣାପଡ଼ୁଛି । ସେମାନଙ୍କର ତାଲିକା ନିମ୍ନରେ-

(କ) ଓଡ଼ିଶାରେ ଜୀବନର ମାନ (ଶିକ୍ଷା, ସ୍ୱାସ୍ଥ୍ୟ, ପିଇବା ପାଣି, ପରିମଳ, ପୁଷ୍ଟିସାର ଓ ପରିବେଶ) ସାରା ଦେଶରେ ସବୁଠାରୁ ନିମ୍ନରେ ଅଛି । ଯେ କୌଣସି ସୂଚକାଙ୍କ ଏକଥାରେ ପ୍ରମାଣ କରିବ । (ଖ) ସାଧାରଣ ମଣିଷଙ୍କ ଖାଦ୍ୟ ନିରାପତ୍ତା, ଜଳ ନିରାପତ୍ତା, ପରିବେଶ ନିରାପତ୍ତା ଓ ସାମାଜିକ ନିରାପତ୍ତା ଏକ ବିପଦଜନକ ସ୍ଥିତିରେ ପହଞ୍ଚିଛି । ପିଇବା ପାଣିର ଅଭାବ, ବାସଗୃହ ଅଭାବ, ସାମାଜିକ ନିରାପତ୍ତାର ଅଭାବ ଆଜିର ଦୂରବସ୍ଥାର ଅସଲ ରୂପରେଖ । ସହର କୁହନ୍ତୁ ବା ଗାଁ କୁହନ୍ତି ଏହା ସବୁ ଜାଗାରେ ପରିଲକ୍ଷିତ ହେଉଛି । (ଗ) ଓଡ଼ିଆ ଶ୍ରମିକ ଲକ୍ଷ ଲକ୍ଷ ସଂଖ୍ୟାରେ ଦାଦନ ଖଟୁଛନ୍ତି । (ଘ) ମହିଳା ଓ ଶିଶୁଙ୍କୁ ବଜାରରେ ପଣ୍ୟଦ୍ରବ୍ୟ ଭାବେ ଅନ୍ୟ ରାଜ୍ୟରେ ବିକ୍ରି କରାଯାଉଛି । ଅଗଣିତ ସଂଖ୍ୟାରେ ଚାଲାଣ କରାଯାଉଛି । ଓଡ଼ିଶାରେ ବିସ୍ଥାପନର କୁପ୍ରଭାବ ସବୁ ଅଞ୍ଚଳକୁ ବ୍ୟାପି ଯାଇଛି । ବିଶେଷ କରି ଆଦିବାସୀ ଅଞ୍ଚଳର ହଜାର ହଜାର ପରିବାର ସ୍ୱାଧୀନତା ପରଠାରୁ ବିସ୍ଥାପିତ ହୋଇ ନିଶ୍ଚିହ୍ନ ହୋଇଛନ୍ତି । ଓଡ଼ିଶାରେ କୃଷି ସବୁଠାରୁ ବେଶି ଅବହେଳିତ ଅବସ୍ଥାରେ ଅଛି । ଯେଉଁ କେତୋଟି ଫୁଲ, ଫଳ ଓ ଶସ୍ୟରେ ନିଜେ ଓଡ଼ିଶା ସ୍ୱାବଲମ୍ବୀ ଥିଲା ତାହା ପରିବର୍ତ୍ତେ ଆଜି ଓଡ଼ିଶା, ଆନ୍ଧ୍ର ପ୍ରଦେଶ, ପଶ୍ଚିମବଙ୍ଗ, ଝାଡ଼ଖଣ୍ଡ ଓ ଛତିଶଗଡ଼ ଉପରେ ନିର୍ଭର କରି ଚଳୁଛି । ଓଡ଼ିଶାର ଉପଭୋକ୍ତାମାନେ ପଡ଼ୋଶୀ ରାଜ୍ୟମାନଙ୍କରୁ ଖାଉଟୀ ଦ୍ରବ୍ୟ ନ ଆସିଲେ ବଞ୍ଚିବାର ଦୂରୁହ ବ୍ୟାପାର ହୋଇ ଯାଉଛି । ଓଡ଼ିଶାରେ ଶିଳ୍ପ ବିକାଶ ନାଁରେ ହରିଲୁଟ୍ ଚାଲିଛି । ହଜାର ଦିନରେ ହଜାର ଶିଳ୍ପ ସ୍ଲୋଗାନ ଦେଇ ମନ୍ତ୍ରୀ, ଅଫିସର ଓ ପୁଞ୍ଜିପତିମାନେ ଶହ ଶହ ରାଜସ୍ୱ ସୃଷ୍ଟି ଦିବାଲୋକରେ ଠକେଇ ଲୁଟି କରିଛନ୍ତି ଓ ଆଜି ପ୍ରତିଷ୍ଠିତ ବ୍ୟକ୍ତି ଭାବେ ବିଭିନ୍ନ ସମ୍ମାନର ଅଧିକାରୀ

ହୋଇଛନ୍ତି । ସେଇ ହଜାରଟି ଶିଳ୍ପର ଭଗ୍ନାଂବଶେଷ ଦେଖିବାକୁ ମିଳୁଛି ସବୁଆଡେ । ଓଡ଼ିଶାରେ ବିକଶର ବୃହତ୍ ଶିଳ୍ପର ଭୂମିକା କ'ଣ ହେବ ତାହ ଗଲା ୫୦ ବର୍ଷରେ ଅଧ୍ୟୟନରୁ ଜଣାପଡୁଛି । ଓଡ଼ିଶାରେ ଋଣ ଭାର ବର୍ତ୍ତମାନ ପାଖା ପାଖି ୫୦.୦୦୦ କୋଟି ଟଙ୍କା । ଡି.ଏଫ୍.ଆଇ.ଡ଼ି., ବିଶ୍ୱବ୍ୟାଙ୍କ୍ ଭଳି ଅନେକ ସଂସ୍ଥାମାନଙ୍କ ଜାଲରେ ଓଡ଼ିଶା ପଡିଯାଇଛି ଓ ଉଧାର ପାଇବାର ବାଟ ଦେଖା ଯାଉନାହିଁ ।

ସାଧାରଣ ମତରେ ଯେଉଁ ରାଜ୍ୟ ଉନ୍ନତ ଓ ବିକଶିତ ସେ ରାଜ୍ୟକୁ ମୁଁ କେତେଥର ଯାଇଛି ଏବଂ ସେଠାକର ଢାଞ୍ଚା ଏବଂ ବିକାଶର ଗତି ଓ ପ୍ରଗତି ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଛି । ମହାରାଷ୍ଟ୍ର ହେଉ ଅବା ଗୁଜୁରାଟ ହେଉ କେରଳ ହେଉ ଅବା ପଞ୍ଜାବ ହେଉ ସେଇଠି ନାଗରିକ ସମାଜର ଭୂମିକା ବିକାଶ ଗତିପଥକୁ ବଦଳାଇ ଦେଇଛି । ଏହିସବୁ ରାଜ୍ୟମାନଙ୍କରେ ବିଭିନ୍ନ ସମୟରେ ବିଭିନ୍ନ ପ୍ରକାର ଜନ ଆନ୍ଦୋଳନ ପରିବର୍ତ୍ତନର ଏକ ଶକ୍ତିଶାଳୀ ମାଧ୍ୟମ ରୂପେ ଭୂମିକା ଗ୍ରହଣ କରିଛି । ଏହି ନାଗରିକ ସମାଜରେ ସ୍ୱେଚ୍ଛାସେବୀ ସଂଗଠନ, ଆକ୍ଟିଭିଷ୍ଟ, ସମ୍ବାଦିକ, ଲେଖକ, ବୃଦ୍ଧିଜୀବୀ ଓ ଗବେଷକ ଏବଂ ରାଜନୈତିକ ନେତା ସଂଶ୍ଳିଷ୍ଟ ହୋଇଛନ୍ତି । ସମସ୍ତଙ୍କର ଗୋଟିଏ ଉଦ୍ଦେଶ୍ୟ - ରାଜ୍ୟ କିପରି ବିକଶିତ ହେବ ? ରାଜ୍ୟ ପ୍ରଗତିପଥରେ ଆଗେଇବ ।

ସାମାଜିକ ଆନ୍ଦୋଳନ ଏକ ତତ୍ତ୍ୱ ନୁହେଁ ବା ଏକ ମନଗଢା କାହାଣୀ ନୁହେଁ । ଏହାର ଆରମ୍ଭ ଯେପରି ଅଛି ଏକ ଶେଷ ପରିଣତି ବି ଅଛି । ଏହି ନେତୃତ୍ୱର ଏକ ଢାଞ୍ଚା ଅଛି ଏବଂ ସ୍ୱାର୍ଥତ୍ୟାଗର ଅନ୍ୟ ଏକ ଉଦାହରଣ ରହିଛି । ଅହିଂସା ସାମାଜିକ ଆନ୍ଦୋଳନ ଗୋଟାଏ ରାଜ୍ୟରେ ବିକାଶର ଧାରା ବଦଳାଇବାରେ ସକ୍ଷମ ହେଉଛି । ଦୁଃଖର କଥା ଯେ ଓଡ଼ିଶାରେ ସାମାଜିକ ଆନ୍ଦୋଳନର ଗୁରୁତ୍ୱ ମାନିବାକୁ ସମସ୍ତେ ପ୍ରସ୍ତୁତ ନୁହଁନ୍ତି ଏବଂ ନାଗରିକ ସମାଜର ସ୍ୱର ଶୁଣିବାକୁ ଆଗ୍ରହ ପ୍ରକାଶ କରୁନାହାନ୍ତି । ଓଡ଼ିଶାରେ ପ୍ରଶାସନ ଓ ପ୍ରଶାସକମାନଙ୍କର ଅପ୍ରତିହତ ଏବଂ ସ୍ୱେଚ୍ଛାଚାରୀ ଭୂମିକା ଓଡ଼ିଆମାନଙ୍କର ମାନସିକତାକୁ ଗୋଟାପଣେ ଗିଳି ଦେଇଛି । ଦରିଦ୍ର ଓଡ଼ିଆ ମଧ୍ୟ ସ୍ୱପ୍ନ ଦେଖୁଛି ଯେ ସେ ଅମଲାଟିଏ ହେବ ବା ଅଫିସର ଟିଏ ହେବ । ସେପରିକି ସ୍ଥଳେ ଆଦିବାସୀ ଅଞ୍ଚଳର ବାପା ମାଆ ଅତି ସ୍ନେହରେ ପୁଅର ନାମ କଲେକ୍ଟର ଅଥବା ମନ୍ତ୍ରୀ ଦେଉଛନ୍ତି । କେତେକ ମଧ୍ୟବିତ୍ତ ପରିବାରର ଡ୍ରଇଂ

ରୁମରେ ଅମଲାମାନଙ୍କର କଥା ସର୍ବଦା ଆଲୋଚିତ ହେଉଛି । ସାହିତ୍ୟ ରାଜନୀତି ଆଦି କ୍ଷେତ୍ରରେ ମଧ୍ୟ ଅବସର ପ୍ରାପ୍ତ ଅମଲାମାନଙ୍କ ଛାୟା ବ୍ୟାପି ଯାଇଛି । ଦୁଃଖର କଥା ଯେ ଓଡ଼ିଶାରେ ଆନ୍ଧ୍ର ପ୍ରଦେଶ ଭଳି ଉତ୍ସର୍ଗୀକୃତ ଅଫିସର/ପ୍ରଶାସକ ଆଜି ପର୍ଯ୍ୟନ୍ତ ଦେଖା ଦେଇ ନାହାଁନ୍ତି ।

ବଜାର ଓ ପୁଞ୍ଜି ଓଡ଼ିଶାରେ ଖାଦ୍ୟ ଶୋଷଣର ସ୍ତମ୍ଭ ହୋଇ ଠିଆ ହୋଇଛନ୍ତି । ଓଡ଼ିଆମାନେ ପ୍ରଶ୍ନ କରିବା କଥା ଟାଟା, ଇମ୍ପା, ସିଙ୍ଘାଣିଆ, ଜିନ୍ଦଲ୍, ଭୂଷଣ, ବିରଲା ଓଡ଼ିଶାରୁ ନେଇଛନ୍ତି କ'ଣ ଓ ଦେଇଛନ୍ତି କ'ଣ ? ଓଡ଼ିଶାରେ ଖଟିଖିଆ, ଶ୍ରମିକ ଓ କୃଷକ ଆଦି ତଳିତଳାନ୍ତ ହୋଇଛନ୍ତି । କିନ୍ତୁ ଓଡ଼ିଶାରେ କଳ କାରଖାନା ଓ ଖଣିଖାଦାନ ଜରିଆରେ ଶିଳ୍ପପତିମାନେ ନିଜର ପୁଞ୍ଜି ବଢାଇବାରେ ଲାଗିଛନ୍ତି । କାହାର ବ୍ୟକ୍ତିଗତ ଉଡାଜାହାଜ ଓ ହେଲିକପ୍ଟର ରହିଛି । କିଏ ସାଂସଦ ମଧ୍ୟ ହେଉଛି । ଗଲା ୫୦ ବର୍ଷ ଇତିହାସର ପ୍ରଚ୍ଛଦ ପଟରେ ଏହି ଶିଳ୍ପପତିମାନଙ୍କର ସଫଳ କାହାଣୀ ମପାଯାଇଛି । କିନ୍ତୁ ଓଡ଼ିଆ ଅନାହାରରେ ମରୁଛି । ଶିଶୁ ବିକ୍ରି କରୁଛି । ଓଡ଼ିଶା ଆଜି କାଙ୍ଗାଳ ହୋଇଛି ଓ ସ୍ୱାଭିମାନ ହରାଇଛି । ଓଡ଼ିଶାରେ ସାମାଜିକ ଆନ୍ଦୋଳନ ଯେଉଁଠି ହୋଇଛି ଓ ଯେଉଁଠି ହୋଇନାହିଁ ତାହାର ମଧ୍ୟ ସମୀକ୍ଷା ହେବାର ଆବଶ୍ୟକତା ରହିଛି । ଦେଶରେ ଯେଉଁ କେତୋଟି ସଫଳ ଜନଆନ୍ଦୋଳନ ଦେଖାଦେଇଛି, ତାହାର ଉଦାହରଣ ଓଡ଼ିଶାରେ ଅଛି । ସେଗୁଡିକ ହେଲା- ଗନ୍ଧମାର୍ଦ୍ଦନ ବାଲ୍‌କୋ ହଟାଅ ଆନ୍ଦୋଳନ, ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟି ବିରୋଧୀ ଆନ୍ଦୋଳନ, ଚିଲିକା ବଞ୍ଚାଅ ଆନ୍ଦୋଳନ । ଓଡ଼ିଶାରେ ମଧ୍ୟ ଜାତୀୟ ସ୍ତରର ବରିଷ୍ଠ ନାଗରିକମାନେ ବିଭିନ୍ନ ସମୟରେ ଜନ ଆନ୍ଦୋଳନକୁ ଓଡ଼ିଶାରେ କାର୍ଯ୍ୟକାରୀ କରାଇଛନ୍ତି । ସେମାନେ ହେଲେ ୰ବାଙ୍କ ବିହାରୀ ଦାସ, ୰କିଶନ ପଟ୍ଟନାୟକ ଓ ୰ମନମୋହନ ଚୌଧୁରୀ । ଏମାନଙ୍କର ବିୟୋଗ ପରେ ଆସନ୍ତା କେତେ ଦଶକ ପରେ ମଧ୍ୟ ସେହି ସ୍ଥାନ ପୂରଣ ହୋଇ ପାରିବନାହିଁ ।

ଓଡ଼ିଶାରେ ଗତ କେତେ ବର୍ଷ ଧରି ସ୍ୱେଚ୍ଛାସେବୀ ସଂଗଠନର ସଂଖ୍ୟା ଛତୁ ଫୁଟିଲାପରି ବଢି ଚାଲିଛି । ଏହା ପଛରେ ଏକ ରାଜନୀତି ରହିଛି । କିନ୍ତୁ ଏହି ସ୍ୱେଚ୍ଛାସେବୀ ସଂଗଠନ ଏକ ସୁଦୃଢ଼ ନାଗରିକ ସମାଜ ଗଢୁଛନ୍ତି କି ନାହିଁ ଓ ସହଭାଗିତା କେତେ ରହିଛି ସେ ସବୁ ବିଷୟରେ ପ୍ରଶ୍ନ ଉଠିଛି । ଆଜିର

ସ୍ୱେଚ୍ଛାସେବୀ ସଂଗଠନ ସରକାରଙ୍କ ଛତ୍ରଛାୟା ତଳେ ଶରଣ ପଶିଛି । ଯେଉଁଠି ରାଷ୍ଟ୍ର ଜନ ବିରୋଧୀ ଏବଂ ଗରିବ ବିରୋଧୀ ଓ ସମାଜ ବିରୋଧୀ ନୀତି ନିୟମ ତିଆରି କରୁଛି ସେଥିରେ ସ୍ୱେଚ୍ଛାସେବୀ ସଂଗଠନ ଆଖି କାନ ବୁଜି କରି ମାନି ନେଇଛନ୍ତି । ପ୍ରତିବାଦ ଓ ପ୍ରତିରୋଧର ସ୍ୱରର ଦୁର୍ବଳତା ସବୁକ୍ଷେତ୍ରରେ ଅନୁଭବ କରିହେଉଛି । ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ନୀତି ନିୟମ, ଗତିବିଧି, ଅଭିବୃଦ୍ଧି ଓ ଅବକ୍ଷୟ ସେମାନଙ୍କ ହାତରେ ନାହିଁ । ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ପାଇଁ ଯେଉଁ ନୀତି ନିୟମ ଗଢା ଯାଉଛି ଶେଷକୁ ବିଶ୍ୱବ୍ୟାଙ୍କ୍ ଭଳି ଶକ୍ତି ଅନୁଷ୍ଠାନମାନ କରୁଛନ୍ତି । ବିଶ୍ୱବ୍ୟାଙ୍କ ଖାଲି ବିଶ୍ୱର ରାଷ୍ଟ୍ରକୁ ନିୟନ୍ତ୍ରଣ କରୁନାହିଁ, ବିଶ୍ୱରେ ଥିବା ନାଗରିକ ସମାଜକୁ ମଧ୍ୟ ନିୟନ୍ତ୍ରଣ କରିବା ପାଇଁ ଅହର୍ନିଶ ଚେଷ୍ଟା କରୁଛି । ବିଶ୍ୱବ୍ୟାଙ୍କ ଜଗତୀକରଣର ଏକ ସପକ୍ଷବାଦୀ ଶକ୍ତି । ସେମାନେ କେବେ ହେଲେ ଚାହିଁବେ ନାହିଁ ଯେ ସ୍ୱେଚ୍ଛାସେବୀ ସଂଗଠନମାନେ ଜଗତୀକରଣକୁ ବିରୋଧ କରନ୍ତୁ । ଏହି ଯୁକ୍ତିରେ ସ୍ୱେଚ୍ଛାସେବୀ ସଂଗଠନମାନଙ୍କୁ ଜଗତୀକରଣ ପ୍ରକ୍ରିୟାରେ ସାମିଲ୍ କରାଇ ଲାଭାନ୍ୱିତ କରାଇବାକୁ ବିଶ୍ୱବ୍ୟାଙ୍କ ଚେଷ୍ଟା କରୁଛି । ବର୍ତ୍ତମାନ ସ୍ୱେଚ୍ଛାସେବୀ ସଂଗଠନମାନେ ଗରୀବ ଲୋକଙ୍କ ସହ ସଂଳାପ କରିବାକୁ ଆଗ୍ରହ ପ୍ରକାଶ କରୁନାହାଁନ୍ତି । ଗାଁରେ ରହୁଥିବା ସ୍ୱେଚ୍ଛାସେବୀ ସଂଗଠନଟି ଏବେ ଜିଲ୍ଲା ମୁଖ୍ୟ କାର୍ଯ୍ୟାଳୟକୁ ଆସୁଛି । ଜିଲ୍ଲା ମୁଖ୍ୟ କାର୍ଯ୍ୟାଳୟରେ ଥିବା ସ୍ୱେଚ୍ଛାସେବୀ ସଂଗଠନଟି ରାଜଧାନୀକୁ ଉଠି ଆସୁଛି । ରାଜଧାନୀରେ କାମ କରୁଥିବା ସ୍ୱେଚ୍ଛାସେବୀ ସଂଗଠନଟି ଆନ୍ତର୍ଜାତିକ ସ୍ତରକୁ ଯାଉଛି ।

ଓଡ଼ିଶାରେ ନାଗରିକ ସମାଜ ଅନୁସାରେ ଗୋଷ୍ଠୀଗୁଡିକ ଯଥା- ସାମ୍ବାଦିକ, ବୁଦ୍ଧିଜୀବୀ ଓ ଓକିଲ ଏମାନେ ମଧ୍ୟ ଜଗତୀକରଣ ପ୍ରକ୍ରିୟାରେ ଚୁପଚାପ ହୋଇଯାଇଛନ୍ତି । ସମସ୍ତେ ଜଗତୀକରଣ ପ୍ରକ୍ରିୟାରେ ଲାଭ ଉଠାଇବା ପାଇଁ ଚେଷ୍ଟା କରୁଛନ୍ତି । ସମ୍ବାଦପତ୍ରମାନଙ୍କୁ ଲକ୍ଷ୍ୟ କଲେ ଓଡ଼ିଶାର ନାଗରିକ ସମାଜ କେତେ ଦୁର୍ବଳ ତାହା ସ୍ପଷ୍ଟ ଜାଣି ହେଉଛି । ଗବେଷଣା ପ୍ରତିଷ୍ଠାନମାନଙ୍କର ଭାବଭଙ୍ଗୀ ଏବଂ ଗବେଷଣାରୁ ଦିଗ ଲକ୍ଷ କଲେ ଜଣାପଡୁଛି । ସେମାନେ ଜଗତୀକରଣ ପ୍ରକ୍ରିୟାକୁ ମୁଣ୍ଡ ନୋଇଁ ମାନିନେଲେଣି । ସେମାନେ ଜାଣିଛନ୍ତି ଡ଼ି.ଏଫ୍.ଆଇ.ଡ଼ି. ଓ ବିଶ୍ୱବ୍ୟାଙ୍କର ସାହାଯ୍ୟ ନ ମିଳିଲେ ଦିନଟିଏ ତିଷ୍ଠି ରହିବା ସମ୍ଭବ ନୁହେଁ । ଜଗତୀକରଣର

ଅନ୍ୟଏକ ପରିପ୍ରକାଶ ହେଉଛି ଦୁର୍ନୀତି । ଆମ ରାଜନେତାମାନେ ଜଗତୀକରଣ ପ୍ରଭାବରେ ଅଧିକରୁ ଅଧିକ ଦୁର୍ନୀତ ଗ୍ରସ୍ତ ହେଉଛନ୍ତି । ବଦଳିବାରେ ସମ୍ଭବ ହେଉନି । ଲେଖକ ଓ ସାହିତ୍ୟିକ ମାନେ ନାଗରିକ ସମାଜରେ ମୁଖ୍ୟ ଆଧାର ହେବା କଥା କିନ୍ତୁ ସେମାନେ ମଧ୍ୟ ଜଗତୀକରଣ ପ୍ରତି ନିଜକୁ ମୁଖ୍ୟସ୍ରୋତରେ ମିଶାଇବାକୁ ଚାହୁଁଛନ୍ତି । ଓଡ଼ିଶାରେ ଜଣେ ହେଲେ ଲେଖକ ଦେଖାଯାଉନାହିଁ ଯିଏକି ଜଗତୀକରଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଅଣ୍ଟା ଭିଡିଛି । ଓଡ଼ିଶାର ନାଗରିକ ସମାଜ ସାଲିସ୍‌ପନ୍ଥୀ ହୋଇଛି ।

ଓଡ଼ିଶାରେ ନାଗରିକ ସମାଜ କିପରି ଗଢି ଉଠିବ ଏବଂ ନିର୍ଦ୍ଦିଷ୍ଟଭାବେ ନିଜର ଭୂମିକା ପ୍ରତିପ୍ରାଦନ କରିବ ସେଥିପାଇଁ ଏକ ତର୍କ ବିତର୍କର ପରିବେଶ ସୃଷ୍ଟି କରାଯିବା ଆଜି ଅପରିହାର୍ଯ୍ୟ ହୋଇପଡିଛି । ଆମର ବିଶ୍ୱବିଦ୍ୟାଳୟଗୁଡିକ ଏହି ତର୍କ ବିତର୍କର ମୂଳାଧାର ବୋଲି ଆଶା କରୁଛି । ବିଶ୍ୱବିଦ୍ୟାଳୟରୁ ବିପ୍ଳବୀମାନେ ବାହାରିବେ କି ସାଲିସ୍‌ପନ୍ଥୀ ଓ ଦୁର୍ବଳମନାମାନେ ବାହାରିବେ ତାହା ବିଶ୍ୱବିଦ୍ୟାଳୟର ଶିକ୍ଷକ, ଶିକ୍ଷାର ପାଠ୍ୟକ୍ରମ ଓ ସାମଗ୍ରିକ ପରିବେଶ ଉପରେ ନିର୍ଭର କରୁଛି । ❑

# ଜଗତୀକରଣ ବନାମ୍ ବିଜଗତୀକରଣ: ଏସିଆ ମହାଦେଶର ସ୍ୱପ୍ନ

ସାରା ଏସିଆ ମହାଦେଶରେ ଜଗତୀକରଣ ପ୍ରକ୍ରିୟାର ଚେର ଯେଉଁଭଳି ଭାବେ ମାଡ଼ି ଚାଲିଛି ଏହା ଭାବି ବସିଲେ ଭୟଙ୍କର ଚିତ୍ର ସବୁ ଝଲସି ଉଠୁଛି । ସାଧାରଣ ମଣିଷଙ୍କର ବିଶେଷ କରି ଗରୀବ ଓ ଅସହାୟ ମଣିଷଙ୍କର ଜୀବନ ଜୀବିକାର ସ୍ଥାୟୀତ୍ୱ ଉପରେ ଅହେତୁକ ବିପଦ ମାଡ଼ି ଆସିଛି । ଯଦି ବିଶିଷ୍ଟ ଅର୍ଥନୀତିଜ୍ଞ ଗୁନ୍ନାର ମିର୍ଡ଼ାଲ୍ ଆଉଥରେ "ଏସିଆନ୍ ଡ୍ରାମା" ବହିଟି ସାମ୍ପ୍ରତିକ ଭୟାନକ ବିଷୟ ବସ୍ତୁକୁ ନେଇ ଲେଖନ୍ତେ, ତାହା ପାଠକମାନେ ପଢ଼ିବାକୁ ସାହସ କରନ୍ତେ ନାହିଁ । ସାରା ଏସିଆରେ ମୌଳିକ ମୂଲ୍ୟବୋଧର ଘୋର ପରିବର୍ତ୍ତନ ଘଟିଛି । ସାମାଜିକ ଓ ସାଂସ୍କୃତିକ ମୂଳଦୁଆ ତଥା ଆର୍ଥିକ ଓ ରାଜନୈତିକ ସ୍ଥିରତା ଭୁଶୁଡ଼ି ପଡ଼ିଛି ଆଜି । ୧୯୯୭ ମସିହାରେ ହୋଇଥିବା ଏସିଆନ ଆର୍ଥିକ ସମସ୍ୟା ହେତୁ ଥାଇଲାଣ୍ଡ, ଇଣ୍ଡୋନେସିଆ ଭଳି ଦେଶରେ ଲକ୍ଷ ଲକ୍ଷ ଲୋକ ରାତି ରାତି ଗରୀବ ସୀମାରେଖା ତଳକୁ ଖସି ଯାଇଛନ୍ତି । ଏସିଆନ୍ ବାଘ କୁହାଯାଉଥିବା କୋରିଆ ଓ ସିଙ୍ଗାପୁର ଆଦି ଦେଶରେ ଆର୍ଥିକ ଆଭିମୁଖ୍ୟ ବଦଳି ଯାଇଛି । ଚୀନ ଓ ଭାରତ ଭଳି ବିଶାଳ ଦେଶମାନଙ୍କରେ ଏହାର ସୁଦୂରପ୍ରସାରୀ ପ୍ରଭାବ ପଡିଛି । ଏହାର ମୂଳ କାରଣ ହେଉଛି ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଏବଂ ବିଶ୍ୱବ୍ୟାଙ୍କ ଭଳି ଅନୁଷ୍ଠାନମାନେ ବଜାରୀକରଣ ପ୍ରକ୍ରିୟାକୁ ମାତ୍ରାଧିକ ପ୍ରୋତ୍ସାହନ ଦେଉଛନ୍ତି ଓ ଏହାଦ୍ୱାରା ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଏସିଆରେ ପ୍ରବେଶ ପଥ ସଫାକରି ଦେଇଛନ୍ତି । ସାମଗ୍ରିକ ଅଭିବୃଦ୍ଧି, ପ୍ରଗତି ଏବଂ ସମତା ବଦଳରେ ଆର୍ଥିକ ଅସ୍ଥିରତା, ଦାରିଦ୍ର୍ୟ ଓ ଅସମାନତାର ସ୍ତର ବଢ଼ିଛି ସବୁଆଡେ । ଲୋକେ ଏକଥା ଅଙ୍ଗେ ଲିଭାଉଛନ୍ତି । କେଉଁଠି କେଉଁଠି ପ୍ରତିବାଦର ସ୍ୱର ଉତ୍ତୋଳିତ ହୋଇଛି ସତ କିନ୍ତୁ ସାଧାରଣ ଲୋକେ ଏ ଦୁଃଖଦ ପରିସ୍ଥିତିକୁ ମୁଣ୍ଡପାତି ସହିଛନ୍ତି । ରାଜନୈତିକ କ୍ଷେତ୍ରରେ ମଧ୍ୟ ସ୍ୱେଚ୍ଛାଚାରୀ ଏକଚ୍ଛତ୍ରବାଦୀ ଶାସନ ଓ ନେତୃତ୍ୱ ମୁଣ୍ଡ ଟେକିଛି । ଗଣତାନ୍ତ୍ରିକ ଶାସନ ପ୍ରଣାଳୀ ମାନ୍ୟତା ହରାଇ ବସିଛି । ବହୁଦେଶରେ ମିଲିଟାରୀ ହିଁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ସବୁ ନିୟନ୍ତ୍ରଣ କରୁଛି ।

**ଜଗତୀକରଣ ଓ ସଂଗ୍ରାମରତ ମଣିଷ**

ଏସିଆ ମହାଦେଶରୁ ଯେଉଁ କେତେ ଜଣ ବୁଦ୍ଧିଜୀବୀ ଓ ପ୍ରତ୍ୟକ୍ଷ ଭାବେ ଅନୁଭବି ମଣିଷ ଜଗତୀକରଣ ବିରୁଦ୍ଧରେ ଅବିରତ ସଂଗ୍ରାମ କରି ଆସୁଛନ୍ତି ସେମାନଙ୍କ ଭିତରେ ଅଛନ୍ତି ଡ଼କ୍ଟର ୱାଲଡ଼େନ୍ ବେଲୋ । ତାଙ୍କର ଜଗତୀକରଣ ବିରୁଦ୍ଧରେ ସଂଗ୍ରାମ ପାଇଁ ସ୍ୱୀଡ଼େନ୍‌ରୁ ୨୦୦୩ ମସିହାରେ ରାଇଟ୍ ଲାଇଭ୍‌ଲିହୁଡ ଆୱାର୍ଡ ବା ବିକଳ୍ପ ନୋବେଲ ପୁରସ୍କାର ମଧ୍ୟ ମିଳିଛି । ତାଙ୍କର ପ୍ରବନ୍ଧ, ଭାଷଣ ଓ ଚିନ୍ତାଧାରା ସବୁଆଡ଼େ ଆଦୃତ ହୋଇଛି । ଜଗତୀକରଣ ପ୍ରକ୍ରିୟାର ଯେଉଁ ବିଷମଞ୍ଜି ଏସିଆର ବିଭିନ୍ନ ପ୍ରାନ୍ତରେ ପୋତା ଯାଉଛି ତାହାକୁ ମୂଳୋତ୍ପାଟନ କରିବାର ଲକ୍ଷ୍ୟ ରଖିଛନ୍ତି ଡ଼କ୍ଟର ବେଲୋ । ଡ଼କ୍ଟର ବେଲୋଙ୍କ ଭାଷଣ ମୁଁ କେତେଥର ଶୁଣିବାକୁ ସୁଯୋଗ ପାଇଛି । ତାଙ୍କର ବିଶ୍ଳେଷଣ ଓ ତର୍କ ମୋତେ ଆଣି ଦେଇଛି ବୌଦ୍ଧିକ ସ୍ପଷ୍ଟତା । ତାଙ୍କର ଜୀବନ କାହାଣୀ ଓ ଲେଖନୀ ମୋତେ ଅନେକ ଉତ୍ସାହ ଦେଇଛି, କାଶୀପୁର ଠାରୁ କସ୍‌ମସ୍ ପର୍ଯ୍ୟନ୍ତ ବୁଝିବାକୁ ଓ ଅନୁସନ୍ଧାନ କରିବାକୁ ।

ଡକ୍ଟର ୱାଲଡ଼େନ୍ ବେଲୋଙ୍କ ଜନ୍ମ ଫିଲିପାଇନ୍‌ସରେ, ଉଚ୍ଚ ଶିକ୍ଷା ଆମେରିକାରେ ଓ ଗବେଷଣା ଚିଲି ଦେଶରେ । ବାପା ଥୋରୋଙ୍କ 'ୱାଲେଡ଼ନ' ବହି ପଢି ତାଙ୍କର ନାମ ଦେଇଥିଲେ । ସତୁରୀ ଦଶକରେ ଆମେରିକାର ଭିଏତନାମ୍ ଯୁଦ୍ଧ ବିରୋଧୀ ଛାତ୍ର ଆନ୍ଦୋଳନ ତାଙ୍କର ରାଜନୈତିକ ଅନୁସନ୍ଧିତ୍ସାରେ ଗତି ଆଣି ଦେଇଛି । ସତୁରୀ ଦଶକର ପ୍ରାରମ୍ଭରେ ଫିଲିପାଇନ୍‌ସରେ ଫର୍ଡ଼ିନାଣ୍ଡ ମାର୍କସ୍‌ଙ୍କ ଅତ୍ୟାଚାରୀ ଶାସନ ଚାଲିଥାଏ । ଏଥିରେ ସେଠାକାର ଜନତା ଖୁବ କଷ୍ଟପାଉ ଥାଆନ୍ତି । ଏହା ବିରୋଧରେ ଫିଲିପାଇନ୍‌ସରୁ ଆସିଥିବା ବୁଦ୍ଧିଜୀବୀଙ୍କୁ ନେଇ ଏକ ସଂଗଠନ ଗଢ଼ି ଉଠିଥିଲା, ଯେଉଁ ଥିରେ ଡ଼କ୍ଟର ବେଲୋ ସାମିଲ୍ ହୋଇଥିଲେ । ୧୯୭୩ ମସିହାରେ ଶାସନ ଗାଦିରେ ତିଷ୍ଠି ରହିବାକୁ ରାଷ୍ଟ୍ରପତି ଫର୍ଡ଼ିନାଣ୍ଡ ମାର୍କସ ସାମରିକ ଶାସନ ଲାଗୁ କରିଥିଲେ । ଏହାର ପ୍ରତିବାଦରେ ଆମେରିକାରେ ଥିବା ସଚେତନ ଫିଲିପାଇନ୍‌ବାସୀମାନେ ଯେଉଁ ସଂଗଠନ ଗଢ଼ିଥିଲେ ତାହା ବେଶ୍ ସକ୍ରୀୟ ହୋଇଥିଲା ଓ ଫିଲିପାଇନ୍‌ସ କମ୍ୟୁନିଷ୍ଟ ପାର୍ଟି ନାମରେ ନାମିତ ହୋଇଥିଲା । ଏଥିରେ ସଦସ୍ୟ ହୋଇଥିବା ହେତୁ ଡ଼କ୍ଟର ବେଲୋଙ୍କୁ ଫିଲିପାଇନ୍‌ସ ଫେରିବା ସମ୍ଭବ ହୋଇନଥିଲା । ତାଙ୍କର ପାସପୋର୍ଟ ଜବତ୍ ମଧ୍ୟ ହୋଇଥିଲା । ଆମେରିକାର ବଞ୍ଚି ରହିବା ପାଇଁ ଯେ ଆମେରିକାର ବିଭିନ୍ନ କଲେଜ ଓ ବିଶ୍ୱ ବିଦ୍ୟାଳୟରେ ଅଧ୍ୟାପନା କରିଥିଲେ । ଫିଲିପାଇନ୍‌ସର ଆର୍ଥିକ ବ୍ୟବସ୍ଥା ଉପରେ ଗବେଷଣା କରିବାକୁ ଆହ୍ୱାନ ଆସିଥିଲା । ସେ ଅର୍ଥନୀତିର ଛାତ୍ର ନଥିଲେ ତଥାପି ଫିଲିପାଇନ୍‌ସରେ

ବିଶ୍ୱବ୍ୟାଙ୍କ ଓ ଆମେରିକା ସରକାରଙ୍କ ପୁଞ୍ଜିନିବେଶକୁ ସମୀକ୍ଷା କିରବା ତାଙ୍କ ପାଇଁ ଜରୁରୀ ହୋଇପଡିଥିଲା । ସେ ଦେଶରେ ଏକ ଆଣବିକ ଶକ୍ତି କେନ୍ଦ୍ର ପ୍ରତିଷ୍ଠା ପାଇଁ ଆମେରିକା ସରକାର ସାହାଯ୍ୟ ଦେଇଥିଲେ ସତୁରୀ ଦଶକରେ କିନ୍ତୁ ଏହା ସହିତ ବିଶ୍ୱବ୍ୟାଙ୍କ ଓ ଅନ୍ୟ ବିଶ୍ୱ ଅନୁଦାନକାରୀ ସଂସ୍ଥାଙ୍କ ଋଣ ଯଥେଷ୍ଟ ପରିମାଣର ଆସିଥିଲା । ଯାହାର ବଳରେ ରାଷ୍ଟ୍ରପତି ମାର୍କସ୍ ବଳୀୟାନ ହୋଇ ଏକଛତ୍ରବାଦ ଶାସନ ଜାରି ରଖିଥିଲେ । ବିଶ୍ୱବ୍ୟାଙ୍କର ଚାପ ଫଳରେ ଫିଲିପାଇନ୍ସରେ ବଜାରୀକରଣ ଦ୍ରୁତଗତିରେ ପ୍ରସାରିତ ହୋଇଥିଲା । ସବୁ ଉପାଦନ ପ୍ରକ୍ରିୟା ବାହାରର ବଜାର ଓ ବେପାରକୁ ଭିତ୍ତିକରି ବଦଳି ଯାଇଥିଲା । ଆର୍ଥିକ ଅଧୋଗତି ଓ ପ୍ରଶାସନିକ ଅବ୍ୟବସ୍ଥା ଶେଷରେ ରାଷ୍ଟ୍ରପତି ମାର୍କସ୍‌ଙ୍କ ପତନର ମୁଖ୍ୟକାରଣ ହେଲା । ଏହାପରେ ଡ଼କ୍ଟର ବେଲୋ ଫିଲିପାଇନ୍ସ ଫେରିବାକୁ ସମର୍ଥ ହୋଇଥିଲେ । ଏସିଆର ବିକାଶ ଢ଼ାଞ୍ଚା, ବିଶ୍ୱ ବ୍ୟାଙ୍କ ଏବଂ ଶିଳ୍ପୋନ୍ନତ ଦେଶମାନଙ୍କର ଭୂମିକା ଉପରେ ଗବେଷଣା ବ୍ୟାପକ କରିବା ପାଇଁ ଏବଂ ଏସିଆବାସୀଙ୍କୁ ସଚେତନ କରିବା ପାଇଁ ଥାଇଲାଣ୍ଡର ବ୍ୟାଙ୍କକ୍ ଠାରେ କେତେଜଣ ସମଭାବାପନ୍ନ ବନ୍ଧୁଙ୍କୁ ନେଇ ସେ ଗଠନ କରି ଥିଲେ ଏକ ସଂସ୍ଥା ଯାହାର ନାମ ଥିଲା 'ଫୋକସ୍ ଅନ୍ ଗ୍ଲୋବାଲ୍ ସାଉଥ' ଯାହା ଆଜି ଜଗତୀକରଣ ବିରୁଦ୍ଧରେ ଗବେଷଣା ଓ ତର୍କ ଆଦି କରିବା ପାଇଁ ଉତ୍ସର୍ଗୀକୃତ ।

ଡ଼କ୍ଟର ୱାଲ୍‌ଡ଼େନ୍ ବେଲୋ ସାରା ପୃଥିବୀରେ ବିଶେଷ କରି ଦକ୍ଷିଣ ଦେଶମାନଙ୍କରେ ଜଗତୀକରଣ ଓ ଆନୁସଙ୍ଗିକ ପ୍ରକ୍ରିୟାକୁ ଅନୁସନ୍ଧାନ କରି କେତୋଟି ନିଛକ ସତ କଥା କହିଛନ୍ତି । ତାଙ୍କର ମତାମତ ହେଲା-

(କ) ବିକାଶଶୀଳ ଦେଶମାନେ ଟ୍ରୀମ୍‌ସ (ଏଗ୍ରିମେଣ୍ଟ ଅନ୍ ଟ୍ରେଡ୍ ରିଲେଟେଡ୍ ମେଜରସ୍) ଚୁକ୍ତିରେ ସ୍ୱାକ୍ଷର କରିବା ଦ୍ୱାରା ନିଜ ଦେଶରେ ଶିଳ୍ପ ବିକାଶ କ୍ଷେତ୍ରରେ ଘୋର ସମସ୍ୟା ସୃଷ୍ଟି କରିଛି । (ଖ) ବିକାଶଶୀଳ ଦେଶମାନେ ଟ୍ରୀପ୍‌ସର (ଏଗ୍ରିମେଣ୍ଟ ଅନ୍ ଟ୍ରେଡ୍ ରିଲେଟେଡ୍ ଇଣ୍ଟେଲେକ୍‌ଚୁଆଲ ପ୍ରୋପର୍ଟି ରାଇଟ୍) ସର୍ତ୍ତାବଳୀରେ ସହମତ ହେବାଦ୍ୱାରା ମାଇକ୍ରୋସଫଟ୍ ବା ମନ୍‌ସାଣ୍ଟୋ ଭଳି ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ନିଜର ବୌଦ୍ଧିକ ଅଧିକାର ବିକ୍ରୟ କରି ଦେଇଛନ୍ତି । (ଗ) ବିକାଶଶୀଳ ଦେଶମାନେ ଏ.ଓ.ଏ. (ଏଗ୍ରିମେଣ୍ଟ ଅନ୍ ଏଗ୍ରିକଲଚର) ଚୁକ୍ତିରେ ସ୍ୱାକ୍ଷର କରିବା ଦ୍ୱାରା ବିଶ୍ୱବଜାରର ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ହାତରେ କୃଷି ଓ ଖାଦ୍ୟ ଉତ୍ପାଦନକୁ ଟେକି ଦେଇ ନିଜର ଖାଦ୍ୟ ନିରାପତ୍ତା ବିପନ୍ନ କରୁଛନ୍ତି ।

(ଘ) ବିକାଶଶୀଳ ଦେଶମାନେ ବିଶ୍ୱ ବାଣିଜ୍ୟ ସଂଗଠନ ଗଠନ କରିବାରେ ସାହାଯ୍ୟକରି ମୁକ୍ତ ବାଣିଜ୍ୟ ଓ ବେପାରକୁ ସ୍ୱୀକାର କରିଛନ୍ତି । ଏହାଦ୍ୱାରା ନିଜର ସାର୍ବଭୌମତ୍ୱ ଓ ଗଣତାନ୍ତ୍ରିକ ଅଧିକାର ହଜାଇବା ସଙ୍ଗେ ସଙ୍ଗେ ବଜାରୀକରଣ ଆଗରେ ନିଜ ଦେଶର ବିକାଶ ଓ ପରିବେଶ, ନ୍ୟାୟ ଓ ସାମ୍ୟ, ସମାଜ ଓ ସାମାଜିକ ମୂଲ୍ୟବୋଧକୁ ଜଳାଞ୍ଜଳି ଦେଇଛନ୍ତି । ଏହାଛଡ଼ା ବିକଶିତ ରାଷ୍ଟ୍ର ଓ ବହୁରାଷ୍ଟ୍ରୀୟ କମ୍ପାନୀମାନେ ସେମାନଙ୍କର ସ୍ୱାର୍ଥକୁ ସମସ୍ତଙ୍କ ଉପରେ ଲଦି ଦେଇଛନ୍ତି ଓ ଏମାନଙ୍କ ସଂଖ୍ୟାଲଘୁ ମତକୁ ବହୁମତରେ ପରିଣତ କରିବାକୁ ଚାପ ପ୍ରୟୋଗ କରିଛନ୍ତି । ଡ଼ବ୍ଲୁ.ଟି.ଓ. (WTO) ଆଜି ପୃଥିବୀର ବହୁଭାଗ ଲୋକଙ୍କ ଜୀବନ ଜୀବିକା ପାଇଁ ଅନିଶ୍ଚିତତାର ବିପଦ ସୃଷ୍ଟି କରିଛି । ଯେଉଁ ବିଶ୍ୱ ଅନୁଷ୍ଠାନମାନେ କର୍ପୋରେଟ୍‌ମାନଙ୍କ ଅଙ୍ଗୁଳି ଇଙ୍ଗିତରେ ପରିଚାଳିତ, ସେ ଅନୁଷ୍ଠାନମାନଙ୍କୁ ଆମେ ବଞ୍ଚେଇ ରଖିବାକୁ ଢାଞ୍ଚାଗତ ପରିବର୍ତ୍ତନ କରିବା କି ନାହିଁ ଏହା ଡ଼କ୍ଟର ବେଲୋ ତାଙ୍କର ପ୍ରବନ୍ଧ ଓ ବକ୍ତୃତା ଜରିଆରେ ପଚାରିଛନ୍ତି । ଆନ୍ତର୍ଜାତିକ ମୁଦ୍ରାକୋଷ ବା ଆଇ.ଏମ୍.ଏଫ୍ (IMF) ସତରେ କ'ଣ ଏ ପୃଥିବୀରେ ଆର୍ଥିକ ସ୍ଥିରତା ଓ ସ୍ୱଚ୍ଛଳତା ଆଣି ପାରିବ ? ବିଶ୍ୱବ୍ୟାଙ୍କ କ'ଣ ସତରେ ଏ ପୃଥିବୀର ଦାରିଦ୍ର୍ୟ ଦୂର କରିପାରିବ ? ବିଶ୍ୱ ବାଣିଜ୍ୟ ସଂଗଠନ କ'ଣ ସତରେ ନ୍ୟାୟୋଚିତ ବାଣିଜ୍ୟ ବଜାର ପ୍ରତିଷ୍ଠା କରିପାରିବ ? ଏ ପୃଥିବୀବାସୀଙ୍କ ଅଗଣିତ ସମସ୍ୟା ସମାଧାନ କରିବାରେ ଏ ସଂଗଠନଗୁଡ଼ିକୁ ସଜାଡ଼ି ହେବ କି ? ଏଗୁଡ଼ିକର ସଂସ୍କାର ଲାଭଦାୟକ ହେବ କି ? ଡ଼କ୍ଟର ବେଲୋଙ୍କ ମତ ହେଲା ଯେ ଏ ସଂସ୍ଥାମାନଙ୍କର ସଂସ୍କାର ଆଣିଲେ କିଛି ଲାଭ ହେବନାହିଁ । ବରଂ ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାକୋଷ ଓ ବିଶ୍ୱ ବାଣିଜ୍ୟ ସଂଗଠନ ତଥା ବିଭିନ୍ନ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ପଙ୍ଗୁ ଓ ଅଥର୍ବ କରିବା ଯଥାର୍ଥ ହେବ । ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ମୂଳୋତ୍ପାଟନ ହେଲେ ସାଧାରଣ ମଣିଷ ଓ ସର୍ବୋପରି ସେମାନଙ୍କର ସମାଜ ଓ ପରିବେଶ ପ୍ରତି ଯେଉଁ ଆଶଙ୍କା ସୃଷ୍ଟି ହୋଇଛି ତାହା ଦୂର ହୋଇପାରିବ । ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ପତନ ହେଲେ କେତେ ଯେ ସମାଜ ଓ ଦେଶ ବଞ୍ଚି ରହିବେ ତାହାର ଉଦାହରଣ ଡ଼କ୍ଟର ବେଲୋ ଦେଇଛନ୍ତି । ସେ କହନ୍ତି ଯେ ମନ୍‌ସାଣ୍ଟୋ ଓ ନୋଭାର୍ଟିସ ଭଳି କମ୍ପାନୀମାନଙ୍କର ବିଲୟ ହେଲେ ଏ ପୃଥିବୀର କୃଷି, ବିହନ ଓ ଜୈବ ବିବିଧତା ରକ୍ଷା ପାଇଯିବେ । ସେଲ୍ ପେଟ୍ରୋଲିୟମ ତୈଳ କମ୍ପାନୀଙ୍କ ଆକ୍ରମଣରୁ ଓଗୋନୀ ନାମକ ଆଫ୍ରିକୀୟ ଆଦିବାସୀ ସେମାନଙ୍କର ସ୍ଥାନ,

କାଳ, ପାତ୍ରକୁ ରକ୍ଷା କରିପାରିବେ । ରିଓ ଟିଣ୍ଟୋଭଳି ମାଇନିଂ କମ୍ପାନୀମାନେ ଯେଉଁଭଳି ନଦୀ, ମାଟି, ପବନ ଓ ପରିବେଶକୁ ପ୍ରଦୂଷିତ କରୁଛନ୍ତି ସେମାନଙ୍କ ଦାଉରୁ ଏ ପୃଥିବୀ ରକ୍ଷା ପାଇଯିବ । ମିତ୍‌ସୁବିଶି ଭଳି କମ୍ପାନୀମାନେ ଲାଭ ପାଇଁ ଯେଉଁ ସବୁ ସାମଗ୍ରୀ ଉତ୍ପାଦନ କରୁଛନ୍ତି ତାହା ସବୁ ମଣିଷ ସମାଜର ନିରାପତ୍ତା ବିପନ୍ନ ହେଉଛି ଓ ଏଗୁଡିକ ବନ୍ଦ ହୋଇଗଲେ ଏ ସଭ୍ୟତା ହିଁ ବିପଦମୁକ୍ତ ହୋଇ ତିଷ୍ଠି ପାରିବ । ଜୀବନ ଜୀବିକାରୁ ବଞ୍ଚିତ ହୋଇ ଅଥବା ବାସଚ୍ୟୁତ ହୋଇ ମୃତ୍ୟୁମୁଖରେ ପଡୁଥିବା ଲକ୍ଷଲକ୍ଷ ପୃଥିବୀବାସୀ ସହଜରେ ଆପଣାର ଅସ୍ତିତ୍ୱ ବଜାୟ ରଖି ପାରିବେ ଯଦି ବହୁରାଷ୍ଟ୍ରୀୟ କମ୍ପାନୀ ଓ ସେମାନଙ୍କର ସାମ୍ରାଜ୍ୟକୁ ଆମୂଳଚୂଳ ଧ୍ୱଂସ କରିଦିଆଯାଏ । ଜଗତୀକରଣ ପ୍ରକ୍ରିୟାରେ ଜାତୀୟ ରାଷ୍ଟ୍ର ବିଲୁପ୍ତ ଆଉ ହେବ ନାହିଁ । ଏ ପୃଥିବୀର ଅଗଣିତ ମଣିଷ ଆଉ ଦାସତ୍ୱ ଓ ଦାରିଦ୍ର୍ୟର ଶୃଙ୍ଖଳରେ ବାନ୍ଧି ହେବ ନାହିଁ । ଏ ପୃଥିବୀରେ ନ୍ୟାୟ ଓ ସାମ୍ୟ ପ୍ରତିଷ୍ଠା ପାଇଁ, ଗଣତନ୍ତ୍ର ଓ ଶାନ୍ତି ବ୍ୟବସ୍ଥା ପାଇଁ, ମଣିଷ ଓ ପରିବେଶ ଭିତରେ ସନ୍ତୁଳନ ବଜାୟ ରଖିବା ପାଇଁ ବହୁରାଷ୍ଟ୍ରୀୟମାନଙ୍କର ସମ୍ପୂର୍ଣ୍ଣ କ୍ଷମତାହୀନ ସ୍ଥିତି ଓ ବିଲୟ ନିତାନ୍ତ ଆବଶ୍ୟକ ।

ଡ଼କ୍ଟର ଓ୍ୱାଲଡେନ୍ ବେଲୋଙ୍କ ଦୃଢ଼ମତ ହେଲା ଜଗତୀକରଣ ପ୍ରକ୍ରିୟାର ମୁକାବିଲା କେବଳ ବିଜଗତୀକରଣ ପ୍ରକ୍ରିୟା ଦ୍ୱାରା କରାଯାଇ ପାରିବ । ଅର୍ଥାତ୍ ଗ୍ଲୋବାଲାଇଜେସନ୍‌କୁ (Globalization) ପ୍ରତିହତ କରିବା ପାଇଁ ଡ଼ିଗ୍ଲୋବାଲାଇଜେସନ୍ (Deglobalization) ର ଆବଶ୍ୟକତା ଆଜି ସବୁକ୍ଷେତ୍ରରେ ସୃଷ୍ଟି ହୋଇଛି । କିନ୍ତୁ ଏ ବିଜଗତୀକରଣ (ଡ଼ିଗ୍ଲୋବାଲାଇଜେସନ୍)ର ଅର୍ଥ ଓ ତାତ୍ତ୍ୱିକ ବ୍ୟାଖ୍ୟା କ'ଣ ? ଏହାର ରୂପରେଖ ସ୍ପଷ୍ଟ କି ? ଡ଼କ୍ଟର ବେଲୋ କିନ୍ତୁ ଏକ ଚମତ୍କାର ବିଶ୍ଳେଷଣ ଏସୀୟବାସୀଙ୍କ ହିତ ପାଇଁ ଦେଇଛନ୍ତି । ସେଗୁଡିକ ନିମ୍ନରେ ଦିଆଗଲା ।

୧) ବିଦେଶୀ ପୁଞ୍ଜି ଏବଂ ବିଦେଶୀ ବଜାର ଉପରେ ନିର୍ଭର ନକରି ପ୍ରତ୍ୟେକ ଦେଶର ଆର୍ଥିକ ସମ୍ବଳ ଓ ବିକାଶଧାରା ସ୍ୱଦେଶୀ ହେଉ । (୨) ଆୟର ପୁର୍ନବଣ୍ଟନ ଏବଂ ଜମିର ପୁର୍ନବଣ୍ଟନ ପ୍ରକ୍ରିୟା ତ୍ୱରାନ୍ୱିତ କରି ସବୁଦେଶ ନିଜର ଆର୍ଥିକ ବ୍ୟବସ୍ଥା ଓ ବଜାର ବ୍ୟବସ୍ଥାକୁ ଦୃଢ଼ କରନ୍ତୁ । (୩) ଅଭିବୃଦ୍ଧି ଦ୍ୱାରା ପ୍ରେରିତ ବିକାଶର ରାସ୍ତା ପରିହାର କରି, ତଥା ସାମ୍ୟ ପ୍ରତି ସମ୍ବେଦନଶୀଳ ହୋଇ ପାରିବେଶିକ ସନ୍ତୁଳନ ରକ୍ଷା କରନ୍ତୁ । (୪) ବଜାର, ବାଣିଜ୍ୟ ତଥା ବେପାରଆଦି ନିଷ୍ପତ୍ତି ଦ୍ୱାରା

ପରିଚାଳିତ ନହୋଇ ଗଣତାନ୍ତ୍ରିକ ଓ ସହଭାଗିତାର ପ୍ରକ୍ରିୟାରେ ସମସ୍ତେ ଆସ୍ଥା ରଖନ୍ତୁ । (୫) ଘରୋଇ ପୁଞ୍ଜିପତି ଓ ରାଷ୍ଟ୍ର ଆଦିଙ୍କୁ ନାଗରିକ ସମାଜ ତଦାରଖ କରୁ ଏବଂ ସେମାନଙ୍କର ଭୂମିକାର ମୂଲ୍ୟାୟନ ପ୍ରକ୍ରିୟା ଲୋକାଭିମୁଖୀ ହେଉ । (୬) ବହୁରାଷ୍ଟ୍ରୀୟ କମ୍ପାନୀ ବଦଳରେ କୋଅପରେଟିଭ୍, ଛୋଟଛୋଟ ଘରୋଇ ଉଦ୍ୟୋଗ ଓ ସରକାରୀ ଉଦ୍ୟୋଗ ଉତ୍ପାଦନ ବ୍ୟବସ୍ଥାରେ ମୁଖ୍ୟ ଭୂମିକା ଗ୍ରହଣ କରନ୍ତୁ । (୭) ସମାଜ ଓ ସ୍ଥାନୀୟ ହିତକୁ ଆଖିରେ ରଖି ସାମଗ୍ରିକ ଉତ୍ପାଦନ ବ୍ୟବସ୍ଥାକୁ ସ୍ଥାନୀୟ ଓ ଜାତୀୟସ୍ତରରେ ପରିଚାଳିତ କରାଯାଉ ।

ବିଜଗତୀକରଣ ପ୍ରକ୍ରିୟା କେବଳ ସଫଳ ହେବ ଯେତେବେଳେ ବିଶ୍ୱ ଆର୍ଥିକ ବ୍ୟବସ୍ଥାରେ ମୌଳିକ ପରିବର୍ତ୍ତନ ଆସିବ । ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାକୋଷ ଓ ବିଶ୍ୱବାଣିଜ୍ୟ ପ୍ରତିଷ୍ଠାନ ଆଦି ସଂଗଠନ ଗୁଡିକ ଆଜି ଯେଉଁଭଳି ନିର୍ଲ୍ଲଜ ଭାବେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ସେବାରେ ନିୟୋଜିତ ହୋଇଛନ୍ତି ଓ ସେମାନଙ୍କର ଲାଭ ପାଇଁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ପୁଞ୍ଜିନିବେଶ କରୁଛନ୍ତି, ଅବିଳମ୍ବେ ତାହାର ପରିସମାପ୍ତି ଘଟୁ । ଡ଼କ୍ଟର ବେଲୋ କୁହନ୍ତି ଯେ ଆଜିର ଏ ପୃଥିବୀରେ କେନ୍ଦ୍ରୀକୃତ ବିଶ୍ୱ ଅନୁଷ୍ଠାନ ବଦଳରେ ବିକେନ୍ଦ୍ରୀକୃତ ଅନୁଷ୍ଠାନ ଓ କ୍ଷମତାସମ୍ପନ୍ନ ବହୁମୁଖୀ ବ୍ୟବସ୍ଥାର ପ୍ରଚଣ୍ଡ ଆବଶ୍ୟକତା ରହିଛି । ଏହା ସମ୍ପୂର୍ଣ୍ଣ ନୂଆ ତତ୍ତ୍ୱ ନୁହେଁ । କେତେକ ଲାଟିନ ଆମେରିକା ଓ ଏସିଆର ଦେଶରେ ଏହା ସଫଳ ଭାବେ ପରୀକ୍ଷା କରାଯାଇଛି ୧୯୫୦ରୁ ୧୯୭୦ ମସିହା ଭିତରେ । ଗ୍ୟାଟ୍ ବ୍ୟବସ୍ଥା ଅନ୍ତର୍ଗତ ସୀମିତ କ୍ଷମତାର ପରିଧି ଭିତରେ ଏହା ମଧ୍ୟ ସମ୍ଭବ ହୋଇଛି ଓ କେତୋଟି ଦେଶରେ ଶିଳ୍ପ ଗଢ଼ି ଉଠିଛି । ପୂର୍ବ ଏବଂ ଦକ୍ଷିଣ ପୂର୍ବ ଏସିଆର ଦେଶମାନଙ୍କରେ ଏହାର ଉଦାହରଣ ମଧ୍ୟ ରହିଛି । ବିଶ୍ୱ ବାଣିଜ୍ୟ ସଂଗଠନ ଗଠିତ ହେବା ପୂର୍ବରୁ ଏଦେଶରେ ଶିଳ୍ପ ବିକାଶ ଓ ସାମାଜିକ ବିକାଶ ରାଷ୍ଟ୍ରର ସହାୟତାରେ ସମ୍ଭବ ହୋଇଛି । ଏହାକୁ ଆଧାର କରି ଆନ୍ତର୍ଜାତିକ ଶ୍ରମ ସଂଗଠନ, ଇୟୁରୋପିଆନ୍ ଇୟୁନିୟନ୍, ଦକ୍ଷିଣ ଆମେରିକାର ମେର୍କୋସର ସଂଗଠନ, ଦକ୍ଷିଣ ଏସିଆର ସାର୍କ ସଂଗଠନ, ଦକ୍ଷିଣ ଆଫ୍ରିକାର ସାଡ଼କ ସଂଗଠନ ଏବଂ ଦକ୍ଷିଣ ପୂର୍ବ ଏସିଆର ଏସିଆନ୍ ସଂଗଠନ ଏବେ ମଧ୍ୟ କୌଣସି ନା କୌଣସି ବାଟରେ କର୍ପୋରେଟ୍ ଦ୍ୱାରା ପରିଚାଳିତ ଜଗତୀକରଣକୁ ବିରୋଧ କରୁଛନ୍ତି । ଏହା ପାଠକମାନେ ଜାଣନ୍ତି କି ? ❑

# ଜଗତୀକରଣ ଓ ଗାନ୍ଧୀଜୀଙ୍କ 'ହିନ୍ଦ୍ ସ୍ୱରାଜ୍'

## (୧)

ଗତ ଚାଳିଶ ସପ୍ତାହରୁ ଊର୍ଦ୍ଧ୍ୱ ସମୟ ଧରି ଏହି ସାପ୍ତାହିକ ସ୍ତମ୍ଭରେ ମୁଁ ଜଗତୀକରଣ ଓ ତାହାର କ୍ରିୟା ପ୍ରକ୍ରିୟା, ସୁପ୍ରଭାବ ଓ କୁପ୍ରଭାବ, ସୃଷ୍ଟି ଓ ବିଳୟ ଉପରେ ମତାମତ ଦେଉଥିବାର ଦେଖି କେତେକ ବନ୍ଧୁ ମୋର ପରିଶ୍ରମ ବୃଥା ହେଉଛି ବୋଲି କହୁଛନ୍ତି । ସେମାନଙ୍କର ବିଶ୍ୱାସ ଜଗତୀକରଣ ସମସ୍ତଙ୍କ ଭଲ ପାଇଁ ଆସିଛି ଓ ଏହାକୁ ସ୍ୱାଗତ କରିବା ଆବଶ୍ୟକ । ମୋର ବିରୁଦ୍ଧାଭାସ ଏକ ବୌଦ୍ଧିକ ବିଳାସ ଓ ମୋର ପ୍ରୟାସ ଅପ୍ରାସଙ୍ଗିକ ବୋଲି ସେମାନେ ବକ୍ତବ୍ୟ ପ୍ରଦାନ କରୁଛନ୍ତି । ଜଗତୀକରଣ ସତରେ କ'ଣ ସାଧାରଣ ମଣିଷଙ୍କ ହିତ ପାଇଁ ଆସିଛି ? ମୁଁ ଜଗତୀକରଣର ସମସ୍ତ ରହସ୍ୟ ଉଦ୍‌ଘାଟନ କରିବାକୁ ଚାହୁଁଛି ଓ ଏ ବହୁରୂପୀ ଦାନବର ବିଲୁପ୍ତି ପାଇଁ ଯତ୍‌କିଞ୍ଚିତ ଚେଷ୍ଟା କରୁଛି । କାରଣ ମୁଁ ଜାଣିଛି ଯେ ସାଧାରଣ ଗରିବ ଓ ଅସହାୟ ମଣିଷମାନଙ୍କୁ ଗୋଲାମ କରି ଶୋଷଣ କରିବା ଓ ଆବଶ୍ୟକ ପଡିଲେ ତିଳତିଳ କରି ହତ୍ୟା କରିବାକୁ ଜଗତୀକରଣ ଓ ତାହାର ପୃଷ୍ଠପୋଷକମାନେ ଏକ ବିସ୍ତୃତ ଯୋଜନା କରିଛନ୍ତି । କିନ୍ତୁ ଏ ଯୋଜନା ସଫଳ ହେବନାହିଁ । ଏବେ କେଉଁଠିନା କେଉଁଠି ଜଗତୀକରଣକୁ କାୟ ମନ ଓ ବାକ୍ୟରେ ସଫଳତାର ସହ ପ୍ରତିରୋଧ କରାଯାଇଛି ଓ କେତେକ ବୁଦ୍ଧିଜୀବୀ ଓ ଜଗତୀକରଣ ସପକ୍ଷବାଦୀମାନେ ମଧ୍ୟ ଜଗତୀକରଣର ପରାଜୟ କଥା ସ୍ୱୀକାର କରିବା ଆରମ୍ଭ କରିଛନ୍ତି । ମୁଁ ଭାବୁଛି ଜଗତୀକରଣକୁ ଏକ ମତବାଦ ହିସାବରେ ଗ୍ରହଣ କରି ପ୍ରତିରୋଧ କରିବା ସାର୍ବଜନୀନ ହୋଇପାରିନାହିଁ । ବିକଳ୍ପ ଚିନ୍ତା ଓ ପରିକଳ୍ପନା ଲାଗି ରହିଛି ଅବଶ୍ୟ । ସେ ବିକଳ୍ପ ଚିନ୍ତାଧାରା ଓ ବୌଦ୍ଧିକ ବିଶ୍ଳେଷଣ ଏବେ ବିଭିନ୍ନ ପରିସରରେ ପୃଥିବୀସାରା ଜୋର୍‌ସୋର୍‌ରେ ଚାଲିଛି ଓ ଅନେକଙ୍କୁ ଆକର୍ଷଣ କରୁଛି । ଏଇ ସ୍ତମ୍ଭରେ ବି ଜଗତୀକରଣ ପ୍ରକ୍ରିୟା ଉପରେ ମୁଁ ଆଲୋକପାତ କରିଥିଲି । ଜଗତୀକରଣର ବିପରୀତ ଧର୍ମୀ ଚିନ୍ତନ ହେଲା ସ୍ଥାନୀୟକରଣ ବା ଲୋକାଲାଇଜେସନ୍ । ତୃଣମୂଳ ସ୍ତରରେ ଏଇ ସ୍ଥାନୀୟକରଣ ପ୍ରକ୍ରିୟାର ପରିସର ବଢ଼ିବାରେ ଲାଗିଛି । ଜଗତୀକରଣର ମୂଳ ହେଉଛି ପୁଞ୍ଜିବାଦ, ଉପନିବେଶବାଦ ଓ ଗଳାକଟା ବଜାରୀକରଣ ।

ସ୍ଥାନୀୟକରଣର ମୂଳ ହେଉଛି ମାନବବାଦ ସହ ବିକାଶ ଓ ଅହିଂସ ସହାବସ୍ଥାନ । ଏହା ଏକ ମହାସମର, ସଭ୍ୟତାମାନଙ୍କ ଭିତରେ ଲଢ଼େଇ ଯାହାକୁ ହଣ୍ଟିଂଗଟନ୍ 'କ୍ଲାସ୍ ଅଫ ସିଭିଲାଇଜେସନ୍' ନାମରେ ଅଭିହିତ କରିଛନ୍ତି ।

ଯଦି ପୁଞ୍ଜିବାଦ ଓ ଉପନିବେଶବାଦ ହେଉଛି ଜଗତୀକରଣର ମୂଳମନ୍ତ୍ର, ତେବେ ଏହା ଗତ ନବେଦଶକରୁ ଆରମ୍ଭ ହୋଇଛି ବୋଲି କହିବା ଠିକ୍ ହେବନାହିଁ । ଏହା ଯେମିତି କେତେ ଶତାବ୍ଦୀ ଧରି ଚାଲି ଆସିଛି । ମଣିଷଙ୍କୁ ଗୋଲାମ ଓ କ୍ରୀତଦାସ କରିବାର ଇତିହାସ ଗତ କେତେବର୍ଷ ଭିତରେ ସୀମିତ ରହିନାହିଁ । ପ୍ରଫେସର୍ ଚମ୍‌ସ୍କି କହିଛନ୍ତି ଯେ କଲମ୍ବସ୍ ଆମେରିକାରେ ପାଦ ଦେବା ଦିନଠାରୁ ଜଗତୀକରଣ ଆରମ୍ଭ ହୋଇଛି ଏବଂ ଏହାକୁ ପାଞ୍ଚଶହ ବର୍ଷ ପୂରିଗଲାଣି । ସମ୍ଭବତଃ ଏହା ଠିକ୍ କଥା । କିନ୍ତୁ ଏକଥା ସତଯେ ସତୁରୀ ଦଶକରୁ ଏହା ଏକ ବିଶାଳକାୟ ଯନ୍ତ୍ରାରୂଢ଼ ଦାନବ ରୂପରେ ଆବିର୍ଭୂତ ହୋଇଛି । ହାତରେ ଅଛି ଏକ ନିର୍ଦ୍ଦିଷ୍ଟ ଆର୍ଥିକ ମତବାଦରୂପୀ ଅସ୍ତ୍ର । ଆଖିରେ ଜଳୁଛି ଲୋଭର ବହ୍ନିଶିଖା । ଚିତ୍କାର କରୁଛି 'ଘରୋଇକରଣ କର, ଘରୋଇକରଣ କର' ଏକ ନୂତନ ମହିଷାସୁର ଏ ପୃଥିବୀରେ ସଶରୀରେ ପଦାର୍ପଣ କରିଛି । ମହିଷାସୁର ବଧ ପାଇଁ ଯେମିତି ସବୁ ଶକ୍ତି ଏକାଠି କରିବା ପାଇଁ ଆହ୍ୱାନ ଆସିଛି । ଆହ୍ୱାନ ଆସିଛି ଏକ ଧର୍ମଯୁଦ୍ଧ ପାଇଁ, ଏକ ମୂଲ୍ୟବୋଧଭିତ୍ତିକ ବିଶ୍ୱ ମହାସମର ପାଇଁ । ଏ ପୃଥିବୀରେ କିଏ ଶାସନ କରିବ ? ସାଧାରଣ ମଣିଷ ଓ ସେମାନଙ୍କ ପରିକଳ୍ପିତ ମାନବବାଦୀ ବ୍ୟବସ୍ଥା ? ନା ବହୁରାଷ୍ଟ୍ରୀୟ କର୍ପୋରେସନ୍‌ମାନେ ?

ଆମ ଭାରତ ବର୍ଷରେ ଉଦାରୀକରଣ, ଘରୋଇକରଣ ଓ ଜଗତୀକରଣ ପ୍ରକ୍ରିୟା ଆରମ୍ଭ ହୋଇଛି ଯେଉଁ ଦିନଠାରୁ ଆମେ ଅତି ଅନାୟାସରେ ବ୍ରିଟିଶ ଶାସନ ପାଖରେ ଗୋଲାମ ହୋଇଗଲୁ ଓ ଏକ ଉପନିବେଶ ଭାବେ ବିଶ୍ୱ ଇତିହାସରେ ସ୍ଥାନ ପାଇଲୁ । ଧ୍ୱଂସ ହେଲା ଆମର ଆର୍ଥିକ ସ୍ୱାବଲମ୍ବନଶୀଳତା, ଧାର୍ମିକ ଓ ସାଂସ୍କୃତିକ ମୂଲ୍ୟବୋଧ, ଭାଷା ଓ ସାହିତ୍ୟ । ଆରମ୍ଭ ହେଲା ଯାନ୍ତ୍ରିକ ଓ ବୈଷୟିକ ଜ୍ଞାନ କୌଶଳରେ ସଜ୍ଜିତ ଏକ ବସ୍ତୁବାଦୀ ବ୍ୟବସ୍ଥା । ପରାହତ ହେଲା ଆମର ସ୍ୱାଧୀନତା ଓ ସ୍ୱତନ୍ତ୍ରତା । ଆମ ସମାଜ ଅତି ଅନାୟାସରେ ଦୁଇଭାଗ ହୋଇଗଲା । ଗୋଟିଏ ଭାଗ ହେଲେ ଗରିବ ଓ ଅବହେଳିତ ବର୍ଗ । ଅନ୍ୟଟି ହେଲେ ଉଚ୍ଚ ଓ ସୌଭାଗ୍ୟଶାଳୀ ବର୍ଗ ଯେଉଁମାନେ ବ୍ରିଟିଶ ବ୍ୟବସ୍ଥାର ସବୁ ରଙ୍ଗଢ଼ଙ୍ଗ, ଭାଷା, ସଂସ୍କୃତି ଓ ମୂଲ୍ୟବୋଧକୁ ଅଚିରେ ଓ

ଅନାୟାସରେ ନିଜର କରି ନେଲେ ଓ ନିଜର ପରିଚୟ ବଦଳେଇ ଦେଲେ । ଅତି ସରଳ ଭାଷାରେ କହିବାକୁ ଗଲେ ଦଳେ କଳା ସାହେବ୍‌ରେ ରୂପାନ୍ତରିତ ହୋଇଗଲେ ଓ ଗୋରାମାନଙ୍କୁ ସବୁ ଦିଗରୁ ଅନୁକରଣ କରିଲେ । ଇଂଲଣ୍ଡରେ ଦ୍ରୁତ ଶିଳ୍ପାୟନ ଆମ ଦେଶର ହସ୍ତକଳା ଓ ଶିଳ୍ପକୁ ମାରିଦେବା ଫଳରେ ଆମର ସାଧାରଣ ମଣିଷଙ୍କ ଜୀବନଜୀବିକା ଧ୍ୱଂସ ହୋଇଗଲା । ଆମର ଯାହାକିଛି ନିଜସ୍ୱ ଥିଲା ତାହାର ଘୋର ଅବକ୍ଷୟ ହେଲା । ଆମେ ଯେହେତୁ ଉପନିବେଶରେ ପରିଣତ ହେଲେ ଉପନିବେଶବାଦୀଙ୍କ ଯାହାକିଛି ସର୍ବସ୍ୱ ତାହା ଆମ ଉପରେ ଲଦି ଦିଆଗଲା । ଉପନିବେଶବାଦୀମାନେ ଆମ୍ଭମାନଙ୍କୁ ସଖୀ କଣ୍ଢେଇ କରି ନଚାଇଲେ ଓ ଆମେ ସମସ୍ତେ ସେଥିରେ ନାଚିବା ଶିଖିଲୁ । ସେମାନେ ଯେଉଁଭଳି ଶାସନ, ଶିକ୍ଷା ଓ ବିକାଶ ବ୍ୟବସ୍ଥା ଚାହିଁଲେ ଆମ ଉପରେ ଜୋର ଜବରଦସ୍ତ ପ୍ରୟୋଗ କରିଲେ । ଆମର ନ୍ୟାୟ ବ୍ୟବସ୍ଥାକୁ ଆକ୍ରମଣ କରିଲେ । ଆମର ପ୍ରାକୃତିକ ସମ୍ବଳକୁ ସେମାନଙ୍କ ଲାଭ ପାଇଁ ବିନିଯୋଗ କରିଲେ । ହିଂସା, ଦ୍ୱେଷ, ସାମାଜିକ ସଂଘର୍ଷକୁ ରାଜନୀତିରେ ଅନୁପ୍ରବେଶ କରାଇଲେ । ଆମକୁ ମନାଇବା ପାଇଁ ଓ ନିୟନ୍ତ୍ରଣ କରିବାକୁ ସୈନ୍ୟବାହିନୀ ଗଢ଼ିଲେ । ନିଜକୁ ସଂରକ୍ଷିତ କରିବାକୁ ଦୁର୍ଗମାନ ଗଢ଼ିବାରେ ଲାଗିଲେ । ଗୋରା ସାହେବମାନେ ଆମର କଳା ସାହେବମାନଙ୍କୁ କୋଳାଗ୍ରତ କରିଲେ ନାହିଁ ସତ, କିନ୍ତୁ ସେମାନଙ୍କୁ ସେମାନଙ୍କର ଆଧିପତ୍ୟ ଓ ସ୍ୱାତନ୍ତ୍ର୍ୟରୁ କିଛି ଅଂଶ ବାଣ୍ଟି ନିୟନ୍ତ୍ରଣ କରାଇଲେ । ଅସଲ କ୍ଷେତ୍ରରେ କଳା ସାହେବମାନେ ଏ ଦେଶର ବହୁଭାର୍ଗ ଲୋକଙ୍କ ଉପରେ ଅନ୍ୟାୟ ଓ ଅତ୍ୟାଚାରର ଏଜେଣ୍ଟ ହୋଇଗଲେ ।

ମୋର ଏସବୁ ଆଲୋଚନା କରିବାର ଉଦ୍ଦେଶ୍ୟ ଏହା ଯେ ସାମ୍ପ୍ରତିକ ବ୍ୟବସ୍ଥା ଭିତରେ ଜଗତୀକରଣ ଯେଉଁଭଳିଭାବେ ନିଜକୁ ପ୍ରତିଷ୍ଠା କରିଛି ଏଥିରେ ଉପନିବେଶବାଦର ପୁନଃପ୍ରତିଷ୍ଠା ମଧ୍ୟ ହୋଇଛି । ବ୍ରିଟିଶ୍ ଶାସନର ଢାଞ୍ଚା ଓ ବର୍ତ୍ତମାନର ଜଗତୀକରଣ ଢାଞ୍ଚାରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ଲକ୍ଷ୍ୟ ଓ ଉଦ୍ଦେଶ୍ୟ ହେଉଛି ଯେ କେବଳ ଲାଭ ପାଇଁ ସାଧାରଣ ମଣିଷଙ୍କୁ ବିଭିନ୍ନ ଉପାୟରେ ଶକ୍ତିହୀନ ଓ ଅକ୍ଷମ କରିଦେବା ଓ ସେମାନଙ୍କୁ ସେମାନଙ୍କର ଯାହାକିଛି ଆପଣାର ବୋଲି ବିଚାର ଯୋଗ୍ୟ ତାହାକୁ ଅପମାନ କରିବା । ଉପନିବେଶବାଦୀ ଚାହିଁଛି ସବୁକିଛି ନିୟନ୍ତ୍ରଣ କରିବା- ସାମାଜିକ, ଆର୍ଥିକ, ରାଜନୈତିକ ଓ ସାଂସ୍କୃତିକ ଅଭିବୃଦ୍ଧି । ଉପନିବେଶବାଦୀ ଚାହିଁଛି

ଯେ ତା' ଦୃଷ୍ଟିରେ ଯାହା ସୁନ୍ଦର ଓ ଯାହା ଯଥାର୍ଥ ତାହା ସମସ୍ତେ ମାନି ନିଅନ୍ତୁ । ଉପନିବେଶବାଦୀର ମତବାଦ ତା ପାଇଁ ଏ ପୃଥିବୀର ଶ୍ରେଷ୍ଠ ମତବାଦ । ତା'ର ସଭ୍ୟତା ଓ ସଂସ୍କୃତି ଏ ପୃଥିବୀର ଶେଷ ସଭ୍ୟତା ଓ ସଂସ୍କୃତି । ଜଗତୀକରଣ ପ୍ରକ୍ରିୟା ଏକ ନବଉପନିବେଶବାଦ ନୁହେଁ କି ? ପ୍ରତ୍ୟକ୍ଷ ଭାବେ ହେଉ ଅବା ପରୋକ୍ଷଭାବେ ହେଉ ଜଗତୀକରଣକୁ ସ୍ୱୀକାର କରିବା ଅର୍ଥ ନବ ଉପନିବଶେବାଦକୁ ସ୍ୱୀକାର କରିବା ଓ ଏହାପାଇଁ ଯାହାକିଛି ନିଜସ୍ୱ ଅଛି ତାହାକୁ ପରିହାର କରି ଏକ ବହିଃସଂସ୍କୃତି ଓ ସଭ୍ୟତାକୁ ମାନିନେବା । ଜଗତୀକରଣ ଚାହିଁଛି ଯେ ବଜାର ଓ ବାଣିଜ୍ୟ ଦୃଷ୍ଟିରୁ ଏ ପୃଥିବୀ ଗୋଟାଏ ଓ ସମସ୍ତେ ଏଥିରେ ସମାନ ପିନ୍ଧିବେ, ସମାନ ଖାଇବେ, ସମଭାବାପନ୍ନ ହେବେ । ଗୋଟିଏ ପ୍ରକାର ରାଜନୀତି ଓ ଅର୍ଥନୀତି ପ୍ରଚଳିତ ହେବ ଯାହା ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେବ । କ'ଣ ଠିକ୍ ଓ କ'ଣ ଭୁଲ ତାହା ବଜାର ସ୍ଥିର କରିବ । ସବୁକଥା ମେସିନ୍ ଦ୍ୱାରା ପରିଚାଳିତ ହେବ ଓ ମେସିନ୍ ଚଳାଉଥିବା ମଣିଷ ମଧ ମେସିନ୍ ହୋଇଯିବ । ଶିଳ୍ପ ଓ ଶିଳ୍ପାୟନ ମୁଖ୍ୟ ହୋଇଯିବ ଓ କୃଷି ଗୌଣ ହୋଇପଡ଼ିବ । ବିକାଶ ଓ ପରିବର୍ତ୍ତନ ଏକ ବ୍ୟବସାୟ ହୋଇଯିବ । ହିଂସା, ଘୃଣା, ବିଦ୍ୱେଷ, ଆତଙ୍କବାଦ ଓ ଏକଛତ୍ରବାଦ ଏ ପୃଥିବୀରେ ରାଜତ୍ୱ କରିବ । ତଥାକଥିତ ବିକଶିତ ମଣିଷ ଓ ପଛୁଆ ମଣିଷଙ୍କ ଭିତରେ ବ୍ୟବଧାନ ବଢ଼ିବ । ଜାତିଗତ ଓ ଧର୍ମଗତ ବୈଷମ୍ୟର ସୀମାରେଖା କଳ୍ପନାତୀତ ହେବ । ଛାଞ୍ଚରେ ପଡ଼ିଥିବା ମଣିଷମାନେ ନିଜର ଇତିହାସ, ସଂସ୍କୃତି, ଭାଷା, ସାହିତ୍ୟ, ସଙ୍ଗୀତମାନ ଭୁଲିଯାଇ, ବହୁରାଷ୍ଟ୍ରୀୟ କମ୍ପାନୀମାନେ ଆଣିଥିବା ଓ ବ୍ୟବସାୟଧର୍ମୀ ମୂଲ୍ୟବୋଧକୁ ସ୍ୱୀକାର କରିବେ । ଯେଉଁମାନେ ପ୍ରତିରୋଧ କରିବେ, ସେମାନେ ଧ୍ୱଂସ ପାଇଯିବେ ।

*ପାଠକଗଣ, ବନ୍ଧୁଗଣ !*

ମୁଁ କେତେଦିନରୁ ଯେମିତି କ'ଣ ଗୋଟାଏ ଖୋଜୁଛି ଓ କାହାର ଅନୁସନ୍ଧାନରେ ଅଛି । ସେଇଟି ସତରେ ମୋ ମନ ପ୍ରାଣର ଅନୁସନ୍ଧିତ୍ସା । ଏ ବିଶ୍ୱର ଯେଉଁଠି ଜଗତୀକରଣର ବିରୋଧାଭାସ ହୋଇଛି, ସେ ଯେ କୌଣସି ସ୍ଥାନ, କାଳ ଓ ପାତ୍ର ହୁଅନ୍ତୁ ନା କାହିଁକି, ମୁଁ ସେଇଠି ସମ୍ପର୍କ ବଢ଼ାଇବା ପାଇଁ ଚାହିଁଛି । ଏଇଥିପାଇଁ ପଢ଼ିଛି ପ୍ରଫେସର୍ ନୋଆମ୍ ଚମସ୍କି ଓ ଅରୁନ୍ଧତି ରାୟଙ୍କୁ । ବିଶେଷ କରି ଅର୍ଥନୀତିଜ୍ଞ ଜୋସେଫ ଷ୍ଟିଗ୍‌ଲିଜ୍ ଏବଂ ସ୍ତମ୍ଭକାର ନଓମୀ କ୍ଲାଇନ୍‌କୁ । ବାର୍ତ୍ତାଳାପ କରିଛି ବିଶ୍ୱ ସାମାଜିକ

ସଂଗଠନର ଆୟୋଜକମାନଙ୍କ ସମ୍ପର୍କରେ । ବ୍ରାଜିଲ, ଆଫ୍ରିକା, କେନିଆ ଓ ଥାଇଲାଣ୍ଡ ଭଳି ଦେଶକୁ ଯାଇ ବିଭିନ୍ନ ସାମାଜିକ ଆନ୍ଦୋଳନକୁ ବ୍ୟକ୍ତିଗତ ଭାବେ ବୁଝିବାକୁ ଚେଷ୍ଟା କରିଛି । ଜଗତୀକରଣକୁ ଯେଉଁଠି ଯେଉଁଠି ସଶସ୍ତ୍ର ବିରୋଧ କରାଯାଇଛି ତାହା ମଧ୍ୟ ମୁଁ ବୁଝିବାକୁ ଚେଷ୍ଟା କରିଛି । ଭାରତର ଅନେକ ସାମାଜିକ ଆନ୍ଦୋଳନ ସହ ସାମିଲ୍ ହୋଇଛି । ଏ ଅନୁସନ୍ଧାନରେ ମୁଁ ଯେତିକି ଗଭୀରକୁ ଯାଇଛି, ସେତିକି ମାନସିକ ସ୍ତରରେ ବିଭ୍ରାନ୍ତି ବଢ଼ିଛି । ଥଳକୂଳ ଯେମିତି ମିଳୁନାହିଁ । ଯେତେ ବିକଳ୍ପ ଚିନ୍ତନ କରାଯାଇଛି ଓ ବିକଳ୍ପ ସନ୍ଧାନ ପରୀକ୍ଷଣ କରାଯାଇଛି, ତାହା ଯେମିତି କେଉଁଠିନା କେଉଁଠି ଅସମ୍ପୂର୍ଣ୍ଣ ଓ ଅସ୍ଥାୟୀ ଜଣା ପଡିଛି । ଜଗତୀକରଣ ବିରୁଦ୍ଧରେ ଅନେକ ପ୍ରଶ୍ନ ଉଠିଛି, କିନ୍ତୁ ଉତ୍ତର ମିଳିନାହିଁ । ଜଗତୀକରଣ ଯେମିତି ଏକ ଭାଇରସ୍ ଯାହା ଆଜି ପର୍ଯ୍ୟନ୍ତ ଖାଲି ଆଖିରେ ଦେଖିହୋଇନାହିଁ କିନ୍ତୁ ରୋଗୀଙ୍କ ସଂଖ୍ୟା ବଢ଼ୁଛି ।

ଏବେ କିଛି ଦିନ ତଳେ ଜଣେ ବିଶିଷ୍ଟ ଗାନ୍ଧୀବାଦୀ ନେତା, କ୍ଷମତା ଓ ପ୍ରଶାସନ ଉପରେ ଏକ ବିସ୍ତୃତ ଏବଂ ଆବେଗମୟ ଆଲୋଚନା କରୁଥିଲେ । ସେ କହୁଥିଲେ ଯେ ଜଗତୀକରଣ ଓ ଉଦାରୀକରଣକୁ ଲଢ଼ିବାର ବାଟ ମହାତ୍ମାଗାନ୍ଧୀ ସ୍ପଷ୍ଟ ଦେଖାଇଛନ୍ତି ତାଙ୍କର ଐତିହାସିକ ବହି 'ହିନ୍ଦ୍ ସ୍ୱରାଜ୍'ରେ । ୧୯୦୯ ମସିହାରେ ଏ ବହି ଲେଖିଥିଲେ ଗାନ୍ଧୀଜୀ ଏକ ଜାହାଜରେ ବସି ଓ ସ୍ୱପ୍ନ ଦେଖୁଥିଲେ ଯଦି ଭାରତ ବ୍ରିଟିଶ ଶାସନଠାରୁ ସ୍ୱାଧୀନତା ଲାଭ କରେ, ତାହାହେଲେ ଆମର ପରିକଳ୍ପିତ ରାଷ୍ଟ୍ର ଓ ଶାସନ କେମିତି ହେବ ଓ ଏଥିରେ କେଉଁଭଳି ମୂଲ୍ୟବୋଧ ବିରାଜମାନ କରିବ । 'ହିନ୍ଦ୍ ସ୍ୱରାଜ' ବହିକୁ ମୁଁ ଆଗରୁ ପଢ଼ିଥିଲି ମାତ୍ର ତାହାର ଗୁରୁତ୍ୱ ଅନୁଭବ କରିନଥିଲି । ଜଗତୀକରଣ ପରିପ୍ରେକ୍ଷୀରେ ଏ କ୍ଷୁଦ୍ର ବହିଟି ଯେ ଏକ ଯୁଗାନ୍ତକାରୀ ଇସ୍ତାହାର ତାହା ଆତ୍ମବିଶ୍ୱାସର ସହିତ ବୁଝିବା ପାଇଁ ମୋତେ କେତେବାର ପଢ଼ିବାକୁ ହେବ ବୋଲି ମୁଁ ହୃଦୟଙ୍ଗମ କରିଛି । ପ୍ରାୟ ନବେ ବର୍ଷରୁ ଉର୍ଦ୍ଧ୍ୱ ଏ ଭିତରେ ବିତିଗଲାଣି ଏ ବହି ଲେଖାହୋଇ ପ୍ରକାଶିତ ହେବାରେ । ଆଲୋଚନା ଓ ସମାଲୋଚନା ବ୍ୟାପକ ହୋଇଛି । ବ୍ରିଟିଶ ସରକାର ଏହାକୁ ମଧ୍ୟ ଏକଦା ବେଆଇନ୍ ଘୋଷଣା କରିଥିଲେ । କିନ୍ତୁ ଏ ବହିଟି ଚିରନ୍ତନ ହୋଇ ରହିଛି । ଗାନ୍ଧୀଜୀଙ୍କ ଅନେକ ବହିଭିତରୁ ଏହା ସ୍ୱତନ୍ତ୍ର ବୋଲି ସ୍ପଷ୍ଟ ଅନୁଭବ କରି ହେଉଛି ।

ଆମର ପ୍ରିୟ ଗାନ୍ଧୀବାଦୀ ସମ୍ମାନୀୟା ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା 'ହିନ୍ଦ୍ ସ୍ୱରାଜ୍'ର ଓଡ଼ିଆ ଅନୁବାଦ କରିଛନ୍ତି । ତାଙ୍କର ଆତ୍ମଚରିତ 'ଅମୃତ ଅନୁଭବ'ଠାରୁ

ଏ କ୍ଷୁଦ୍ର ପୁସ୍ତିକାଟିକୁ ମୁଁ ଅଧିକ ଗୁରୁତ୍ୱ ଦେବି ଓ ଯଥେଷ୍ଟ ମନନର ସହ ପଢ଼ିବାକୁ ଆପଣମାନଙ୍କୁ ଅନୁରୋଧ କରିବି । ଏ ବହିଟି ସାମ୍ପ୍ରତିକ ପରିସ୍ଥିତିରେ କେତେ ମୂଲ୍ୟବାନ ତାହା ପଢ଼ିଲା ପରେ ଆପଣମାନେ ଜାଣିପାରିବେ । ଗାନ୍ଧୀବାଦ ଓ ଗାନ୍ଧୀଙ୍କ ଏକାନ୍ତ ନିଜସ୍ୱ ସ୍ୱପ୍ନ ଏ ବହିଟିରେ ସ୍ପଷ୍ଟ ଭାବରେ ପର୍ଯ୍ୟବେସିତ ହୋଇଛି ଏବଂ ଜଗତୀକରଣ ଭଳି ଶକ୍ତିଶାଳୀ ପ୍ରକ୍ରିୟାକୁ ବିରୋଧ କରିବାର ରଣନୀତି ଉଲ୍ଲେଖ କରାଯାଇଛି । ଗୋଟାଏ ପଟେ ହିଂସକ ଓ ସଶସ୍ତ୍ର ଲଢ଼େଇ ଓ ଅନ୍ୟପଟେ ବୌଦ୍ଧିକ ସାମାଜିକ ଆନ୍ଦୋଳନ । କିନ୍ତୁ ଗାନ୍ଧୀଙ୍କ 'ହିନ୍ଦ୍ ସ୍ୱରାଜ୍' ଏକ ବାସ୍ତବବାଦୀ ଦୃଷ୍ଟିକୋଣ ଓ ଅଦ୍ୱିତୀୟ ମତବାଦ ଯାହା ପ୍ରତ୍ୟେକ ସଚେତନ ବ୍ୟକ୍ତି ବୁଝିବାକୁ ମୁଁ ଅନୁରୋଧ କରୁଛି ।

(୨)

ମୁଁ ଏକ ସ୍ୱୀକାରୋକ୍ତି ଉପସ୍ଥାପନା କରିବାକୁ ନିଶ୍ଚୟ ଚାହିଁବି । ଯଦି ମହାତ୍ମା ଗାନ୍ଧୀଙ୍କ ସତ୍ୟାଗ୍ରହ, ଅହିଂସା, ଧର୍ମବିଶ୍ୱାସ ଓ ମହନୀୟତାର ଲକ୍ଷେ ଭାଗରୁ ଏକଭାଗ ମୋ ଭିତରେ ରହିଥାଆନ୍ତା, ତା' ହେଲେ ମୁଁ ନିଶ୍ଚିତ ଭାବେ ସାମ୍ପ୍ରତିକ ଜଗତୀକରଣ ପ୍ରତି ମୋର ବିରୋଧାଭାସକୁ ଲକ୍ଷେଗୁଣ ଶକ୍ତିଶାଳୀ କରିପାରନ୍ତି । ମୁଁ ଲଢ଼ିପାରନ୍ତି ମୋ ଭିତରେ ଥିବା ଭୟ ଓ ଅସହାୟତାକୁ, ନିଷ୍କ୍ରିୟତା ଓ ନକାରାତ୍ମକ ଚିନ୍ତାଧାରାକୁ । ମୁଁ ଆହୁରି ସ୍ୱଚ୍ଛ ଓ ସ୍ୱାବଲମ୍ବୀ ହୋଇପାରନ୍ତି । ମୁଁ ଜଣେ ସମାଜର ଭଲ ମଣିଷ ବୋଲି ପ୍ରମାଣିତ ହୁଅନ୍ତି । ଦାରିଦ୍ର୍ୟ ଓ ଶୋଷଣର ଶୀକାର ହେଉଥିବା କୋଟି କୋଟି ଜନତାଙ୍କ ପଛରେ ସାହସର ସହ ଛିଡ଼ା ହୁଅନ୍ତି । ଅନ୍ୟାୟ ଓ ଅମାନବିକ ରାଜନୀତି ବିପକ୍ଷରେ ଆହୁରି ଦୃଢ଼ ଭାବେ ସ୍ୱର ଉତ୍ତୋଳନ କରିପାରନ୍ତି । ବଞ୍ଚିବା ପାଇଁ ସଂଗ୍ରାମରତ ମଣିଷମାନଙ୍କ ବିକାଶ ଓ ପରିବର୍ତ୍ତନ ପାଇଁ ମୁଁ ଆହୁରି ନିଷ୍ଠାର ସହ ଉତ୍ସର୍ଗ କରି ପାରନ୍ତି । କିନ୍ତୁ ଅସଲରେ ମୁଁ ଜଣେ ଦୁର୍ବଳ ଓ ପଥଭ୍ରାନ୍ତ ମଣିଷ । ଯେତେକ ଏକଛତ୍ରବାଦୀ ଚିନ୍ତାଧାରା ଏ ପୃଥିବୀକୁ ଆଚ୍ଛନ୍ନ କରିଛି, ତାହାର ଏକଦା ମୁଁ ପ୍ରଶଂସକ ଥିଲି । ଆତ୍ମବଡ଼ିମା ଓ ବୌଦ୍ଧିକ ଜ୍ଞାନଗାରିମା ମୋତେ ନିଶ୍ଚିତ ରୂପେ ଆକ୍ରାନ୍ତ କରିଥିଲା କେତେବର୍ଷ ଧରି । ଯେଉଁ କେତେଜଣ ଗାନ୍ଧୀବାଦୀମାନଙ୍କ ସଂସ୍ପର୍ଶରେ ମୁଁ ଆସିଥିଲି ସେମାନଙ୍କ ଭଣ୍ଡାମି ଓ ସ୍ୱେଚ୍ଛାଚାରିତା ଯୋଗୁଁ ମୋ ମନଭିତରେ କେଜାଣି କାହିଁକି ଗାନ୍ଧୀଜୀଙ୍କ ପ୍ରତି ଏକ ତିକ୍ତଭାବ ନିଶ୍ଚିତ ସୃଷ୍ଟି ହୋଇଥିଲା । ଏକଥା ସତ ଯେ ମୁଁ ଗାନ୍ଧୀଙ୍କ ଲେଖନୀ ନିସୃତ ତାଙ୍କର

ଆତ୍ମ ଜୀବନୀଠାରୁ ଆରମ୍ଭକରି ସମସ୍ତ ଲେଖା ମୁଁ ପଢ଼ିଥିଲି ଓ ଗାନ୍ଧୀଙ୍କ ଜୀବନ ଓ ସଂଗ୍ରାମ ଉପରେ ଲେଖାଯାଇଥିବା ଅନେକ ପୁସ୍ତକ ଅଧ୍ୟୟନ କରିବାକୁ ସୁଯୋଗ ପାଇଥିଲି । କିନ୍ତୁ କେଜାଣି କାହିଁକି ମୁଁ ବେଶୀ ପ୍ରଭାବିତ ହୋଇନଥିଲି ଅନେକ ବର୍ଷଧରି । ୧୯୮୩ ମସିହାରେ ଏକ ଆନ୍ତର୍ଜାତିକ ଆଲୋଚନାଚକ୍ରରେ ଜଣେ ବାମପନ୍ଥୀ ପ୍ରଫେସର ଗାନ୍ଧୀଜୀଙ୍କୁ ବିରଳା ଭଳି ପୁଞ୍ଜିପତିମାନଙ୍କ ଏଜେଣ୍ଟ ବୋଲି କହି ଆକ୍ରମଣ କରୁଥିଲେ । ସେତିକିବେଳେ ଚିଲି ଓ ଦକ୍ଷିଣ ଆଫ୍ରିକାର ଦୁଇଜଣ ବନ୍ଧୁ ସେମାନଙ୍କ ଦେଶରେ ଗାନ୍ଧୀବାଦୀ ଆନ୍ଦୋଳନର ସଫଳତା ଦର୍ଶାଇ ବାମପନ୍ଥୀ ପ୍ରଫେସରଙ୍କୁ ଚୁପ୍ କରାଇ ଦେଇଥିଲେ । ଚିଲିର ବନ୍ଧୁ କହୁଥିଲେ ଯେ ପିନୋସେ ଭଳି ଏକଛତ୍ରବାଦୀ ସାମରିକ ପ୍ରଶାସକଙ୍କ ବିରୋଧରେ ଏକ ଜନବାଦୀ ଅହିଂସା ଆନ୍ଦୋଳନ ତାଙ୍କ ଦେଶରେ ସଫଳତାର ସହ ଚାଲିଛି । ଦକ୍ଷିଣ ଆଫ୍ରିକାରେ ସଂଖ୍ୟାଲଘୁ ଗୋରା ଶାସନର ପତନ ପାଇଁ ଏକ ଅହିଂସା ଆନ୍ଦୋଳନ ମଧ୍ୟ ସଶକ୍ତ ମୁଣ୍ଡ ଟେକିଛି ବୋଲି ଦକ୍ଷିଣ ଆଫ୍ରିକାର ବନ୍ଧୁ ମତବ୍ୟକ୍ତ କରିଥିଲେ । ସେମାନଙ୍କ ବିଶ୍ୱାସ ଥିଲା ଯେ ଗାନ୍ଧୀଜୀଙ୍କ ପଥ ଅନୁସରଣ କରି ସେମାନଙ୍କ ଦେଶର ଶାସନ ବ୍ୟବସ୍ଥା ବଦଳିବ । ଅସଲରେ ତାହାହିଁ ହୋଇଥିଲା କିଛି ବର୍ଷପରେ । ଚିଲିର ପିନୋସେ ଓ ଦକ୍ଷିଣ ଆଫ୍ରିକାର ରଙ୍ଗ ଭେଦ ସୃଷ୍ଟି କରିଥିବା ଗୋରା ସରକାରଙ୍କ ପତନ ହୋଇଥିଲା ଓ ସେ ଦେଶରେ ରାଜନୀତିର ଏକ ନୂତନ ଆଧ୍ୟାୟ ସୃଷ୍ଟି ହୋଇଥିଲା ।

ସାରା ପୃଥିବୀରେ ଏବେ ଜଗତୀକରଣକୁ ଚ୍ୟାଲେଞ୍ଜ କରି ବିଭିନ୍ନ ଜନ ଆନ୍ଦୋଳନ ଦାନା ବାନ୍ଧିଛି ଏ ଭିତରେ । ଜଗତୀକରଣ ପ୍ରକ୍ରିୟା ଯେ ଅନ୍ୟାୟ, ବୈଷମ୍ୟ, ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ଭେଦଭାବର ପ୍ରତୀକ ତାହା ଆଜି ପର୍ଯ୍ୟନ୍ତ କେହି ଅସ୍ୱୀକାର କରି ନାହାନ୍ତି । ଯେଉଁମାନେ ଜଗତୀକରଣ ଓ ଉଦାରୀକରଣର ସମର୍ଥକ ଓ ପ୍ରଶଂସକ ସେମାନେ ମଧ୍ୟ ଏ ବୈଷମ୍ୟ ଓ ଭେଦଭାବରେ ବିଶ୍ୱାସ ରଖିଛନ୍ତି ଓ ବିଭିନ୍ନ ସପକ୍ଷବାଦୀ ଯୁକ୍ତି ମଧ୍ୟ ଉପସ୍ଥାପନା କରିଛନ୍ତି । ଏକଥା କିନ୍ତୁ ସତଯେ ମୋ ଭଳି ଅନେକ ମଣିଷ ଦ୍ୱନ୍ଦ୍ୱରେ ପଡ଼ିଛନ୍ତି । ଗୋଟିଏ ପକ୍ଷରେ ଜଗତୀକରଣ ଦ୍ୱାରା ଯାହାକିଛି କ୍ଷତି ହେଉଛି ଓ ହେବାକୁ ଯାଉଛି ତାହାର ସାମଗ୍ରିକ ପ୍ରତିବାଦ କରିବା ଅପରିହାର୍ଯ୍ୟ ହୋଇପଡ଼ିଛି । ଅନ୍ୟ ପକ୍ଷରେ ଜଗତୀକରଣ ଦ୍ୱାରା ପ୍ରଦତ୍ତ ଇଣ୍ଟରନେଟ୍ ଓ ଯୋଗାଯୋଗର ବୈଷୟିକ ଜ୍ଞାନ ଆଦି ଏ ପୃଥିବୀରେ ସ୍ଥାନ ଓ ସମୟର ସଂଜ୍ଞାବଦଳାଇ

ସମଭାବାପନ୍ନ ମଣିଷଙ୍କ ଭିତରେ ଦୂରତ୍ୱ ସଙ୍କୁଚିତ କରିଛି । ଗୋଟାଏ ପକ୍ଷରେ ଜଗତୀକରଣ ଉଗ୍ରବାଦକୁ ପ୍ରୋତ୍ସାହନ ଦେଇ ଉଗ୍ରପନ୍ଥୀମାନଙ୍କୁ ସୃଷ୍ଟି କରିଛି । ଅନ୍ୟ ପକ୍ଷରେ ଜଗତୀକରଣ ଦ୍ୱାରା ଗଠିତ ଅତ୍ୟାଧୁନିକ ସଭ୍ୟତା ଆଦି ସାଧାରଣ ମଣିଷଙ୍କ ହାତ ପାହାନ୍ତାରେ ପହଞ୍ଚି ପାରିଛି । ଜଗତୀକରଣ ଏକ ଆଶୀର୍ବାଦ କି ଅଭିଶାପ ତାହା ନିର୍ଣ୍ଣୟ କରିବା ସହଜ ନୁହେଁ ବୋଲି ଅନେକଙ୍କ ହୃଦ୍‌ବୋଧ ହୋଇଛି ।

ମୁଁ କିନ୍ତୁ ଜଗତୀକରଣକୁ ଜୀବନର ଶେଷମୂହୁର୍ତ୍ତ ପର୍ଯ୍ୟନ୍ତ ବିରୋଧ କରିବି ଓ ଜଗତୀକରଣ ପୃଷ୍ଠପୋଷକମାନଙ୍କୁ ଏକ ତର୍କବିତର୍କ ପାଇଁ ଆହ୍ୱାନ କରିବି । ମୁଁ କହିବାକୁ ଚାହିଁଛି ଯେ ଗାନ୍ଧୀଜୀଙ୍କ 'ହିନ୍ଦ୍ ସ୍ୱରାଜ୍'କୁ ଅସ୍ତ୍ରକରି ଜଗତୀକରଣ ସହ ଲଢ଼ିବାକୁ ଅଣ୍ଟା ଭିଡ଼ିଛି । କିନ୍ତୁ କାହିଁକି ? ସାମ୍ପ୍ରତିକ ପରିପ୍ରେକ୍ଷୀରେ ଏ ପୁସ୍ତିକାଟିର ସମୟୋପଯୋଗିତା ଏତେ ବ୍ୟାପକ ହୋଇଛି ଯେ ମୁଁ ଏଥିରୁ ବାରମ୍ବାର ଅନୁପ୍ରେରଣା ପାଉଛି ଓ ମୋ ନିଜର ଜୀବନ ସଂଗ୍ରାମର ରଣନୀତି ନିର୍ଦ୍ଧାରଣ କରିବାକୁ ଦିଗ୍‌ଦର୍ଶନ ମିଳୁଛି । ଗାନ୍ଧୀଜୀ ଏ ବହିଟି ଲେଖିଛନ୍ତି ୧୯୦୯ ମସିହା ନଭେମ୍ବର ୧୩ରୁ ୨୨ତାରିଖ ଭିତରେ ଏକ ସାମୁଦ୍ରିକ ଯାତ୍ରା ଭିତରେ, ଇଂଲଣ୍ଡରୁ ଦକ୍ଷିଣ ଆଫ୍ରିକା ଫେରିବାବେଳେ । ଏ ବହିଟି ଯେ କୌଣସି ସର୍ବଶ୍ରେଷ୍ଠ ସାହିତ୍ୟିକ କୃତି ସହ ତୁଳନୀୟ କାରଣ ଏଥିରେ ନୂତନ ଷ୍ଟାଇଲ୍‌ର ଅବତାରଣା କରାଯାଇଛି । ପାଠକ ପ୍ରଶ୍ନ ପଚାରୁଛନ୍ତି ଓ ଗାନ୍ଧୀଜୀ ସମ୍ପାଦକ ଭୂମିକାରେ (ଏକ ପତ୍ରିକାର !) ଉତ୍ତର ଦେଇଛନ୍ତି । ଏକ ସଂଳାପ ଓ ପ୍ରଶ୍ନୋତ୍ତର ଜରିଆରେ ଗାନ୍ଧୀଜୀ ତାଙ୍କର ମାନସପଟରେ ଥିବା ନୂତନ ଓ ସ୍ୱାଧୀନ ଭାରତର ପରିକଳ୍ପନାର ବ୍ୟାଖ୍ୟାନ କରୁଛନ୍ତି । ଏହା ପୂର୍ବରୁ ଦକ୍ଷିଣ ଆଫ୍ରିକାର ଗୋରାମାନଙ୍କ ଦ୍ୱାରା ସମର୍ଥିତ ରଙ୍ଗଭେଦ ଦ୍ୱାରା ଘୋର ଅପମାନିତ ହୋଇଛନ୍ତି । ଟ୍ରେନ୍ ଭିତରୁ ବହିଷ୍କୃତ ହୋଇଛନ୍ତି । ଇଂଲଣ୍ଡରେ ଉଗ୍ରପନ୍ଥୀ ବିଚାର ଧାରାରେ ବିଶ୍ୱାସ କରୁଥିବା ଜନତା ବା ଯୁବଗୋଷ୍ଠୀଙ୍କ ସହ ମତଭେଦ ହୋଇଛି । ଉପନିବେଶବାଦର ଅନ୍ୟାୟ, ଅତ୍ୟାଚାର ଓ ଉଗ୍ରବାଦର ସପକ୍ଷରେ ଥିବା ଅକାଟ୍ୟ ଯୁକ୍ତି । ଆଧୁନିକ ସଭ୍ୟତାର ଆକର୍ଷଣକାରୀ ଅବଦାନ ଓ ସର୍ବୋପରି ମଣିଷଙ୍କୁ ଅମଣିଷ କରୁଥିବା ବିଚାରଧାରା ବିପକ୍ଷରେ ଏକ ବିକଳ୍ପ ବିଚାର ଉପସ୍ଥାପନା କରିବାର ଲକ୍ଷ୍ୟ ରଖି ଗାନ୍ଧୀଜୀ ପଢ଼ିଛନ୍ତି ଟଲଷ୍ଟୟ, ଥୋରୋ, ରସ୍କିନ୍, ଏମରସନ୍ ଆଦି ମହାନ୍ ଯୁଗାନ୍ତକାରୀ ମାର୍ଗପ୍ରଦର୍ଶକ ଓ ଲେଖକମାନଙ୍କୁ । ଚିଠି ଆଦାନ ପ୍ରଦାନ କରିଛନ୍ତି ଟଲଷ୍ଟୟଙ୍କ ସହ ।

ଭାବ ବିନିମୟ କରିଛନ୍ତି ଦେଶବିଦେଶର ଅନେକ ବୁଦ୍ଧିଜୀବୀଙ୍କ ସହ । କିନ୍ତୁ 'ହିନ୍ଦ୍ ସ୍ୱରାଜ' ପୁସ୍ତିକାରେ ଯେଉଁ ଦୃଢ଼ମତ ସେ ସାବ୍ୟସ୍ତ କରିଛନ୍ତି ତାହା ଜୀବନର ଶେଷ ମୂହୁର୍ତ୍ତ ପର୍ଯ୍ୟନ୍ତ ତାହାକୁ ସେ ପ୍ରମାଣିତ କରିବାକୁ ଚାହିଁଛନ୍ତି ଓ କରିଛନ୍ତି ମଧ୍ୟ । ତାଙ୍କର ରାଜନୈତିକ ଓ ସାମାଜିକ ଦର୍ଶନକୁ ସେ ଏଥିରେ ଉପସ୍ଥାପନା କରିଛନ୍ତି ଓ କେବେହେଲେ ସେଥିରୁ ବିଚ୍ୟୁତ ହୋଇନାହାଁନ୍ତି । ସେ ବାରମ୍ବାର କହିଛନ୍ତି ଯେ 'ହିନ୍ଦ୍ ସ୍ୱରାଜ୍' ରେ ସେ ଯାହା ଉଲ୍ଲେଖ କରିଛନ୍ତି ତାହା କାୟମନ ଓ ବାକ୍ୟରେ ଜୀବନ ସାରା ଜାହିର୍ କରିଆସିଛନ୍ତି ଓ ସମସ୍ତ ଝଡ଼ଝଞ୍ଜା ଓ ସ୍ୱାଧୀନତା ସଂଗ୍ରାମର ଚାପ ସତ୍ତ୍ୱେ ସେ ନିଜର ଦୃଷ୍ଟିକୋଣ ବଦଳାଇ ନାହାନ୍ତି । ବ୍ରିଟିଶ ଶାସନର ପତନ ପର୍ଯ୍ୟନ୍ତ ସେ ଯେତେ ପରୀକ୍ଷା ନିରୀକ୍ଷା କରିଛନ୍ତି, ସେଥିରେ 'ହିନ୍ଦ୍ ସ୍ୱରାଜ୍'ର ମୂଳ ଚିନ୍ତାଧାରା ହିଁ ପର୍ଯ୍ୟବେସିତ ହୋଇଛି ଓ ପ୍ରତିପାଦିତ ହୋଇଛି । ନିଜର ଲକ୍ଷ୍ୟ ସାଧନ ପାଇଁ ଯେଉଁ ରାସ୍ତା ଆପଣାର କରିବାକୁ ହଏ ତାହା ପରସ୍ପର ଉପରେ ନିର୍ଭରଶୀଳ । ଅର୍ଥାତ୍ 'ଏଣ୍ଡସ୍ ଆଣ୍ଡ ମିନ୍ସ' (ଲକ୍ଷ୍ୟ ଓ ମାଧ୍ୟମ/ପନ୍ଥା) ଉଭୟରେ ପରିପୂରକ । ଅନ୍ୟବାଟରେ ବୁଝିବାକୁ ଗଲେ ଏହାର ଅର୍ଥ ହେଉଛି ଯେ ନିଜର ଲକ୍ଷ୍ୟ ସାଧନ ପାଇଁ ଯେ କୌଣସି ଉପାୟ ଅବଲମ୍ବନ କରିହେବ ନାହିଁ । ଯଦି ବ୍ରିଟିଶଶାସନ ଅନ୍ୟାୟ, ହିଂସା ଓ ଅସମାନତା ଦ୍ୱାରା ପ୍ରତିଷ୍ଠିତ ତାହାର ସମାପ୍ତି ପାଇଁ ଅନ୍ୟାୟ ଓ ହିଂସା। ମାର୍ଗ ଅବଲମ୍ବନ କରିବା ଅଯୌକ୍ତିକ ଓ ଅବାସ୍ତବ ।

'ହିନ୍ଦ୍ ସ୍ୱରାଜ୍' ଲେଖିବା ପଛରେ ଗାନ୍ଧୀଙ୍କ ଉଦ୍ଦେଶ୍ୟ କ'ଣ ଥିଲା ତାହା ବିଖାତ ଗାନ୍ଧୀବାଦୀ ବୁଦ୍ଧିଜୀବୀ ଆନ୍ଥୋନି ପାରେଲ୍ ବର୍ଣ୍ଣନା କରିଛନ୍ତି ତାଙ୍କ ଦ୍ୱାରା ସମ୍ପାଦିତ ଓ କେମ୍ବ୍ରିଜ୍ ଇୟୁନିଭର୍ସିଟି ପ୍ରେସ୍ ଦ୍ୱାରା ପ୍ରକାଶିତ ଏ ବହିରେ । ମୁଁ ସଂକ୍ଷେପରେ ତାହା ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପନା କରିବା ଉଚିତ୍ ମନେକରୁଛି । କାରଣ ମୁଁ ବିଶ୍ୱାସ କରୁଛି ଯେ ଜଗତୀକରଣ ବିରୁଦ୍ଧରେ ଯେଉଁ ଲଢ଼େଇ ଚାଲିଛି ଓ ଚାଲିବ ଭବିଷ୍ୟତରେ, ତାହା ପାଇଁ ଗାନ୍ଧୀବାଦ ଏକ ଅମୋଘ ଅସ୍ତ୍ର ହୋଇଯିବ ।

'ହିନ୍ଦ୍ ସ୍ୱରାଜ୍' ଲେଖିବା ପାଇଁ ଗାନ୍ଧୀଜୀ ମାନସିକ ସ୍ତରରେ ସର୍ବପ୍ରଥମେ ପ୍ରସ୍ତୁତ ହୋଇଥିଲେ । କାରଣ ସେ ନିଜର ମନଭିତରେ ଆନ୍ଦୋଳିତ ହେଉଥିବା ଚିନ୍ତାଧାରା ଓ ହୃଦୟରେ ଥିବା ଅଟଳ ଆତ୍ମବିଶ୍ୱାସକୁ ସର୍ବସାଧାରଣଙ୍କ ପାଖରେ ପହଞ୍ଚେଇବାର ଯୋଜନା କରିଥିଲେ । ଦ୍ୱିତୀୟରେ 'ସ୍ୱରାଜ୍'ର ଅସଲ ଅର୍ଥ କ'ଣ, ଏହାର ମୌଳିକ

ଚିନ୍ତନ ଓ ପରିକଳ୍ପନା କି ରୂପ ନେଇଛି ତାହା ସେ ବାଖ୍ୟା କରିବାକୁ ପ୍ରୟାସ କରିଥିଲେ । 'ସ୍ୱରାଜ୍'ର ଅର୍ଥ ଯେ ପ୍ରଶାସନିକ ଦୃଷ୍ଟି କୋଣରୁ ସ୍ୱରାଜ୍ୟ ବା ସ୍ୱଶାସନ ନୁହେଁ ବରଂ ଏହା ଆତ୍ମ ନିୟନ୍ତଣ ଓ ନିଜସ୍ୱ ବିକାଶ, ଏହା ସେ ସ୍ପଷ୍ଟ କରିବାକୁ ଚାହିଁଥିଲେ । ଦ୍ୱିତୀୟରେ ରାଜନୈତିକ ଆତଙ୍କବାଦ ଓ ଅରାଜକତାବାଦରେ ବିଶ୍ୱାସ କରୁଥିବା ବହୁ ସଂଖ୍ୟକ ପ୍ରବାସୀ ଭାରତୀୟଙ୍କୁ ଏ ପୁସ୍ତିକା ମାଧ୍ୟମରେ ସେ କହିବାକୁ ଚାହିଁଥିଲେ ଯେ ଆତଙ୍କବାଦୀମାନେ ନିଜର ମତବାଦ ଦ୍ୱାରା ଏକ ଆତ୍ମଘାତୀ ନୀତି ଅନୁସରଣ କରିଛନ୍ତି । ହିଂସା ଓ ଆତଙ୍କବାଦ ଦ୍ୱାରା ଭାରତର ଦୁଃଖ ଦାରିଦ୍ର୍ୟ ଓ ପରାଧୀନତା କେବେହେଲେ ଦୂର ହେବ ନାହିଁ । ଏଥିପାଇଁ ଭାରତୀୟ ସଭ୍ୟତା ଓ ଏହାର ମଣିଷମାନେ ଏକ ଉଚ୍ଚସ୍ତରର ଅସ୍ତ୍ରର ଅପେକ୍ଷାରେ ରହିଛନ୍ତି ଯାହା ସେମାନଙ୍କ ସୁରକ୍ଷା ଦେଇପାରିବ । ଚତୁର୍ଥରେ ଗାନ୍ଧୀ 'ହିନ୍ଦ୍ ସ୍ୱରାଜ୍'ରେ ସାରା ଭାରତବାସୀଙ୍କୁ ଏକ ବାର୍ତ୍ତା ଦେଇଛନ୍ତି 'ଆଧୁନିକ ସଭ୍ୟତା' ବିଷୟରେ । ଉପନିବେଶବାଦ ହେଉଛି ଏ 'ଆଧୁନିକ ସଭ୍ୟତା'ର ଅବଦାନ । ବ୍ରିଟିଶରାଜ ସୃଷ୍ଟି ହୋଇଛି ଏ ନୂତନ ସଭ୍ୟତାର ମୂଳ ଗଣ୍ଡିରୁ । ହିଂସା ଉପରେ ପର୍ଯ୍ୟବେସିତ ଏ ଆଧୁନିକ ସଭ୍ୟତା ସାରା ଭାରତ ପାଇଁ ଆଣି ଦେଇଛି ଦୁର୍ଦ୍ଦିନ ଓ ଅସରନ୍ତି ଦୁଃଖ, ଦୁର୍ଦ୍ଦଶା । ଏଥିପାଇଁ ସାଂସାରିକ ଭୋଗ ବିଳାସର ପଥ ପରିହାର କରି ନୈତିକ ଓ ଅହିଂସା ଜୀବନ ଯାପନ କରିବା ଅପରିହାର୍ଯ୍ୟ ହୋଇପଡ଼ିଛି । ଏହାର ଅର୍ଥ ନୁହେଁ ଯେ ଭାରତବାସୀ ଅଜ୍ଞାନର ଅନ୍ଧାରି ଯୁଗକୁ ଫେରି ଯିବେ । ବରଂ ସମସ୍ତେ ସ୍ୱତଃସ୍ଫୂର୍ତ୍ତ ଭାବେ ସରଳ ଜୀବନକୁ ଆପଣାର କରିବେ ଓ ଅହିଂସାର ପଥ ଅନୁସରଣ କରିବେ । ସଭ୍ୟତାର କାରଖାନା ଭିତରୁ ଏ ଅହିଂସାର ମାର୍ଗ ବାହାରିବ ନାହିଁ । ଅହିଂସାର କେନ୍ଦ୍ର ବିନ୍ଦୁ ହେବ ଭାରତର ଅଗଣିତ ଗାଁମାନେ । ପଞ୍ଚମରେ 'ହିନ୍ଦ୍ ସ୍ୱରାଜ୍' ଜରିଆରେ ମହାତ୍ମାଗାନ୍ଧୀ ଭାରତୀୟ ଓ ବ୍ରିଟେନ୍ ଅଧିବାସୀଙ୍କ ଭିତରେ ଏକ ବୁଝାମଣାର ପ୍ରସ୍ତାବ ଦେଇଥିଲେ । ଇଂରେଜ୍‌ମାନଙ୍କୁ ସେ ଆହ୍ୱାନ ଦେଇ କହିଥିଲେ ଯେ ଭାରତୀୟମାନଙ୍କ ଭଳି ସେମାନେ ମଧ୍ୟ 'ଆଧୁନିକ ସଭ୍ୟତା' ଦ୍ୱାରା ପ୍ରପୀଡ଼ିତ । ଉଭୟଙ୍କ ଧର୍ମ ବିଶ୍ୱାସ ଅଖଣ୍ଡ । ତେଣୁ ସେମାନଙ୍କର ବୁଝାମଣା ଏହି ଧର୍ମ ବିଶ୍ୱାସ ଜରିଆରେ ସମ୍ଭବ । ସର୍ବଶେଷରେ ଗାନ୍ଧୀଙ୍କ ଉଦ୍ଦେଶ୍ୟ ଥିଲା ସ୍ୱାଧୀନତା ପାଇଁ ସଂଗ୍ରାମରତ ଅଗଣିତ ଭାରତୀୟଙ୍କୁ ଏକ ରାଜନୈତିକ ଏବଂ ବାସ୍ତବବାଦୀ ଦର୍ଶନ ଯୋଗାଇବା ଯାହା ବ୍ରିଟିଶ ଶାସନର ମୁକାବିଲା କରିପାରିବ । ଏହାର ଜରିଆରେ

ଆଧୁନିକ ସଭ୍ୟତାକୁ ବୁଝି ହେବ ଏବଂ ନିଜର ଧର୍ମବିଶ୍ୱାସକୁ ଅକ୍ଷତ ରଖି ହେବ । ଧର୍ମ ଓ ରାଜନୀତି ଅଙ୍ଗାଙ୍ଗୀଭାବେ ଜଡ଼ିତ । 'ହିନ୍ଦ୍ ସ୍ୱରାଜ୍' ହେଉଛି ଧର୍ମରାଜ୍ୟ ବା ରାମରାଜ୍ୟ ।

ମୋଟାମୋଟି ଭାବେ ଗାନ୍ଧୀଜୀଙ୍କ 'ହିନ୍ଦ୍ ସ୍ୱରାଜ୍' ପୁସ୍ତିକାରୁ ଦୁଇଟି ମୂଳକଥା ବାରମ୍ବାର ଆଲୋଚନାର ପରିସରକୁ ଆସିବ । ଗୋଟିଏ ହେଲା ଆତଙ୍କବାଦୀ ଓ ଅରାଜକତାବାଦୀଙ୍କ ଯୁକ୍ତିକୁ ମୁକାବିଲା କରିବା । ଅନ୍ୟଟି ହେଲା ସାଧାରଣ ମଣିଷଟି ଯନ୍ତ୍ରର ମଣିଷ ହେବ ନା ମାଟିର ମଣିଷ ହେବ, ଆଧୁନିକ ସଭ୍ୟତାର କ୍ରୀତଦାସ ହେବ ନା ମୁକ୍ତି ଓ ସ୍ୱାଧୀନତା ଉପରେ ପର୍ଯ୍ୟବେସିତ ଏକ ନୂତନ ସଭ୍ୟତା ଗଢ଼ିବ, ଏ ବିଷୟରେ ସଠିକ୍ ନିଷ୍ପତ୍ତି ନେବ । ଜଗତୀକରଣ ବସ୍ତୁତଃ ଆତଙ୍କବାଦ ଓ ଅରାଜକତାବାଦ ସୃଷ୍ଟି କରୁଛି ବୋଲି ଅନେକ ଅଧ୍ୟୟନରୁ ଜଣାପଡୁଛି । ଯେଉଁଠି ଅହିଂସା ଜନଆନ୍ଦୋଳନ ଚାଲିଛି, ସେଠାରେ ମଧ୍ୟ ଅରାଜକତାବାଦୀମାନେ ଅନୁପ୍ରବେଶ କରି ଆନ୍ଦୋଳନକୁ ଅପହରଣ କରିବାକୁ ଚେଷ୍ଟା କରୁଛନ୍ତି । ଫଳ ସ୍ୱରୂପ ଜନ ଆନ୍ଦୋଳନସବୁ ବ୍ୟର୍ଥ ହେବାର ଅନେକ ଉଦାହରଣ ଅଛି । ଗାନ୍ଧୀଜୀ ମେସିନ୍‌ର ମଣିଷ ଉପରେ ପ୍ରାଧାନ୍ୟକୁ ତୀବ୍ର ସମାଲୋଚନା କରିଛନ୍ତି । ପାଶ୍ଚାତ୍ୟ ସଭ୍ୟତା ଏଇ ମେସିନ୍ ଉପରେ ପର୍ଯ୍ୟବେସିତ ଓ ଏହାଦ୍ୱାରା ନିୟନ୍ତ୍ରିତ । ଏଥିରେ ନା ନୈତିକତା ଅଛି ନା ମାନବଧର୍ମ ଅଛି । ଆଜିର ମଣିଷ ମେସିନ୍‌ର କ୍ରୀତଦାସ । ଆଜିର ଚିନ୍ତାଧାରା ମଧ୍ୟ ଶୃଙ୍ଖଳବଦ୍ଧ । ବର୍ତ୍ତମାନର ଜଗତୀକରଣ ଏଇ ମେସିନ୍ ଦ୍ୱାରା ପରିଚାଳିତ । ଏଥିପାଇଁ ଏହା ଗ୍ରହଣ ଯୋଗ୍ୟ ନୁହେଁ ବୋଲି ସ୍ପଷ୍ଟ ଅନୁଭବ କରି ହେଉଛି ।

## (୩)

ଯଦି ଏ ଭିତରେ ମୁଁ 'ହିନ୍ଦ୍ ସ୍ୱରାଜ୍' ପୁସ୍ତକ ଉପରେ ଲେଖା ଯାଇଥିବା ସମସ୍ତ ଟୀକା ଟିପ୍‌ପଣୀ, ସମୀକ୍ଷା ଓ ସମାଲୋଚନା, ସଂଳାପ ଓ ସଂଭାଷଣ ସବୁ ପଢ଼ିପାରିଥାଆନ୍ତି, ତେବେ ଏଥର ମୋର ଉପସ୍ଥାପନା ଖୁବ୍ ସ୍ପଷ୍ଟ ଓ ସୁପାଠ୍ୟ ହୋଇପାରିଥାଆନ୍ତା । ଅତି କମ୍‌ରେ ମୁଁ ପ୍ରଫେସର୍ ଭିଖୁ ପାରେଖ୍‌ଙ୍କ 'ଗାନ୍ଧୀସ୍ ପଲିଟିକାଲ୍ ଫିଲୋସଫି', ବି:ଆର୍:ନନ୍ଦାଙ୍କ 'ଗାନ୍ଧୀ ଏଣ୍ଡ ହିଜ୍ କ୍ରିଟିକ୍', ଏରିକ୍ ଏରିକ୍‌ସନ୍‌ଙ୍କ 'ଗାନ୍ଧୀସ୍ ଟ୍ରୁଥ' ରାଜ୍‌ମୋହନ୍ ଗାନ୍ଧୀଙ୍କ 'ଦ ଗୁଡ୍ ବୋଟ୍‌ମ୍ୟାନ୍', ଗାନ୍ଧୀମାର୍ଗ ପତ୍ରିକା ଦ୍ୱାରା ସଂକଳିତ

'ହିନ୍ଦ୍ ସ୍ୱରାଜ୍' ଉପରେ ବିଶେଷ ପ୍ରକାଶନ ପଢ଼ିଥାଆନ୍ତି, ଆଜି ଏ ସ୍ତମ୍ଭର ପାଠକମାନଙ୍କୁ ମୁଁ ଏକ ଉଚ୍ଚକୋଟୀର ପ୍ରବନ୍ଧ ଉପହାର ଦେଇଥାଆନ୍ତି । ସମ୍ଭବତଃ ଏହା ପୁଣିଥରେ ମୁଁ ପ୍ରୟାସ କରିବି । ପୁନଶ୍ଚ ଆଉ କିଛି ଲେଖିବାକୁ ଅଣ୍ଟା ଭିଡ଼ିବି । ଏହାଛଡ଼ା ଗାନ୍ଧୀ ଯେଉଁ ସବୁ ବହି ଦ୍ୱାରା ଗଭୀରଭାବେ ପ୍ରଭାବିତ ହୋଇ 'ହିନ୍ଦ ସ୍ୱରାଜ' ଲେଖିଥିଲେ ସେସବୁ ମୂଳଲେଖାକୁ ମୁଁ ନିଶ୍ଚୟ ଦିନେ ନା ଦିନେ ସଂଗ୍ରହ କରିବି ପଢ଼ିବା ପାଇଁ । ଦକ୍ଷିଣ ଆଫ୍ରିକା ଯିବାକୁ ସୁଯୋଗ ମିଳିଲେ ଗାନ୍ଧୀଜୀ ଯେଉଁ କିଲ୍‌ଡ଼ାନନ୍ କାସଲ୍ ନାମକ ଜାହାଜରେ ବସି ହିନ୍ଦ୍ ସ୍ୱରାଜ୍ ଲେଖିଥିଲେ ଓ 'ଇଣ୍ଡିଆନ୍ ଓପିନୟନ୍' ନାମକ ଯେଉଁ ପତ୍ରିକାରେ ପ୍ରଥମେ ୧୯୦୯ ମସିହାରେ ଗୁଜୁରାଟୀ ଭାଷାରେ ପ୍ରକାଶ କରିଥିଲେ ତାହାର ସ୍ମୃତିରୁ ଅଧିକ ପ୍ରେରଣା ଖୋଜିବି । ମୋଟ ଉପରେ 'ହିନ୍ଦ୍ ସ୍ୱରାଜ' ବହିଟି ମୋ ଭିତରେ ଏକ ମୌଳିକ ପରିବର୍ତ୍ତନ ଆଣି ସାରିଛି ବୋଲି ମୋର ପାଠକବନ୍ଧୁମାନଙ୍କୁ ମୁଁ ସୂଚନା ଦେବାକୁ ଚାହୁଁଛି । ଏକ ବିପର୍ଯ୍ୟସ୍ତ ଓ ବିକ୍ଷିପ୍ତ ଚିନ୍ତାଧାରା ଭିତରୁ ମୁଁ ଏକ ସଂଗଠିତ ଓ ସଂଯମଶୀଳ କର୍ମଚିନ୍ତନର ସ୍ରୋତ ଠାବ କରିପାରିଛି ।

ଏଥର ପ୍ରଥମେ ମୁଁ ଜଗତୀକରଣ ଓ ଗାନ୍ଧୀଜୀଙ୍କ ବିଚାରଧାରାର ଏକ ତୁଳନାତ୍ମକ ତାଲିକା ଦେବାକୁ ମନସ୍ଥ କରିଛି ଓ ଶେଷରେ 'ହିନ୍ଦ୍ ସ୍ୱରାଜ'ର କିଛି ଅଂଶ ଉଦ୍ଧାର କରି ପାଠକମାନଙ୍କୁ ମାନସିକସ୍ତରରେ ଏକ ଜାଗରଣ ସୃଷ୍ଟି କରିବାକୁ ଉଦ୍ୟମ କରିଛି । 'ହିନ୍ଦ୍ ସ୍ୱରାଜ'କୁ ବାରମ୍ବାର ପଢ଼ିବାକୁ ମୁଁ ପାଠକବନ୍ଧୁମାନଙ୍କୁ ଅନୁରୋଧ କରିବି ଯଦି ସେମାନେ ଜଗତୀକରଣ ଭଳି ଏକ ବିଶ୍ୱଶକ୍ତି ବିରୋଧରେ ଚାଲିଥିବା ମୁକ୍ତି ସଂଗ୍ରାମରେ ଯୋଗ ଦେବାର ସଂକଳ୍ପବଦ୍ଧତା ସୃଷ୍ଟିକରି ପାରିଛନ୍ତି । ଆହୁରି ମଧ୍ୟ ଅନୁରୋଧ କରିବି ସେମାନଙ୍କୁ ଯେ ସେମାନେ ବର୍ତ୍ତମାନର ଯୁବଗୋଷ୍ଠୀ ଆଗରେ ଏକ ନୂତନ ଆଦର୍ଶର ପ୍ରଦୀପ ଜାଳିବା କାମରେ ଲାଗି ଯାଆନ୍ତୁ । କାରଣ ବର୍ତ୍ତମାନର ଶିକ୍ଷିତ ଯୁବଗୋଷ୍ଠୀ ସବୁଠାରୁ ବେଶୀ ଜଗତୀକରଣ ପ୍ରକ୍ରିୟାର ସମର୍ଥକ, ଅନ୍ଧ ପ୍ରଚାରକ ଏବଂ ନିର୍ବୋଧ ଅନୁଗାମୀ ।

**ଜଗତୀକରଣ ଓ ଗାନ୍ଧୀ ବିଚାରର ଏକ ତୁଳାନାତ୍ମକ ବିଶ୍ଳେଷଣ:**

| ଗାନ୍ଧୀବିଚାର | ଜଗତୀକରଣର ମୂଳତତ୍ତ୍ୱ |
|---|---|
| ଅହିଂସା | ହିଂସା |
| ସତ୍ୟାଗ୍ରହ ଏବଂ ଆତ୍ମ ବଳିଦାନ . | ମିଥ୍ୟା, ଲୋଭ ଓ ପଶୁବଳ |

| | |
|---|---|
| ମାନବବାଦ | ଅରାଜକତାବାଦ ଓ ଉଗ୍ରବାଦ |
| ଆତ୍ମ ନିର୍ଭରତା ଓ ସ୍ୱାବଲମ୍ବନଶୀଳତା | ଆର୍ଥିକ ପରାଧିନତା ଓ ନିର୍ଭରଶୀଳତା |
| ଆର୍ଥିକ ସ୍ୱାଧୀନତା | ଆର୍ଥିକ ଗୋଲାମୀ |
| ହସ୍ତକର୍ମ ଓ ହସ୍ତଶିଳ୍ପ ଉପରେ ଆଧାରିତ ଜୀବନ ଓ ଜୀବିକା | ଶିଳ୍ପ ଭିତ୍ତିକ କର୍ମ ସଂସ୍ଥାନ ଓ ମେସିନ ସଂଚାଳିତ ଜୀବନ |
| ସ୍ୱଚ୍ଛଳ ଗ୍ରାମ୍ୟ ଜୀବନ | ଜଟିଳ ସହରୀକରଣ |
| ଗଣତାନ୍ତ୍ରିକ ମୂଲ୍ୟବୋଧ | ନବ ସାମ୍ରାଜ୍ୟବାଦ |
| ପ୍ରେମ ଓ ମାନବାଧିକାର ସୁରକ୍ଷା | ଘୃଣା ଓ ମାନବାଧିକାର ହନନ |
| ପୁଞ୍ଜି ଓ ଲାଭର ସମବଣ୍ଟନ | ପୁଞ୍ଜି-ପ୍ରଧାନ ଓ ଲାଭଖୋର ବ୍ୟବସ୍ଥା |
| ମାଟିର ମଣିଷ | ଯାନ୍ତ୍ରିକ ଓ ପେଶାଦାର ମଣିଷ |
| ରାମରାଜ୍ୟ ଓ ଗ୍ରାମ ସ୍ୱରାଜ୍ୟ | ନବ ଉପନିବେଶବାଦ ଓ ଏକଛତ୍ରବାଦ |
| ସ୍ଥାନୀୟକରଣ | ଉଦାରୀକରଣ, ଘରୋଇକରଣ, ବଜାରୀକରଣ |
| ମୌଳିକ ଶିକ୍ଷା | ଶିକ୍ଷାର ଘରୋଇକରଣ |
| ଭାରତୀୟ ସଭ୍ୟତା ଆଧାରିତ ମୂଲ୍ୟବୋଧ | ଇୟୁରୋପୀୟ ଓ ଆମେରିକୀୟ ସଭ୍ୟତାଭିତ୍ତିକ ମୂଲ୍ୟବୋଧ |
| ସାମାଜିକ ଓ ସାଂସ୍କୃତିକ ଐକ୍ୟ | ସାମାଜିକ ଓ ସାଂସ୍କୃତିକ ବିଭେଦ |
| ସରଳ ଜୀବନ | ଉପଭୋକ୍ତାବାଦ |
| ସାମଗ୍ରିକଭାବେ ନୈତିକତାର ଅଭିବୃଦ୍ଧି | ଅନୈତିକ ଓ ପାପାଚାରର ପ୍ରସାର |
| ଅନ୍ତ୍ୟୋଦୟ | ପୁଞ୍ଜିପତିଙ୍କ ଅଭ୍ୟୁଦୟ |
| ସତ୍ତା ଓ କ୍ଷମତାର ପୁନର୍ବଣ୍ଟନ | ସତ୍ତା ଓ କ୍ଷମତାର ଠୁଳ କରିବାର ପ୍ରକ୍ରିୟା |

'ଜଗତୀକରଣ' ଉପରେ ଯଦି କେହି ପାଠକ ସବିଶେଷ ଆଲୋଚନା, ସମାଲୋଚନା ଓ ପର୍ଯ୍ୟାଲୋଚନା କରିବାକୁ ଆଗ୍ରହ ପ୍ରକାଶ କରନ୍ତି, ଉପରୋକ୍ତ ବିଷୟରେ ନିର୍ଦ୍ଦିଷ୍ଟ ବିଚାର ଗୋଷ୍ଠୀ ଆୟୋଜନ କରିବାକୁ ମୁଁ ଅନୁରୋଧ କରିବି ।

**ହିନ୍ଦ୍ ସ୍ୱରାଜ୍‌ର ମୌଳିକତା:**

ଆମର ପ୍ରିୟ ଚୁନୀ ଅପା (ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା)ଙ୍କ ଦ୍ୱାରା ଅନୁବାଦିତ

'ହିନ୍ଦ୍ ସ୍ୱରାଜ୍' କିଛି ଅଂଶ ଉଦ୍ଧାର କରିବା ପୂର୍ବରୁ ଏ ବହିର କେତୋଟି ମୌଳିକତା ବିଷୟରେ ଉଲ୍ଲେଖ କରିବା ମୁଁ ଉଚିତ୍ ମନେ କରୁଛି । ବହିଟିର କୋଡ଼ିଏଟି ସଂକ୍ଷିପ୍ତ ଅଧ୍ୟାୟ / ପରିଚ୍ଛେଦ ଅଛି । ଏଥିରୁ ଏଗାରଟି ଇତିହାସ ସମ୍ବନ୍ଧିତ ବିଶ୍ଳେଷଣ ଓ ବାକି ନଅଟି ଦର୍ଶନ ସମାହିତ ପ୍ରତିଫଳନ । ଭାରତୀୟ ଜାତୀୟତାବାଦ ଓ ବଙ୍ଗଭଙ୍ଗ ଆଦି ବିଶେଷ ଭାବେ ଗାନ୍ଧୀଜୀ ବ୍ୟାଖ୍ୟା କରିଛନ୍ତି । ଏହା ସହିତ ବ୍ରିଟିଶ ଶାସନର ଭାରତରେ ବାଣିଜ୍ୟ ବେପାର ପ୍ରସାର ଓ ଭାରତୀୟ ସଂସ୍କୃତି ଓ ସମାଜର ଅବକ୍ଷୟ କିପରି ଭାରତକୁ ପରାଧୀନ କରିଛି ତାହା ଉପରେ ଗାନ୍ଧୀଜୀ ବିଶେଷ ଆଲୋକପାତ କରିଛି । ତଥାକଥିତ ଆଧୁନିକ ସଭ୍ୟତା ଉପରେ ଗାନ୍ଧୀଜୀଙ୍କ ସମାଲୋଚନାତ୍ମକ ଅଭିମତ ଏ ବହିରେ ସ୍ପଷ୍ଟ । ସ୍ୱରାଜ୍ କହିଲେ ସେ କ'ଣ ବୁଝନ୍ତି ଓ ଏହା ପଛରେ ଥିବା ତାଙ୍କର ଦାର୍ଶନିକ ଓ ବାସ୍ତବ ପରିକଳ୍ପନା କ'ଣ, ଶିକ୍ଷା ଓ ରାଜନୀତି, ବୈଷୟିକ ଜ୍ଞାନ କୌଶଳର ରୂପରେଖ ଆଦି ମଧ୍ୟ ଅତି ସରଳ ଓ ଯୁକ୍ତିଯୁକ୍ତ ଭାବେ ଉପସ୍ଥାପନା କରାଯାଇଛି । ଗାନ୍ଧୀଜୀ କହିବାକୁ ଚାହିଛନ୍ତି ଯେ ଜଣେ ବ୍ୟକ୍ତିର ରାଜନୈତିକ ଜୀବନ ସର୍ବୋଚ୍ଚ ଜୀବନର ମାନ ଓ ସ୍ଥାନ ଗ୍ରହଣ କରିବ ଯଦି ଏହା ସହିତ ଏକ ଉନ୍ନତ ଧର୍ମଭାବ ସନ୍ନିହିତ ହୋଇଛି । ଅର୍ଥାତ ଯଦି ଏ ଧର୍ମଭାବ ସହ ସ୍ୱାଧୀନତା, ସମତା ଓ ଅଭିବୃଦ୍ଧି ଓତଃପ୍ରୋତ ଭାବେ ଜଡିତ ହୋଇଛି । ଏହାଦ୍ୱାରା ବ୍ରିଟିଶ ଶାସନ ଓ ବ୍ରିଟିଶ ସଭ୍ୟତାର ଯାହାକିଛି ଉପାଦେୟ କେବଳ ତାହା ଆହରଣ କରାଯାଇ ପାରିବ ଓ ଅସଲ କ୍ଷେତ୍ରରେ ଯାହା ଅମାନବୀୟ ଓ ଧ୍ୱଂସକାରୀ ତାହାକୁ ପରିତ୍ୟାଗ କରିହେବ । ଏହା କେବଳ ଭାରତର ସ୍ୱାଧୀନତା, ହାସଲ କରିବାରେ ମଧ୍ୟ ଅସ୍ତ୍ର ହୋଇପାରିବ । ସ୍ୱାଧୀନ ଭାରତର ଆଗମନ ଓ ପରାଧୀନ ଭାରତର ଶେଷର ଏକମାତ୍ର ବାଟ ହେଉଛି 'ସ୍ୱରାଜ୍' ଯାହାର ଅର୍ଥ ହେଉଛି 'ଆତ୍ମ ଶାସନ' । 'ସ୍ୱରାଜ୍'ର ଅର୍ଥ କେବଳ ନୁହେଁ ସ୍ୱଶାସନ । ଅର୍ଥାତ୍ ଆତ୍ମାର ଆତ୍ମା ଉପରେ ଶାସନ । ଅନ୍ୟ ଅର୍ଥରେ କହିବାକୁ ହେଲେ ଯେଉଁ ଅର୍ଥଲାଳସା ଓ କାମାତୁର ଚିନ୍ତାଧାରା ଆଧୁନିକ ମଣିଷକୁ ଗ୍ରାସ କରିଛି ତାହା ଉପରେ ଆତ୍ମାକୁ ଅସ୍ତ୍ରକରି ଅଙ୍କୁଶ ଲଗାଇବା । ଭାରତ ସ୍ୱାଧୀନ ହେବାକୁ ହେଲେ ଆବଶ୍ୟକ ହେଉଛି ଏକ ରାଜନୈତିକ ସମାଜ ଯାହା ଆତ୍ମଶାସନ ପ୍ରତି ଉତ୍ସର୍ଗୀକୃତ । ଏହି ରାଜନୈତିକ ସମାଜ ଏକ ଜାତୀୟ ରାଷ୍ଟ୍ର ପ୍ରତିଷ୍ଠା କରିବାର ମୂଳସ୍ତମ୍ଭ । ଭାରତ ଯେ ଏକ ସ୍ୱତନ୍ତ୍ର, ସ୍ୱାଧୀନ ଓ ସ୍ୱାୟତ୍ତଶାସନ ପାଇଁ ଯୋଗ୍ୟ ରାଷ୍ଟ୍ର ଏବଂ ବ୍ରିଟିଶ ଶାସନର ଯେ ସମାପ୍ତି ଅବସ୍ୟମ୍ଭାବୀ ତାହାହିଁ 'ହିନ୍ଦ୍ ସ୍ୱରାଜ୍'ର ସ୍ପଷ୍ଟ ଭାବେ ଗାନ୍ଧୀଜୀ ଉଲ୍ଲେଖ କରିଛନ୍ତି । ଯେଉଁମାନଙ୍କ ଆତ୍ମଶାସନ ଓ ସତ୍ୟାଗ୍ରହ

କରିବାର ଯୋଗ୍ୟତା ରହିଛି ସେମାନେ କେବଳ ଭାରତରେ ସ୍ୱାୟତ୍ତଶାସନ ପ୍ରତିଷ୍ଠା କରିପାରିବେ ଓ ଭାରତକୁ ସ୍ୱାଧୀନ କରିପାରିବେ । ଇଂରେଜମାନେ ଭାରତକୁ ସ୍ୱାଧୀନତା ପ୍ରଦାନ କରିବେ ନାହିଁ । ଭାରତୀୟମାନେ ନିଜର ଆତ୍ମଶାସନ ଓ ସତ୍ୟାଗ୍ରହକୁ ଅସ୍ତ୍ରକରି ସ୍ୱାଧୀନତା ହାସଲ କରିବେ । ଇଂରେଜମାନେ ଦେଶଛାଡି ଚାଲିଗଲେ ଯେ 'ସ୍ୱରାଜ୍' ମିଳିଯିବ ଏହା ଭାବିବା ଠିକ୍ ନୁହେଁ । ଇଂରେଜ ଦେଶଛାଡିଲେ ଭାରତୀୟମାନଙ୍କୁ ସ୍ୱାୟତ୍ତଶାସନ ଓ ପ୍ରଶାସନ ମିଳିଯିବ ସତ କିନ୍ତୁ ଯଦି ଆତ୍ମଶାସନ ନଥାଏ ତେବେ ସେଥିରେ ଧର୍ମ ନ୍ୟାୟ ଓ ମାନବିକ ମୂଲ୍ୟବୋଧ ରହିବ ନାହିଁ । ଆତ୍ମଶାସନରେ ଥିବ ବ୍ରହ୍ମଚର୍ଯ୍ୟ, ସତ୍ୟ, ନ୍ୟାୟ ଓ ସାହସ । ନଥିବ ଲୋଭ, କାମ ଓ କ୍ଷମତାର ମିଥ୍ୟା ପ୍ରଲୋଭନ । ନାଗରିମାନଙ୍କର ରାଜନୈତିକ ସଦାଚାରର ଅଭିବୃଦ୍ଧି ଘଟିବ ମାନବିକ ମୂଲ୍ୟବୋଧ ଓ ସୌନ୍ଦର୍ଯ୍ୟବୋଧ ଦ୍ୱାରା । ସେମାନଙ୍କର ରାଜନୈତିକ କାର୍ଯ୍ୟକ୍ରମ ଏକ ରାଜନୈତିକ ସଙ୍କେତ ଦ୍ୱାରା ସମୃଦ୍ଧ ହେବ । ଗାନ୍ଧୀ ଏହା ବାସ୍ତବରେ ଦେଖାଇଛନ୍ତି ଚରଖାକୁ ଏକ ସଙ୍କେତ କରି ଓ ଖଦୀବସ୍ତ୍ର ପିନ୍ଧି । ସଦାଚାର ଭାବନାକୁ ଜାହିର୍ କରିଛନ୍ତି ସର୍ବଧର୍ମ ଭାବନାକୁ ଏକତ୍ରିତ କରି ଓ ନିଜେ ନିଜର ପରିମଳ ବ୍ୟବସ୍ଥାକୁ ପରିଚାଳନା କରି । ଶାକାହାରୀ ଖାଦ୍ୟରେ ସେ ଅପରିମିତ ବିଶ୍ୱାସ କରିବା ଓ ନିଜର ଧର୍ମ ବିଶ୍ୱାସକୁ ଆତ୍ମ ବିଶ୍ୱାସରେ ପରିଣତ କରିବା ଆଦି ଜରିଆରେ ସେ ପ୍ରମାଣ କରିବାକୁ ଚାହିଁଛନ୍ତି ଯେ 'ସ୍ୱରାଜ୍' ହେଉଛି ଆତ୍ମ ଶାସନ ଓ ସତ୍ୟାଗ୍ରହ । ଅହିଂସା ହେଉଛି ଏକମାତ୍ର ରାଜନୈତିକ ଅସ୍ତ୍ର । ଆଜି କେହି ଚରଖାରେ ସୂତାକାଟିଲେ ଉପହାସର ପାତ୍ର ହୋଇ ପାରନ୍ତି କିନ୍ତୁ ଚରଖା ଥିଲା ଗାନ୍ଧୀଙ୍କ ପାଇଁ ଓ ସାରା ଭାରତ ପାଇଁ ଏକ ଅମୋଘ ଅସ୍ତ୍ର । ଏହାଦ୍ୱାରା ଗାନ୍ଧୀ ଦୃଢ଼ ପ୍ରଦର୍ଶନ କରିଥିଲେ ଏକ ଆଧାତ୍ମିକ ଓ ପବିତ୍ର ଗତିଶୀଳତା, ଦୈହିକ ଶ୍ରମଶକ୍ତିର ମହାନତା, ଧନୀ ଓ ଗରିବଙ୍କ ଭିତରେ ସଂହତି, ଆଧୁନିକ ଓ ମେସିନ୍ ସଂଚାଳିତ ସଭ୍ୟତାର ଶୋଷଣ ଅତ୍ୟାଚାର ବିରୁଦ୍ଧରେ ଲଢ଼େଇ ଏବଂ ସର୍ବଶେଷରେ ଗରିବଙ୍କୁ ଧନୀବର୍ଗର ଶୋଷଣ ବିରୁଦ୍ଧରେ ପ୍ରତିବାଦ ।

'ଜଗତୀକରଣ' ଓ ଆଧୁନିକ ସଭ୍ୟତା, ଉପନିବେଶବାଦ ଓ ସାଧାରଣ ମଣିଷ ପରାଧୀନତା ଓ ଅସହାୟତା ଏସବୁ ଭିତରେ ଯେମିତି ଏକ ନିବିଡ଼ ସମ୍ପର୍କ ରହିଛି । ଏ ସବୁର ଆକ୍ରମଣକୁ ପ୍ରତିହତ କରି ସାଧାରଣ ମଣିଷଙ୍କ ମୁକ୍ତି ଓ ସ୍ୱାଧୀନତା, ନ୍ୟାୟ ଓ ସମତା ଉପରେ ପର୍ଯ୍ୟବେସିତ ଜୀବନ ଜୀବିକା ପାଇଁ 'ଚରଖା' ଭଳି ଏକ ସଙ୍କେତର ଆବଶ୍ୟକତା ରହିଛି ଯାହାକୁ ଧନୀ ଓ ଗରିବ, ଧର୍ମୀ ଓ ବିଧର୍ମୀ, ନରମପନ୍ଥୀ ଓ ଚରମପନ୍ଥୀ, ଶାସକ ଓ ଶାସିତ, କ୍ଷମତା ଲିପ୍ସୁ ଓ କ୍ଷମତାହୀନ, ସତ୍ତାଲୋଭୀ ଓ ସତ୍ତାହୀନ

ସମସ୍ତେ ଯେମିତି ଆପଣାର କରିପାରିବେ, ଗାନ୍ଧୀ ବିଚାରରେ ଏହା ସ୍ପଷ୍ଟ ରହିଛି ବୋଲି ମୁଁ ଆଜି ଅନୁଭବ କରୁଛି ।

**ଶେଷ କଥନ**

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣାଙ୍କ ଦ୍ୱାରା ଅନୁବାଦିତ 'ହିନ୍ଦ୍ ସ୍ୱରାଜ୍'ରୁ କିୟଦଂଶ ନିମ୍ନରେ ପାଠକଙ୍କ ଉଦ୍ଦେଶ୍ୟରେ ଉଦ୍ଧାର କରୁଛି । "କିନ୍ତୁ ମୁଁ ପାଠକମାନଙ୍କୁ ଗୋଟିଏ ସତର୍କବାଣୀ ଶୁଣାଇ ଦେବାକୁ ଚାହେଁ ଯେ ଏ ବହିରେ ମୁଁ ଯେଉଁ ସ୍ୱରାଜ୍ୟର ଚିତ୍ର ଦେଉଛି, ସେହିପରି ସ୍ୱରାଜ୍ୟ ସ୍ଥାପନ କରିବା ପାଇଁ ବର୍ତ୍ତମାନ ଉଦ୍ୟମ ଚଳାଇଛି ବୋଲି ସେମାନେ ଭାବନ୍ତୁ ନାହିଁ । ଭାରତବର୍ଷ ବର୍ତ୍ତମାନ ସେ ସ୍ୱରାଜ୍ୟ ପାଇଁ ଯେ ପ୍ରସ୍ତୁତ ହୋଇ ନାହିଁ, ସେ କଥା ମୁଁ ଜାଣେ । ଏପରି କହିବାଟା ମୋର ଧୃଷ୍ଟତା ବିବେଚିତ ହୋଇପାରେ । କିନ୍ତୁ ଏହା ମୋର ଦୃଢ଼ ବିଶ୍ୱାସ । ସେହି ସ୍ୱାୟତ୍ତଶାସନ (ସ୍ୱରାଜ୍ୟ) ଅର୍ଜନ କରିବା ପାଇଁ ମୁଁ ମୋର ବ୍ୟକ୍ତିଗତ ପ୍ରଚେଷ୍ଟାରେ ଲାଗିରହିଛି । କିନ୍ତୁ ଭାରତର ଜନସାଧାରଣଙ୍କର ଅଭିଳାଷ ଅନୁଯାୟୀ ପାର୍ଲାମେଣ୍ଟାରୀ ସ୍ୱରାଜ୍ୟ ଲାଭ କରିବା ପାଇଁ ଆଜି ନିଃସନ୍ଦେହ ରୂପେ ମୋର ସବୁ ସାମୁଦାୟିକ କାର୍ଯ୍ୟକ୍ରମରେ ମୁଁ ବିନିଷ୍ଟ ଅଛି ।"

"ସଭ୍ୟତା ବୋଇଲେ କ'ଣ ବୁଝାଏ, ପ୍ରଥମେ ଆମେ ସେହି ବିଷୟରେ ବିଚାର କରିବା । ଏ ସଭ୍ୟତାର ପ୍ରଥମ ଲକ୍ଷଣ ହେଉଛି ଲୋକେ ଶାରୀରିକ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜୀବନର ଧେୟ ମଣୁଛନ୍ତି । ଉଦାହରଣ ସ୍ୱରୂପ, ଶହେବର୍ଷ ପୂର୍ବେ ୟୁରୋପର ଲୋକେ ଯେଉଁପରି ଘରେ ରହୁଥିଲେ, ବର୍ତ୍ତମାନ ତାହାଠାରୁ ଢ଼େର ଭଲ ଘରେ ରହୁଛନ୍ତି । ଏଇଟା ସଭ୍ୟତାର ଲକ୍ଷଣ ବୋଲି ଧରାଯାଉଛି ଏବଂ ଏଥିରେ ଶାରୀରିକ ସୁଖ-ସ୍ୱାଚ୍ଛନ୍ଦ୍ୟର ଅଭିବୃଦ୍ଧି କଥା ଅଛି । ଆହୁରି ମଧ୍ୟ କୁହାଯାଉଛି ଯେ ଏ ସଭ୍ୟତା ଯେତେବେଳେ ଆହୁରି ଅଗ୍ରଗତି କରିବ, ସେତେବେଳେ ମନୁଷ୍ୟ ଉଡାଜାହାଜରେ ଗସ୍ତ କରିବ ଓ ପୃଥିବୀର କୌଣସି ଦେଶରେ ପହଞ୍ଚିବାକୁ ମାତ୍ର ଅଳ୍ପ କେତେ ଘଣ୍ଟା ସମୟ ଲାଗିବ । ହାତ ଗୋଡ଼କୁ କାମରେ ଲଗାଇବା ଆଉ ଦରକାର ହେବ ନାହିଁ । ଗୋଟିଏ ବୋତାମ ଟିପିଦେଲେ ପିନ୍ଧିବା ପୋଷାକ ଆସି ଆଗରେ ଦାଖଲ ହୋଇଯିବ । ଆଉ ଗୋଟିଏ ବୋତାମ୍ ଟିପିଦେଲେ ଖବରକାଗଜ ଆସିଯିବ । ତୃତୀୟ ବୋତାମଟା ଟିପିଦେଲେ ମଟରଗାଡ଼ି ଆସି ଛିଡ଼ା ହୋଇଯିବ । ପ୍ରତ୍ୟହ ନୂଆ ନୂଆ ସୁସ୍ୱାଦୁ ଖାଦ୍ୟ ଖାଇବାକୁ ମିଳିବ । ସବୁ କାମ କଳଦ୍ୱାରା ହୋଇଯିବ ।"

"ଏହି ଅଭିଶପ୍ତ ଆଧୁନିକ ସଭ୍ୟତା ଏ ପର୍ଯ୍ୟନ୍ତ ଭାରତର ଯେଉଁ ଯେଉଁ ଅଞ୍ଚଳରେ ପଶି ପାରି ନାହିଁ, ସେଠାରେ ଭାରତ ସେହି ପୂର୍ବପରି ରହିଛି । ସେହି ସ୍ଥାନଗୁଡ଼ିକରେ ଆପଣ ଏ ନବ୍ୟଭାବ କଥା କହିଲେ, ଲୋକେ ଆପଣଙ୍କୁ ପରିହାସ କରିବେ । ସେମାନଙ୍କୁ ଇଂରେଜମାନେ ଶାସନ କରୁନାହାନ୍ତି ଏବଂ ଆପଣ ମଧ୍ୟ । ସେମାନଙ୍କୁ ଆମେ ଚିହ୍ନ ନାହୁଁ, ସେମାନେ ମଧ୍ୟ ଆମକୁ ଚିହ୍ନି ନାହାନ୍ତି । ଆପଣ ଓ ଆପଣଙ୍କ ପରି ଦେଶଭକ୍ତମାନଙ୍କୁ ମୋର ପରାମର୍ଶ ଯେ, ଆପଣମାନେ ଭାରତରେ ଯେଉଁ ଅଞ୍ଚଳକୁ ରେଳ ଲାଇନ୍ ଯାଇ ନଥିବାରୁ ଦୂଷିତ ହୋଇ ନାହିଁ, ସେହି ଆଭ୍ୟନ୍ତରୀଣ ଅଞ୍ଚଳକୁ ଯାଇ ଛଅ ମାସ ରହି ଆସନ୍ତୁ । ତେବେଯାଇ ଆପଣ ଦେଶଭକ୍ତ ହୋଇ ପାରିବେ ଏବଂ ସ୍ୱରାଜ୍ୟ କଥା କହିପାରିବେ ।"

"ସଭ୍ୟତାର ବ୍ୟାଧି ଆମକୁ ଏତେ ଘାରିଛି ଯେ ଇଂରାଜୀ ଶିକ୍ଷାକୁ ସମ୍ପୂର୍ଣ୍ଣରୂପେ ଆମେ ଛାଡ଼ି ପାରିବୁ ନାହିଁ । ଯେଉଁମାନେ ଇଂରାଜୀ ଶିକ୍ଷା ପାଇ ସାରିଛନ୍ତି, ଯେଉଁଠି ତାହା ଅବଶ୍ୟ ଦରକାର, ସେଠାରେ ସେମାନେ ଇଂରାଜୀର ସଦ୍‌ବ୍ୟବହାର କରିପାରନ୍ତି । ଇଂରେଜମାନଙ୍କ ସହ କାରବାରରେ ଏବଂ ଆମ ଦେଶରେ ଯେଉଁମାନେ ଇଂରାଜୀ ବ୍ୟତୀତ ଅନ୍ୟ କୌଣସି ଭାଷାରେ କିଛି ପଢ଼ି କିମ୍ବା ଲେଖି ପାରିବେ ନାହିଁ, ସେମାନଙ୍କ ସହ ସମ୍ପର୍କରେ ଆସିବାବେଳେ ଏବଂ ଇଂରେଜମାନେ କିପରି ନିଜ ସଭ୍ୟତାରେ ବ୍ୟତିବ୍ୟସ୍ତ ହୋଇ ପଡିଲେଣି, ତାହା ଜାଣିବାକୁ ଆମେ ଇଂରାଜୀ ବ୍ୟବହାର କରିପାରୁ । ଯେଉଁମାନେ ଇଂରାଜୀ ପଢ଼ିଛନ୍ତି, ସେମାନେ ନିଜର ସନ୍ତାନମାନଙ୍କୁ ନିଜର ମାତୃଭାଷା ଜରିଆରେ ନୀତିଶିକ୍ଷା ଦେବେ ଏବଂ ଆଉ ଗୋଟିଏ ଭାରତୀୟ ଭାଷା ଶିଖାଇବେ । ପିଲାମାନେ ବଡ଼ ହୋଇଗଲେ ଓ ଇଚ୍ଛା କଲେ, ଇଂରାଜୀ ଭାଷା ଶିକ୍ଷା କରିପାରନ୍ତି । ମାତ୍ର ଶେଷ ଲକ୍ଷ୍ୟ ରହିବ ଯେ ଆମେ ତାହା ଆବଶ୍ୟକ ମନେ କରିବୁ ନାହିଁ । ତଦ୍ୱାରା (ଇଂରାଜୀ ଜ୍ଞାନ ଜରିଆରେ) ଅର୍ଥାଗମର ଉଦ୍ଦେଶ୍ୟକୁ ବର୍ଜନ କରିବାକୁ ପଡ଼ିବ । ଏହି ପରି ସୀମିତ ଭାବରେ ଇଂରାଜୀ ଭାଷା ଶିଖିବାକୁ ଯାଇଥିବା ସମୟରେ ସୁଦ୍ଧା ଏହା ଜରିଆରେ ଆମେ କ'ଣ ଶିଖିବୁ ଓ କ'ଣ ନ ଶିଖିବୁ, ସେସବୁ ଭଲଭାବରେ ବିଚାର କରିବା ଆମର ଉଚିତ । ଆମେ କେଉଁ ବିଜ୍ଞାନଗୁଡ଼ିକୁ ଶିକ୍ଷା କରିବୁ, ତାହା ମଧ୍ୟ ଜାଣିବା ଆମର ଦରକାର । ଆମେ ଟିକିଏ ଚିନ୍ତା କଲେ ଜାଣିପାରିବୁ ଯେ ଆମେ ଇଂରାଜୀ ଡିଗ୍ରୀର ମୋହ ଛାଡ଼ିବା ମାତ୍ରେ ଶାସକମାନେ (ଇଂରେଜ) ଚମକିବେ ।" ❑

# ଜଗତୀକରଣ ଓ ଅର୍ଥନୈତିକ ଅଭିବୃଦ୍ଧି କାହା ହିତରେ ?

ସାରା ପୃଥିବୀର ସମସ୍ତ ବିକାଶଶୀଳ ଦେଶ ଏବେ ଗୋଟିଏ ଲକ୍ଷ୍ୟ ରଖିଛନ୍ତି । ତାହା ହେଉଛି ଶତକଡ଼ା ୧୦ ଅଭିବୃଦ୍ଧି । ଚୀନ୍, ଭାରତ ଆଦି ବିଶାଳ ଦେଶମାନେ ଏଥିରେ ଆଗୁଆ ଅଛନ୍ତି । ସେମାନେ ପ୍ରମାଣ କରିବାକୁ ଚାହୁଁଛନ୍ତି ଯେ ଏହିଭଳି ଅଭିବୃଦ୍ଧିର ଗତି ବଢ଼ାଇ ଦେଶର ଦାରିଦ୍ର୍ୟ, ଅନାହାର, ବେରୋଜଗାରୀ ଓ ଆର୍ଥିକ ଅନଗ୍ରସରତାକୁ ଦୂର କରିବେ ସବୁ ଦିନ ପାଇଁ । ଏ ଦେଶର ନେତୃବୃନ୍ଦ ଯିଏ ହୁଅନ୍ତୁନା କାହିଁକି ସେମାନେ ଅନ୍ଧଭଳି ମାନସିକତା ପ୍ରକଟ କରୁଛନ୍ତି । ଆର୍ଥିକ ପ୍ରଗତି ପାଇଁ ସେମାନେ ଯାହାକିଛି ନିଜସ୍ୱ ତାହା ବିକ୍ରୟ କରିବାକୁ ପଛଘୁଞ୍ଚା ଦେଇନାହାନ୍ତି । ସେମାନେ ସ୍ୱାଭିମାନକୁ ବିଶ୍ୱପୁଞ୍ଜି ଆଗରେ ଆତ୍ମସମର୍ପଣ କରିବାକୁ ଦ୍ୱିଧା ପ୍ରକାଶ କରୁନାହାନ୍ତି । କାରଣ ସେମାନେ ଉଦାରୀକରଣ, ଘରୋଇକରଣ ଓ ଜଗତୀକରଣ ପ୍ରକ୍ରିୟାକୁ ନତମସ୍ତକ ହୋଇ ସ୍ୱାଗତ କରୁଛନ୍ତି । ସେମାନେ ଧନୀ ଦେଶ ଓ ସେ ଦେଶର ବହୁ ରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ମଧ୍ୟ ସାଦରେ ଆମନ୍ତ୍ରଣ କରୁଛନ୍ତି ପୁଞ୍ଜିନିବେଶ ପାଇଁ । ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାକୋଷ ଭଳି ସଂସ୍ଥାମାନଙ୍କର ଅଯୌକ୍ତିକ ରାୟ ମଧ୍ୟ ମାନି ନେଉଛନ୍ତି ।

ଯେଉଁ ଦେଶମାନେ ଶତକଡ଼ା ୧୦ ଅଭିବୃଦ୍ଧିର ହାରକୁ ଲକ୍ଷ୍ୟ ରୂପେ ଘୋଷଣା କରିଛନ୍ତି ସେ ଦେଶମାନଙ୍କର ସ୍ଥିତିକୁ ସମୀକ୍ଷା କରାଯାଇଛି । ସେ ଦେଶର ଅର୍ଥନୀତି, ଅନ୍ତଃ ଓ ବର୍ହିଃ ବାଣିଜ୍ୟକୁ ବିଶ୍ଳେଷଣ କରାଯାଇଛି । ସେ ଦେଶମାନଙ୍କର ଋଣର ବୋଝ ଓ ପୁଞ୍ଜିନିବେଶକୁ ତୁଳନା କରାଯାଇଛି । ସେ ଦେଶର ସାମାଜିକ ବ୍ୟବସ୍ଥା, ଆଇନ୍ ଶୃଙ୍ଖଳା, ଆଭ୍ୟନ୍ତରୀଣ ନିରାପତ୍ତା, ବିକାଶର ନୀତିନିୟମ, ମୁଣ୍ଡପିଛା ଆୟବ୍ୟୟ, ସାମାଜିକ ନିରାପତ୍ତା, ଧନୀ ଓ ଗରିବଙ୍କ ଭିତରେ ଭେଦଭାବ, ସାଧାରଣ ଲୋକଙ୍କର ଜୀବନର ମାନଦଣ୍ଡ ସବୁ ଯେମିତି ଅନେକ ପ୍ରଶ୍ନବାଚକ ଚିହ୍ନ ସୃଷ୍ଟି କରିଛି । ଗୋଟାଏ ବିକାଶଶୀଳ ଦେଶର ଅର୍ଥନୀତି ଓ ଅର୍ଥନୈତିକ ବ୍ୟବସ୍ଥା କିଏ ସ୍ଥିର କରୁଛି ? କିଏ ନିଷ୍ପତ୍ତି ନେଉଛି ? ଆର୍ଥିକ ସମସ୍ୟାର ସମାଧାନ ପାଇଁ ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାକୋଷ, ଏସିଆନ୍ ଡେଭ୍‌ଲପ୍‌ମେଣ୍ଟ ବ୍ୟାଙ୍କ ଆଦି ସଂସ୍ଥା ରହିଛନ୍ତି । କିନ୍ତୁ ଏହି

ସଂସ୍ଥାମାନଙ୍କରେ ଆମେରିକା ଓ ଜି-୮ ଭଳି ଦେଶ ସବୁ ଅଧିକ ଅର୍ଥ ଅନୁଦାନ ଦେଉଥିବାରୁ, ସେମାନଙ୍କ ମତକୁ ମାନ୍ୟତା ଦିଆଯାଉଛି । ଆମେରିକା ଓ ଅନ୍ୟ ବିକଶିତ ରାଷ୍ଟ୍ରର ମତାମତ ହିଁ ସେ ଦେଶମାନଙ୍କର ପୁଞ୍ଜିପତି ବହୁରାଷ୍ଟ୍ରୀୟ କମ୍ପାନୀମାନେ ସ୍ଥିର କରୁଛନ୍ତି । ତେଣୁ କର୍ପୋରେଟ୍‌ମାନଙ୍କର ଲାଭ ହିଁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାକୋଷ ଆଦିର ନୀତିକୁ ନିର୍ଦ୍ଧାରଣ କରୁଛନ୍ତି । ଯେଉଁଠି ଲାଭ ମୂଳ ଲକ୍ଷ୍ୟ, ସେଠାରେ ସାଧାରଣ ମଣିଷଙ୍କ ଜୀବନ, ଜୀବିକା ସୁରକ୍ଷା ଓ ମୂଲ୍ୟବୋଧକୁ ବଳିଦେବାକୁ ବାଧ କରାଯାଉଛି । ଜଗତୀକରଣର ପ୍ରକ୍ରିୟା ଚାଲୁ ରହିଥିବା ପର୍ଯ୍ୟନ୍ତ ସାଧାରଣ ଲୋକଙ୍କୁ ତଳିତଳାନ୍ତ କରି କରି ଏ କର୍ପୋରେସନ୍‌ମାନେ ଯେ ବିଶ୍ୱ ଅର୍ଥନୀତି ଓ ରାଜନୀତି, ବଜାର ଓ ବେପାର, ଶାସନ ଓ ପ୍ରଶାସନକୁ ମୂଲ୍ୟବୋଧ ଓ ବିଚାରବୋଧ ସହ ନିଷ୍ପତ୍ତି କରିବେ ନାହିଁ ଏଥିରେ ସନ୍ଦେହ କାହାର ନାହିଁ । କିନ୍ତୁ ଏହା କ'ଣ ଭୂମିକମ୍ପ ବା ବନ୍ୟା ପରି ଏକ ପ୍ରାକୃତିକ ଦୁର୍ବିପାକ ଯାହାକୁ ମୁଣ୍ଡପାତି ସହିବାକୁ ହେବ ଏବଂ ଦୁର୍ଗତିର ଦୁର୍ଦ୍ଦିନକୁ କାଟିବାକୁ ହେବ ? ପ୍ରାକୃତିକ ଦୁର୍ବିପାକ ଗୁଡ଼ିକ ସମ୍ପର୍କରେ ହଠାତ୍ ଭବିଷ୍ୟତବାଣୀ କରିହେବ ନାହିଁ । ଏହା ଘଟିପାରେ ବୋଲି ଆଶଙ୍କା କରି ପରିସ୍ଥିତିର ମୁକାବିଲା ପାଇଁ ପ୍ରସ୍ତୁତ ରହିବାକୁ ହେବ । ଅନ୍ୟ ପକ୍ଷରେ ଜଗତୀକରଣ ମଣିଷକୃତ ଓ ଏହା ବିଷୟରେ ଭବିଷ୍ୟତବାଣୀ କରିହେବ ଓ ଯେଉଁ ଦେଶ ଚାହିଁବ ସେ ଦେଶ ଏହାକୁ ଏଡାଇ ଦେଇ ପାରିବ । ଜଗତୀକରଣ ଏବେ ମଧ କ୍ୟୁବା ଭଳି ଦେଶକୁ ପ୍ରଭାବିତ କରିନାହିଁ ଯଦିଓ ସେ ଦେଶର ଅଭିବୃଦ୍ଧିର ହାର କିଛି କମ୍ ନୁହେଁ । ଜଗତୀକରଣ ପ୍ରକ୍ରିୟାକୁ ମୁକାବିଲା କରିବାକୁ ଆଜି ଭେନେଜୁଏଲା, ବଲିଭିଆ ଆଦି ଦେଶ ନେତୃତ୍ୱ ନେଇଛନ୍ତି । ସାରା ବିଶ୍ୱର ସାଧାରଣ ମଣିଷଙ୍କ ସପକ୍ଷରେ ଗଢି ଉଠିଥିବା ବିଶ୍ୱ ସାମାଜିକ ମଞ୍ଚ ବା ଓ୍ୱାର୍ଲ୍ଡ ସୋସିଆଲ୍ ଫୋରମ୍ ଆଜି ଏକ ସୁଦୃଢ଼ ସେନାବାହିନୀ ଭଳି ପ୍ରତିଷ୍ଠାଲାଭ କରିଛି । ବିଶ୍ୱରେ ଶକ୍ତି ସତ୍ତା ଓ କ୍ଷମତାକୁ ନେଇ ଯେଉଁ ଲଢ଼େଇ ଚାଲିଛି ଓ ଏଥିରେ କେଉଁ ପକ୍ଷର ହାରଜିତ୍ ହେବ ତାହା ସଠିକ୍ ନିର୍ଣ୍ଣୟ କରି ହେଉନାହିଁ । ପ୍ରତ୍ୟେକ ବିକାଶଶୀଳ ଦେଶ ଯଦି ନିଜ ନିଜର ଶକ୍ତି ନିରୂପଣ କରି ସ୍ୱାବଲମ୍ବୀ ହେବାକୁ ଚେଷ୍ଟା କରନ୍ତେ, ଓ ବିଶ୍ୱର ଶକ୍ତିଶାଳୀ ବହୁରାଷ୍ଟ୍ରୀୟ କର୍ପୋରେସନ୍‌ଙ୍କ ହୀନଚକ୍ରାନ୍ତ ଓ ଲାଭଖୋର ମନୋଭାବକୁ ଠିକ୍ ବୁଝି ପାରନ୍ତେ ତେବେ ଆଜି ପୃଥିବୀର ସାମାଜିକ, ଆର୍ଥିକ ଓ ମାନବିକ ବିକାଶର ଢ଼ାଞ୍ଚା ଅନ୍ୟ କିଛି ହୋଇଥାଆନ୍ତା ।

ଆମେ ସର୍ବପ୍ରଥମେ ଏ ପୃଥିବୀର ସବୁଠାରୁ ଅବହେଳିତ ଓ ଶୋଷିତବର୍ଗ ହିସାବରେ ପରିଗଣିତ ଆଦିବାସୀଙ୍କୁ ବିଚାରକୁ ନେବା ଓ ବିଶ୍ଳେଷଣ କରିବା ଯେ ଜଗତୀକରଣ ଦ୍ୱାରା ସେମାନଙ୍କର କି ଲାଭ ବା କ୍ଷତି ହୋଇଛି । କିପରି ଏକ ଅବିଚାର ଓ ଅବିବେକ ବ୍ୟବସ୍ଥା ସେମାନଙ୍କୁ ବାସଚ୍ୟୁତ, କକ୍ଷଚ୍ୟୁତ ଓ ଜୀବିକାଚ୍ୟୁତ କରିଦେଉଛି ସେମାନେ ଜଣାଇବା ନିତାନ୍ତ ଆବଶ୍ୟକ । ଆମେ ପୃଥିବୀର ସବୁ ଦେଶକୁ ଆଲୋଚନାର ପରିସରଭୁକ୍ତ କରିବାକୁ ଚାହିଁବା, କିନ୍ତୁ ସ୍ଥାନ ଓ ସମୟ ଅଭାବରୁ କେତୋଟି ମୁଖ୍ୟ ଦେଶକୁ ଉଦାହରଣସ୍ୱରୂପ ଗ୍ରହଣ କରିବା । ପ୍ରଥମେ ଭାରତକୁ ନିଆଯାଉ । ଓଡ଼ିଶାର ମାଇକଣ୍ଠ ଓ କଳିଙ୍ଗନଗରରେ ଆଦିବାସୀଙ୍କୁ ସରକାର ଓ ବହୁରାଷ୍ଟ୍ରୀୟ କମ୍ପାନୀ ଓ ପୁଞ୍ଜିପତିମାନେ ଯେଉଁଭଳି ନୃଶଂସଭାବେ ପୋଲିସ ଲଗାଇ ହତ୍ୟା କଲେ, ତାହା ଦ୍ୱାରା ସାରା ପୃଥିବୀରେ ଭାରତର ମର୍ଯ୍ୟାଦା ହାନି ଗୁରୁତର ଭାବେ ହୋଇଛି । ଭାରତରେ ଜମି, ଜଳ, ଜଙ୍ଗଲ, ଖଣିଜଦ୍ରବ୍ୟ ସବୁ ଆଦିବାସୀ ଅଞ୍ଚଳରେ ଅଛି । ଶିଳ୍ପୀକରଣ ଓ ଖଣିଖାଦାନମାନ ପ୍ରତିଷ୍ଠା ପାଇଁ ବର୍ତ୍ତମାନ ବିଶ୍ୱପୁଞ୍ଜି ଅହେତୁକ ଆଗ୍ରହ ଦେଖାଉଛି । ଖାଲି ଓଡ଼ିଶା ନୁହେଁ, ଝାଡ଼ଖଣ୍ଡ, ଛତିଶଗଡ଼, ମଧ୍ୟ ପ୍ରଦେଶ, ଆନ୍ଧ୍ର ପ୍ରଦେଶର ପ୍ରାକୃତିକ ସମ୍ବଳ ଉପରେ ପୁଞ୍ଜିପତି ଓ ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ଲୋଲୁପ ଦୃଷ୍ଟି ପଡ଼ିଛି । ସବୁଆଡେ ବିସ୍ଥାପନ ଓ ଜୀବନ ଜୀବିକାର ପ୍ରଶ୍ନ ଉଠିଛି । ସଂଘର୍ଷ ଓ ବିରୋଧାଭାସ ଲାଗି ରହିଛି । ଏହାକୁ ନେଇ ସରକାର ମଧ୍ୟ ଅସୁବିଧାରେ ପଡ଼ିଛନ୍ତି । ଗୋଟାଏ ଦୃଷ୍ଟିରୁ ମାଓବାଦୀଙ୍କ ହିଂସାର ମୁକାବିଲା ପାଇଁ ସରକାର ପୋଲିସ ବାହିନୀକୁ ଶକ୍ତିଶାଳୀ କରୁଛନ୍ତି । ଅନ୍ୟପକ୍ଷରେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ସହ ବୁଝାମଣାପତ୍ର ସ୍ୱାକ୍ଷର କରି ସେମାନଙ୍କୁ ପୁଞ୍ଜିନିବେଶ ପାଇଁ ଆମନ୍ତ୍ରଣ କରୁଛନ୍ତି । ପରିବେଶ ଏବଂ ଅନ୍ୟ ସାମ୍ବିଧାନିକ ବ୍ୟବସ୍ଥା ସହ ସଂଶ୍ଳିଷ୍ଟ ଆଇନ୍ କାନୁନ୍‌କୁ କୋହଳ କରିବାରେ ଲାଗିଛନ୍ତି । ଅନ୍ୟପକ୍ଷରେ ଆଦିବାସୀମାନଙ୍କୁ ଜଙ୍ଗଲ ଜମି ଦେବା ପାଇଁ ସରକାର ନୂଆ ଆଇନ୍ ପ୍ରଣୟନ କରିବାକୁ ପଦକ୍ଷେପ ନେଇଛନ୍ତି ଓ କହିଛନ୍ତି ଯେ ଆଦିବାସୀଙ୍କ ପ୍ରତି ଯେଉଁ ଐତିହାସିକ ଅନ୍ୟାୟ ହୋଇଛି ତାହା ଦୂରକରିବା ଏ ଆଇନ୍ ଉଦିଷ୍ଟ । ସମୟ କହିବ ଯେ ଆଦିବାସୀଙ୍କ ପ୍ରତି ଶହ ଶହ ବର୍ଷର ଅନ୍ୟାୟ ଦୂର ହେଲାକି ନାହିଁ । ଛତିଶଗଡ଼ର ଦାନ୍ତେୱାଡ଼ା ଜିଲ୍ଲାକୁ ମାଓବାଦୀ ଓ ସାଲ୍‌ୱା ଝୁଡୁମ୍ ନାମରେ ଏକ ଗୋଷ୍ଠୀ ଏକ ରଣାଙ୍ଗନରେ ପରିଣତ କରିଛନ୍ତି । ଉଭୟ ଗୋଷ୍ଠୀ ଆଦିବାସୀ କିନ୍ତୁ କିଏ କାହାକୁ ହତ୍ୟା କରିବ ଛକାପଞ୍ଝାରେ ଅଛନ୍ତି । ସାଲ୍‌ୱା ଝୁଡୁମ୍ ସରକାରଙ୍କ ଦ୍ୱାରା ଗଠିତ ଓ ସରକାରଙ୍କ ଦ୍ୱାରା ଅସ୍ତ୍ରଶସ୍ତ୍ରରେ

ସହିତ । ମାଓବାଦୀମାନେ ଏକ ଆଦର୍ଶବାଦର ପ୍ରତୀକ ବୋଲି ଦାବୀ କରି ହିଂସାର ପଥ ବାଛିଛନ୍ତି । ଏପରି ଭାବେ ଏକ ଶ୍ରେଣୀ ସଂଘର୍ଷ ଲାଗି ରହିଛି । ବୁଦ୍ଧିଜୀବୀମାନେ କହୁଛନ୍ତି ଯେ ଆଦିବାସୀଙ୍କ ଭିତରେ ଏଇ ଭଳି ହଣାକଟା ଲାଗି ରହିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଯେ ଆଦିବାସୀ ଅଞ୍ଚଳରୁ ସେମାନଙ୍କୁ ହଟାଇବା ଓ ସଂଖ୍ୟାନ୍ୟୁନ କରିବା । ଏଭଳି ପ୍ରକ୍ରିୟା ଲାଗି ରହିଲେ ପୁଞ୍ଜିପତି ଓ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ପାଇଁ ରାସ୍ତା ସଫା ହୋଇଯିବ ।

ଦ୍ୱିତୀୟରେ ଦକ୍ଷିଣ ଆମେରିକା କଥା ବିଚାରକୁ ନିଆଯାଉ । କଲମ୍ବିଆରେ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଜମି ଅଧିଗ୍ରହଣ କରି ଅଥବା ବଳ ପ୍ରୟୋଗକରି ପଶୁପାଳନ ପାଇଁ ର୍‍ୟାଞ୍ଚ୍ ସବୁ ସୃଷ୍ଟି କରାଯାଇଛି । କୁଆଡ଼େ ୪୦ଲକ୍ଷ ହେକ୍ଟର ଜମି ଏଇଭଳି ଆଦିବାସୀମାନଙ୍କ ହାତରୁ ଛଡାଇ ନିଆଯାଇଛି । ଏହା ବିରୁଦ୍ଧରେ ଏବେ ସଶସ୍ତ୍ର ଜନଆନ୍ଦୋଳନ ମୁଣ୍ଡ ଟେକିଛି ଓ ଭୂସଂସ୍କାର ବିଚାର ବିତର୍କର ବଳୟ ଭିତରକୁ ଆସିଛି । କଲମ୍ବିଆରେ ଲୋକେ ଏବେ ଜନଶୁଣାଣୀକୁ ଅସ୍ତ୍ରକରି ଜମିଜମା ପ୍ରଶ୍ନର ସମାଧାନ କରିବାକୁ ଚାହୁଁଛନ୍ତି । ପ୍ରାକୃତିକ ସମ୍ବଳର ଘରୋଇକରଣ ପାଇଁ ଯେଉଁ ଅପଚେଷ୍ଟା ଚାଲିଥିଲା ତାହା ଖୁବ୍ ବିରୋଧ ହୋଇଛି ଓ ଆଦିବାସୀଙ୍କ ଜୀବନ ଜୀବିକା ଉପରେ ଅଧିକାର ପ୍ରଶ୍ନ ଏବେ ସେଠାରେ ଏକ ଜାତୀୟ ପ୍ରଶ୍ନ ହୋଇଛି । ଏବେ ଭେନେଜୁଏଲା କଥା ବିଚାରକୁ ନିଆଯାଉ । ସେ ଦେଶଟି ଆମେରିକା ସରକାର ଓ ଆମେରିକାର ଧର୍ମ ପ୍ରଚାରକଙ୍କ ସମସ୍ତ ଆକ୍ରମଣର ଶିକାର ହୋଇ ସାରିଛି । ଏ ଦେଶର ତୈଳ ସମ୍ପଦ, ଜୈବ ବିବିଧତା ଏବଂ ଖଣିଜସମ୍ପଦ ଉପରେ ଆମେରିକା ଓ ଆମେରିକୀୟ ଧର୍ମପ୍ରଚାରକମାନେ ଆଖି ପକାଇଛନ୍ତି । କିନ୍ତୁ ରାଷ୍ଟ୍ରପତି ସାଭେଜ୍‌ଙ୍କ ନେତୃତ୍ୱରେ ଗଠିତ ସରକାର ସବୁ ଚକ୍ରାନ୍ତକୁ ପଣ୍ଡ କରି ସ୍ଥାନୀୟ ଲୋକଙ୍କର ସ୍ୱାର୍ଥରକ୍ଷା କରି ପାରିଛନ୍ତି । ଏବେ ପେରୁ କଥା ବିଚାରକୁ ନିଆଯାଉ । ଜଗତୀକରଣ ଦ୍ୱାରା ସେ ଦେଶର ଦୁଇଟି ଅଞ୍ଚଳରେ ଗୁରୁତର ଅବ୍ୟବସ୍ଥା ଦେଖା ଦେଇଛି । ଏଣ୍ଡିଜ୍ ପର୍ବତମାଳା ହେଉ ବା ଆମାଜନ୍ ନଦୀ ଅବବାହିକା ହେଉ, ସବୁଠାରେ ଲୋକେ ଭୀଷଣ କ୍ଷତିଗ୍ରସ୍ତ ହୋଇଛନ୍ତି ଓ ଅନେକ ବିପଦର ସମ୍ମୁଖୀନ ହେଉଛନ୍ତି । କ୍ୟାମିସି ଗ୍ୟାସ୍ ପାଇପ୍ ଲାଇନ୍ ଯାହା କ୍ୟାମିସ୍ ଓ ରାଜଧାନୀ ଲିମାକୁ ସଂଯୋଗ କରୁଛି; ଏ ଭିତରେ କେତେଥର ଫାଟିଛି ଓ ଏଥିରେ ଜନଜୀବନ ଓ ପର୍ଯ୍ୟାବରଣ ବହୁତ କ୍ଷତିଗ୍ରସ୍ତ ହୋଇଛନ୍ତି । ଅନ୍ୟପକ୍ଷରେ

ମ୍ୟାଯାଜ୍ ତମ୍ବା ଖଣି ଯାହା ଏଣ୍ଡିଜ୍ ପର୍ବତମାଳାରେ ଅବସ୍ଥିତ ତାହା ସେଠାକାର ଆଦିବାସୀମାନଙ୍କର ଜଳ, ଜମି, ଜଙ୍ଗଲ, ଜୀବନ ଓ ଜୀବିକାକୁ ନଷ୍ଟ କରିଛି । ଏଣ୍ଡିଜ୍ ପର୍ବତମାଳାରୁ ବାହାରିଥିବା କେତେକ ନଦୀକୁ ମଧ୍ୟ ଏ ଖଣି ବିଷାକ୍ତ କରୁଛି । ବଲିଭିଆ ଜଗତୀକରଣ ଦ୍ୱାରା ବିଶେଷ ପ୍ରଭାବିତ ହୋଇଛି । ଆମେରିକାର ତଥାକଥିତ ୱାଶିଂଟନ୍ କନ୍‌ସେନ୍‌ସ୍ ନାମରେ ବଲିଭିଆରେ ବିଭିନ୍ନ ପ୍ରକାର ସଂସ୍କାର କରାଯାଇଛି । ପ୍ରଥମ ପୀଢ଼ିର ସଂସ୍କାରରେ ଆର୍ଥିକ ସଂସ୍କାର, ରାଷ୍ଟ୍ରଦ୍ୱାରା ନିୟନ୍ତ୍ରିତ ଖଣି ଗୁଡିକ ବନ୍ଦ, ଶ୍ରମିକ ଛଟେଇ, ଖୋଲାବଜାର ଓ ବେପାରର ଉଦାରୀକରଣ ଆଦି ଅନ୍ତର୍ଭୁକ୍ତ ହୋଇଛି । ଦ୍ୱିତୀୟ ପୀଢ଼ି ସଂସ୍କାରରେ ଛଅଟି ରାଷ୍ଟ୍ରାୟତ୍ତ ଉଦ୍ୟୋଗର ଘରୋଇକରଣ କରାଯାଇଛି । ଏହାଦ୍ୱାରା ଅସଂଖ୍ୟ ଶ୍ରମିକଙ୍କୁ ଛଟେଇ କରାଯାଇଛି । ବଲିଭିଆର ବହୁଭାଗ ଲୋକଙ୍କ ଜୀବନଯାପନର ସ୍ତର ଏବଂ ବାର୍ଷିକ ଆୟ ପ୍ରଭାବିତ ହୋଇଛି । ଆଦିବାସୀମାନଙ୍କ ଭିତରୁ ପ୍ରାୟ ଶତକଡ଼ା ନବେଭାଗ ଲୋକ ତୀବ୍ର ଦାରିଦ୍ର୍ୟର ସମ୍ମୁଖୀନ ହୋଇଛନ୍ତି । ସେଠାରେ ଏବେ ଜନଆନ୍ଦୋଳନ ଏବଂ ରାଜନୈତିକ କାର୍ଯ୍ୟକ୍ରମ ଦ୍ୱାରା ଶାସନର ଢାଞ୍ଚା ବଦଳିଛି ଓ ଆଭୋମୋରାଲେସ୍‌ଙ୍କ ନେତୃତ୍ୱରେ ନୂତନ ସରକାର କ୍ଷମତାକୁ ଆସିଛନ୍ତି ଯାହା ପଛରେ ବଲିଭିଆର ସାଧାରଣ ଲୋକଙ୍କ ପ୍ରଚଣ୍ଡ ସମର୍ଥନ ରହୁଛି । ଆଫ୍ରିକାର ଦେଶ ସମୂହ କେନିଆ, ଉଗାଣ୍ଡା, ବୁରୁଣ୍ଡି, କଙ୍ଗୋ, ସବୁଠାରେ ସ୍ଥାନୀୟ ଆଦିବାସୀଙ୍କ ସମସ୍ୟା ଓ କ୍ରମକ୍ଷୟିଷ୍ଣୁ ଜୀବନର ସ୍ତର ସାରା ପୃଥିବୀରେ ଉଦ୍‌ବେଗର କାରଣ ହୋଇସାରିଛି । ଏଡ୍‌ସ ଭଳି ବେମାରୀ ଓ ଗୃହଯୁଦ୍ଧର ହିଂସା ଲକ୍ଷ ଲକ୍ଷ ଲୋକଙ୍କୁ ମୃତ୍ୟୁମୁଖକୁ ଠେଲି ଦେଉଛି । ଏସିଆ ପାସିଫିକ୍ ଅଞ୍ଚଳରେ ଥିବା ପଶ୍ଚିମ ପାପୁଆରେ ଆଦିବାସୀ ଲୋକଙ୍କୁ ବିସ୍ଥାପିତ କରି ଲକ୍ଷ ଲକ୍ଷ ଏକର ଜମି ଦଖଲ କରାଯାଉଛି ଓ ଇଣ୍ଡୋନେସିଆର ବାସିନ୍ଦାମାନଙ୍କୁ ଲାଭଦାୟକ ଓ ଅର୍ଥକାରୀ ଚାଷ କରିବାକୁ ପ୍ରୋତ୍ସାହନ ଦିଆଯାଉଛି । ପୂର୍ବ ଏସିଆରେ ଲାଓସ, କାମ୍ବୋଡ଼ିଆ, ଭିଏତ୍‌ନାମ୍ ଓ ବର୍ମାରେ ବିଭିନ୍ନ ନଦୀବନ୍ଧ ଯୋଜନା, ମାଇନିଂ, ଭିତ୍ତିଭୂମି ନିର୍ମାଣ ନାମରେ ଆଦିବାସୀମାନଙ୍କୁ ବିସ୍ଥାପିତ କରାଯାଉଛି । ପୁଞ୍ଜିନିବେଶ ଆଗରେ ଏ ଦେଶବାସୀଙ୍କୁ ବଳି ପକାଯାଉଛି ।

ପୃଥିବୀର ଅନେକ ଦେଶରେ ସାମରିକ ବାହିନୀ ଅସଲ କ୍ଷମତାରେ ଆସ୍ଥାନ ଜମାଇ ବସିଛନ୍ତି ଓ ଜଗତୀକରଣର ମୂଳ ଲାଭ ପାଉଛନ୍ତି । ଜଗତୀକରଣକୁ ଆମେ ସାମଗ୍ରିକ ଦୃଷ୍ଟିରେ ଦେଖିଲେ ଆର୍ଥିକ ଜଗତୀକରଣ ଓ ପୁଞ୍ଜିବାଦ ଜଗତୀକରଣର ବ୍ୟାପକତାକୁ ଅନୁଭବ କରିବା । ପୁଞ୍ଜିପତି ଓ ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ପୁଞ୍ଜି ଏବେ

ଅମାନିଆ ହୋଇ ଦେଶ କାଳ ଓ ପାତ୍ରକୁ ଗ୍ରାସ କରିଛି । ଏହା ଉପରେ କାହାର ନିୟନ୍ତ୍ରଣ ନାହିଁ । ଅନ୍ୟ ପକ୍ଷରେ ଶ୍ରମିକ କୁଶଳୀ ହେଉ କି ଅଣକୁଶଳୀ ହେଉ ସହଜରେ ନିଜର ପରିସର ଅତିକ୍ରମ କରି ଅନ୍ୟତ୍ର ଯାଇ ପାରୁନାହିଁ । ସାମ୍ପ୍ରତିକ ଜଗତୀକରଣରେ ଏହା ହେଉଛି ସବୁଠାରୁ ବିପଜ୍ଜନକ ପରିପ୍ରକ୍ଷୀ । ଗୋଟାଏ ଦେଶର ଆର୍ଥିକ ବ୍ୟବସ୍ଥା ଉପରେ ନିୟନ୍ତ୍ରଣ କରି ସେ ଦେଶକୁ ଜଗତୀକରଣ ପ୍ରକ୍ରିୟାରେ ଜୋର ଜବରଦସ୍ତି ସାମିଲ୍ କରିବା ଗୋଟାଏ ପ୍ରକାରର ଆନ୍ତର୍ଜାତିକ ଚରମବାଦ ନୁହଁ ତ ଆଉ କ'ଣ ?

ଭାରତବର୍ଷରେ ଏନ୍‌ଡିଏ ସରକାରଙ୍କ ପତନ ପରେ ୟୁପିଏ ସରକାର କ୍ଷମତାକୁ ଆସିବାର ସପ୍ତାହକ ଭିତରେ ଭାରତର ସେୟାର ବଜାର୍ ଭୁଶୁଡି ପଡ଼ିଥିଲା । ବିଦେଶୀ କମ୍ପାନୀମାନେ ସେମାନଙ୍କର ସେୟାର୍ ସବୁ ପ୍ରତ୍ୟାହାର କରିଥିଲେ । ସେମାନଙ୍କର ଡର ଥିଲା ଯେ ଯେହେତୁ ବାମପନ୍ଥୀମାନେ ୟୁପିଏ ସରକାରଙ୍କ ଅଂଶୀଦାର, ସେମାନେ ଆର୍ଥିକ ବ୍ୟବସ୍ଥା ବଦଳେଇ ଦେବେ । କିନ୍ତୁ ଆମର ପ୍ରାଧାନମନ୍ତ୍ରୀ ଅର୍ଥମନ୍ତ୍ରୀ ଓ ଯୋଜନା ଆୟୋଗର ମୁଖ୍ୟ ଉଦାରୀକରଣ, ଘରୋଇକରଣ ଓ ଜଗତୀକରଣର ଦୃଢ଼ ବିଶ୍ୱାସୀ ହୋଇଥିବାରୁ ସେମାନେ କ୍ଷମତାକୁ ଆସିଲା ମାତ୍ରକେ ସେୟାର୍ ବଜାରରେ ପୁଣି ସୁଧୁରି ଆସିଥିଲା । ଯଦି ଭାରତଭଳି ଏକ ଶକ୍ତିଶାଳୀ ଦେଶରେ ଏଭଳି ହୋଇପାରୁଛି, ତେବେ ଅନ୍ୟ ଛୋଟଛୋଟ ଦେଶର ଅବସ୍ଥା କିପରି ହୋଇଥିବ ସହଜରେ ଅନୁମାନ କରିହେଉଛି । ମୋଟାମୋଟି କହିବାକୁ ଗଲେ ଗୋଟିଏ ଦେଶର ଆର୍ଥିକ ବ୍ୟବସ୍ଥା ସେ ଦେଶର ସରକାର ଉପରେ ଆଉ ନିର୍ଭର କରୁନାହିଁ । ବହୁ ରାଷ୍ଟ୍ରୀୟ କମ୍ପାନୀ ଓ ସେମାନଙ୍କର ସମର୍ଥକ ବିଶ୍ୱ ବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାକୋଷ ବର୍ତ୍ତମାନ ଏହାକୁ ସମ୍ପୂର୍ଣ୍ଣ ନିୟନ୍ତ୍ରଣ କରୁଛନ୍ତି । ସରକାରଙ୍କ ଆର୍ଥିକ କାର୍ଯ୍ୟକ୍ରମ କରିବାର କ୍ଷମତା ଯୋଗ୍ୟତା ଆଉ ନାହିଁ । ଗୋଟାଏ ରାଷ୍ଟ୍ରରେ କେଉଁ କାର୍ଯ୍ୟକ୍ରମ୍ ଲୋକଙ୍କ ଆର୍ଥିକ ସ୍ତର ଓ ଅଭିବୃଦ୍ଧି ନିର୍ଣ୍ଣୟ କରିବ ତାହା ସରକାର ନିଷ୍ପତ୍ତି ଆଉ ନେଇ ପାରିବେ ନାହିଁ । ଭାରତ ବର୍ଷରେ କୃଷି ଓ କୃଷକଙ୍କ ଉନ୍ନତି ସରକାର ନକରି ଶିଳ୍ପ ଓ ମାଇନିଂ ପ୍ରତି ବେଶୀ ଧ୍ୟାନ ଦେବାର ମୂଳ କାରଣ ଏହାଛଡ଼ା ଆଉ କ'ଣ ହୋଇ ପାରେ ? ରାଷ୍ଟ୍ରର ରାଜନୈତିକ ସ୍ଥିରତା ଓ ଗତିଶୀଳତା ସେଠାକାର ଗଣତନ୍ତ୍ର ଉପରେ ସାଧାରଣତଃ ନିର୍ଭର କରିଥାଏ । ବର୍ତ୍ତମାନ କିନ୍ତୁ ପରିସ୍ଥିତି ଏପରି ବଦଳି ଯାଇଛି ଯେ ରାଷ୍ଟ୍ରର ରାଜନୈତିକ ରୂପରେଖ କ'ଣ ହେବ କେବଳ ବଜାର ଓ ବେପାର ସ୍ଥିର କରୁଛନ୍ତି । ଯାହା ପାଖରେ ଅର୍ଥ ଅଛି ସେ ଖୋଲା ବଜାରରେ ହିଁ ବେଶୀ ପ୍ରବେଶ କରିଛି ଓ ଭୋଟ ବାକ୍ସକୁ ମଧ୍ୟ ଦଖଲ କରିପାରୁଛି । ଏଥିରେ କାହାର ଦ୍ୱିମତ ହେବାର ସାହସ ଅଛି କି ? ❑

# ଜଗତୀକରଣ ଓ ନୂତନ ସମାଜର ପରିକଳ୍ପନା

କେଜାଣି କାହିଁକି ମୋତେ ଏକ ନୂତନ ସମାଜର ପରିକଳ୍ପନା ଓ ସ୍ୱପ୍ନ ସମ୍ଭାବନା ଅନେକ ବର୍ଷଧରି ଅନନ୍ତ ଆକର୍ଷଣ ସୃଷ୍ଟି କରିଛି । ସମାଜରେ ଗତିଶୀଳତା ଅଛି । ନବୋନ୍ମେଷ ଭରିରହିଛି । ଏଇଥିପାଇଁ ଯେ କୌଣସି ସମାଜ ମରିଯାଏ ନାହିଁ । ସବୁବେଳେ ନୂତନ ଶକ୍ତି ଓ ସାଜସଜାର ବିନ୍ୟାସ ନେଇ ମୁଣ୍ଡ ଟେକି ଥାଏ । ବିଖ୍ୟାତ ଐତିହାସିକ ଆର୍ନୋଲଡ଼ ଟୟନବି ଏଥିପାଇଁ ସମାଜ ଓ ସଭ୍ୟତାର ଆଗମନ ଓ ଅପସାରଣ ଉପରେ ଆଲୋକପାତ କରିଛନ୍ତି । ଲେଖକ ଓ ଦାର୍ଶନିକ, ପ୍ରେମିକ ଓ ପଳାତକ, ବୈଜ୍ଞାନିକ ଓ ବୁଦ୍ଧିଜୀବୀ– ସମସ୍ତେ ଏପରି ଏକ ପୃଥିବୀ ଓ ସମାଜର ଚିତ୍ର ଅଙ୍କିଥାଆନ୍ତି ଯାହା ଆଣିଦିଏ ଆନନ୍ଦ, ପ୍ରେମ, ସମ୍ବେଦନଶୀଳତା ଓ ସଂପ୍ରୀତି । ଭରିଦିଏ ବଞ୍ଚିବାର ଉଲ୍ଲାସ ଓ ସୃଷ୍ଟିକରେ କଳ୍ପନାର କୁହୁକ । ଏଇଭଳି ଏକ ଅନ୍ୱେଷଣ ମୋତେ ନେଇ ଯାଇଛି ଅନେକ ଲେଖକ ଓ ତାଙ୍କର ଲେଖନୀ ନିସୃତ ବିଶ୍ୱ ସାହିତ୍ୟକୁ । ମୁଁ ପଢ଼ିଛି ଆରିଷ୍ଟୋଫେନ୍ସଙ୍କ 'ବାର୍ଡ଼'(Bird), ପ୍ଲାଟୋଙ୍କ 'ରିପବ୍ଲିକ୍'(Republic), ଥରୋଙ୍କ 'ୱାଲ୍‌ଡ଼େନ'(Walden), ଥୋମାସ୍ ମୋରଙ୍କ 'ୟୁଟୋପିଆ'(Utopia), ଏଚ.ଜି. ୱେଲସଙ୍କ 'ମଡ଼ର୍ଣ୍ଣ ୟୁଟୋପିଆ'(Modern Utopia), ଟଲଷ୍ଟୟଙ୍କ 'ଆନା କାରେନିନା'(Anna Karenina), ଦସ୍ତୋଭସ୍କିଙ୍କ 'ବ୍ରଦର୍ସ କାରାମାଜୋଭ୍'(Brothers Karamazov), ହରମାନ୍ ହେସେଙ୍କ 'ଗ୍ଲାସ୍‌ବିଡ୍ ଗେମ'(Glassbead Game), ମାର୍କସଙ୍କ 'ଦାସ୍ କ୍ୟାପିଟାଲ'(Das Capital) 'ଅରୱେଲଙ୍କ ୧୯୮୪', ହକ୍ସଲିଙ୍କ 'ବ୍ରେଭ ନିଉ ୱାର୍ଲ୍ଡ'(Brave New World), ଡ଼ଗଲାସ୍ ହଫଷ୍ଟାଡରଙ୍କ 'ଗଡେଲେ ଏସର୍ ବାକ୍'(Godel Escher Bach) ଓ ସର୍ବୋପରି ଗାନ୍ଧୀଙ୍କ 'ହିନ୍ଦ ସ୍ୱରାଜ୍' । ଆଉ ମଧ ପଢ଼ିଛି ଫ୍ରାନ୍‌ସିସ୍ ଫୁକୁୟାମାଙ୍କ 'ଦି ଏଣ୍ଡ ଅଫ ହିଷ୍ଟୋରି ଆଣ୍ଡ ଲାଷ୍ଟ ମ୍ୟାନ' (The End of History And Last Man) ଆଇଜାକ ଆସିମୋଭଙ୍କ 'ଫାଉଣ୍ଡେସନସ୍ ଏଜ୍'(Foundtions Edge), ଏବଂ ଆର୍ଣ୍ଣେଷ କାଲନବାକଙ୍କ 'ଇକୋଟୋପିଆ'(Ecotopia) । ପ୍ରଫେସର ଚିତ୍ତରଞ୍ଜନ ଦାସଙ୍କ 'ଜୀବନ ବିଦ୍ୟାଳୟ' ମଧ ମୁଁ କେତେଥର ପଢ଼ି ସ୍ୱପ୍ନ ବିଭୋର ହୋଇଛି । ସାମ୍ପ୍ରତିକ ପୃଥିବୀରେ ଯେତେ ସମସ୍ୟା ରହିଛି ତାହା ବିଚାରକୁ ନେଇ ଆଧୁନିକ ୟୁଟୋପିଆ

ସୃଷ୍ଟି କରିଥିବେ ଅନେକ ଚିନ୍ତାଶୀଳ ବ୍ୟକ୍ତିମାନେ । କ୍ଷମା କରିବେ, ସେସବୁ ମୁଁ ପଢ଼ିବାକୁ ସୁଯୋଗ ପାଇନାହିଁ । ମୋର ସୀମିତ ପରିସର ଭିତରେ ମଧ୍ୟ ଏଭଳି ଅନେକ ବନ୍ଧୁ ମିଳିନାହାନ୍ତି ଯାହାଙ୍କ ସହ ଆଧୁନିକ ସମାଜର ରୂପରେଖ ସମ୍ପର୍କିତ ତର୍କ କରାଯାଇପାରେ । ତଥାପି ହରମାନ୍ ହେସେଙ୍କ 'ମ୍ୟାଜିଷ୍ଟର ଲୁଡ଼ି ବା ଗ୍ଲାସବିଡ୍ ଗେମ୍' ବହି ଦ୍ୱାରା ମୁଁ ସମ୍ଭବତଃ ବେଶୀ ପ୍ରଭାବିତ ହୋଇଛି । ହେସେ କହିବାକୁ ଚାହିଁଛନ୍ତି ଯେ ସଂଗୀତ, ଧ୍ୟାନ ଓ ଦର୍ଶନର ଅପରିମିତ ମିଶ୍ରଣରେ ଜୀବନ ସାକାର ହୋଇଯାଏ । ଏହାକୁ ଅନ୍ତଃସ୍ଥ କରିବାକୁ ଯେମିତି କେତୋଟି ଜୀବନ କାଟିବାକୁ ପଡ଼େ । ମ୍ୟୁଜିକ୍, ମେଡ଼ିଟେସନ୍ ଓ ମେଟାଫିଜିକ୍ସ - ସମାଜରେ ବଞ୍ଚିବାର ପାଥେୟ ନୁହେଁତ ଆଉ କ'ଣ ? ଡଗ୍‌ଲାସ୍ ହଫଷ୍ଟାଡର କିନ୍ତୁ 'ଗଡେଲ, ଏସର, ବ୍ୟାକ୍' ବହିରେ ଗଣିତ, କଳା ଓ ସଂଗୀତକୁ ନେଇ ଉପସ୍ଥାପନା କରିଛନ୍ତି ବଞ୍ଚିବାର ନୂତନ ସୂତ୍ର । ମୋର ପରିକଳ୍ପିତ ପୃଥିବୀରେ ଅଛନ୍ତି ଆଇଭାନ୍ କାରାମାଜୋଭ୍ ଯିଏ ବିପ୍ଳବ ଓ ବିଦ୍ରୋହ କରିବାର ଦୁଃସାହସ କରିଥାଏ । ଆଉ ଅଛନ୍ତି ଆଲ୍ୟୋଶା କାରାମାଜୋଭ ଯିଏ ଭଲ ପାଇବା ଓ ବିନା ପ୍ରଶ୍ନବାଚକ ଚିହ୍ନରେ ସ୍ୱୀକାର କରିବାର ସର୍ବଶ୍ରେଷ୍ଠ ଉଦାହରଣ ହୋଇଯାଏ । ଆମକୁ ବାଛିବାକୁ ପଡିବ ଆଇଭାନ୍ କାରାମାଜୋଭଙ୍କୁ ନଚେତ୍ ଆଲ୍ୟୋଶା କାରାମାଜୋଭକୁ । ସାମ୍ପ୍ରତିକ ସମାଜରେ ନିଜକୁ ସଚେତନ ମଣିଷ ହିସାବରେ ପ୍ରତିଷ୍ଠା କରିବାକୁ ହେଲେ ଏହି ପଦକ୍ଷେପ ଯେ ନେବାକୁ ହେବ, ଏହାଛଡା ଦ୍ୱିତୀୟ ରାସ୍ତା ନାହିଁ ।

ଜଗତୀକରଣ ପ୍ରକ୍ରିୟା ଆଜି ଏକ ବିକଳ୍ପ ସମାଜ ସୃଷ୍ଟି କରିଛି କି ବହୁଭାଗ ଲୋକଙ୍କ ପାଇଁ ? ଉପସ୍ଥାପନା କରିଛି କି ଏକ ମୁକ୍ତ, ସ୍ୱାଧୀନ ସମାଜ ? ସୃଷ୍ଟି କରିଛି କି ଏକ ପରିବେଶ ଯାହା ମଣିଷ, ମଣିଷ ଭିତରେ, ମଣିଷ ଓ ପ୍ରକୃତି ଭିତରେ, ମଣିଷ ଓ ପରିବେଶ ଭିତରେ, ମଣିଷ ଓ ଆଦର୍ଶବାଦ ଭିତରେ ଦୃଢ଼ୀଭୂତ କରିବ ଭଲପାଇବାକୁ ଓ ଢାହିଁର୍ କରିବ ସଂପ୍ରୀତିକୁ ? ପ୍ରତ୍ୟେକ ସମାଜର ଦୁଇଟି ଦିଗ ଅଛି । ଗୋଟିଏ ହେଲା ବିକାଶର ଦିଗ ଓ ଅନ୍ୟଟି ହେଲା ବିଜ୍ଞାନର ଦିଗ । ଏ ଦୁଇଙ୍କ ସମନ୍ୱୟ ହେଲେ ସମାଜ ଅଗ୍ରଗତି କରିଥାଏ ଓ ମଣିଷର ସାମଗ୍ରିକ ଅଭିବୃଦ୍ଧି ହୋଇଥାଏ । ଏବେ ସାରା ପୃଥିବୀର ପ୍ରାୟ ସମସ୍ତ ଦେଶ ସହସ୍ରାବ୍ଦର ବିକାଶ ଲକ୍ଷ୍ୟ ବା ମିଲେନିୟମ ଡେଭେଲପମେଣ୍ଟ ଗୋଲ୍ ବା ଏମ୍:ଡ଼ି:ଜି: ନିର୍ଣ୍ଣୟ କରିଛନ୍ତି । ସେଗୁଡିକ ହେଲା (୧) ୨୦୧୫ ମସିହା ସୁଦ୍ଧା ବର୍ତ୍ତମାନର ଦାରିଦ୍ର୍ୟ ଓ କ୍ଷୁଧାରେ ବଞ୍ଚୁଥିବା ୧୫୦କୋଟି

ଲୋକଙ୍କ ସଂଖ୍ୟା ଅଧାକୁ କମାଇବା । (୨) ୨୦୧୫ମସିହା ସୁଦ୍ଧା ପୃଥିବୀର ସମସ୍ତ ଶିଶୁ ସ୍କୁଲ ଯିବେ ଓ ପାଠ ପଢ଼ିବେ । (୩) ୨୦୧୫ ମସିହା ସୁଦ୍ଧା ଶିକ୍ଷା ଓ ଅନ୍ୟକ୍ଷେତ୍ରରେ ମହିଳାମାନଙ୍କ ପ୍ରତି ଯେଉଁଭଳି ଭେଦଭାବ ରହିଛି ତାହା ସମ୍ପୂର୍ଣ୍ଣ ଦୂର କରିବା ।(୪) ୨୦୧୫ ମସିହା ସୁଦ୍ଧା ଶିଶୁ ମୃତ୍ୟୁର ହାର ଦୁଇତୃତୀୟାଂଶ କମାଇବା । (୫) ୨୦୧୫ ମସିହା ସୁଦ୍ଧା ମାଆଙ୍କ ମୃତ୍ୟୁ ହାର ଚାରିଭାଗରୁ ତିନିଭାଗ କମାଇବା । (୬) ଏଡ଼ସ୍ ଓ ମ୍ୟାଲେରିଆ ଆଦି ରୋଗକୁ ୨୦୧୫ ମସିହା ସୁଦ୍ଧା ସମ୍ପୂର୍ଣ୍ଣ ନିରାକରଣ କରାଇବା । (୭) ନିରନ୍ତର ବିକାଶର ଉପାଦାନ ଓ ପରିବେଶ ସହ ସଂଶ୍ଲିଷ୍ଟ ସମ୍ବଳର ସୁରକ୍ଷା କରାଇବା ।(୮) ବିଶ୍ୱ ସ୍ତରରେ ବିକାଶ ପାଇଁ ସହଯୋଗ ବଢ଼ାଇବା । ଏସବୁ ଯେମିତି ଏକା ମିଠା ସ୍ୱପ୍ନ ଭଳି ଲାଗୁଛି । ଜଗତୀକରଣ ପ୍ରକ୍ରିୟାରେ କୋଟି କୋଟି ଲୋକ ବିସ୍ଥାପିତ ହୋଇଛନ୍ତି ଓ ହେବାକୁ ଯାଉଛନ୍ତି । ନୂତନ ବଜାର ଓ ବେପାର ବ୍ୟବସ୍ଥାରେ କୋଟି କୋଟି ଲୋକ ସେମାନଙ୍କର ଜୀବନଜୀବିକା ହରାଇ କ୍ଷୁଧା ଓ ଦାରିଦ୍ର୍ୟର ସମୁଦ୍ରରେ ବୁଡ଼ି ଯାଇଛନ୍ତି । ସମାଜ ଭିତରେ ନାନା ପ୍ରକାରର ରୋଗବ୍ୟାଧି ବଢ଼ିଛି । ନିରକ୍ଷରତା ଏବେ କମିଥିବା ଲକ୍ଷ୍ୟ କରାଯାଉନାହିଁ । ଯେତେବେଳେ ପରିବେଶ ଧ୍ୱଂସ ହେଉଛି ସେତେବେଳେ ଆଉ ଏକପ୍ରକାରର ନିରାପତ୍ତା ମଧ୍ୟ ବିପନ୍ନ ହେଉଛି । ନିରନ୍ତର ବିକାଶର ପ୍ରକ୍ରିୟାକୁ ପ୍ରତିହତ କରିବା ପାଇଁ ସବୁକିଛିର ବଜାରୀକରଣ କରାଯାଉଛି । ଏସବୁ ଜଗତୀକରଣର ନଗ୍ନ ଅବଦାନ ନୁହେଁ ତ କ'ଣ ? ବିଖ୍ୟାତ ଲେଖକ ଜାରେଡ୍ ଡାଇମଣ୍ଡ ତାଙ୍କର ବହି 'କୋଲାପ୍‌ସ'(Collapse)ରେ ଇତିହାସରେ ଯେଉଁସବୁ ସମାଜ, ସାମ୍ରାଜ୍ୟ ଓ ସଭ୍ୟତା ଧ୍ୱଂସ ପାଇଛି ତାହାର ଆଲୋଚନା କରି ପ୍ରମାଣ କରିବାକୁ ଚାହିଁଛନ୍ତି ଯେ ଆମର ସାମାଜିକ ଓ ପ୍ରାକୃତିକ ସମ୍ପଦ ନଷ୍ଟ ହେଲେ ଯେ କୌଣସି ସଭ୍ୟତା ଲୁପ୍ତ ହୋଇଯିବ । ଇତିହାସର ପୃଷ୍ଠା ଉନ୍ମୋଚନ କଲେ ଏହା ସ୍ପଷ୍ଟ ପରିଲକ୍ଷିତ ହୁଏ । ଭାଗବତରେ ଯଦୁବଂଶ ଧ୍ୱଂସ ପାଇଥିବା କଥା ମଧ୍ୟ ଉଲ୍ଲେଖ ହୋଇଛି । ଜଗତୀକରଣ ଦ୍ୱାରା ଆଜିର ସମାଜ ଯଦୁବଂଶରେ ପରିଣତ ହୋଇ କାମ, କ୍ରୋଧ, ଲୋଭ, ବ୍ୟଭିଚାର, ଅନୀତି ଓ ଅଧର୍ମରେ ମତୁଆଲା ହୋଇଛି । ସମାଜ ବିକାଶ ଓ ପରିବର୍ତ୍ତନର ଧାରାରେ ଅନେକ କିଛି ଘଟିବାର ଅଛି । ସାଧାରଣ ମଣିଷକୁ ଖାଦ୍ୟ, ପାନୀୟ ଜଳ, ବାସଗୃହ, ସ୍ୱାସ୍ଥ୍ୟ, ଜୀବିକା ଓ ସର୍ବୋପରି ପରିବେଶର ସୁରକ୍ଷା କ୍ଷେତ୍ରରେ ଅଗ୍ରାଧିକାର ଦେବାକୁ ମାନସିକ, ଆର୍ଥିକ ଓ ଆଦର୍ଶବାଦ ସ୍ତରରେ ପ୍ରସ୍ତୁତି ଅପରିହାର୍ଯ୍ୟ ହୋଇପଡ଼ିଛି ।

ସମାଜର ସ୍ଥିରତା ଓ ପ୍ରଗତି କ୍ଷେତ୍ରରେ ବିକାଶ ଓ ବିଜ୍ଞାନ ମୁଦ୍ରାର ଦୁଇ ପାର୍ଶ୍ୱଭଳି, ଆମେ ବିଜ୍ଞାନ ଓ ଟେକ୍ନୋଲୋଜିକୁ ବିଚାରକୁ ନେବା । ଜ୍ଞାନ ଓ ବିଜ୍ଞାନ କ୍ଷେତ୍ରରେ କେତେଶହ ବର୍ଷ ଧରି ବିସ୍ଫୋରଣ ହେଉଛି ଓ ବୈଜ୍ଞାନିକ ବିପ୍ଳବମାନ ଘଟିବାରେ ଲାଗିଛି । ଷୋଡ଼ଶ ଶତାବ୍ଦୀରେ ନିକୋଲାସ କୋପରନିକସ୍ ପ୍ରଥମେ ଏକ ବିପ୍ଳବର ନେତୃତ୍ୱ ନେଇ କହିଥିଲେ ଯେ ପୃଥିବୀ ସୂର୍ଯ୍ୟ ଚତୁର୍ପାଶ୍ୱରେ ଘୁରୁଛି ଏବଂ ସୌରମଣ୍ଡଳର କେନ୍ଦ୍ରବିନ୍ଦୁ ହେଉଛି ସୂର୍ଯ୍ୟ । ପୃଥିବୀ ସ୍ୱତନ୍ତ୍ର ନୁହେଁ । ଅନ୍ୟଗ୍ରହମାନଙ୍କ ଭଳି ଏକ ଗ୍ରହ । ତା'ପରେ ତିନିଶହ ବର୍ଷପରେ ଉନବିଂଶ ଶତାବ୍ଦୀରେ ଚାର୍ଲସ୍ ଡାରଉଇନ୍ ବିବର୍ତ୍ତନବାଦ କଥା ଉପସ୍ଥାପନା କରି କହିଥିଲେ ଯେ ମଣିଷ ସ୍ୱତନ୍ତ୍ର ନୁହେଁ । ଜୀବମଣ୍ଡଳର ଏକ ଅଂଶମାତ୍ର । ତାହାର ଶହେବର୍ଷ ପରେ ଜେମ୍ସ ୱାଟସନ୍ ମଣିଷର ଜୀବକୋଷ ଭିତରେ ଥିବା ଡି.ଏନ୍.ଏର ରହସ୍ୟକୁ ଉନ୍ମୋଚିତ କରିଥିଲେ ଓ ମଣିଷ କେବଳ ଅଣୁପରମାଣୁର ସମଷ୍ଟି ବୋଲି ପ୍ରମାଣ କରିଥିଲେ । ଏଇ ମୁଖ୍ୟ ତିନୋଟି ବୈପ୍ଳବାତ୍ମକ ଆବିଷ୍କାର ପରେ ଏବେ ବିଜ୍ଞାନ ଏତେ ଅଗ୍ରଗତି କରିଛି ଯେ ଏହା ପରବର୍ତ୍ତି ବିପ୍ଳବ କ'ଣ ହେବ କେବଳ ଅନୁମାନ କରି ହେଉଛି କିନ୍ତୁ ସଠିକ୍ କହି ହେଉନାହିଁ । କିଏ କହୁଛି ଯେ ମଣିଷ ତାହାର ବଂଶଧରମାନଙ୍କୁ ତିଆରି କରିବ କ୍ଲୋନିଂ ଦ୍ୱାରା । ଆଉ କିଏ କହୁଛି ଯେ ମଣିଷର ମସ୍ତିଷ୍କ ଓ ମଣିଷର ମନ ଭିତରେ ଯେଉଁ ଅନ୍ତରଙ୍ଗ ସମ୍ପର୍କ ରହିଛି ତାହା ଶ୍ରୀଘ୍ର ଏକ ବୈଜ୍ଞାନିକ ବିପ୍ଳବ ସୃଷ୍ଟିକରିବ । ପଦାର୍ଥ ବିଜ୍ଞାନୀ ମିଚିଓ କାକୁ କହୁଛନ୍ତି ଯେ ଆମ ବିଶ୍ୱ ବ୍ରହ୍ମାଣ୍ଡକୁ ଛାଡ଼ି ଆଉ ଯେ ସମାନ୍ତରାଳ ବିଶ୍ୱ ବ୍ରହ୍ମାଣ୍ଡମାନ ରହିଛି ତାହା ପ୍ରମାଣିତ ହୋଇଯିବ । ଆଉଜଣେ ବିଜ୍ଞାନୀ କହୁଛନ୍ତି ଯେ କୃତ୍ରିମ ବୁଦ୍ଧି ସୃଷ୍ଟି କରିବାକୁ ଆଉ ବେଶି ବିଳମ୍ବ ଲାଗିବ ନାହିଁ । ଆମେ ଆମର ଚିନ୍ତନ ପ୍ରକ୍ରିୟା ଓ ମନୋଭାବକୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବୁଝିବାକୁ ହେବ । ଆଉ ଜଣେ ପଦାର୍ଥ ବିଜ୍ଞାନୀ କହିଛନ୍ତି ଯେ, ତିନୋଟି ପରିସର ପରେ ଯେ ଅନେକ ପରିସର ଅଛି ତାହା ଜଣା ପଡିଲେ ବିଜ୍ଞାନ କ୍ଷେତ୍ରରେ ବିପ୍ଳବ ସୃଷ୍ଟି କରିବ । ମେସିନ୍ ପରିଚାଳିତ ସଚେତନତା ସୃଷ୍ଟିକରିବା ଏକ ମାଇଲଖୁଣ୍ଟ ହେବ । ଅର୍ଥାତ ପ୍ରତ୍ୟେକ ମେସିନ୍ ଭଲମନ୍ଦ କ'ଣ ଜାଣି ପାରିବେ ଯେମିତି ଆମର ମସ୍ତିଷ୍କ ଭୁଲ ଠିକ୍ ନିର୍ଣ୍ଣୟ କରୁଛି । ତେଣୁ ଏସବୁ ଗୁରୁତ୍ୱପୂର୍ଣ୍ଣ ସମ୍ଭାବନା ଯଦି ବାସ୍ତବତାରେ ପରିଣତ ହୁଏ ତେବେ ଆମର ସମାଜରେ ଘୋର ପରିବର୍ତ୍ତନ ଆସିବ । ସାଧାରଣ ମଣିଷ ଏ ବୈଜ୍ଞାନିକ ଅଗ୍ରଗତିରୁ ଲାଭ ଉଠାଇବକି ନାହିଁ କିଏ କହିବ ? ଜଗତୀକରଣ ପ୍ରକ୍ରିୟା ଏ ବୈଜ୍ଞାନିକ ବିପ୍ଳବ ଦ୍ୱାରା

କେଉଁଭଳି ପ୍ରଭାବିତ ହେବ ଏବେ ମଧ ଭବିଷ୍ୟବାଦୀମାନେ କହିବାକୁ ସକ୍ଷମ ନୁହନ୍ତି । କିନ୍ତୁ ସମାଜର ଢ଼ାଞ୍ଚା ପରିବର୍ତ୍ତନ ହେବ ନିଶ୍ଚିତ । ବିଜ୍ଞାନ ଯେଉଁଗତିରେ ଅଗ୍ରଗତି କରୁଛି ଅବଶ୍ୟ ସମାଜ ସେଇ ଗତିରେ ଅଗ୍ରଗତି କରିପାରିବ ନାହିଁ । ବିକାଶର ଧାରା ମଧ ଅତି ସହଜରେ ବିଜ୍ଞାନର ଅଗ୍ରଗତି ସହ ତାଳ ଦେଇପାରିବ ନାହିଁ ।

ସମାଜ ପରିବର୍ତ୍ତନ ପ୍ରକ୍ରିୟା ଜଗତୀକରଣ ପ୍ରକ୍ରିୟା ସହ ତାଳେ, ତାଳେ ଅବାରିତ ରହିଛି । ଅବଶ୍ୟ ଗୋଟାଏ ପ୍ରଭାବଶାଳୀ ଓ ଶକ୍ତିମନ୍ତ ଗୋଷ୍ଠୀ ଜଗତୀକରଣ ପ୍ରକ୍ରିୟାକୁ ଅକୁଣ୍ଠ ସମର୍ଥନ ଦେଇଛନ୍ତି ଓ ଏମାନଙ୍କ ଯୋଗୁଁ ବର୍ତ୍ତମାନ ଜଗତୀକରଣ ପ୍ରକ୍ରିୟା ଆପାତତଃ ସବଳ ଓ ବ୍ୟାପକ ହେବାରେ ଲାଗିଛି । କିନ୍ତୁ ଆଉଗୋଟାଏ ଗୋଷ୍ଠୀ ମଧ ସଶକ୍ତ ବିରୋଧ କରୁଛନ୍ତି ଜଗତୀକରଣ ପ୍ରକ୍ରିୟାକୁ । ଏ ଗୋଷ୍ଠୀକୁ ପୃଥିବୀସାରା ନାଗରିକ ସମାଜ ବୋଲି କହୁଛନ୍ତି । କେହି କେହି ସମାଜ ଭିତରେ ରହି ପ୍ରତିରୋଧ କରୁଛନ୍ତି ଓ ଅନ୍ୟ କେହି ସମାଜ ବାହାରକୁ ଯାଇ ବିରୋଧାଭାସ ପ୍ରଦର୍ଶନ କରୁଛନ୍ତି । ଜଗତୀକରଣର ପ୍ରଭାବବଳରେ ଯେଉଁ କିଛି ପ୍ରକ୍ରିୟା ବେଶୀ ଆଘାତ ପ୍ରାପ୍ତ ହୋଇଛି ସେ ମଧରେ ଅଛି (କ) ଜୀବନଜୀବିକା (ଖ) ବାଣିଜ୍ୟ ନୀତି (ଗ) ବୌଦ୍ଧିକ ସମ୍ପତ୍ତି ଅଧିକାର (ଘ) ସାଧାରଣ ନାଗରିକ ସେବା । ଅନ୍ୟପକ୍ଷରେ ଘରୋଇକରଣକୁ ମାତ୍ରାଧିକ ପ୍ରାଧାନ୍ୟ ଦିଆଯାଉଛି । ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ଅଧିକ ଲାଭ କରିବାକୁ ଅନୁକୂଳ କ୍ଷେତ୍ର ସୃଷ୍ଟି କରାଯାଉଛି । ସଚେତନ ନାଗରିକ ସମାଜ ଆଜି ପୃଥିବୀ ସାରା ମୁଣ୍ଡ ଟେକିଛି । ଅନେକ ବ୍ୟକ୍ତି ବିଶେଷ ଏଥିରେ ମୁଖ୍ୟ ଅଂଶ ହୋଇଛନ୍ତି । ନାଗରିକ ସମାଜ ସାମ୍ପ୍ରତିକ ଅଗଣିତ ଜନଆନ୍ଦୋଳନକୁ ସମର୍ଥନ ଦେବାକୁ ଆଗେଇ ଆସିଛି ଏଥିରେ ଅଛନ୍ତି ସ୍ୱେଚ୍ଛାସେବୀ ସଂଗଠନ, ଶ୍ରମିକ ୟୁନିଅନ୍, ବିଭିନ୍ନ ଫାଉଣ୍ଡେସନ୍, ଧାର୍ମିକ ଅନୁଷ୍ଠାନ, ସାମାଜିକ ଆନ୍ଦୋଳନ ଓ ବିଭିନ୍ନ ପେଶାଦାର ବ୍ୟକ୍ତିଙ୍କ ନେଟ୍‌ୱାର୍କ । ଏ ନାଗରିକ ସମାଜ ଖାଲି ବିକାଶମୂଳକ କାମ କରୁନାହିଁ । ଜଗତୀକରଣକୁ ନୀତିଗତ ଭାବେ ବିରୋଧ କରୁଛି । ଗରୀବ ଲୋକଙ୍କ ହିତ ଓ ସୁରକ୍ଷା ପାଇଁ ଓକିଲାତି କରୁଛି ମଧ । ଜଗତୀକରଣ ପ୍ରକ୍ରିୟାର ପ୍ରଭାବରେ ରାଷ୍ଟ୍ରଦ୍ୱାରା ପରିଚାଳିତ ଶାସନ ଓ ପ୍ରଶାସନ ବ୍ୟବସ୍ଥାରେ ଯେଉଁ ଅସହାୟତା ଦେଖା ଦେଇଛି, ନାଗରିକ ସମାଜ ତାହାର ଘୋର ସମାଲୋଚନା କରୁଛି ଓ ବିକଳ୍ପ ମଧ ନିର୍ଣ୍ଣୟ କରୁଛି । ଅସଲ ସମାଜର ପରିପ୍ରକାଶ ହେଉଛି ଗଣତନ୍ତ୍ର ଓ ଗଣତାନ୍ତ୍ରିକ ମୂଲ୍ୟବୋଧ । ନାଗରିକ ସମାଜ ଗଣତାନ୍ତ୍ରିକ ପ୍ରକ୍ରିୟାକୁ

ମଜଭୂତ କରି ଆସିଛି । ଆଜି ପୃଥିବୀ ସାରା ନାଗରିକ ସମାଜ ବିକଳ୍ପ ପ୍ରକ୍ରିୟା ଓ ବିକଳ୍ପ ମଡ଼େଲ ସୃଷ୍ଟି କରିବାକୁ ଲାଗି ପଡ଼ିଛି । କେଉଁଠିନା କେଉଁଠି ନୂତନ ବସତି ସ୍ଥାପନ କରାଯାଇ ନୂତନ ଜୀବନ ଯାପନ ପ୍ରଣାଳୀର ଉଦାହରଣ ଦିଆଯାଉଛି । ପ୍ରାକୃତିକ ସମ୍ବଳର ଯଥାର୍ଥ ବିନିଯୋଗ କରି ଜୀବନଜୀବିକା ପ୍ରଶ୍ନର ସମାଧାନ ଉପାୟ ବାହାର କରାଯାଉଛି । ଛୋଟ ଛୋଟ ସଂଗଠନ ଗଢ଼ି ଉଠୁଛି । ଜଗତୀକରଣ ବିରୋଧରେ ସ୍ଥାନୀୟକରଣ ପ୍ରକ୍ରିୟା ଏବେ ସବୁଆଡ଼େ ପ୍ରଦର୍ଶନ କରାଯାଇଛି । ପରିବାରର ସଂଜ୍ଞା ବଦଳୁଛି । ବଂଶଗତ, ଜାତିଗତ, ବର୍ଣ୍ଣଗତ ବୈଷମ୍ୟ ଏବେ ଦୂର ହେଉଛି । ଜଣେ ମଣିଷ ତା'ଭଳି ସମଭାବାପନ୍ନ ମଣିଷ ସହ ସମ୍ବନ୍ଧ ଯୋଡ଼ିବାକୁ ଆଗେଇ ଆସୁଛି । ଏଇ ସମ୍ବନ୍ଧରେ ନେଟ୍‌ୱାର୍କିଙ୍ଗ୍ କୁହାଯାଇଛି ଓ ସଂଗଠନ ଗଢ଼ିବାକୁ ନୂତନ ଉତ୍ସାହ ପ୍ରଦର୍ଶନ କରାଯାଉଛି । ଜଗତୀକରଣ ବିରୋଧରେ ଅନ୍ୟତମ ଅସ୍ତ୍ର ହେଉଛି ସଂଗଠନ ଓ ସଂହତି । ଏହାକୁ ଇଂରାଜୀରେ କୁହାଯାଏ ଆଲିଆନ୍‌ସ (Alliance) । ଏ ସଂଗଠନ ପାଇଁ ଆବଶ୍ୟକ ହେଉଛି ମାନବୀୟ ସ୍ତରର ବାର୍ତ୍ତାଳାପ, ଭାବର ଆଦାନ ପ୍ରଦାନ ଓ ମନର ମିଳନ । ଆଦର୍ଶବାଦ ସନ୍ନିହିତ ହେଲେ ସଂଗଠନ ଆହୁରି ସମୃଦ୍ଧ ହେବ । ❑

# ଜଗତୀକରଣ ଓ ବିକଳ୍ପର ସନ୍ଧାନେ

(୧)

ଅନେକ ବନ୍ଧୁ ଯେଉଁମାନେ ଜଗତୀକରଣ ପ୍ରଶ୍ନ ପ୍ରତି ଉଦାସୀନ ନାହାଁନ୍ତି ସବୁବେଳେ ଗୋଟିଏ ପ୍ରଶ୍ନ ଉଠାଇଥାଆନ୍ତି । ଜଗତୀକରଣର ବିକଳ୍ପ କ'ଣ ? ଜଗତୀକରଣକୁ ବିରୋଧ କରୁଥିବା ବ୍ୟକ୍ତି ବା ଗୋଷ୍ଠୀ ଯଦି ବିରୋଧର ସଫଳ ଉଦାହରଣ ସୃଷ୍ଟି କରିପାରିବେ ନାହିଁ, ତେବେ ସେମାନେ ସେମାନଙ୍କର ଅଭିଯାନରେ ସଫଳ ହେବେ ନାହିଁ । ଏକଥା ଦୃଢ଼ ନିଶ୍ଚିତ । ବ୍ରିଟିଶ୍ ଶାସନ ଅଥବା ଉପନିବେଶବାଦ ବିରୁଦ୍ଧରେ ଗାନ୍ଧୀ ଯେଉଁ ସଂଗ୍ରାମ ଚଳାଇଥିଲେ ତାହାର ମୂଳକେନ୍ଦ୍ର ଥିଲା ଦକ୍ଷିଣ ଆଫ୍ରିକାର 'ଟଲଷ୍ଟୟ ଆଶ୍ରମ' ବା ଅହମ୍ମଦାବାଦର 'ସାବରମତୀ ଆଶ୍ରମ' ଅଥବା ୱାର୍ଦ୍ଧାର 'ସେବଗ୍ରାମ'ରେ ସେ ସଦାସର୍ବଦା ବିକଳ୍ପ ଚିନ୍ତାଧାରା ଓ କାର୍ଯ୍ୟକ୍ରମର ସନ୍ଧାନରେ ଥିଲେ ଓ ବିଭିନ୍ନ ଧରଣର ଉଦାହରଣ ଦେଖାଇଥିଲେ । ଯଦି ବ୍ରିଟିଶ୍ ଲୁଗା ପରିତ୍ୟାଗ କରିବାକୁ ହେବ ତେବେ ଚରଖାରେ ସୂତାକାଟି ନିଜ ପାଇଁ ଲୁଗା ବୁଣିବାକୁ ସାମଗ୍ରୀ ଯୋଗାଡ଼ କରିବାକୁ ହେବ । ଯଦି ଅସ୍ପୃଶ୍ୟତା ବିରୁଦ୍ଧରେ ଲଢ଼ିବାକୁ ହେବ, ତେବେ ନିଜେ ନିଜର ମଇଳା ସଫା କରିବାକୁ ହେବ । ବିଦେଶୀ ବସ୍ତୁ ପରିବର୍ତ୍ତେ ସ୍ୱଦେଶୀ ବସ୍ତୁକୁ ଆପଣାର କରିବାକୁ ହେବ । ବ୍ରିଟିଶ୍ ଶାସନର ହିଂସାକୁ ଅହିଂସାମାର୍ଗରେ ମୁକାବିଲା କରିହେବ । ଏଇ ବିକଳ୍ପର ମୂଳମନ୍ତ୍ରଗୁଡ଼ିକ ପରାକ୍ରମୀ ବ୍ରିଟିଶ ଶାସନକୁ ହଟାଇବାକୁ ଗାନ୍ଧୀଙ୍କୁ ଓ ଏ ଦେଶର ଅଗଣିତ ସ୍ୱାଧୀନତା ସଂଗ୍ରାମୀ ଓ ଦେଶପ୍ରେମୀଙ୍କୁ ଶକ୍ତି ଓ ସାମର୍ଥ୍ୟ ଯୋଗାଇଥିଲା । ବିକଳ୍ପ ରାଜନୀତି, ଅର୍ଥନୀତି, ବିଜ୍ଞାନ ଓ ବୈଷୟିକଜ୍ଞାନ କୌଶଳ ପାଇଁ ଗାନ୍ଧୀଙ୍କ ଡାକ ଶୁଣି ଅନେକ ବୈଜ୍ଞାନିକ, ଅର୍ଥନୈତିଜ୍ଞ ଓ ସମାଜବିଜ୍ଞାନୀ ଉଦ୍‌ବୁଦ୍ଧ ହୋଇଥିଲେ । ଏମାନଙ୍କ ଭିତରେ ଥିଲେ ଜେ.ସି. କୁମାରପ୍ପା ଓ ସୁମାକର । ୧୯୩୫ ମସିହାରେ 'ଲୋକବିଜ୍ଞାନ' ଉପରେ କାମ କରିବାପାଇଁ ଗାନ୍ଧୀ ଯେଉଁ ଉପଦେଷ୍ଟା କମିଟି ଗଠନ କରିଥିଲେ ସେଥିରେ ପ୍ରମୁଖ ଥିଲେ କବି ରବୀନ୍ଦ୍ରନାଥ ଟାଗୋର, ବୈଜ୍ଞାନିକ ଜେ.ସି. ବୋଷ, ସି.ଭି.ରମଣ, ବି.ସି. ରାୟ, ଜୀବ୍‌ରାଜ ମେହେଟ୍ଟା, ଜି.ଡି. ବିରଳା ଆଦି । ଅକ୍ଷୟ ଶକ୍ତି, ବିକଳ୍ପ ଟେକ୍ନୋଲୋଜି ଉପରେ ଗବେଷଣା କରାଯାଇ ଖଦୀ ଏବଂ ଭିଲେଜ୍ ଇଣ୍ଡଷ୍ଟ୍ରୀଜ୍

(କେ.ଭି.ଆଇ.ସି.) ସଂସ୍ଥା ଗଢି ଉଠିଥିଲା ଓ ଦେଶର ବିଭିନ୍ନ ସ୍ଥାନରେ ଏହା ଉପରେ ପରୀକ୍ଷା ନିରୀକ୍ଷା କରାଯାଇ ଲୋକପ୍ରିୟ ବିଜ୍ଞାନ ଓ ଟେକ୍ନୋଲୋଜିର ଆନ୍ଦୋଳନ ଆରମ୍ଭ କରାଯାଇଥିଲା । ଆଜି ମଧ୍ୟ କେତେକ ସ୍ତରରେ ଆଧୁନିକ ବିଜ୍ଞାନ ଓ ଟେକ୍ନୋଲୋଜିର ପ୍ରସାର ସତ୍ତ୍ୱେ ଗ୍ରାମ୍ୟ ଓ କୁଟିର ଶିଳ୍ପ ବଞ୍ଚିରହିଛି ।

ଜଗତୀକରଣ ପ୍ରକ୍ରିୟାକୁ ଆହ୍ୱାନ କରି ସାରା ପୃଥିବୀରେ ବିଭିନ୍ନ ବିକଳ୍ପ ପ୍ରକ୍ରିୟା ଓ ପରୀକ୍ଷା ସବୁବେଳେ ଲାଗି ରହିଛି । ଏକଥା ସତ ଯେ ଜଗତୀକରଣ ଓ ଏହାର ସମର୍ଥକମାନେ ସାରା ପୃଥିବୀରେ ବିଜୟପତାକା ଉଡାଇ ପାରିନାହାନ୍ତି । ସ୍ୱଳ୍ପ ଓ ସଂକ୍ଷିପ୍ତ ହେଲେବି ବିଭିନ୍ନ ଚିନ୍ତାଧାରା ଓ ପରୀକ୍ଷଣ ମୁଣ୍ଡ ଟେକିଛି । ବୃହତ୍ ନଦୀବନ୍ଧ ଯୋଜନାର ବିକଳ୍ପ ରୂପେ ବିଭିନ୍ନ ଚିନ୍ତାଧାରା କାର୍ଯ୍ୟାନ୍ୱିତ କରିବାର ପ୍ରୟାସ କରାଯାଇଛି । 'ସ୍ମଲ୍ ଇଜ୍ ବ୍ୟୁଟିଫୁଲ' ଢାଞ୍ଚାରେ ବିଭିନ୍ନ କିଛି ଉଦାହରଣ ଆମ ପାଖରେ ଉପସ୍ଥାପନା କରାଯାଇଛି । ଏପରି ଏକ ସଫଳ ଉଦାହରଣ ଦକ୍ଷିଣ ଆମେରିକାର କଲମ୍ବିଆରେ କିଛି ଲୋକ ପ୍ରଦର୍ଶନ କରିଛନ୍ତି । ଏକ ନୂଆଗାଁ ପ୍ରତିଷ୍ଠା କରାଯାଇଛି ଯାହାର ନାମ ହେଉଛି ଗାଭିଓଟାସ୍ । କଲମ୍ବିଆ ଏପରି ଏକ ଦେଶ ଯେଉଁଠି ଗୃହଯୁଦ୍ଧ, ନିଶା ବେପାରୀଙ୍କ ହିଂସା, ହତ୍ୟା, ସ୍ଥାନୀୟ ଅଧିବାସୀଙ୍କ ଉପରେ ସୈନ୍ୟବାହିନୀର ଅତ୍ୟାଚାର ଆଜି ପୃଥିବୀରେ ଇତିହାସ ସୃଷ୍ଟି କରିଛି । କେତେଯେ ନିରୀହ ଲୋକ ମରିଛନ୍ତି ତାହାର ହିସାବ ନାହିଁ । କେତେ ଯେ ମଣିଷ ନିଖୋଜ ହୋଇଛନ୍ତି ତାହା ମଧ୍ୟ ସ୍ପଷ୍ଟ ଜଣା ପଡିନାହିଁ । ଯୁକ୍ତରାଷ୍ଟ୍ର ଆମେରିକାର ପ୍ରଭାବ ସେ ଦେଶରେ ଏତେ ପଡିଛି ଯେ ଜଣେ ସେ ଦେଶର ଜଣେ ସାଧାରଣ ନାଗରିକ ସହ ବାର୍ତ୍ତାଳାପ ନକଲେ ଜାଣି ହେବ ନାହିଁ । ଏକ ସୁନ୍ଦର ଦେଶ, ଅହିଂସା ଜାଣି ଆହିଂସା ଓ ମୃତ୍ୟୁର ଯେମିତି ପ୍ରତୀକ ହୋଇଯାଇଛି । କଲମ୍ବିଆର ରେନ୍ ଫରେଷ୍ଟ ଓ ବୃଷ୍ଟିପୁଷ୍ଟ ଅରଣ୍ୟ ଧ୍ୱଂସାଭିମୁଖୀ ହୋଇଛି । ଏ ପରିବେଶ ଭିତରେ ୧୯୭୧ ମସିହାରୁ କେତେଜଣ ଦୂରଦ୍ରଷ୍ଟା ଚେଷ୍ଟାରତ ଅଛନ୍ତି ଏକ ନୂତନ ସମାଜ ଓ ନୂତନ ପରିବେଶ ପ୍ରତିଷ୍ଠା କରିବା ପାଇଁ । ଗତ ୩୦ବର୍ଷଧରି ଏ ଗୋଷ୍ଠୀରେ ସାମିଲ ହୋଇଛନ୍ତି ବୈଜ୍ଞାନିକ, କାରିଗର, ଚାଷୀ ଓ ଇଞ୍ଜିନିୟର । ଏକ ନିଷ୍ଠୁର ଓ କର୍କଶ ପରିବେଶ ଭିତରେ ସେମାନେ ପ୍ରତିଷ୍ଠା କରିଛନ୍ତି ଏକ ଇଉଟୋପିଆ ଯାହା ଆଜି ଗାଭିଓଟାସ୍ ନାମରେ ପୃଥିବୀରେ ପରିଚିତ ହୋଇ ସାରିଛି ଓ ଜଗତୀକରଣ ଏକ ବିକଳ୍ପ ଉଦାହରଣ ରୂପେ ପ୍ରତିଷ୍ଠାଲାଭ କରିଛି ।

ଗାଭିଓଟାସ୍ ଗାଁର ଲୋକସଂଖ୍ୟା ପ୍ରାୟ ୨୦୦ । ଏହାକୁ ଆମେ ଗାଁ କହିବା, ଗୋଟାଏ ସମାଜ ବା କମ୍ୟୁନିଟି ମଧ୍ୟ କହିବା । କଲମ୍ବିଆର ରାଜଧାନୀର ପୂର୍ବ ଦିଗରେ- ମାଇଲ ଦୂରରେ ଏକ ପତିତ ଓ ବଂଜର ଅଞ୍ଚଳ । ଏଇଥିପାଇଁ ସେ ଅଞ୍ଚଳରେ ସ୍ଥାନୀୟ ଇଣ୍ଡିଆନ୍‌ମାନେ ମଧ୍ୟ ସେ ଅଞ୍ଚଳକୁ ଆସିବାକୁ ସାହାସ କରିନଥାନ୍ତି । ସେଠାରେ ନା ଅଛି ବୃକ୍ଷଲତା ନା ହେଉଛି ଚାଷବାସ । ଲାଣ୍ଡସ୍କେପ୍ ମରୁଭୂମି ଭଳି । ପାଓଲୋ ଲୁଗାରି ବୋଲି ଜଣେ ବ୍ୟକ୍ତି ସେ ଅଞ୍ଚଳକୁ ପ୍ରଥମେ ଯାଇଥିଲେ ୧୯୭୧ ମସିହାରେ ଓ ତାଙ୍କର ନେତୃତ୍ୱରେ ଗାଭିଓଟାସ୍ ପ୍ରତିଷ୍ଠା କରାଯାଇଥିଲା । ଆଶ୍ଚର୍ଯ୍ୟ ଲାଗିଥିଲା ଏ ଜନଶୂନ୍ୟ ଅଞ୍ଚଳକୁ ଦେଖି । ଆହ୍ୱାନ ଥିଲା ନିରନ୍ତର ବିକାଶ ଓ ସ୍ୱାବଲମ୍ବନଶୀଳତା । ସେ ଅଞ୍ଚଳରେ ପାଣି, ପବନ, ମାଟି ଓ ବନସ୍ପତି, ସୂର୍ଯ୍ୟାଲୋକ ଓ ପବନ, ପ୍ରାକୃତିକ ସମ୍ବଳ ଓ ମାନବ ସମ୍ବଳକୁ ନେଇ ଗଢିଉଠିଥିଲା ବିକାଶର ବିଭିନ୍ନ ପରୀକ୍ଷା ଓ ଅନୁସନ୍ଧାନ । ପ୍ରଥମେ ପତିତ ଭୂମିରେ ଗଛଲଗାଯାଇଥିଲା ବ୍ୟାପକ ଭାବେ । ଗାଭିଓଟାସ୍‌ର ମୃତ୍ତିକା ବୃକ୍ଷରୋପଣ ପାଇଁ ଅନୁକୂଳ ନଥିଲା । ମୃତ୍ତିକା ବିଶେଷଜ୍ଞ କହିଥିଲେ ଯେ ମୃତ୍ତିକାରେ ମାଇକୋରିହ୍‌ଦା ନାମକ ଏକ ଦ୍ରବ୍ୟ ମିଶାଇବାକୁ ପଡିବ ଯାହା ସେଠାରେ ମିଳୁଥିବା ଏକ ଛତୁରୁ ମିଳିଥାଏ । ଏହା ପାଇନ୍ ଗଛ ବଢ଼ିବାରେ ସାହାଯ୍ୟ କରେ । ଏହି ପ୍ରକାର ପ୍ରକ୍ରିୟାରେ ଗାଭିଓଟାସ୍‌ରେ ପ୍ରାୟ କୋଡ଼ିଏ ଲକ୍ଷ ଚାରା ଲଗାଯାଇଥିଲା ୫ହଜାର ହେକ୍ଟରରେ । ନୂତନ ପ୍ରଣାଳୀରେ ନର୍ସରୀ କରାଯାଇଥିଲା । ଚିରାଚରିତ ଭାବେ ବ୍ୟବହାର କରାଯାଉଥିବା ପଲିଥିନ୍ ବ୍ୟାଗ୍ ନିଷିଦ୍ଧ କରାଯାଇଥିଲା । ରାସାୟନିକ ସାର ଓ କୀଟନାଶକ ଦ୍ରବ୍ୟ ମଧ୍ୟ ନିଷିଦ୍ଧ କରାଯାଇଥିଲା । ପାଇନ୍‌ର ଅରଣ୍ୟ ସୃଷ୍ଟି ହେଲାପରେ ପରେ ଆଶ୍ଚର୍ଯ୍ୟଜନକ ଭାବେ ଗଛ ତଳେ ଅନ୍ୟ ବୃକ୍ଷଲତା ମଧ୍ୟ ଜନ୍ମ ନେଇଥିଲେ । ପାଇନ୍ ଗଛରୁ ତାରପିନ୍ ବାହାର କରାଗଲା । ଏହା ଫଳରେ ବିଦେଶୀ ଆମଦାନି କମିଗଲା । ଏହି ସଫଳ ବୃକ୍ଷରୋପଣ କାର୍ଯ୍ୟକ୍ରମ ଗାଭିଓଟାସ୍‌ର ସଫଳତାର ଇତିହାସ ହୋଇଛି ବୋଲି କହିବାକୁ ହେବ । କାରଣ ପାଇନ୍ ଅରଣ୍ୟ ଭିତରୁ ଜନ୍ମ ନେଲା ଗୋଟାଏ ପ୍ରକାରର ଟ୍ରପିକାଲ୍ ବା କ୍ରାନ୍ତିମଣ୍ଡଳୀୟ ଜଙ୍ଗଲ । ଆସିଲେ ପଶୁପକ୍ଷୀ, ଫୁଟିଲା ଫୁଲ ଓ ଫଳିଲା ଫଳ । ଆନ୍ତର୍ଜାତିକ ସହାୟତା ଦ୍ୱାରା ଏ ଜଙ୍ଗଲ ଓ ବନସ୍ପତି ବଢ଼ି ଚାଲିଲା । ତାରପିନ୍ ତେଲ ପାଇଁ ବିଭିନ୍ନ ଫ୍ୟାକ୍ଟ୍ରି ତିଆରି କରାଗଲା । ଯେଉଁ ଅଞ୍ଚଳରେ

ଗାଭିଓଟାସ୍ ସ୍ଥାପିତ ହୋଇଛି, ଆର୍ଥିକ ଓ ପ୍ରାକୃତିକ ପରିବେଶ ଅତି ଆଶ୍ଚର୍ଯ୍ୟଜନକ ଭାବେ ବଦଳି ଗଲା । ବାୟୁମଣ୍ଡଳ ସ୍ୱାସ୍ଥ୍ୟକର ହୋଇଯିବାରୁ ଅନେକ ବ୍ୟକ୍ତିଙ୍କୁ କଲମ୍ବିଆର ବିଭିନ୍ନ ଅଞ୍ଚଳରୁ ଏହା ଆକର୍ଷିତ କରିଥିଲା । ଆଜି ପେଣ୍ଟ, ଏନାମେଲ୍, ବାର୍ନିସ୍ ଛଡ଼ା ପ୍ରାକୃତିକ କୋଲଫୋନିଆ ସେଠାରୁ ମିଳିଲା ଯାହା ସାବୁନ୍, ଅତର, କାଳି ଆଦିରେ ବ୍ୟବହାର କରାଯାଉଛି । ତାରପିନ୍ କାରଖାନା ପାଇନ୍ ଅରଣ୍ୟର ପତ୍ର ଓ କାଠରୁ ଏମିତି ଚାଲିଥିଲା ଯେ ପ୍ରଦୂଷଣ ପ୍ରାୟତଃ ନଥିଲା ।

ଗାଭିଓଟାସ୍‌ରେ ସୌରଶକ୍ତି ଓ ପବନଶକ୍ତିକୁ ପ୍ରାଧାନ୍ୟ ଦିଆଯାଇଥିଲା । ଅକ୍ଷୟଶକ୍ତିର ପରୀକ୍ଷା ପାଇଁ ସେଠାରେ ଥିବା ଅପରିମିତ ସମ୍ଭାବନା । ସୌରଶକ୍ତି, ପବନଶକ୍ତି, ବାଇମୋସ୍‌କୁ ମିଶ୍ରଣ କରି ଶକ୍ତିର ଆବଶ୍ୟକତା ସେଠାରେ ପୂରଣ କରାଯାଇଛି । ନୂତନ ପ୍ରକାରର ପବନ କଳ ତିଆରି କରାଯାଇଛି । ସୌରଶକ୍ତିରୁ ଆଲୁଅ ଚାଳିବା ସହ ବିଭିନ୍ନ ମେସିନ୍ ଚାଲିଛି । ବାଇଓମାସ୍‌ରୁ ମଧ୍ୟ ଶକ୍ତି ଉତ୍ପାଦିତ ହେଉଛି । ଏହାଛଡ଼ା ପାର୍ଶ୍ୱବର୍ତ୍ତି ନଦୀରୁ ମାଇକ୍ରୋହାଇଡ୍ରେଲ ଦ୍ୱାରା ବିଜୁଳିଶକ୍ତି ଉତ୍ପାଦିତ ହୋଇଛି । ଗାଭିଓଟାସ୍ ଆଦି ଶକ୍ତି ଦୃଷ୍ଟିକୋଣରୁ ସ୍ୱାବଲମ୍ବୀ ହୋଇପାରିଛି । ଏ ମଡ୍ରେଲ୍ ସଫଳ ହୋଇଥିବାରୁ କେବଳ କଲମ୍ବିଆ ନୁହେଁ ଅନ୍ୟତ୍ର ମଧ୍ୟ ଏହାର ପ୍ରସାର ହୋଇସାରିଛି । ବିଶ୍ୱ ସଂଗଠନ ସହ ବିଭିନ୍ନ ଆନ୍ତର୍ଜାତିକ ସଂସ୍ଥା ଗାଭିଓଟାସ୍‌ର ଏ ମଡ୍ରେଲକୁ ବିଭିନ୍ନ ଦେଶକୁ ନେଇ କାର୍ଯ୍ୟକାରୀ କରିଛନ୍ତି । ଏଠାରେ ବାଇଓଡିଜେଲ ମଧ୍ୟ ତିଆରି କରିବାର ସରଳ ଉଦାହରଣ ଦେଖିବାକୁ ମିଳିଛି । ସୌରଶକ୍ତି ମାଧ୍ୟମରେ ଜଳ ଉଷ୍ଣୀକରଣ ବ୍ୟବସ୍ଥା ପ୍ରତ୍ୟେକ ଘର ପାଇଁ କରାଯାଇଛି । ଯେଉଁ ମଡ୍ରେଲ ଏଥିରେ ବାହାରିଛି ତାହା ବର୍ତ୍ତମାନ କଲମ୍ବିଆର ରାଜଧାନୀ ବୋଗୋତାରେ ୪୦ ହଜାର ବାସଗୃହରେ ଲାଗିଛି । ପବନକଳ ହେଉ କି ବିଦ୍ୟୁତ ଶକ୍ତି ଉତ୍ପାଦନ ପାଇଁ ଟର୍‌ବାଇନ୍ ହେଉ, କାର୍ଯ୍ୟଦକ୍ଷ ମେସିନ୍ ସବୁ ଉଦ୍ଭାବନ କରାଯାଇଛି ।

ଗାଭିଓଟାସ୍‌ରେ ପାଓଲୋ ଲୁଗାରିଙ୍କ ଉଦ୍ୟମରେ ଏକ ପରିବେଶ ଗବେଷଣା କେନ୍ଦ୍ର ପ୍ରତିଷ୍ଠା କରାଯାଇଛି । ଏଥିରେ ଖାଦ୍ୟ, ସ୍ୱାସ୍ଥ୍ୟ ଓ ବାସଗୃହ କେମିତି ଲୋକାଭିମୁଖୀ ହେବ ଓ ପ୍ରକୃତି ସହ କିପରି ସନ୍ତୁଳନ ଥିବ ତାହାର ଗବେଷଣା ବ୍ୟାପକ ଭାବେ କରାଯାଉଛି । ସୌରଶକ୍ତି ଚାଳିତ ରୋଷେଇଘର କରାଯାଇଛି ।

ସୌରଶକ୍ତି ଚାଳିତ ରେଫ୍ରିଜ୍‌ରେଟ୍‌ର ମଧ୍ୟ ଲୋକେ ବ୍ୟବହାର କରୁଛନ୍ତି । ସୌରଶକ୍ତି ଚାଳିତ ଏକ ହସ୍‌ପିଟାଲ୍ ମଧ୍ୟ ତିଆରି କରାଯାଇଛି । ଡାକ୍ତରଖାନା ଘରର ଛାତ ଉପରେ ସୌରଶକ୍ତି ପ୍ୟାନେଲ୍‌ମାନ ଲଗାଯାଇଛି । ଜଳ ବିଶୋଧନ ଏବଂ ବିଭିନ୍ନ ଧାତୁଦ୍ରବ୍ୟ ନିଷ୍କାସନ ପାଇଁ ବ୍ୟବସ୍ଥା କରାଯାଉଛି । ଏ ଡାକ୍ତରଖାନା ବର୍ତ୍ତମାନ ଗାଭିଓଟାସର ସବୁଠାରୁ ଲୋକପ୍ରିୟ ଅନୁଷ୍ଠାନ ହୋଇଯାଇଛି । ଚିକିତ୍ସା ପାଇଁ ଏଠାକୁ ଆସୁଛନ୍ତି ସେନାବାହିନୀ ଓ ଗରିଲାବାହିନୀ ମଧ୍ୟ ଆସୁଛନ୍ତି । ସଂଘର୍ଷ ଆଉ କେଉଁଠି ହେଉନା କାହିଁକି, ଏ ଡାକ୍ତରଖାନା ସମସ୍ତଙ୍କ ଦ୍ୱାରା ଆଦୃତ ହୋଇପାରିଛି । ସ୍ଥାନୀୟ ଜ୍ଞାନବିଜ୍ଞାନକୁ ନେଇ ଓ ଦେଶୀ ଟୁଟୁକା ଚିକିତ୍ସାକୁ ପ୍ରାଧାନ୍ୟ ଦେଇ ଔଷଧପତ୍ରର ଏକ ବଗିଚା କରାଯାଇଛି । ଗାଭିଓଟାସ୍‌ରେ ଗୋପାଳନ, ଘୁଷୁରିପାଳନ ଆଦିର ନୂତନ ପଦ୍ଧତି ଗ୍ରହଣ କରାଯାଇଛି । ଏସବୁକୁ ବାହାରକୁ ରପ୍ତାନି କରିବା ପାଇଁ ବ୍ୟବସ୍ଥା କରାଯାଇଛି । ସ୍ଥାନୀୟ ଅର୍ଥନୀତି ମଧ୍ୟ ବହୁମାତ୍ରାରେ ବଦଳିଛି । ଚୁମ୍ବକରେ କହିଲେ ଗାଭିଓଟାସ୍‌ରେ ନିମ୍ନ ଦଶଟି ବିକଳ୍ପ ଚିନ୍ତା କରାଯାଇଛି ସଫଳତାର ସହ ।

(୧) ଜଳବାୟୁର ପରିବର୍ତ୍ତନ ପାଇଁ ବ୍ୟାପକ ବନୀକରଣ (୨) ଜୈବବିବିଧତାର ସଂରକ୍ଷଣ (୩) ସବୁ ପ୍ରକ୍ରିୟାକରଣରେ ମୂଲ୍ୟବୃଦ୍ଧି (୪) ନିରନ୍ତର ବିକାଶ ପାଇଁ ସମ୍ବଳର ପ୍ରକୃତି ବିନିଯୋଗ (୫) ଗୁଣାତ୍ମକ ବିକାଶ ପାଇଁ ପ୍ରତିଯୋଗୀତା (୬) ଯଥାର୍ଥ ପ୍ରଯୁକ୍ତିବିଜ୍ଞାନ ବା ଆପ୍ରୋପ୍ରିଏଟ୍ ଟେକ୍‌ନୋଲୋଜିର ବିକାଶ (୭) ସମ୍ବଳର ସାମଗ୍ରିକ ବ୍ୟବହାର ଓ ବିନିଯୋଗ ଏବଂ ବର୍ଜ୍ୟବସ୍ତୁ ନିଷ୍କାସନ/ନିଃସରଣ ସମ୍ପୂର୍ଣ୍ଣ ବନ୍ଦ (୮) କର୍ମନିଯୋଜନ (୯) ସ୍ଥାନୀୟ ଅଧିବାସୀଙ୍କ ସଂସ୍କୃତିର ସୁରକ୍ଷା (୧୦) ନିର୍ମଳ ଓ ବିଶୁଦ୍ଧ ଜଳ ଯୋଗାଣ ଦ୍ୱାରା ରୋଗବେମାରୀ ନିରାକରଣ ।

ଆମେରିକୀୟ ଲେଖକ ଆଲାନ୍ ୱେଜ୍‌ମ୍ୟାନ୍ ଗାଭିଓଟାସ୍ ଉପରେ ଗୋଟାଏ ବହି ଲେଖିଛନ୍ତି- ଗାଭିଓଟାସ୍ : ଏ ଭିଲେଜ୍ ଟୁ ରିଇନ୍‌ଭେଣ୍ଟ ଦି ୱାର୍ଲ୍ଡ (Gaviotas : A Village to Reinvent the World) ଏଥିରେ ଜଗତୀକରଣ ବିକଳ୍ପ ହିସାବରେ ଏକ ସ୍ୱାବଲମ୍ବୀ ଗୋଷ୍ଠୀର ସଫଳତାକୁ ବର୍ଣ୍ଣନା କରିଛନ୍ତି । ଯେଉଁମାନେ କର୍ପୋରେଟ୍ ଜଗତୀକରଣକୁ ବିରୋଧ କରନ୍ତି ସେମାନଙ୍କୁ ସାଧାରଣତଃ ପଚରାଯାଇଥାଏ ଯେ ଏ ବିରୋଧାଭାସ କାହିଁକି ଓ ସେମାନେ କ'ଣ ବିଶ୍ୱାସ କରନ୍ତି ?

ନୂତନ ସମାଜ ପ୍ରତିଷ୍ଠା ପାଇଁ ଅନେକ ଆଜି ଉଦ୍ୟମ ରତ । କିଏ ବିକଳ୍ପ ଅର୍ଥନୀତି ପାଇଁ କାର୍ଯ୍ୟ କରୁଛି ତ କିଏ ନୂତନ ଓ ବିକଳ୍ପ ସାମାଜିକ ବ୍ୟବସ୍ଥା ପ୍ରତିଷ୍ଠା ପାଇଁ ଲାଗି ପଡ଼ିଛି । କିଏ ବିକଳ୍ପ ଶିକ୍ଷା ଦିଗରେ ନିଜକୁ ନିୟୋଜିତ କରୁଛି ତ ଆଉ କିଏ ସମତା ଓ ସହଭାଗିତାର ବିକାଶର ସ୍ୱପ୍ନ ଦେଖୁଛି । ଗାଭିଓଟାସ୍ ଗାଁର ଗ୍ରାମବାସୀ ଓ ଅଧିବାସୀମାନେ ଯାହା କିଛି ସ୍ୱପ୍ନ ସମ୍ଭବ କରାଇଛନ୍ତି ତାହା ଜଗତୀକରଣ ପ୍ରକ୍ରିୟାରେ ଏକ ବିକଳ୍ପ ଭାବେ ଏବେ ପୃଥିବୀ ଆଗରେ ଜ୍ୱଳନ୍ତ ଉଦାହରଣ ହୋଇଯାଇଛି ।

(୨)

ଗୋଟିଏ ବହି ଓ ଗୋଟିଏ ଅନୁଷ୍ଠାନ ଯେ ମୋ ଜୀବନର ଗତିପଥ ନିର୍ଦ୍ଧାରଣ କରିବାରେ କେତେକାଂଶରେ ଏକ ଭୂମିକା ଗ୍ରହଣ କରିଛନ୍ତି ତାହା ମୁଁ ବାରମ୍ବାର ସ୍ୱୀକାର କରିଛି । ବହିଟି ହେଉଛି ସୁଜନ୍ ଜର୍ଜଙ୍କ ଲିଖିତ 'ହାଓ ଦି ଅଦର ହାଫ ଡ଼ାଇଜ' (How the Other Half Dies) ଓ ଅନୁଷ୍ଠାନଟି ହେଉଛି ହଲାଣ୍ଡର ଆମ୍‌ଷ୍ଟରଡ୍ୟାମ୍ ସହରରେ ଇତିହାସ ସୃଷ୍ଟି କରିଥିବା କସ୍‌ମସ୍ (Cosmos) । ଅଶୀଦଶକର ପ୍ରାରମ୍ଭରେ ଭୋକିଲା ରହୁଥିବା ଅଗଣିତ ମଣିଷଙ୍କ ସାମାଜିକ, ଆର୍ଥିକ, ସାଂସ୍କୃତିକ ଓ ରାଜନୈତିକ ଇତିହାସ ମୁଁ ଜାଣିବାକୁ ଚାହିଁଥିଲି । ଖାଦ୍ୟ ଅଧିକାର ଯେ ମଣିଷର ଏକ ମୌଳିକ ଅଧିକାର ଓ ତାହାର ଉଲଂଘନ ବିଶ୍ୱବ୍ୟାପୀ ହୋଇ ସାରିଛି ଏହା ଜାଣିବାକୁ ମୋତେ ବିଶେଷ ସମୟ ଲାଗି ନଥିଲା । ସୁଜନ୍ ଜର୍ଜଙ୍କ ବହିରେ ଲେଖାଯାଇଛି ଯେ ଜାଣିଶୁଣି ପୃଥିବୀର ଅର୍ଦ୍ଧେକ ମଣିଷଙ୍କୁ ଭୋକିଲା ରଖାଯାଉଛି ଯଦିଓ ପୃଥିବୀରେ ସମସ୍ତଙ୍କ ପାଇଁ ଯଥେଷ୍ଟ ଖାଦ୍ୟ ଉତ୍ପାଦନ ହେଉଛି । ଯେଉଁ ଦୁର୍ଭିକ୍ଷ ପୃଥିବୀରେ ଲକ୍ଷ ଲକ୍ଷ ଲୋକଙ୍କ ଜୀବନ ନେଇଛି ତାହା କେବଳ ମଣିଷକୃତ । ଏହା ପଛରେ ଏକ ନିର୍ଦ୍ଦିଷ୍ଟ ଚକ୍ରାନ୍ତ ରହିଛି । ଆନ୍ତର୍ଜାତିକ ବଜାର ଓ ବହୁରାଷ୍ଟ୍ରୀୟ କର୍ପୋରେସନ୍‌ମାନେ ଖାଦ୍ୟ ଦର ଓ ବିତରଣ ନିର୍ଦ୍ଧାରଣ ଓ ନିୟନ୍ତ୍ରଣ କରୁଛନ୍ତି । ଖାଦ୍ୟଦ୍ରବ୍ୟ ବିଶେଷକରି ଶସ୍ୟ ଯଦି ବେଶୀ ଉତ୍ପାଦିତ ହୋଇଯାଉଛି ତାହାହେଲେ କାଳେ ସେଗୁଡ଼ିକର ଦର ହ୍ରାସ ହୋଇଯିବ, ତାହାକୁ

ସେମାନେ ଧ୍ୱଂସ କରୁଛନ୍ତି ନିଆଁ ଲଗାଇ ବା ସମୁଦ୍ର ଗର୍ଭକୁ ନିକ୍ଷେପ କରି । ନହେଲେ ଆଗ୍ରୀ ବିଜିନେସ୍ ଦ୍ୱାରା କବଳିତ ହୋଇ ଖାଦ୍ୟଦ୍ରବ୍ୟର ପ୍ରକ୍ରିୟାକରଣ କରୁଛନ୍ତି । ସାରାପୃଥିବୀରେ ଆମିଷାଶୀମାନେ ଆହୁରି ବେଶୀ ମାଂସ ଭକ୍ଷଣ କରିବାରେ ଲାଗି ପଡ଼ିଛନ୍ତି । ଗୋ ମାଂସ ହେଉ କି ଘୁଷୁରୀ ମାଂସ ହେଉ, କୁକୁଡ଼ା ମାଂସ ହେଉ କି ଛେଳି ମାଂସ ହେଉ, ଏହାର ଚାହିଦା ବଢ଼ିଛି । ମାଂସ ଉତ୍ପାଦନ ଏକ ଲାଭଜନକ ବ୍ୟବସାୟ ହୋଇପଡିଛି । ଏଥିପାଇଁ ଖାଦ୍ୟଶସ୍ୟ ମଣିଷଙ୍କ ପାଟି ଓ ପେଟ ପରିବର୍ତ୍ତେ ଗୋ ମାଂସ ହେଉ କି, ଘୁଷୁରୀ ମାଂସ ହେଉ କି, କୁକୁଡ଼ା ମାଂସ ହେଉ କି ଛେଳି ମାଂସ ହେଉ ତାହାର ଉତ୍ପାଦନ ବଢିବା ପାଇଁ ବ୍ୟବହାର କରାଯାଉଛି । ପୃଥିବୀ ସାରା ଖାଦ୍ୟ ସଂସ୍କୃତି ବଦଳିବା ପାଇଁ ଆଗ୍ରୀ ବିଜନେ୍ସରେ ଥିବା ଲାଭଖୋର କମ୍ପାନୀମାନେ ଲାଗିପଡ଼ିଛନ୍ତି । ମ୍ୟାକ୍ଡ଼ୋନାଲ୍ଡ୍, କେଣ୍ଟୁକି ଫ୍ରାଏଡ୍ ଚିକେନ୍, ନେସ୍‌ଲେ, ମ୍ୟାଗି ଆଦି କମ୍ପାନୀମାନେ ଏହାର ମୁଖ୍ୟ ନାୟକ ହିସାବରେ ପ୍ରତିଷ୍ଠା ଲାଭ କରିଛନ୍ତି । ମାଂସ ଶିଳ୍ପ ଆଦି ବିଶ୍ୱର କ୍ଷୁଧା ଓ ପୁଷ୍ଟିହୀନତା ବଢ଼ାଇବାରେ ଲାଗିଛି । ଲକ୍ଷ ଲକ୍ଷ ଟନ୍ ଗହମ ଆଦି ଖାଦ୍ୟ ଶସ୍ୟ, ଗୋଖାଦ୍ୟ, କୁକୁଡ଼ା ଖାଦ୍ୟ ଓ ଘୁଷୁରୀ ଖାଦ୍ୟ ହିସାବରେ ବ୍ୟବହାର କରାଯାଉଛି । ଗରିବଙ୍କ ଲକ୍ଷଲକ୍ଷ ଏକର ଜମିରେ ପଶୁଖାଦ୍ୟ ଉତ୍ପାଦନ ହେଉଛି । ଗୋପାଳନର ର୍‍ୟାଞ୍ଚ୍ ପ୍ରତିଷ୍ଠା ପାଇଁ ହେଉ ବା ଗୋ ଖାଦ୍ୟ ଉତ୍ପାଦନ ପାଇଁ ହଜାର ହଜାର ଏକର ଜଙ୍ଗଲ କଟାଯାଉଛି । ଉଦ୍ଦେଶ୍ୟ ପୃଥିବୀର ଧନୀବର୍ଗଙ୍କ ଡ଼ାଇନିଂ ଟେବୁଲ୍‌ରେ ଯଥେଷ୍ଟ ମାଂସର ବ୍ୟବସ୍ଥା କରିବା ।

ହଲାଣ୍ଡର ଆମ୍‌ଷ୍ଟରଡ଼୍ୟାମ୍ ଚିନ୍ତାଶୀଳ ଓ ବୁଦ୍ଧିଜୀବୀମାନେ ଏକ ମାଂସାଶୀ ସମାଜ ପ୍ରତି ବୀତସ୍ପୃହ ହୋଇ ପ୍ରତିଷ୍ଠା କରିଥିଲେ 'କସ୍‌ମସ୍' । ପୃଥିବୀ ପ୍ରସିଦ୍ଧ ବେଶ୍ୟା ବସ୍ତିକୁ ଲାଗି ଏହାକୁ ତିଆରି କରାଯାଇଥିଲା କାରଣ ଗୋଟାଏ ବ୍ୟଭିଚାରୀ ସମାଜର ବିକଳ୍ପ ପ୍ରଦର୍ଶନ ଅପରିହାର୍ଯ୍ୟ ହୋଇପଡିଥିଲା । ପାପାଚାରୀ, ନଗ୍ନ ଓ କାମୁକ ମଣିଷ ଚାହିଁଲେ ନିଜର ଜୀବନ ରାସ୍ତା ପରିବର୍ତ୍ତନ କରି ଗୁଣାତ୍ମକ ଓ ଆଧାତ୍ମିକ ଜୀବନ, ଏକ ସରଳ ଓ ନିରାମିଷାଶୀ ଜୀବନର ସନ୍ଧାନରେ ବାହାରି ପାରିବ ତାହା ପାଇଁ 'କସ୍‌ମସ୍' ଯେମିତି ଡିଜାଇନ୍ କରାଯାଇଥିଲା । ଏଥିରେ ଥିଲା ଯୋଗ, ଜେନ୍ ବୁଦ୍ଧିଜିମ୍ ଓ ଆଇଚିଂ ଶିଖିବାର ପରିବେଶ । ଏପରି ଖାଦ୍ୟ ପରିବେଷଣ

କରାଯାଇଥିଲା ଯାହା ସମ୍ପୂର୍ଣ୍ଣ ନିରାମିଷ । ପ୍ରାକୃତିକ ଖାଦ୍ୟଦ୍ରବ୍ୟ ଓ ଔଷଧୀୟ ଗୁଳ୍ମଲତାର ମିଶ୍ରଣରେ ବିଭିନ୍ନ ସୁସ୍ୱାଦୁ ଜିନିଷ ତିଆରି ହୋଇ 'କସ୍‌ମସ୍'ର ଗ୍ରାହକମାନଙ୍କୁ ପରଶା ଯାଇଥିଲା । କୌଣସି ଖାଦ୍ୟରେ ମାଂସ, ମାଛ, ଅଣ୍ଡା, ପିଆଜ ଓ ରସୁଣ ଆଦି ମିଶୁ ନଥିଲା । 'କସ୍‌ମସ୍'ରେ ଥିଲେ ବିଭିନ୍ନ ଆଧ୍ୟାତ୍ମିକବାଦୀମାନେ ଯେଉଁମାନେ ଏକ ସମ୍ପୂର୍ଣ୍ଣ ନିରାମିଷ ଓ ପ୍ରଶାନ୍ତିମୟ ଜୀବନ ସମ୍ପର୍କରେ ପ୍ରବଚନ ଦେଉଥିଲେ । ଆହ୍ୱାନ ଦେଉଥିଲେ ଯେ ମଣିଷକୁ ବାଛିବାକୁ ପଡ଼ିବ ନିଜସ୍ୱ ରାସ୍ତା । ବେଶ୍ୟାଳୟ ବା କସ୍‌ମସ୍, ଆମିଷ ବା ନିରାମିଷ ଭୋଜନ, ହିଂସା ବା ଅହିଂସା, ପ୍ରଚଣ୍ଡତା ବା ପ୍ରଶାନ୍ତି- ଏ ଭିତରୁ ଗୋଟିଏ କଥା ଆପଣମାନଙ୍କୁ କରିବାକୁ ହେବ । ୧୯୮୪ ମସିହାରେ ଆମକୁ ମାନବାଧିକାର ପଢ଼ାଉଥିବା ହଲାଣ୍ଡର ପ୍ରଫେସର ପ୍ରଥମେ ଏକ ମାଂସାଶୀ ଓ କାମୁକ ସମାଜର ପରିଭାଷା ବୁଝାଇଥିଲେ ଓ ଆମକୁ ନେଇଥିଲେ ବେଶ୍ୟାଳୟ ସମାହିତ ରେଡ ଲାଇଟ୍ ଡ଼ିଷ୍ଟ୍ରିକ୍‌ଟ୍‌କୁ । ଏକ ବିକଳ୍ପ ସମାଜ ଓ ଜୀବନ ସହ ପରିଚିତ ହେବାକୁ ତା'ପରେ ଆମକୁ ନେଇଥିଲେ 'କସ୍‌ମସ୍'କୁ । ପରିଚିତ କରାଇଥିଲେ ଯୋଗ ଓ ଜେନ୍ ବୁଦ୍ଧିଜିମ୍ ଶିକ୍ଷକଙ୍କ ସହ । କହିଥିଲେ ସୌନାରେ ସ୍ନାନ କରି ନିଜର ପାପାସକ୍ତ ମନପ୍ରାଣକୁ ମୁକ୍ତ କରିବା ପାଇଁ । ଖାଇବାକୁ ଦେଇଥିଲେ ସମ୍ପୂର୍ଣ୍ଣ ନିରାମିଷ ଖାଦ୍ୟ । ଆମକୁ ପଚାରୁଥିଲେ କେଉଁଆଡକୁ ଯିବ ? ବେଶ୍ୟାଳୟକୁ ନା 'କସ୍‌ମସ୍'କୁ ?

ଜଗତୀକରଣର ପ୍ରକ୍ରିୟା ଆଜି ଏ ସମାଜକୁ ପାପାସକ୍ତ, କଳୁଷିତ ଓ ବିପଥଗାମୀ କରିବାରେ ଲାଗିଛି । ଆମିଷ ଭୋଜନ ପ୍ରତି ଲାଳାୟିତ ହେବାକୁ ଯେମିତି ପ୍ରୋତ୍ସାହନ ଦିଆଯାଉଛି । ମେଦ ବହୁଳ ହୋଇ ରୋଗଗ୍ରସ୍ତ ହେବାକୁ ଯେମିତି ଜାଲ ବିଛା ଯାଉଛି । ମଣିଷକୁ ଏବଂ ବିଶେଷ କରି ଯୁବକ ଶ୍ରେଣୀକୁ ଗୋଟାପଣେ ଗିଳିବାକୁ ଯେମିତି ଜଗତୀକରଣ ପାଟି ମେଲାକରି ଅପେକ୍ଷା କରିଛି । ଜଗତୀକରଣ ଏକ ଯମରାଜର ନୂତନ ଅବତାର ହିସାବରେ ଯେପରି ଗରିବ ଲୋକଙ୍କୁ ମରଣ ମୁହଁକୁ ଠେଲୁଛି ସେପରି ମଧ୍ୟ ସ୍ୱଚ୍ଛଳ ବର୍ଗର ମେଦ ବହୁଳ ଅଜସ୍ର ମଣିଷଙ୍କୁ ରୋଗଗ୍ରସ୍ତ କରି ମୃତ୍ୟୁ ଆଡ଼କୁ ବାଟ କଢ଼ାଉଛି । ଜଗତୀକରଣ ବିରୁଦ୍ଧରେ ଆଜି ମୁଣ୍ଡ ଟେକିଛି ଏକ ବିଶ୍ୱସ୍ତରୀୟ ଜନଆନ୍ଦୋଳନ । ତାହାର ନାମ ନିରାମିଷାଶୀ ଆନ୍ଦୋଳନ । କ୍ରମାଗତ ଭାବେ ଶାକାହାରୀଙ୍କ ସଂଖ୍ୟା ବଢୁଛି । ପ୍ରତି କୋଣ

ଅନୁକୋଣରୁ ଏ ସଂଗଠନର ଶାଖା ପ୍ରଶାଖା ମେଲୁଛି । ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ଜଗତୀକରଣ ଯେଉଁ କେତୋଟି ସ୍ତମ୍ଭ ଉପରେ ଛିଡ଼ା ହୋଇଛି ସେଥିରୁ ଅନ୍ୟତମ ହେଉଛି ଜଘନ୍ୟ ଖାଦ୍ୟ ପ୍ରକ୍ରିୟାକରଣ ଓ ଲାଭଖୋର କୃଷି ବ୍ୟବସାୟ । ସଚେତନ ମଣିଷମାନେ ବୁଝି ସାରିଲେଣି ଯେ ମାଂସ ଉତ୍ପାଦନ ବଢ଼ିବା ପାଇଁ ସବୁ ପ୍ରକାର ଉଦ୍ୟମ ହେଉଛି । ଆମେରିକାରେ ମୁଣ୍ଡ ପିଛା ମାଂସ ଓ ସେଇଭଳି ଖାଦ୍ୟ ମୁଣ୍ଡପିଛା ୧୭୮ ପାଉଣ୍ଡର ଆମେରିକାର ଖାଇବା ଷ୍ଟାଇଲ୍ ବର୍ତ୍ତମାନ ପୃଥିବୀର ସବୁଦେଶର ଲୋକ ଧନୀଗରିବ ନିର୍ବିଶେଷରେ ଅନୁକରଣ କରୁଛନ୍ତି । ଗାଈ, ଛେଳି, କୁକୁଡ଼ା, ଘୁଷୁରୀ ଆଦିଙ୍କୁ ଚର୍ବି ବହୁଳ କରିବା ପାଇଁ କୋଟି କୋଟି ଟନ୍ ଗହମ, ମକା, ବାର୍ଲି, ସୋୟା ଆଦି ବ୍ୟବହାର କରାଯାଇଛି ଯାହାର ବିବେକ ବ୍ୟବହାର ଦ୍ୱାରା କୋଟି କୋଟି ଲୋକଙ୍କ କ୍ଷୁଧା ଓ ପୁଷ୍ଟିହୀନତା ନିବାରଣ କରାଯାଇ ପାରନ୍ତା । ଆମେରିକା ଭଳି ଦେଶରେ ଏକ ପାଉଣ୍ଡ ମାଂସ ଉତ୍ପାଦନ କରିବାକୁ ପ୍ରାୟ ୪.୮ ପାଉଣ୍ଡ ଖାଦ୍ୟ ଶସ୍ୟ ବ୍ୟବହାର କରିବାକୁ ପଡୁଛି । ଏହାଛଡା ପଶୁପାଳନ ବଢ଼ିବା ହେତୁ ପାଣିର ବ୍ୟବହାର ଆହେତୁକ ବଢିଛି । ଜମିର ବ୍ୟବହାର ମଧ୍ୟ ପଶୁପାଳନ ହେତୁ ବଦଳିବାରେ ଲାଗିଛି । ପଶୁପାଳନ ପାଇଁ ପ୍ରତ୍ୟେକ୍ଷ ଓ ପରୋକ୍ଷ ଭ୍ବାବେ ଶକ୍ତିର ଆବଶ୍ୟକତା ବଢ଼ିଛି । ଏସବୁ ଜାଣିଲାପରେ ସଚେତନ ମଣିଷମାନେ ନିରାମିଷାଶୀ ଆନ୍ଦୋଳନ ଛିଡା କରାଇଛନ୍ତି ।

ଆର୍ଥିକ ଜଗତୀକରଣ ପରାଜୟ ସ୍ୱୀକାର କରିବ ଯଦି ପୃଥିବୀର ବହୁଭାଗ ଲୋକ ନିରାମିଷାଶୀ ହୁଅନ୍ତି । ମାଂସ ବ୍ୟବସାୟ ଓ ଆଗ୍ରୀ ବିଜିନେସ୍‌ର ଦୁର୍ଗ ଆପେ ଭୁଶୁଡ଼ି ପଡିବ । ହିଂସା ଓ ଅରାଜକତା, ପରିବେଶର ବିନାଶ ଓ ପାରସ୍ପରିକ ଅସହିଷ୍ଣୁତା ଅନେକ କମିଯିବ । ଆମେ ନିରାମିଷ ଆନ୍ଦୋଳନର ଇତିହାସ କଥା ବିଚାରକୁ ନେବା । ଆବହମାନ କାଳରୁ ମଣିଷ ଅତି ନିଷ୍ଠୁର ଭାବେ ହେଉଥିବା ଜୀବ ହତ୍ୟାକୁ ବିରୋଧ କରି ଆସିଛି । ଉଭୟ ନୈତିକ ଓ ଅର୍ଥନୈତିକ କାରଣ ହେତୁ ଏ ପୃଥିବୀରେ ଆଜି କୋଟି କୋଟି ଲୋକ ଆମିଷ ଛାଡ଼ି ନିରାମିଷ ଖାଦ୍ୟ ପ୍ରତି ଆକୃଷ୍ଟ ହୋଇଛନ୍ତି । ବ୍ରାହ୍ମଣବାଦ, ବୁଦ୍ଧଧର୍ମ, ଜୈନଧର୍ମ, ଜୋରାଷ୍ଟ୍ରିଆନିଜିମ୍ ଆଦି ଧାର୍ମିକ ମତବାଦରେ ନିରାମିଷ ଖାଦ୍ୟର ଯଥାର୍ଥତା ପ୍ରତିପାଦନ କରାଯାଇଛି । ଏବେ ମଧ୍ୟ ଖ୍ରୀଷ୍ଟିଆନ୍‌ମାନଙ୍କର ଏକ ସଚେତନ ଗୋଷ୍ଠୀ ନିରାମିଷାଶୀ ହେବାକୁ

ଆହ୍ୱାନ କରିଛି । ଦାର୍ଶନିକଙ୍କ ମଧ୍ୟରେ ପିଆଟୋରାସ୍ ଡ଼ାଇଜୋନେସ୍, ପ୍ଲାଟୋ, ସକ୍ରେଟିସ୍ ନିରାମିଷାଶୀ ଥିଲେ । ଲେଖକମାନଙ୍କ ମଧ୍ୟରେ ଭୋଲଟାୟାର୍, ପୋପ୍ ,ସେଲୀ, ଥୋରୋ, ବର୍ଣ୍ଣାଡ ଶ ଓ ବେନ୍ଥାମ୍ ଅନ୍ୟତମ ନିରାମିଷାଶୀ ଥିଲେ । ଉନବିଂଶ ଶତାବ୍ଦୀରେ ପ୍ରଥମଭାଗରେ ନିରାମିଷାଶୀ ଆନ୍ଦୋଳନ ଆରମ୍ଭ ହୋଇଥିଲା ଓ ନିରାମିଷାଶୀଙ୍କ ପାଇଁ ରୋଷେଇ କରିବାର ପ୍ରଣାଳୀ ଓ କଳା ପୁସ୍ତକ ଆକାରରେ ପ୍ରକାଶ ପାଇଥିଲା । ୧୮୪୭ ମସିହାରେ ଔପଚାରିକ ଭାବେ ନିରାମିଷାଶୀ ସମାଜ ବା ଭେଜେଟାରିଆନ୍ ସୋସାଇଟି ପ୍ରତିଷ୍ଠା କରାଯାଇଥିଲା ବ୍ରିଟେନ୍‌ରେ ନର୍ଥଉଡ୍ ଭିଲାଠାରେ ସେପ୍ଟେମ୍ବର ୩୦ ତାରିଖରେ । ଏହାର ମୁଖ ପତ୍ର ଭେଜେଟାରିଆନ୍ ମେସେଞ୍ଜର୍ ପରିଶେଷରେ ୧୮୪୯ ମସିହାରେ ପ୍ରକାଶ ପାଇଥିଲା ଓ ବିଭିନ୍ନ ଉଠାଣି ଗଡାଣି ଅତିକ୍ରମ କରି ୧୯୭୧ ମସିହାରେ ବି ଭେଜେଟାରିଆନ୍ ନାମରେ ପ୍ରକାଶିତ ହେଲା । ୧୯୯୨ ମସିହାରେ ଏହା ମାସିକ ପତ୍ରିକା ହିସାବରେ ସାରା ପୃଥିବୀରେ ଅଗଣିତ ଲୋକଙ୍କ ପାଖରେ ଏହା ପହଞ୍ଚୁଥିଲା । ଏ ଭିତରେ ଖାଲି ବ୍ରିଟେନ୍ ନୁହେଁ ସାରା ପୃଥିବୀର ବିଭିନ୍ନ କୋଣରେ ନିରାମିଷାଶୀଙ୍କ ସମାଜ ମୁଣ୍ଡ ଟେକିଥିଲା ଓ ୧୯୦୮ ମସିହାରେ ଆନ୍ତର୍ଜାତିକ ସଂଗଠନ ଭାବେ ଦି ଇଣ୍ଟରନେସ୍‌ନାଲ୍ ଭେଜେଟାରିଆନ୍ ଇୟୁନିୟନ୍ ପ୍ରତିଷ୍ଠା ଲାଭ କରିଥିଲା । ନିୟମିତ ଭାବେ ବିଶ୍ୱ ନିରାମିଷାଶୀ କଂଗ୍ରେସର ଅଧିବେଶନ ଆୟୋଜିତ କରାଗଲା । ୧୯୯୦ ମସିହାରେ ଇସ୍ରାଏଲ୍‌ର ତେଲ୍ ଆଭିଭ୍‌ଠାରେ ଏ କଂଗ୍ରେସ୍ ଆୟୋଜିତ ହୋଇଥିଲା ।

ମହାତ୍ମାଗାନ୍ଧୀ ନିରାମିଷ ଆନ୍ଦୋଳନର ଜଣେ ମୁଖ୍ୟ ସେନାପତି ଥିଲେ । ସତ୍ୟ ଓ ଅହିଂସା ପରେ ନିରାମିଷପଣିଆ ତାଙ୍କର ସଂଗ୍ରାମର ଅନ୍ୟ ଏକ ଅସ୍ତ୍ରଥିଲା । ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ସ୍ୱାସ୍ଥ୍ୟ ପ୍ରତିଷ୍ଠା ପାଇଁ ନିରାମିଶାଷୀ ଖାଦ୍ୟ ଏକ ଆମୋଘ ଅସ୍ତ୍ର ବୋଲି ସେ ସଦାସର୍ବଦା ବିଚାର କରୁଥିଲେ । ଗାନ୍ଧୀ ବିଚାରରେ ସ୍ପଷ୍ଟ ଉଲ୍ଲେଖ ଅଛି

> "...ଶାକାହାରୀ ହେବା ଆତ୍ମସତ୍ତାର କଥା, ଶରୀର କଥା ନୁହେଁ । ମଣିଷ ଭିତରେ ଥିବା ଏଇ ଆତ୍ମସତ୍ତାକୁ ଆମେ ସମ୍ମାନ ଦେବା । ମଣିଷ ମାଂସାହାରୀ ହିସାବରେ ଜନ୍ମ ନେଇ ନାହିଁ । ସେ ଫଳାହାରୀ ହିସାବରେ ଏ ପୃଥିବୀକୁ ଆସିଛି ।"

ଗାନ୍ଧୀ ତାଙ୍କ ନିଜ ଜୀବନ କଥାରେ ମାଂସର ପ୍ରଥମ ସ୍ୱାଦ ଓ ତଦ୍‌ଜନିତ ଅନୁଶୋଚନାକୁ ଅତି ବିନମ୍ର ଓ ସତ୍ୟତାର ସହ ବର୍ଣ୍ଣନା କରିଛନ୍ତି ଓ ପରେ କିପରି ଶାକାହାରୀ ହେବାର ମାନସିକତା ବଢ଼ାଇଛନ୍ତି ଓ ତାଙ୍କର ଏ ନିର୍ଣ୍ଣୟକୁ ମଧ୍ୟ ପ୍ରଚାର କରିଛନ୍ତି । ଜୀବହତ୍ୟା ଅହିଂସା ପଥର ବିରୋଧୀ ବୋଲି ସେ ଦୃଢ଼ସ୍ୱରରେ କହିଛନ୍ତି । ଗାନ୍ଧୀଙ୍କ ଅର୍ଥନୈତିକ ବିଚାରରେ ମଧ୍ୟ ଶାକାହାରୀ ହେବାର ଅକାଟ୍ୟ ଯୁକ୍ତି ଉପସ୍ଥାପିତ ହୋଇଛି, ତାଙ୍କ ମତରେ ହିଂସା ଶୋଷଣ ଓ ଅସମାନତାରେ ଭରି ରହିଛି । ଅହିଂସାର ଅନ୍ୟ ଅର୍ଥ ହେଉଛି ଯେ ଯାହା ସାଧାରଣ ଓ ନିମ୍ନ ସ୍ତରରେ ବ୍ୟକ୍ତିଙ୍କୁ ମିଳୁନାହିଁ ତାହା ପରିହାର କରିବା । ଆମେରିକାନ୍ ଷ୍ଟାଇଲ୍ ବା ପାଶ୍ଚାତ୍ୟ ଢଙ୍ଗରେ ଖାଇବାକୁ କେତେଜଣଙ୍କୁ ସୁଯୋଗ ମିଳୁଛି ? ତେଣୁ ଆମିଷ ଭୋଜନ ହିଂସାର ପ୍ରତୀକ ଓ ଅହିଂସାର ବିରୋଧୀ । ଆନ୍ତର୍ଜାତିକ ଶାକାହାରୀ ସଂଗଠନ ସହ ତାଳଦେଇ ଆଜି ପୃଥିବୀରେ ଆଉ ଏକ ସଂଗଠନ ମୁଣ୍ଡଟେକିଛି ଜଗତୀକରଣ ବିରୋଧରେ । ତାହାର ନାମ ହେଉଛି 'ଫୁଡ୍ ନଟ୍ ବମ୍‌ସ' (Food Not Bombs) । ଏହାର ମୂଳ ଉଦ୍ଦେଶ୍ୟ ହେଲା ଶାନ୍ତି ପ୍ରତିଷ୍ଠା, ବ୍ୟକ୍ତିଗତ ଜୀବନରେ ସଂସ୍କାର, ଗରୀବଙ୍କ ମାନସମ୍ମାନ, ଅନାହାରରେ ଥିବା ଲୋକଙ୍କୁ ଖାଦ୍ୟ ଯୋଗାଣ ଏବଂ ସର୍ବୋପରି ଜୈବିକ ଓ ପ୍ରାକୃତିକ ଖାଦ୍ୟ ଗ୍ରହଣ । ଏ ସଂଗଠନ ଏତେ ସକ୍ରିୟଯେ ଏହା ବିରୁଦ୍ଧରେ ସବୁଠାରେ ପୋଲିସ, ଅମଲାତନ୍ତ୍ର, ବହୁରାଷ୍ଟ୍ରୀୟ କମ୍ପାନୀମାନେ ଆକ୍ରମଣ ଚଳାଇଛନ୍ତି । ଜଗତୀକରଣର ପ୍ରଭାବରେ ସବୁ ଦେଶରେ ଏପରିକି ବିକଶିତ ଦେଶରେ ଅନାହାର ଓ ରୋଗବେମାରି ଥିବା ଲୋକଙ୍କ ସଂଖ୍ୟା ବଢ଼ିଛି ଓ କ୍ରମାଗତ ଭାବେ ବଢୁଛି । 'ଫୁଡ ନଟ୍ ବମ୍‌ସ' ସଂସ୍ଥା ଯଦି ଖୋଲାଖୋଲି ଭାବେ ସେମାନଙ୍କୁ ଖାଦ୍ୟ ଯୋଗାଣ କରିବାକୁ ପଦକ୍ଷେପ ନେଉଛି, ଏହା ବିକଶିତ ଦେଶରେ ସରକାର, ଆମେରିକାନିଜମ୍‌ରେ ଗର୍ବିତ ଜନସାଧାରଣ ଓ ସ୍ୱଚ୍ଛଳ ବର୍ଗଙ୍କୁ ଅପମାନଜନକ ପରିସ୍ଥିତିରେ ପକାଇ ଦେଇଛି । କିନ୍ତୁ ଅନାହାର ପ୍ରପୀଡିତ ଲୋକଙ୍କୁ ନେଇ ଏ ସଂସ୍ଥା ଖୁବ୍ ପ୍ରଭାବଶାଳୀ ହୋଇପାରିଛି ।

ଓଡ଼ିଶା ଭଳି ପ୍ରଦେଶ ଯେଉଁଠି ଅନାହାରଜନିତ ମୃତ୍ୟୁର ଅନେକ ଉଦାହରଣ ଅଛି, ଜଗତୀକରଣର ପ୍ରଭାବରେ ସାଧାରଣ ଲୋକେ କେଉଁ ଦୁର୍ଦ୍ଦଶାର

ସମ୍ମୁଖୀନ ହେବ ଏବେଠାରୁ କଳ୍ପନା କରିହେଉଛି । ସେଠାରେ ସମସ୍ତ ଗଣ୍ଡେ ଖାଇବେ ଓ ରହିବାକୁ ଘରଟି ପାଇବେ ଓ ଏହା ଯଦି ଆମ ସମସ୍ତଙ୍କର ଲକ୍ଷ୍ୟ ଅଛି ତାହା ହେଲେ ବହୁ ଭାଗ ଲୋକଙ୍କୁ ନିରାମିଶାଷୀ ହେବାରେ ଆବଶ୍ୟକତା ରହିଛି । ଏହା ସଙ୍ଗେ ସଙ୍ଗେ 'ଫୁଡ୍ ନଟ୍ ବମ୍ବ' ଦ୍ୱାରା ଅନୁପ୍ରାଣିତ ହୋଇ ସଂଗଠନମାନ ଗଢ଼ି ଉଠିବା ଜରୁରୀ ହୋଇପଡ଼ିଛି । 'ହୋଟେଲ୍ କଲଚର' ଯେଉଁଭଳି ମାଡ଼ି ଚାଲିଛି ତାହା ବନ୍ଦ ହେବାର ଆବଶ୍ୟକତା ଅଛି । 'ଶାକାହାରୀ' ମଣିଷଙ୍କ ସ୍ୱର ଚତୁର୍ଦ୍ଦିଗରେ ଶୁଣାଯିବ ବୋଲି ମୁଁ ଆଶା କରିଛି ।

(୩)

ଏହା ଋଗ୍ ବେଦରେ ସ୍ପଷ୍ଟ କୁହାଯାଇଛି ଯେ ସାରା ପୃଥିବୀରେ ସବୁଜ୍ଞାନ ଆମକୁ ଆହରଣ କରିବାକୁ ସୁଯୋଗ ମିଳୁ । ଭବନସ୍ ଜର୍ଣ୍ଣାଲ୍‌ର ପ୍ରଥମ ପୃଷ୍ଠାରେ ଏହା ମୁଁ ପିଲାବେଳେ ପଢ଼ି ଅନେକ ପ୍ରେରଣା ପାଇଥିଲି । କିନ୍ତୁ ଜ୍ଞାନର ସବୁ ଉପାଦେୟତା ଜଗତୀକରଣ ପ୍ରକ୍ରିୟାରେ ଏକ ଜଟିଳ ପ୍ରଶ୍ନବାଚକ ଚିହ୍ନରେ ପରିଣତ ହୋଇଯାଇଛି । ଜଗତୀକରଣ ଆଜି ସତରେ କ'ଣ ଜ୍ଞାନର ଭଣ୍ଡାରକୁ ଜ୍ଞାନ ରାକ୍ଷସରେ ପରିଣତ କରିଦେଇଛି ? ଜ୍ଞାନାଲୋକ କ'ଣ ସତରେ ସାଧାରଣ ମଣିଷଙ୍କ ପାଇଁ ଅନ୍ଧାରର ଏକ ଗହ୍ୱର ହୋଇପଡ଼ିଛି ? ଜଗତୀକରଣ କ୍ରମବର୍ଦ୍ଧିଷ୍ଣୁ ଆନ୍ତର୍ଜାତିକ ବଜାର ଏବଂ ସଂସ୍କୃତି ଦ୍ୱାରା ନିୟନ୍ତ୍ରିତ । ଫଳରେ ଆନ୍ତର୍ଜାତିକ ଯୋଗାଯୋଗ ଓ ସଂପର୍କ ଖୁବ୍ ପ୍ରଭାବିତ ହୋଇଛି । ଏଥିରୁ ଯେଉଁ ପ୍ରକ୍ରିୟା ଉଦ୍ଭବ ହୋଇଛି, ତାହା ବିଶ୍ୱଜ୍ଞାନ ବ୍ୟବସ୍ଥା ଓ ବୈଷୟିକ ଜ୍ଞାନ ଦ୍ୱାରା ପରିଚାଳିତ । ଏହା ଜ୍ଞାନର ଭଣ୍ଡାରକୁ ଉନ୍ମୁକ୍ତ କରିଛି ସତ, କିନ୍ତୁ ଗରିବ ଓ ଶୋଷିତଙ୍କ କ୍ଷେତ୍ରରେ ତାହା ଆଶାତୀତ କ୍ଷତି ପହଞ୍ଚାଇଛି । ଏକଥା ସତ ଯେ ଜଗତୀକରଣ ଗୋଟାଏ ସ୍ଥାନ, କାଳ, ପାତ୍ର ଓ ଅବସ୍ଥିତିକୁ ଅନ୍ୟ ଏକ ସମାଜ, ବିଚାରଧାରା, ସଂସ୍କୃତି ଏବଂ ପର୍ଯ୍ୟାବରଣ ସହ ସାମିଲ୍ କରିପାରୁଛି । କିନ୍ତୁ ଅସଲ କ୍ଷେତ୍ରରେ ତାହା ବିଭିନ୍ନ ବାଟରେ ସାଧାରଣ ଲୋକଙ୍କ ଜୀବନରେ ଅନେକ ପ୍ରତିକୂଳ ପରିସ୍ଥିତି ସୃଷ୍ଟି କରିଛି । ଆଜି ଟିକିଏ ଗଭୀର ଭାବେ ଅନୁସନ୍ଧାନ କଲେ ଜଣାପଡ଼ିବଯେ ପୃଥିବୀର ସମୁଦାୟ ଜନସଂଖ୍ୟାର ଅର୍ଦ୍ଧେକ ଆଜି ଦିନକୁ ଗୋଟାଏ ଡଲାର ବା ପ୍ରାୟ ଚାଳିଶ ଟଙ୍କା ଆୟ

କାରିପାରୁନାହାନ୍ତି । ଦାରିଦ୍ର୍ୟ ବହୁରୂପୀ ହୋଇ ଯାଇଛି ଆଜି । କେଉଁଠି ନିରକ୍ଷରତା, ସ୍ୱାସ୍ଥ୍ୟ ସେବାର ଅଭାବ, ଆର୍ଥିକ ବିପର୍ଯ୍ୟୟ, ହିଂସା ଓ ହତ୍ୟା ଆଦି ସୀମା ଟପିଛି । ଗାଁର ଲୋକେ ସହରାଭିମୁଖେ ଲକ୍ଷଲକ୍ଷ ସଂଖ୍ୟାରେ ମୁହାଁଉଛନ୍ତି । ଗାଁମାନଙ୍କର ପାରମ୍ପରିକ ସ୍ଥିତି ଓ ସ୍ଥାୟିତ୍ୱ ଆଜି ବିପନ୍ନ ହୋଇଛି । ସବୁଠାରୁ ଦୁଃଖର କଥା ଯେ ପ୍ରାକୃତିକ ସମ୍ପଦ, ପାଣି, ପବନ, ବନସ୍ପତି ଓ ଜଙ୍ଗଲ ଜୈବ ବିବିଧତା ସହ ସାଂସ୍କୃତିକ ବିବିଧତା ସବୁ ଦୂଷିତ ଓ ଦୁଷ୍ପ୍ରାପ୍ୟ ହେବାକୁ ଲାଗିଛି । ଆମ ସମସ୍ତଙ୍କ ସମାଜ ଭାଙ୍ଗିବାରେ ଲାଗିଛି ଓ ଭୁଶୁଡିବାକୁ ଆରମ୍ଭ କରିଛି । ସାରା ବିଶ୍ୱରେ ଜଗତୀକରଣ ଦ୍ୱାରା ପାରମ୍ପରିକ ଜ୍ଞାନ କୌଶଳର ଗୁରୁତ୍ୱ ହ୍ରାସ ପାଇଛି । ବାହାରର ଅନାବଶ୍ୟକ ଜ୍ଞାନ ଏବେ ସାଧାରଣ ମଣିଷଙ୍କ ଉପରେ ରାଜତ୍ୱ କରୁଛି ଓ ସମସ୍ତଙ୍କୁ ଅସହାୟ ପରିସ୍ଥିତିକୁ ଠେଲି ଦେଉଛି ।

କିନ୍ତୁ ପାରମ୍ପରିକ ଓ ଲୋକଜ୍ଞାନର ସଂଜ୍ଞା କ'ଣ ? ଶହ ଶହ ବର୍ଷଧରି ବିକଶିତ ହୋଇଥିବା ଲୋକଜ୍ଞାନ ଓ ବିଜ୍ଞାନର ଏକ ସ୍ୱତନ୍ତ୍ର ସ୍ଥାନ ଅର୍ଜନ କରିଛି ଆମ ସଭ୍ୟତାରେ । ଯଦି ଏହି ଜ୍ଞାନ ଓ ବିଜ୍ଞାନ ଲୁପ୍ତ ହୋଇଯାଏ, ତେବେ ଗୋଟାଏ ସଭ୍ୟତା ସମାପ୍ତ ହୋଇଯିବ । ତେଣୁ ଏଥିପ୍ରତି ସଚେତନ ହେବାର ଅଛି । ସମସ୍ତ ବିକାଶ ପ୍ରକ୍ରିୟାରେ, ସମସ୍ତ ଜୀବନ ଜୀବିକାରେ, ଖାଦ୍ୟ, ବସ୍ତ୍ର, ବାସଗୃହ, ସ୍ୱାସ୍ଥ୍ୟ, ଜଳ ପରିମଳରେ ସ୍ଥାନୀୟ ଜ୍ଞାନ ଓତପ୍ରୋତ ଭାବେ ସଂଶ୍ଳିଷ୍ଟ ହୋଇଛି । ବିଶେଷ କିର ପ୍ରାକୃତିକ ସମ୍ବଳର ପରିଚାଳନା ଓ ସଂରକ୍ଷଣରେ ଏହାର ଏକ ବଳିଷ୍ଠ ଭୂମିକା ରହିଛି । ଆମେ ତାକୁ ନିମ୍ନରେ ସମୀକ୍ଷା କରିବା । ସ୍ଥାନୀୟ ଓ ଲୋକାଭିମୁଖୀ ବିକାଶର ମୂଳ ପରିପ୍ରକାଶ ଗୁଡିକ ନିମ୍ନରେ ଦିଆଗଲା ।

କ) ଲୋକ ବିକାଶରେ ସ୍ଥାନୀୟ ସମ୍ବଳର ବିନିଯୋଗ ଯାହା ମାନବୀୟ, ବସ୍ତୁ ସମ୍ବନ୍ଧୀୟ, ପ୍ରାକୃତିକ ଓ ଆଧ୍ୟାତ୍ମିକ କ୍ଷେତ୍ର ଉପରେ ଆଧାରିତ । (ଖ) ସ୍ୱେଚ୍ଛାକୃତ ଭାବେ ଓ ପ୍ରାକୃତିକ ଉପାୟରେ ସ୍ଥାନୀୟ ଜ୍ଞାନ ବ୍ୟବସ୍ଥାର ବିକାଶ ଓ ଅଭିବୃଦ୍ଧି । (ଗ) ବିକାଶ ପ୍ରକ୍ରିୟାକୁ ଆବଶ୍ୟକ ସ୍ଥାନୀୟ ନିୟନ୍ତ୍ରଣ, ସ୍ଥାନୀୟ ସମସ୍ୟାଗୁଡିକୁ ଆବଶ୍ୟକ ଅନୁସାରେ ଓ ବିଭିନ୍ନ ପ୍ରକାରର ଗୋଷ୍ଠୀଙ୍କ ହିତରେ ସମାଧାନ । (ଙ) ବାହାର ସମ୍ବଳର ସାହାଯ୍ୟ ନେଇ ସ୍ଥାନୀୟ ସମ୍ବଳର ଅଭିବୃଦ୍ଧି । (ଚ) ବିଭିନ୍ନ ଗୋଷ୍ଠୀ ଓ ସଂସ୍କୃତିର ସମନ୍ୱୟ ଓ ସମିଶ୍ରଣ । (ଛ) ଜ୍ଞାନ ବ୍ୟବସ୍ଥାରେ ସଠିକ୍ ବିଶ୍ଳେଷଣ । (ଜ) ବିଭିନ୍ନ ଗୋଷ୍ଠୀ ଭିତରେ ନେଟ୍ୱାର୍କିଂ ।

କିନ୍ତୁ ଏହି ସ୍ଥାନୀୟ ଲୋକଜ୍ଞାନକୁ ଅସ୍ୱୀକରି କିପରି ଜଗତୀକରଣ ସହ ଲଢ଼େଇ ଚାଲିଛି ଆମଦେଶରେ· ତାହା ପାଠକମାନଙ୍କୁ ଜଣାଇବା ମୋର ପରମ କର୍ତ୍ତବ୍ୟ ବୋଲି ମନେ କରୁଛି । ଏ ଲଢ଼େଇରେ ଖାଲି ସଂସ୍ଥା ବା ଅନୁଷ୍ଠାନ ସମ୍ପୃକ୍ତ ନୁହନ୍ତି, ଅନେକ ବ୍ୟକ୍ତିବିଶେଷ ମଧ୍ୟ ସଂଶ୍ଳିଷ୍ଟ ଅଛନ୍ତି । ସେମାନଙ୍କର ସବିଶେଷ ତାଲିକା ଏକାବେଳେକେ ଦେବା ସମ୍ଭବ ନୁହେଁ । କେତୋଟି ସଫଳ ପରୀକ୍ଷାରେ ଉଦାହରଣ ଦେବା ଉଚିତ ବୋଲି ମୁଁ ମନେକରେ । ୧) ଏଫ୍.ଆର୍.ଏଲ୍.ଏଚ.ଟି(FRLHT) ବା ଫାଉଣ୍ଡେସନ୍ ଫର ଦି ରିଭାଇଟାଲାଇଜେସନ୍ ଅଫ ଲୋକାଲ ହେଲଥ୍ ଟ୍ରାଡିସନ୍ (Foundtion for the Revitalstaion of Local Health Tradition) । ଏ ସଂସ୍ଥାଟି ବାଙ୍ଗାଲୋର୍‌ଠାରେ ଅବସ୍ଥିତ ଓ ଏହାର ନେତୃତ୍ୱ ଦେଇଛନ୍ତି ଶ୍ରୀଦର୍ଶନ ଶଙ୍କର । ଗାଁମାନଙ୍କରେ ପୁରୁଷପୁରୁଷଧରି ଏକ ଘରୋଇ ତୁଟ୍‌କା ଚିକିତ୍ସାର ପରମ୍ପରା ରହିଆସିଛି । ଏ ସଂସ୍ଥା ତାହାକୁ ଅଧ୍ୟୟନ କରି ବିଜ୍ଞାନ ସମ୍ମତ ବିଶ୍ଳେଷଣ କରିବାକୁ ଚାହିଁଛି । ଗାଁମାନଙ୍କରେ ଥିବା ବୈଦ୍ୟମାନେ ବିନା ପୋଥି, କଲମରେ ଏ ଚିକିତ୍ସା ବ୍ୟବସ୍ଥାକୁ ବଞ୍ଚାଇ ରଖିଛନ୍ତି । ଆଦିବାସୀ ଅଞ୍ଚଳରେ ବୈଦ୍ୟ କୁହାଯାଉଥିବା ବ୍ୟକ୍ତିମାନଙ୍କୁ ଦିସାରୀ କୁହାଯାଏ । ଦିସାରୀମାନେ କଥାରେ କଥାରେ ସେମାନଙ୍କର ଶିଷ୍ୟମାନଙ୍କୁ ଶିକ୍ଷା ଦେଇଥାଆନ୍ତି । ବିଭିନ୍ନ ଚେର, ମୂଳ, ଔଷଧୀୟ ଗଛମାନଙ୍କୁ । ରୋଗ କେମିତି ଚିହ୍ନିବ ଓ ତାହାର ଦେଶୀ ଚିକିତ୍ସା କେମିତି କରାଯିବ ସେମାନେ କଥାବର୍ତ୍ତା ଦ୍ୱାରା ଶିଖାଇ ଥାଆନ୍ତି । ନୂତନ ଓ ଆଧୁନିକ ସଭ୍ୟତା ନାମରେ ଜଗତୀକରଣ ବର୍ତ୍ତମାନ ଆମ ଭିତରକୁ ନେଇ ଆସିଛି ବିଭିନ୍ନ ଧରଣର ଔଷଧ । ବୈଦ୍ୟ ଓ ଦିସାରୀମାନେ ତଥ୍ୟକୁ ବ୍ୟବହାର କରୁଥିବା ଔଷଧୀୟ ଚେରମୂଳ ଆଦି ପଛରେ ଥିବା ବିଭିନ୍ନ ବହୁରାଷ୍ଟ୍ରୀୟ କମ୍ପାନୀମାନେ କଳେବଳେ କୌଶଳେ ଚୋରିକରି ନୂତନ ପ୍ରକାରର ଔଷଧ ଚୋରି କରୁଛନ୍ତି ଓ ଔଷଧ ତିଆରି କରି ବହୁମାତ୍ରାରେ ଲାଭ ଉଠାଉଛନ୍ତି । ଉଦାହରଣ ସ୍ୱରୂପ କାମଳ ଏବଂ ହେପାଟାଇଟିସ୍ ରୋଗ ପାଇଁ କେରଳର କାଣି ଆଦିବାସୀମାନେ ଯେଉଁ ଗଛଟି ବ୍ୟବହାର କରନ୍ତି ତାହାର ଜ୍ଞାନ କୌଶଳ ଏବେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ହାତରେ । ଭାରତରେ ଯେଉଁ ଜନସ୍ୱାସ୍ଥ୍ୟ ବ୍ୟବସ୍ଥା ରହିଛି ତାହା ପାଶ୍ଚାତ୍ୟ ଦେଶମାନଙ୍କ ଢାଞ୍ଚାରେ ବୈଷୟିକ ଜ୍ଞାନକୌଶଳ ଉପରେ ଆଧାରିତ ଏବଂ ପାଶ୍ଚାତ୍ୟଦେଶମାନଙ୍କ ଲାବୋରେଟାରିରେ

ପ୍ରସ୍ତୁତ ଔଷଧ ଦ୍ୱାରା ସଂଚାଳିତ । ଏହା ତାଙ୍କର, କମ୍ପାଉଣ୍ଡର ଓ ନକଲି ଡ଼ାକ୍ତରଙ୍କ ଦ୍ୱାରା ପ୍ରସାରିତ ଓ ପରିଚାଳିତ । କିନ୍ତୁ ଏହାଦ୍ୱାରା ଘରୋଇ ଓ ଦେଶୀ ସ୍ୱାସ୍ଥ୍ୟ ଜ୍ଞାନ ଏବେ ଲୋପ ପାଇବାରେ ବସିଛି । FRLHT କିନ୍ତୁ ବିଧିବଦ୍ଧ ଭାବେ ଅଧ୍ୟୟନ ଆରମ୍ଭ କରିଛି ଦେଶୀ ଓ ଟୁଟ୍‌କା ଚିକିତ୍ସା ପଦ୍ଧତିକୁ । ଚାରୋଟି ପ୍ରଦେଶରେ ପ୍ରଥମ ପର୍ଯ୍ୟାୟରେ ବିଭିନ୍ନ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କୁ ସାମିଲ୍ କରାଯାଇଛି । ଏଥିରେ ଅଛନ୍ତି ମହାରାଷ୍ଟ୍ର, କର୍ଣ୍ଣାଟକ, ତାମିଲନାଡୁ ଏବଂ କେରଳ । ଏବେ ଆଉ ଦଶଟି ରାଜ୍ୟକୁ ଏ କାର୍ଯ୍ୟକ୍ରମ ସମ୍ପ୍ରସାରିତ ହେବାକୁ ଯୋଜନା କରାଯାଇଛି । ସ୍ୱେଚ୍ଛାସେବୀ ସଂଗଠନର କର୍ମକର୍ତ୍ତାଙ୍କୁ ପ୍ରଶିକ୍ଷଣ ଦିଆଯାଉଛି । ଏଥିପାଇଁ ବିଭିନ୍ନ ଟ୍ରେନିଂ ପଦ୍ଧତି ଓ ମୋଡ୍ୟୁଲ୍ ପ୍ରସ୍ତୁତ କରାଯାଇଛି । ସ୍ୱାସ୍ଥ୍ୟ ପରିମ୍ପରା ଓ ସାଂସ୍କୃତିକ ପରମ୍ପରା ଉପରେ ତଥ୍ୟ ଓ ଅନୁଭୂତିକୁ ସଂଗ୍ରହ କରାଯାଉଛି, ଖାଲି ମଣିଷ ନୁହେଁ ପଶୁସମ୍ପଦର ରୋଗବେମାରୀ ପାଇଁ କି ପ୍ରକାରର ଦେଶୀ ଚିକିତ୍ସା ହେଉଛି ତାହା ମଧ୍ୟ ଲିପିବଦ୍ଧ କରାଯାଉଛି । ସାପ କାମୁଡାରୁ ବିଷ ଝାଡିବା ପଦ୍ଧତି, ହାଡ ଭାଙ୍ଗିଗଲେ ଯୋଡିବା ପଦ୍ଧତି ଏବଂ ସାଧାରଣ ରୋଗବେମାରୀରୁ ଚିକିତ୍ସା ପଦ୍ଧତିଗୁଡ଼ିକ ଜାଣିବା ପାଇଁ ବିଶେଷ ଟ୍ରେନିଂ ଦିଆଯାଇଅଛି । ତଥ୍ୟ ସଂଗ୍ରହ ପରେ ସେଗୁଡିକୁ ବିଶ୍ଳେଷଣ କରାଯାଇଛି । ପ୍ରତି ପ୍ରଦେଶରେ ଓ ପ୍ରଦେଶର ବିଭିନ୍ନ ଅଞ୍ଚଳରେ ଯେଉଁ ସ୍ୱତନ୍ତ୍ର ଧରଣର ଦେଶୀ ଚିକିତ୍ସା ଅଛି ତାହାର ପଞ୍ଜିକରଣ କରାଯାଇ ଦସ୍ତାବିଜ୍ ପ୍ରସ୍ତୁତ କରାଯାଉଛି । ପ୍ରତ୍ୟେକ ଅଞ୍ଚଳର ସ୍ୱାସ୍ଥ୍ୟ ସମସ୍ୟାକୁ ଅନୁଧ୍ୟାନ କରିଲାପରେ କେଉଁଟି ବେଶୀ ଗୁରୁତ୍ୱପୂର୍ଣ୍ଣ ତାହା ମଧ୍ୟ ନିର୍ଣ୍ଣୟ କରାଯାଉଛି । ସମସ୍ୟାର ସମାଧାନ ପାଇଁ ଲୋକମାନଙ୍କର ମତାମତକୁ ଏକତ୍ରିତ କରି ଯୋଜନା ମଧ୍ୟ କରାଯାଉଛି । ଯେଉଁ ସମାଧାନର ସୂତ୍ର ସମସ୍ତଙ୍କୁ ଗ୍ରହଣଯୋଗ୍ୟ ତାହାକୁ ପ୍ରୋତ୍ସାହନ ଦିଆଯାଉଛି । ଏଇଭଳି ବିଭିନ୍ନ ପଦକ୍ଷେପ ନେଇ ଦେଶୀ ଚିକିତ୍ସା ବ୍ୟବସ୍ଥାକୁ ସୁଦୃଢ଼ କରାଯାଉଛି ଓ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଦ୍ୱାରା ପ୍ରସ୍ତୁତ ଔଷଧର ବ୍ୟବହାର କରାଯାଇ ପାରିଛି ।

FRLHT ରେ ଅନ୍ୟ ଏକ ସଫଳ କାହାଣୀ ହେଲା ପ୍ରତି ଅଞ୍ଚଳରେ ଗାଁମାନଙ୍କରେ ଲୋକମାନଙ୍କ ଦ୍ୱାରା ଜୈବବିବିଧତାର ରେଜିଷ୍ଟର କରିବା । ବାଇଓ-ଡାଇଭରସିଟି ରେଜିଷ୍ଟର କରିବାର ଉଦ୍ଦେଶ୍ୟ ହେଲା- ଲୋକମାନଙ୍କ ପାଖରେ ଜୈବବିବିଧତାର ଯେଉଁ ସମ୍ପଦ ଓ ଜ୍ଞାନ ରହିଛି ତାହା ଉପରେ ତଥ୍ୟ ସଂଗ୍ରହ କରିବା । ଉଦ୍ଦେଶ୍ୟ ହେଉଛି ବୌଦ୍ଧିକ ସମ୍ପତି ଅଧିକାର ଏବଂ ପ୍ରାକୃତିକ ସମ୍ପଦ

ଉପରେ ଅଧିକାର ସାବ୍ୟସ୍ତ କରିବା । ଜ୍ଞାନ ଓ ବିଶେଷକରି ବୈଷୟିକ ଜ୍ଞାନକୌଶଳ କ୍ରମେ ସ୍ଥାନୀୟ ସମୁଦାୟଙ୍କ ହାତରୁ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ହାତକୁ ଚାଲିଯାଇଛି । ଏହି ଧାରାରେ ପରିବର୍ତ୍ତନ ପାଇଁ ସୂଚନାକୁ ଅସ୍ତ୍ର ରୂପେ ବ୍ୟବହାର କରାଯାଉଛି । ଲୋକେ ତିଆରି କରୁଥିବା ଜୈବବିବିଧତା ଟିପାଖାତା ଆଦି ସାରାପୃଥିବୀରେ ଗୁରୁତ୍ୱପୂର୍ଣ୍ଣ ହୋଇଯାଇଛି । ଏହା ମଧ୍ୟ ବିଶେଷଜ୍ଞ, ନୀତି ନିର୍ଦ୍ଧାରଣ କରୁଥିବା ଅଧିକାରୀମାନେ ସ୍ୱୀକାର କରୁଛନ୍ତି । ପ୍ରାକୃତିକ ସମ୍ପଦର ନିରନ୍ତର ବିକାଶ ଏଇ ପ୍ରକ୍ରିୟାରେ ଲୋକମାନେ ସ୍ପଷ୍ଟ ନିର୍ଦ୍ଧାରଣ କରିପାରୁଛନ୍ତି ।

## ନବଦର୍ଶନମ୍:

ବାଙ୍ଗାଲୋର ସହରଠାରୁ ଦକ୍ଷିଣରେ ୫୦କିଲୋମିଟର ଦୂରରେ ନବଦର୍ଶନମ୍ ଏକ ନୂତନ ପରୀକ୍ଷା । 'ନବଦର୍ଶନମ୍' କହିଲେ 'ନୂତନ ମାନସଚିତ୍ର' ବୁଝାଏ । ଅତ୍ୟାଧୁନିକ ଓ ଜଗତୀକରଣ ପ୍ରକ୍ରିୟାରେ ଆକ୍ରାନ୍ତ ଜୀବନ ପ୍ରଣାଳୀକୁ ଆହ୍ୱାନ ଦେଇ ଏକ ବିକଳ୍ପ ଜୀବନ ପ୍ରଣାଳୀ ଚିନ୍ତା କରାଯାଇଛି । ଅଶୀ ଦଶକରେ କେତେକ ଉତ୍ସାହୀ ଯୁବଗୋଷ୍ଠୀ ଏକ ଅଧ୍ୟୟନଗୋଷ୍ଠୀ ବା ଷ୍ଟଡ଼ିସାର୍କଲ୍ କରି ଗାନ୍ଧୀବାଦୀ ଚିନ୍ତା ଓ ବୈଷୟିକ ଜ୍ଞାନକୁ ବିଶ୍ଳେଷଣ କରୁଥିଲେ । ସେମାନେ ମୁଖ୍ୟତଃ ଦିଲ୍ଲୀ ଆଇ.ଆଇ.ଟିର ଛାତ୍ର ଥିଲେ ବା ଅଧ୍ୟୟନ ଶେଷକରି ଚାକିରି କରୁଥିଲେ । ସହରାଭିମୁଖୀ ଓ ଶିଳ୍ପାଭିମୁଖୀ ଜୀବନଧାରାକୁ ସମାଲୋଚନା କରିବା ସଙ୍ଗେ ସଙ୍ଗେ ବସ୍ତୁବାଦୀ ଜୀବନକୁ ସେମାନେ ତ୍ୟାଗ କରିଥିଲେ । ପ୍ରକୃତି ମାଆ ଠାରୁ ବିଛିନ୍ନ ହୋଇଥିବା ଜୀବନ କିପରି ଦୁର୍ବିସହ, ସେମାନେ ସ୍ପଷ୍ଟ ଅନୁଭବ କରୁଥିଲେ । ଯେଉଁଠି ସୃଜନଶୀଳତା ନାହିଁ, ପରିବେଶ ଧ୍ୱଂସପ୍ରାୟ, ସବୁଆଡ଼େ ଦାରିଦ୍ର୍ୟ, ବେରୋଜଗାରୀ ଏବଂ ସାମାଜିକ ବିଶୃଙ୍ଖଳାର ବାସ୍ତବ ଚିତ୍ର, ସେଥି ପାଇଁ ସେମାନେ କହିଥିଲେ ବିକଳ୍ପ ଚିନ୍ତନ । ସେମାନେ ପରିକଳ୍ପନା କରିଛନ୍ତି ଯେ ସେମାନେ ସୃଷ୍ଟି କରିବେ ନୂତନ ବିଜ୍ଞାନ ଓ ବୈଷୟିକଜ୍ଞାନ । ସେମାନେ ଏପରି ଟେକ୍ନୋଲୋଜି ବ୍ୟବହାର କରିବେ ଯାହା ପରିବେଶ ପାଇଁ ପ୍ରତିକୂଳ ହେବନାହିଁ । ଏହାକୁ ଆଖିରେ ରଖି ଏ ଉତ୍ସାହୀ ଗୋଷ୍ଠୀ ୧୧୫ ଏକର ଜମି ବାଙ୍ଗାଲୋରରୁ ୫୦କି.ମି. ଦୂରରେ ନେଇଥିଲେ । ଜମିଥିଲା ପତିତ ଓ ବଂଜର । କିଛି ଉତ୍ପାଦନ ହେଉନଥିଲା ସେଇଠି । ପାଞ୍ଚୋଟି ପଦକ୍ଷେପ ନିଆଗଲା । ପ୍ରଥମେ ଆରମ୍ଭ ହେଲା, ପ୍ରାକୃତିକ

ଉପାୟରେ ବନୀକରଣ । ଆପଣା ଛାଏଁ ବିଭିନ୍ନ ବୃକ୍ଷ ଅଙ୍କୁରିତ ହେଲା । ସାରାଅଞ୍ଚଳରେ ହଜାର ହଜାର ଗଛ ଶାଖା ପ୍ରଶାଖା ମେଲାଇଲେ, ମୃତ୍ତିକା ମଧ୍ୟ ସଂରକ୍ଷିତ ହୋଇପାରିଲା ଓ ଉତ୍ପାଦନକ୍ଷମ ହେଲା । ଦ୍ୱିତୀୟରେ ପ୍ରାକୃତିକ ଉପାୟରେ କୃଷି ବା ଜୈବିକ କୃଷି ସେଠାରେ ଆରମ୍ଭ ହେଲା, ବୃକ୍ଷଲତାକୁ ନକାଟି କୃଷି ସେଠାରେ କରାଗଲା । ଖାଦ୍ୟଶସ୍ୟ ଓ ଡାଲିଜାତୀୟ ଫସଲ ନିଆଗଲା । ରାସାୟନିକ ସାର ଓ କୀଟନାଶକ ଦ୍ରବ୍ୟ ବ୍ୟବହାର କରାଗଲା ନାହିଁ । ଏହି ଜୈବିକ ଓ ପ୍ରାକୃତିକ ଚାଷ ନାଟକୀୟ ଢ଼ଙ୍ଗରେ କୃଷି ଉତ୍ପାଦନ ବଢ଼ାଇଲା ।

ତୃତୀୟରେ ସ୍ୱାସ୍ଥ୍ୟ ଓ ଖାଦ୍ୟର ପାଚନ ପ୍ରଣାଳୀ ଉପରେ ଗୁରୁତ୍ୱ ଦିଆଗଲା । କେଉଁ ଖାଦ୍ୟ ଶରୀରରେ ରୋଗସୃଷ୍ଟି କରିବ ତାହା ଚିହ୍ନଟ କରାଗଲା । 'ପ୍ରାଣିକ୍' ତତ୍ତ୍ୱ ଅନୁସାରେ ଖାଦ୍ୟ ପ୍ରସ୍ତୁତ କରାଗଲା । ଚତୁର୍ଥରେ ଉର୍ଜା ଶକ୍ତିଉପରେ ଗୁରୁତ୍ୱ ଦିଆଗଲା । ସୂର୍ଯ୍ୟାଲୋକ, ପବନଶକ୍ତିକୁ ବ୍ୟବହାର କରାଗଲା । ଜମିରୁ ଫଳୁଥିବା ଏକ ମଞ୍ଜିରୁ ତେଲ ପ୍ରସ୍ତୁତ କରାଗଲା । ଗୋବର ଗ୍ୟାସ୍‌ର ବ୍ୟାପକ ବ୍ୟବହାର କରାଗଲା । ରୋଷେଇ ପାଇଁ ସ୍ୱଳ୍ପଶକ୍ତି ଆବଶ୍ୟକ କରୁଥିବା ଚୁଲ୍ଲୀ ବ୍ୟବହାର କରାଗଲା । ଶେଷରେ ବାସଗୃହ ପାଇଁ ସ୍ୱଳ୍ପ ମୂଲ୍ୟର ଟେକ୍ନୋଲୋଜି ବ୍ୟବହାର କରାଗଲା । ମାଟିକାଦୁଅରୁ ଇଟା ବ୍ଲକ୍ ଗଢାଗଲା । ଲୁହା ଓ ଷ୍ଟିଲ୍ ବ୍ୟବହାର କରାଗଲା ନାହିଁ । ପ୍ରକୃତି କୋଳରେ ଘର ସବୁ ଏମିତି ତିଆରି ହେଲା ଯେ ତାହା ଏକ ନୂତନ ପରିବେଶ ସୃଷ୍ଟି କରିଲା । ଏସବୁ ପାଞ୍ଚୋଟିର ମୂଳ ଉଦ୍ଦେଶ୍ୟ ଥିଲା ଯେ ସେଠାକାର ଲୋକମାନେ କିପରି ପ୍ରଶାନ୍ତି ପାଇବେ ଓ ମନ କେମିତି ସ୍ୱଚ୍ଛ ଓ ନିର୍ମଳ ରହିବ । ବସ୍ତୁବାଦୀ ମୂଲ୍ୟବୋଧ ସେଠାରେ ପ୍ରବେଶ କରିବ ନାହିଁ । ମଣିଷ କ୍ରୋଧ, କାମ, ଲୋଭ, ଆସକ୍ତି ଓ ଆତ୍ମବଢିମାରୁ ମୁକ୍ତ ହେବ ।

ଜ୍ଞାନର ମଣିଷ ହେଉଛି ଅସଲ ମଣିଷ । ଜ୍ଞାନଯୋଗ ହେଉଛି ଅସଲଯୋଗ । କିନ୍ତୁ ଜ୍ଞାନ ବିଶେଷକରି ମଣିଷର ଆବଶ୍ୟକ ହେଉଥିବା ଜ୍ଞାନକୁ ଜଗତୀକରଣ ଯେମିତି ଅପହରଣ କରିନେବାକୁ ବସିଛି । ଯେଉଁମାନେ ଜ୍ଞାନ ଗାରିମାରେ ଛାତିଫୁଲାଇ ଚାଲୁଛନ୍ତି ଓ ସମସ୍ତଙ୍କୁ କ୍ରୀତଦାସ କରିବାକୁ ଚାହୁଁଛନ୍ତି ଓ ଯେଉଁମାନେ ଜ୍ଞାନ ଭିତରୁ ଏକ ଆଧ୍ୟାତ୍ମିକ ଚେତନାବୋଧ ଦେଖୁଛନ୍ତି- ସେମାନଙ୍କ ଭିତରେ ଯେମିତି ଏକ ତୁମୁଳ ସଂଗ୍ରାମ ଚାଲିଛି । ଗତ ବର୍ଷ ଦୁଇବର୍ଷ ଭିତରେ ମୁଁ

'ମ୍ୟାଟ୍ରିକ୍‌ସ' ଚଳଚ୍ଚିତ୍ର କେତେଥର ଦେଖିଛି ଏବଂ ତାହାର ପରବର୍ତ୍ତି ଚଳଚ୍ଚିତ୍ର 'ମ୍ୟାଟ୍ରିକ୍‌ସ ରିଲୋଡେଡ' ମଧ୍ୟ ଦେଖିଛି । ଜ୍ଞାନ ଓ ବିଜ୍ଞାନ ମଣିଷକୁ ଓ ମଣିଷର ସ୍ୱାଧୀନତାକୁ ଜିତି ପାରିନାହିଁ । ସବୁ ବ୍ୟବହାର ଓ ମୂଲ୍ୟବୋଧ ଉପରେ ନିର୍ଭର କରୁଛନ୍ତି । ଯଦି ଜଗତୀକରଣ ଜ୍ଞାନ, ବିଜ୍ଞାନ ଓ ବୈଷୟିକଜ୍ଞାନର ଦୂରତା ବ୍ୟବହାର କରୁଛି ତାହା ଏବେ ନିନ୍ଦା କରିବାର ସମୟ ଆସିଛି ।

(୪)

ଭୁବନେଶ୍ୱରର ବୟୋଜ୍ୟେଷ୍ଠ ଓ ଲୋକପ୍ରିୟ ଓକିଲ ଶ୍ରୀଯୁକ୍ତ ଗଙ୍ଗାଧର ପାଣିଗ୍ରାହୀଙ୍କ ମାନସିକତା ଓ ଦୃଢ଼ ଆତ୍ମନିଷ୍ଠତାକୁ ଆଜିର ସମୟରେ ସମସ୍ତେ ବୁଝିବା ଓ ସମ୍ମାନ ଦେବା ଜରୁରୀ ବୋଲି ମୁଁ ମନେ କରୁଛି । ରାଜନୀତି ଓ ପ୍ରଶାସନରେ ବର୍ଦ୍ଧିଷ୍ଣୁ ଭ୍ରଷ୍ଟାଚାର ଓ କଳୁଷତା ସେ ଦେଖି ଦେଖି ଖୁବ୍ ଅତିଷ୍ଠ ହୋଇପଡିଛନ୍ତି । ଏହାର ଏକ ରାଜନୈତିକ ସମାଧାନ ସେ ଖୋଜିବାରେ ଲାଗିଛନ୍ତି । ତାଙ୍କର ବିଶ୍ୱାସ ଯେ ସଚ୍ଚୋଟ ଓ ଗୁଣବନ୍ତ ମଣିଷମାନେ ଏ ସମାଜରେ ନୂତନ ନେତୃତ୍ୱ ନେବେ ଓ ବିକାଶ ଏବଂ ପରିବବର୍ତ୍ତନ ଏକ ଭିନ୍ନ ମାର୍ଗ ଉନ୍ମୋଚିତ କରିବେ । ଏହା କେବଳ ଏକ ନୂତନ ରାଜନୈତିକ ଦଳ ପ୍ରତିଷ୍ଠା ଦ୍ୱାରା ସମ୍ଭବ । ବର୍ତ୍ତମାନର ଦକ୍ଷିଣପନ୍ଥୀ ବା ବାମପନ୍ଥୀ, କଂଗ୍ରେସ ବା ଅଣକଂଗ୍ରେସ ଦଳମାନେ ନିଜର ସ୍ୱାର୍ଥ ହାସଲ ପାଇଁ ସମସ୍ତ ମୂଲ୍ୟବୋଧକୁ ପରିହାର କରି ସାରିଛନ୍ତି ଓ ଭବିଷ୍ୟତରେ ସେମାନେ ସାଧାରଣ ମଣିଷଙ୍କ ହିତ ପାଇଁ ଓ ଜୀବନର ମାନ ବୃଦ୍ଧି ପାଇଁ କିଛି ଯେ କରିପାରିବେ ନାହିଁ ତାହା ବର୍ତ୍ତମାନ ରାଜନୀତିର ଗତି ଓ ପ୍ରଗତିରୁ ସ୍ପଷ୍ଟ ଜାଣି ହେଉଛି । ଏହାକୁ ହୃଦବୋଧ କରି ଶ୍ରୀଯୁକ୍ତ ପାଣିଗ୍ରାହୀ ଏକ ନୂତନ ଦଳ ଗଢ଼ିଛନ୍ତି ଯାହାର ନାମ ହେଉଛି 'ଜନ ହିତକର ପାର୍ଟି' । ଆଗାମୀ ନିର୍ବାଚନମାନଙ୍କରେ 'ଜନହିତକର ପାର୍ଟି' ତରଫରୁ ପାର୍ଥୀ ଦିଆଯିବ ଏକଥା ସେ ସ୍ପଷ୍ଟ ଘୋଷଣା କରିଛନ୍ତି । ଏଥିପାଇଁ ଓଡ଼ିଶା ସାରା ତାଙ୍କର ମନଲାଖି ପ୍ରାର୍ଥୀ ଖୋଜିବାରେ ଲାଗିଛନ୍ତି । ଏସବୁ ପ୍ରକ୍ରିୟାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ବିକଳ୍ପ ରାଜନୀତିକୁ ନେଇ ପରୀକ୍ଷା କରିବା । ମୁଁ ଯେତିକି ଜାଣିଛି ଓ ଯେତିକି ବୁଝିଛି ସାରାପୃଥିବୀ ମଧ୍ୟ ଆଜି ବିକଳ୍ପ ରାଜନୀତିର ସନ୍ଧାନରେ ଅଛି । କାରଣ ଜଗତୀକରଣ ଆଜିର ରାଜନୀତିକୁ କଳୁଷିତ ଓ

ଦୁର୍ନୀତିଗ୍ରସ୍ତ କରିସାରିଛି । ଆଜି ଗଣତନ୍ତ୍ର ଭୀଷଣ ପରିସ୍ଥିତି ଭିତରେ ପଡିଯାଇଛି ଓ ଭବିଷ୍ୟତରେ ଏହାର ରୂପରେଖ କ'ଣ ହେବ ତାହା ଅନୁମାନ କରି ହେଉଛି । ଜଗତୀକରଣ ପ୍ରକ୍ରିୟା ଆରମ୍ଭ ହେବା ଦିନଠାରୁ ପ୍ରତ୍ୟେକ ରାଷ୍ଟ୍ର ଓ ସେଠାରେ ଚାଲୁଥିବା ଶାସନ ମୁଖ୍ୟତଃ ଲୋକମାନଙ୍କ ହାତ ମୁଠାରେ ଆଉ ନାହିଁ । ଗୋଟାଏ ରାଷ୍ଟ୍ର, ଏହାର ରାଜନୀତି ଓ ସେଥିରେ ନେଇଥିବା ନେତୃତ୍ୱ, ଜଗତୀକରଣର ପ୍ରଭାବ ଫଳରେ କର୍ପୋରେଟମାନଙ୍କ ଦ୍ୱାରା ନିର୍ଦ୍ଧାରିତ ଓ ନିୟନ୍ତ୍ରିତ ହେଉଛି ବୋଲି ସାରାପୃଥିବୀରେ ବିଭିନ୍ନ ଉଦାହରଣ ରହିଛି । ବିଶ୍ୱପୁଞ୍ଜି ମଧ ପ୍ରତ୍ୟକ୍ଷ ଓ ପରୋକ୍ଷଭାବେ ରାଷ୍ଟ୍ରର ଶାସନ ଓ ବିକାଶ କ୍ଷେତ୍ରରେ ହସ୍ତକ୍ଷେପ କରି ସଫଳ ମଧ ହେଉଛି । କେଉଁଠି ସାମରିକ ଏକଛତ୍ରବାଦକୁ ସମର୍ଥନ ମିଳିଲାଣିତ କେଉଁଠି ଧର୍ମାନ୍ଧତା ରାଜତ୍ୱ କରିଲାଣି । ଯେଉଁଠି ଗଣତନ୍ତ୍ର ବଞ୍ଚିରହିଛି ସେଇଠି ମଧ ଅତି ବ୍ୟବସ୍ଥିତ ଢ଼ଙ୍ଗରେ ଅଗଣତାନ୍ତ୍ରିକ ମୂଲ୍ୟବୋଧ ଲଦି ଦିଆଯାଉଛି । ତୃତୀୟ ବିଶ୍ୱର ପ୍ରତ୍ୟେକ ଦେଶର ରାଜନୀତି ଓ ଅର୍ଥନୀତିର ଇତିହାସରୁ ଏହା ସ୍ପଷ୍ଟ ଜଣାପଡୁନାହିଁ କି ? ଆଜିର ଗଣତନ୍ତ୍ର ଲୋକମାନଙ୍କୁ ଏବଂ ନାଗରିକମାନଙ୍କୁ ପ୍ରାଧାନ୍ୟ ନଦେଇ ବିଭିନ୍ନ ସଂକୀର୍ଣ୍ଣ ମୂଲ୍ୟବୋଧ, ହିଂସା ଓ ଅପରିମିତ କ୍ଷମତାରେ ବଶୀଭୂତ ମଣିଷମାନଙ୍କ ଶାସନଗାଦୀକୁ ଆଣିବାରେ ଲାଗିଛି । ଏସବୁ ହିଁ ମୋଟାମୋଟି ଜଗତୀକରଣ ପ୍ରକ୍ରିୟାକୁ ମଧ ଦୃଢ଼ୀଭୂତ କରୁଛନ୍ତି ।

ଜଗତୀକରଣ ପ୍ରକ୍ରିୟା ଗଣତନ୍ତ୍ରକୁ ସୁଦୃଢ଼ କରୁଛି କି ନାହିଁ ତାହା କେତୋଟି ନିର୍ଦ୍ଦିଷ୍ଟ ବିଷୟକୁ ଅଧୟନ କରିଲେ ଜଣାପଡ଼ିବ । ଆମେ ପ୍ରଥମେ ଦାରିଦ୍ର୍ୟ ଓ ବିକାଶକୁ ବିଚାରକୁ ନେବା । ଦ୍ୱିତୀୟରେ ମାନବାଧିକାର ଉପରେ ଗୁରୁତ୍ୱ ଦେବା । ତୃତୀୟରେ ପରିବେଶ ସୁରକ୍ଷିତ ରହୁଛିକି ନାହିଁ ତାହା ସବୁବେଳେ ମାପିବା । ଚତୁର୍ଥରେ ଶାନ୍ତି ଓ ସୁରକ୍ଷା ପ୍ରତିଷ୍ଠା ହେଉଛି କି ନାହିଁ ସେ କଥା ମଧ ସମୀକ୍ଷା କରିବା । ଏବଂ ଶେଷରେ ଶାସନ ବ୍ୟବସ୍ଥା ଲୋକାଭିମୁଖୀ କି ନାହିଁ ମୂଲ୍ୟାଙ୍କନ କରିବା । ଏହା ଆମେ ଗାଁରେ ଦେଖିବା, ସହରରେ ଦେଖିବା ଏବଂ ସାରା ଦେଶକୁ ନେଇ ବିଶ୍ଳେଷଣ କରିବା । ମୋଟାମୋଟି ଦେଖିବାକୁ ଗଲେ ଜଗତୀକରଣ ପ୍ରକ୍ରିୟା ଗଣତନ୍ତ୍ରକୁ ଦୁର୍ବଳ କରିବାକୁ ଲାଗିଛି । ଏଇଥି ପାଇଁ ସବୁବେଳେ ବିକଳ୍ପ ରାଜନୀତି ମୁଣ୍ଡ ଟେକୁ ବୋଲି ରାଜନୀତି ବିଶାରଦ, ଆକ୍ଟିଭିଷ୍ଟ ଓ ଚିନ୍ତାଶୀଳ ବ୍ୟକ୍ତିମାନେ ବାରମ୍ବାର ଦାବୀ କରିଆସିଛନ୍ତି । ଏପରିକି

ଜଗତୀକରଣକୁ ସମର୍ଥନ କରୁଥିବା ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାକୋଷ, ବିଶ୍ୱଅର୍ଥନୈତିକ ସଂଗଠନମାନଙ୍କରେ ସଂସ୍କାର ହୋଇ ଗଣତାନ୍ତ୍ରିକ ମୂଲ୍ୟବୋଧର ପୁନଃପ୍ରତିଷ୍ଠା କରିବା ପାଇଁ ଚେଷ୍ଟା ଚାଲିଛି । ଏସବୁ ସଂଗଠନ ଗୁଡ଼ିକର ଉତ୍ତରଦାୟିତ୍ୱ ଉପରେ ମଧ୍ୟ ଅନେକ ପ୍ରଶ୍ନ ଉଠିଛି ।

ଗଣତନ୍ତ୍ର ଓ ଏକ ରାଷ୍ଟ୍ରର ସାର୍ବଭୌମତ୍ୱ ଅଙ୍ଗାଙ୍ଗୀଭାବେ ଜଡ଼ିତ । ବହୁରାଷ୍ଟ୍ରୀୟ କମ୍ପାନୀମାନେ ଉଦ୍ୟୋଗୀକରଣ ହେଉ ବା ଖଣିଖାଦାନ ହେଉ, ବୃକ୍ଷରୋପଣ ହେଉ ଅଥବା ସ୍ୱତନ୍ତ୍ର ଆର୍ଥିକ ଜୋନ୍ ହେଉ ହଜାର ହଜାର ଏକର ଜମି ଦଖଲ କରୁଛନ୍ତି । ରାଷ୍ଟ୍ର, ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ପାଇଁ ଜମି ଅଧିଗ୍ରହଣ କରିବା ଏବଂ ଏଥିରେ ସ୍ଥାନୀୟ ଲୋକଙ୍କ ସମ୍ବଳ ଅକ୍ତିଆର କରିବା ଏକ ସାର୍ବଭୌମତ୍ୱର ପ୍ରଶ୍ନ । ଥରେ ଜମି ଗ୍ରହଣ କରିଲା ପରେ ସେଠାରେ ପାଚେରୀ ତିଆରି କରି ଏକ ନିଷିଦ୍ଧାଞ୍ଚଳ ପ୍ରତିଷ୍ଠା କରିବା ଓ ପାଚେରୀ ଭିତରେ କ'ଣ ସବୁ ଚାଲିଛି ତାହା କେହି ନଜାଣିବା ମଧ୍ୟ ସାର୍ବଭୌମତ୍ୱର ପ୍ରଶ୍ନ । ରାଷ୍ଟ୍ରର ସବୁ ଆଇନ୍ କାନୁନ ନମାନିବା ମଧ୍ୟ ସାର୍ବଭୌମତ୍ୱର ପ୍ରଶ୍ନ । ଗଣତାନ୍ତ୍ରିକ ଅନୁଷ୍ଠାନ ଗୁଡ଼ିକୁ ସମ୍ମାନ ନଦେଖାଇବା ମଧ୍ୟ ସାର୍ବଭୌମତ୍ୱର ପ୍ରଶ୍ନ । ଆମର ପଞ୍ଚାୟତିରାଜ ବ୍ୟବସ୍ଥା ଅଛି । ବିଧାନସଭା ଓ ଲୋକସଭା ମଧ୍ୟ ଗଢ଼ାଯାଇଛି ଗଣତନ୍ତ୍ରକୁ ଅଧିକ ଶକ୍ତିଶାଳୀ କରିବାକୁ । ବିଚାର ବ୍ୟବସ୍ଥା ମଧ୍ୟ ସୁଦୃଢ଼ ଅଛି । ନ୍ୟାୟ ଓ ଅନ୍ୟାୟର ତାଲିକା କରାଯାଇଛି ଲୋକଙ୍କ ହିତକୁ ବିଚାରକୁ ନିଆଯାଇଛି । କିନ୍ତୁ ଜଗତୀକରଣ ପ୍ରକ୍ରିୟା ସବୁ ଗଣତାନ୍ତ୍ରିକ ମୂଳଦୁଆକୁ ଦୋହଲାଇ ଦେଇଛି । ସବୁ ଗଣତାନ୍ତ୍ରିକ ସଂଗଠନ କିପରି ଧ୍ୱଂସ ଓ ବିଲୁପ୍ତ ହେବ ସେଇଥି ପାଇଁ ଚକ୍ରାନ୍ତ କରିଛି । ଗଣତାନ୍ତ୍ରିକ ମୂଲ୍ୟବୋଧକୁ ହତ୍ୟା କରି ବଜାର ଓ ବେପାର ଦ୍ୱାରା ପରିଚାଳିତ ମୂଲ୍ୟବୋଧକୁ ସମସ୍ତଙ୍କ ଉପରେ ଲଦିଦେବାକୁ ଚେଷ୍ଟା କରିଛି । ଏଇଥିପାଇଁ କୌଣସି ନିଷ୍ପତ୍ତି ନିଆଯିବା ବେଳେ ସ୍ଥାନୀୟ ଲୋକଙ୍କୁ ବା ନାଗରିକ ସମାଜକୁ ସଂଶ୍ଳିଷ୍ଟ କରାଯାଇନାହିଁ ଓ ମତାମତ ଲୋଡ଼ା ଯାଉନାହିଁ । ସେଇଥିପାଇଁ ଗଣତନ୍ତ୍ର ତିଷ୍ଠିରହିବ କି ନାହିଁ ଆଜି ପ୍ରଶ୍ନ ଉଠିଛି । ଗଣତାନ୍ତ୍ରିକ ମୂଲ୍ୟବୋଧର ଅଭାବ ସବୁଠାରେ ପରିଲକ୍ଷିତ ହେଉଛି- ରାଷ୍ଟ୍ର ସ୍ତରରେ, ଆଞ୍ଚଳିକ ସ୍ତରରେ ଏବଂ ସାରାପୃଥିବୀ ସ୍ତରରେ, ସଂସଦ ବା ପାର୍ଲିଆମେଣ୍ଟଗୁଡ଼ିକ ଆଜି ଗରୀବ ଲୋକଙ୍କ ଆଶାଆକାଂକ୍ଷା ଗୁଡ଼ିକୁ ଓ

ସେମାନଙ୍କର ସ୍ୱରକୁ ପ୍ରକାଶ କରିପାରୁ ନାହାନ୍ତି । ଭ୍ରଷ୍ଟାଚାରର ଚେର ଆହୁରି ବ୍ୟାପକଭାବେ ମାଡି ଚାଲିଛି । ସାଧାରଣ ଲୋକେ ଯେତେବେଳେ ନିଜକୁ ଅସହାୟ, ଅସୁରକ୍ଷିତ ଓ ଅବାଂଛିତ ମନେ କରୁଛନ୍ତି, ସେତେବଳେ ସେମାନେ ଜଗତୀକରଣ ପ୍ରକ୍ରିୟାକୁ ବିରୋଧ କରୁଛନ୍ତି । ପୃଥିବୀର ଅଗଣିତ ଜନ ଓ ସାମାଜିକ ଆନ୍ଦୋଳନମାନେ ଏଇଭଳି ପରିସ୍ଥିତିରୁ ହିଁ ତିଆରି ହୋଇଛନ୍ତି । ଗଣତାନ୍ତ୍ରିକ ସଂଗଠନ, ଆଭ୍ୟନ୍ତରୀଣ ଗଣତନ୍ତ୍ର, ଆଇନ୍‌କାନୁନ୍ ବ୍ୟବସ୍ଥା, ସଂସଦୀୟ ବ୍ୟବସ୍ଥା ଏକ ଦୃଢ଼ ଗଣତନ୍ତ୍ରର ଅଙ୍ଗ । ଏହାକୁ ଆସ୍ଥାସୂଚକ ଦୃଷ୍ଟିରେ ଦେଖିବା ଗଣତାନ୍ତ୍ରିକ ସମାଜର ମୂଳଲକ୍ଷ୍ୟ ।

ବିକଳ୍ପ ଗଣତାନ୍ତ୍ରିକ ବ୍ୟବସ୍ଥା ଯେ ଜଗତୀକରଣକୁ ବିରୋଧ କରିପାରିବ ଏଥିରେ କାହାର ସନ୍ଦେହ ଅଛି କି ? ଆମେ କେତୋଟି ନିର୍ଦ୍ଦିଷ୍ଟ ଉଦାହରଣ ବିଚାରକୁ ନେବା । ମୋର ଦୃଢ଼ ବିଶ୍ୱାସ ଯେ ବର୍ତ୍ତମାନ ସମୟରେ ଗାନ୍ଧୀଙ୍କ 'ହିନ୍ଦ୍ ସ୍ୱରାଜ' ଢାଞ୍ଚାରେ ଏକ ଶାସନ ଓ ସାମାଜିକ ବ୍ୟବସ୍ଥାର ପରିକଳ୍ପନା କରାଯାଇପାରିଲେ ଏବଂ ତାହାକୁ ସାକାର କରିପାରିଲେ ଜଗତୀକରଣର ଆକ୍ରମଣକୁ ପ୍ରତିହତ କରାଯାଇ ପାରିବ ବୋଲି ମୁଁ ଏହା ପୂର୍ବ ସ୍ତମ୍ଭରେ ପ୍ରକାଶ କରି ସାରିଛି । ଗତ ୫୦ବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ଗାନ୍ଧୀ ଓ ଗାନ୍ଧୀବାଦକୁ ସମ୍ମାନ ଦେବାକୁ ଏ ଦେଶ ପଛଘୁଞ୍ଚା ଦେଇଛି । ହିଂସା, ଅସତ୍ୟ, ଅଶିବ ଓ ଅସୁନ୍ଦର କଥା ସବୁକ୍ଷେତ୍ରରେ ବଢ଼ିଛି । ଗାନ୍ଧୀଙ୍କ ଜନ୍ମସ୍ଥାନ ଗୁଜୁରାଟରେ ହିଂସା ଓ ଧର୍ମାନ୍ଧତା ସୀମା ଟପିଛି । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ଏବର୍ଷ 'ଲଗେରହୋ ମୁନ୍ନାଭାଇ' ଦେଖିଲା ପରେ ଗାନ୍ଧିଗିରି (?) ବହୁ ମାତ୍ରାରେ ବଢ଼ିଛି । ନବଜୀବନ ଟ୍ରଷ୍ଟଙ୍କ ଉକ୍ତି ଅନୁସାରେ କେତେଦିନ ଭିତରେ ଗାନ୍ଧୀଙ୍କ ଲିଖିତ ୩୬୦୦୦ କପି ଆତ୍ମଜୀବନି ବିକ୍ରୀ ହୋଇଛି କେବଳ ମୁମ୍ବାଇ ସହରରେ । ଜଣେ ଯଦି ଗାନ୍ଧୀଙ୍କୁ ଭଲ ପାଉଛି ଓ କାୟମନବାକ୍ୟରେ ସମର୍ଥନ କରୁଛି ତେବେ ସେ ଜଗତୀକରଣକୁ ହିଁ ନିଶ୍ଚିତ ବିରୋଧ କରୁଛି ।

ସାରା ପୃଥିବୀରେ 'ଗ୍ରୀନ୍ ପାର୍ଟି' ବର୍ତ୍ତମାନ ମୁଣ୍ଡ ଟେକିଛି ଓ ବିଶେଷ କରି ଇୟୁରୋପରେ ଏହା ବିଶେଷ ପ୍ରାଧାନ୍ୟ ଲାଭ କରିଛି । ଗ୍ରୀନ୍ ପାର୍ଟିର ଉଦ୍ଦେଶ୍ୟ ପରିବେଶ ସୁରକ୍ଷା, ତୃଣମୂଳ ଗଣତନ୍ତ୍ର ପ୍ରତିଷ୍ଠା, ସାମାଜିକ ପ୍ରକ୍ରିୟାରେ ନ୍ୟାୟ, ଶାନ୍ତି ଓ ଅହିଂସାରେ ଦୃଢ଼ ବିଶ୍ୱାସ । ଏହା ମଧ୍ୟ ଏକ ରାଜନୈତିକ ଆନ୍ଦୋଳନ ।

୧୯୭୨ ମସିହାରେ ପ୍ରଥମେ ଏହା ଅଷ୍ଟ୍ରେଲିଆର ହୋବାର୍ଟ ସହରରେ ଆରମ୍ଭ ହୋଇଥିଲା । ୧୯୭୩ ମସିହାରେ ଇୟୁରୋପରେ ଏହା ଜନ୍ମ ନେଇଥିଲା । ୧୯୮୦ ମସିହାରେ ଜର୍ମାନୀରେ ଏହା ନିର୍ବାଚନ ଔପଚାରିକ ଭାବେ ଲଢ଼ିଥିଲା । ବର୍ତ୍ତମାନ ପୃଥିବୀର ପ୍ରାୟ ସବୁ ଦେଶରେ ଏହା ଦୃଢ଼ ଭାବରେ ଅବସ୍ଥିତ ହୋଇ ଅନେକ ସମସ୍ୟା ସହ ସଂଶ୍ଲିଷ୍ଟ ହୋଇଛି । ସେଗୁଡ଼ିକ ମଧ୍ୟରେ ମୌଳିକବାଦ, ଗଣତାନ୍ତ୍ରିକ ପରିବେଶ, ନିର୍ବାଚନ ସଂସ୍କାର, ଭୂସଂସ୍କାର, ଆଦିମ ଅଧିବାସୀ, ବୃଷ୍ଟିପୁଷ୍ଟ ଅରଣ୍ୟ, ଜୈବସୁରକ୍ଷା, ସ୍ୱାସ୍ଥ୍ୟ ସୁରକ୍ଷା ଆଦି ଅନ୍ୟତମ । ୨୦୦୧ ମସିହାରେ ଅନୁଷ୍ଠିତ ଏହାର ବିଶ୍ୱ ସମ୍ମିଳନୀରେ ପ୍ରାୟ ୭୨ଟି ଦେଶର କର୍ମକର୍ତ୍ତା ଯୋଗ ଦେଇଥିଲେ ଅଷ୍ଟ୍ରେଲିଆର କାନ୍‌ବେରା ସହରରେ । ପରବର୍ତ୍ତୀ ସମ୍ମିଳନୀ ୨୦୦୮ ମସିହାରେ କେନିୟାର ନାଇରୋବି ସହରରେ ଆୟୋଜିତ ହେବ । ଜଗତୀକରଣକୁ ସକ୍ରୀୟ ବିରୋଧ କରୁଥିବା 'ଗ୍ରୀନ୍ ପାର୍ଟି' ଏବେ ବିଶ୍ୱ ରାଜନୈତିକ ରଙ୍ଗ ମଞ୍ଚରେ ଏକ ନାୟକ ରୂପେ ଅବତୀର୍ଣ୍ଣ ହୋଇଛି ।

ଜଗତୀକରଣ ନିଶ୍ଚିତଭାବେ ଉପଭୋକ୍ତାବାଦକୁ ସାରାପୃଥିବୀରେ ପ୍ରଚାର କରିଛି । ବର୍ତ୍ତମାନର ସମାଜ ଓ ଏହାର ମଣିଷମାନେ ଏହାର ଶିକାର ହୋଇ ସାରିଛନ୍ତି । ଏଥିପାଇଁ ବିଭିନ୍ନ ଦେଶରେ ଉପଭୋକ୍ତାବାଦ ବିରୁଦ୍ଧରେ ଆନ୍ଦୋଳନ ମୁଣ୍ଡ ଟେକିଛି । ଏ ପୃଥିବୀରେ ଶତକଡ଼ା ୨୦ଭାଗ ଲୋକ ଏ ପୃଥିବୀର ପ୍ରାୟ ଶତକଡ଼ା ୮୬ ଭାଗ ସମ୍ପଦର ବ୍ୟବହାର କରିଆସୁଛନ୍ତି । ଏଣୁ ଶତକଡ଼ା ୧୪ଭାଗ ସମ୍ବଳ ୫୦୦କୋଟି ଲୋକଙ୍କ ପାଇଁ ବଳକା ରହୁଛି । ଏହାକୁ ଲକ୍ଷ୍ୟ କରି ଜର୍ମାନୀର କେତେକ ଲୋକ 'ବାଏ ନଥିଙ୍ଗ ଡେ' (Buy Nothing Day) ବୋଲି ଏକ ସଂଗଠନ ଆରମ୍ଭ କରିଛନ୍ତି । ଏହା ଏବେ ଆନ୍ତର୍ଜାତିକ ନେଟୱାର୍କ ରୂପେ ପ୍ରତିଷ୍ଠା ଲାଭ କରିଛି । ଏହା ପୃଥିବୀରେ ସଚେତନତା ସୃଷ୍ଟି କରି ଉପଭୋକ୍ତାବାଦ ବିରୁଦ୍ଧରେ ସଂଗ୍ରାମ କରିଆସୁଛି । ଛୁଟି ଦିନମାନଙ୍କରେ ବିକାକିଣାର ଯେଉଁ ଅସମ୍ଭବ ଭିଡ ଲାଗି ରହୁଛି ତାହା ବିରୁଦ୍ଧରେ ଆନ୍ଦୋଳନ କରି ଆସୁଛି । ବିଜ୍ଞାପନ ଦ୍ୱାରା ପରିଚାଳିତ ଉପଭୋକ୍ତାବାଦ ବିରୁଦ୍ଧରେ ଏକ ସଶକ୍ତ ଆନ୍ଦୋଳନ ଏବେ ଗଢ଼ି ଉଠିଛି ।

ଆମେରିକାର ରିକ୍ଲେମ୍ ଡ଼େମୋକ୍ରାସୀ ଡଟ୍ ଅର୍ଗ (Reclaim Democracy.org) ନାମକ ଏକ ସଂସ୍ଥା କର୍ପୋରେଟ୍‌ମାନଙ୍କର ପ୍ରଭାବରୁ ଏ

ପୃଥିବୀକୁ ମୁକ୍ତ କରିବା ପାଇଁ ମୁଣ୍ଡ ଟେକିଛି । ଯେଉଁଠି କର୍ପୋରେଟ୍ ଡିଣ୍ଡିମ ପିଟୁଛି ଯେ ସେମାନଙ୍କର ଲାଭ ଆଜି ଦାରିଦ୍ର୍ୟ ଦୂରୀକରଣରେ ସହାୟକ ହୋଇଛି, ଗରୀବଙ୍କ ଶିକ୍ଷା ଓ ସ୍ୱାସ୍ଥ୍ୟରେ ବିକାଶ ହୋଇଛି ଓ ଜୀବନର ମାନ ବଢ଼ିଛି ତାହା କେତେ ମିଛ ତାହା ପ୍ରମାଣିତ କରିବାକୁ ରିକ୍ଲେମ୍ ଡେମୋକ୍ରାସୀ ଡ଼ଟ୍ ଅର୍ଗ ଆଗେଇ ଆସିଛି । ଏ ନେଟ୍‌ୱାର୍କର ସଭ୍ୟ ସଂଖ୍ୟା ବଢ଼ିବାରେ ଲାଗିଛି । କର୍ପୋରେଟ୍‌ମାନଙ୍କ ଦ୍ୱାରା ଦାରିଦ୍ର୍ୟ, ଅନାହାର ଯେ ପୃଥିବୀରେ ବଢ଼ିବାରେ ଲାଗିଛି ତାହା ଏବେ ସମସ୍ତେ ଅନୁଭବ କରୁଛନ୍ତି ।

ଏ କଥା ସତଯେ ଗଣତନ୍ତ୍ର ଶାସନରେ ଅନେକ ଅଶାନ୍ତି, ବିଶୃଙ୍ଖଳା ଓ ଅରାଜକତା ରହିଛି । ବିଖ୍ୟାତ ଲେଖକ ଓ ରାଜନୈତିକ ବିଜ୍ଞାନୀ ଅତୁଲ୍ କୋହଲି (Atul Kohli) ତାଙ୍କର ପ୍ରସିଦ୍ଧ ବହି ଡେମୋକ୍ରାସୀ ଏଣ୍ଡ ଇଟ୍‌ସ ଡିସ୍‌କଣ୍ଟେଣ୍ଟସ୍‌ରେ (Democracy and its Discontents) ଭାରତର ଗଣତନ୍ତ୍ର ଶାସନର ବିଭିନ୍ନ ଦିଗ ଉପରେ ଆଲୋକପାତ କରିଛନ୍ତି । କିନ୍ତୁ ସେ ଗଣତନ୍ତ୍ରରେ ଆସ୍ଥା ହରାଇ ନାହାନ୍ତି । ଗଣତନ୍ତ୍ରକୁ ସଫଳ କରିବାକୁ ହେଲେ ଓ ସଫଳତାର ସହ ଜଗତୀକରଣର ମୁକାବିଲା କରିବାକୁ ହେଲେ ଗଣତନ୍ତ୍ରର ଗଣତନ୍ତ୍ରୀକରଣ ବା ଡେମୋକ୍ରାଟାଇଜିଂ ଡେମୋକ୍ରାସୀରେ ବିଶ୍ୱାସ ରଖିବାକୁ ହେବ । ଏହାର ଅର୍ଥହେଲା ଯେ ଜଗତୀକରଣର ପ୍ରଭାବ ବଳରେ ଯେଉଁ ରାଷ୍ଟ୍ର ଦୁର୍ବଳ ହେଉଛି, ସେଇଠି କେମିତି ରାଷ୍ଟ୍ର ଶକ୍ତିଶାଳୀ ହେବ ଏବଂ ନାଗରିକମାନଙ୍କୁ ସାମାଜିକ, ଆର୍ଥିକ ଓ ସାଂସ୍କୃତିକ ସୁରକ୍ଷା ଦେବ । ରାଷ୍ଟ୍ରର ସବୁ ଦିଗ ନାଗରିକମାନଙ୍କ ଦ୍ୱାରା ପରିଚାଳିତ ହେବା ସମ୍ଭବ ହେବ । ଏହା କହିଛନ୍ତି ବିଖ୍ୟାତ ଦାର୍ଶନିକ ଆନ୍ଥୋନୀ ଗିଡନ୍ ।

ଜଗତୀକରଣର ପ୍ରଭାବ ଓ ପ୍ରତିଷ୍ଠା କେବଳ ହିଁ ଗଣତନ୍ତ୍ରର ଅସ୍ତ୍ରଦ୍ୱାରା ପ୍ରତିହତ କରାଯାଇପାରିବ ବୋଲି ମୋର ଦୃଢ଼ ବିଶ୍ୱାସ । କିନ୍ତୁ ଗଣତନ୍ତ୍ରରେ ବିଶ୍ୱାସ ରଖୁଥିବା ଲୋକେ ଏକାଠି ହେବାର ଆବଶ୍ୟକତା ସୃଷ୍ଟି ହୋଇଛି । ଶ୍ରୀ ଗଙ୍ଗାଧର ପାଣିଗ୍ରାହୀଙ୍କ ସ୍ୱପ୍ନ ସଫଳ ହେବାର ଆଶା ଅଙ୍କୁରିତ ହୋଇଛି । ❑



## ଲେଖକ ଅଚ୍ୟୁତ ଦାସ

**ଅଗ୍ରଗାମୀ, କାଶୀପୁର, ରାୟଗଡ଼ା, ଓଡ଼ିଶା**

ଜଗତୀକରଣର ଘୂର୍ଣ୍ଣିବଳୟ ଭିତରେ ଏକ ଅବିଚଳିତ ଚରିତ୍ର। ଏକ ବହୁଚର୍ଚ୍ଚିତ ନାମ। ସ୍ୱାଧୀନୋତ୍ତର ନୂଆ ପିଢ଼ି ସମାଜ ସେବାର ମାଇଲଖୁଣ୍ଟ ପୋତିଥିବା ଜଣେ ସୋସିଆଲ ଆକ୍ଟିଭିଷ୍ଟ। ରେଭେନ୍ସାରୁ ଗଣିତ ଶାସ୍ତ୍ରରେ ସ୍ନାତକୋତ୍ତର ଶିକ୍ଷା। ସେ ଅକ୍ସଫାମ ଇଣ୍ଡିଆ ଟ୍ରଷ୍ଟରେ ପ୍ରୋଗ୍ରାମ ଅଫିସର ଭାବେ ଯୋଗଦେବା ସହିତ ରାଜ୍ୟ ଓ ରାଜ୍ୟ ବାହାରର ଅନେକ ସମାଜସେବା ଅନୁଷ୍ଠାନ ସହିତ ଓତପ୍ରୋତ ଜଡ଼ିତ। ତାଙ୍କର ସମାଜସେବା କ୍ଷେତ୍ରରେ ଉଲ୍ଲେଖନୀୟ ଭୂମିକା ପାଇଁ ରାଜ୍ୟ ସରକାର ଓ ଭାରତ ସରକାର ତାଙ୍କୁ ଅନେକ ବିକାଶମୂଳକ ଅନୁଷ୍ଠାନରେ ସାମିଲ କରି ତାଙ୍କର ପରାମର୍ଶକୁ ଗ୍ରହଣ କରିଛନ୍ତି।

**ଭିନ୍ନ ଭିନ୍ନ ଅନୁଷ୍ଠାନରେ ସଂପୃକ୍ତି**

SWRC ତିଲୋନିଆ ରାଜସ୍ଥାନ (୧୯୭୯-୮୬)

ଅଗ୍ରଗାମୀ ଓଡ଼ିଶା ଶାଖାର SWRC ପ୍ରତିଷ୍ଠାତା ସଭ୍ୟ

ରାଜ୍ୟ ଯୋଜନା ବୋର୍ଡର ପୂର୍ବତନ ସଭ୍ୟ

ଯୋଜନା ଆୟୋଗ ଓ ଏନ୍‌ଜିଓମାନଙ୍କର ସମନ୍ୱୟ କମିଟିର ପୂର୍ବତନ ସଦସ୍ୟ

କାପାର୍ଟ ପୂର୍ବାଞ୍ଚଳର ପୂର୍ବତନ ସଦସ୍ୟ

**ବିଦେଶରେ ଶିକ୍ଷା**

- ନେଦରଲ୍ୟାଣ୍ଡ ସ୍ଥିତ 'ଦି ହେଗ୍' ଟ୍ୱୋଣ୍ଡ ବିଶ୍ୱବିଦ୍ୟାଳୟରୁ ମାନବିକ ଅଧିକାର, ଆଇନ୍ ଏବଂ ସାମାଜିକ ନ୍ୟାୟ ଉପରେ ବିଦେଶ ପାଠ୍ୟକ୍ରମ
- ନେଦରଲ୍ୟାଣ୍ଡର Enschede ବିଶ୍ୱବିଦ୍ୟାୟରୁ ଗ୍ରାମୀଣ ଶକ୍ତି, ଯୋଜନା ଓ ପରିବେଶ ବିକାଶ ଉପରେ ବିଦେଶ ପାଠ୍ୟକ୍ରମ।
- ଗ୍ରେଟ୍ ବ୍ରିଟେନ ବର୍ମିଙ୍ଗହାମ୍ ବିଶ୍ୱବିଦ୍ୟାଳୟରେ ସ୍ଥାୟି ଗ୍ରାମୀଣ ବିକାଶ ପାଠ୍ୟକ୍ରମ।

''ଜଗତୀକରଣର ଅସଲ ଅର୍ଥ କ'ଣ ? ଏହା ଏପରି ଏକ ପ୍ରକ୍ରିୟା ଯାହା ଆନ୍ତର୍ଜାତିକ ବାଣିଜ୍ୟ, ପୁଞ୍ଜି, ବୈଷୟିକ ଜ୍ଞାନ ଓ ସୂଚନା ଆଦି ବଳରେ ବଳିୟାନ ହୋଇ ପୃଥିବୀରେ ସାମଗ୍ରିକ ବଜାରକୁ ନିୟନ୍ତ୍ରଣ କରିଥାଏ । ଜଗତୀକରଣ ସ୍ଥାନୀୟ ସ୍ଥାନ, କାଳ ପାତ୍ର, ଦେଶ ପ୍ରଦେଶର ସୀମା ମାନି ନଥାଏ । ବାଣିଜ୍ୟ ବେପାର ଦ୍ୱାରା ସାରା ବିଶ୍ୱବାସୀଙ୍କ ଜୀବନଜୀବିକାକୁ ନିଜର ନିୟନ୍ତ୍ରଣ ପରିସରଭୁକ୍ତ କରିଥାଏ । ଚାହିଁଲେ ରଖେ, ଚାହିଁଲେ ଭାଙ୍ଗେ । ଅଚାନକ ଏହା ଯେପରି ଏକ ଘୂର୍ଣ୍ଣିବାତ୍ୟା ଭଳି ପ୍ରବାହିତ ହୋଇଛି ଓ ସମସ୍ତଙ୍କୁ ପ୍ରଭାବିତ କରିଛି । ଏହାକୁ ସ୍ୱାଗତ କରିବା ପାଇଁ ଅନେକ ଲୋକ ବାହାରି ପଡିଛନ୍ତି । କହୁଛନ୍ତି ଯେ ଧରନ୍ତୁ ଆପଣ ଷ୍ଟେସନ୍‌ରେ ଛିଡା ହୋଇଛନ୍ତି ଓ ଟ୍ରେନ୍ ଛାଡୁଛି । ଆପଣ ଚଢ଼ିବେ କି ନାହିଁ ଦ୍ୱନ୍ଦରେ ପଡିଛନ୍ତି । ଆପଣଙ୍କ ନିଷ୍ପତ୍ତି ଉପରେ ଟ୍ରେନ୍ ଛାଡିବା ନିର୍ଭର କରୁନାହିଁ । ଟ୍ରେନଟି ଛାଡିଦେବ ନିର୍ଦ୍ଧାରିତ ସମୟରେ । ଆପଣ ନ ଚଢ଼ିଲେ ଆପଣଙ୍କର କ୍ଷତି । ଆପଣଙ୍କ ପାଖରେ ସମୟ ନାହିଁ । ଟ୍ରେନ୍ କେଉଁ ଗତିରେ ଯିବ, ଦୁର୍ଘଟଣାଗ୍ରସ୍ତ ହେବ କି ନାହିଁ, ଯାତ୍ରା ସୁରକ୍ଷିତ କି ନୁହେଁ, ଏସବୁ ଭାବିବା ପାଇଁ ସୁଯୋଗ ଓ ସମୟ ନାହିଁ । ଜଗତୀକରଣ ପ୍ରକ୍ରିୟା ଠିକ୍ ଟ୍ରେନ୍ ଛାଡିବା ଭଳି, ନୁହେଁ କି ? ନ ହେଲେ କାହିଁକି ଜଗତୀକରଣକୁ ଗୋଟାଏ ପରେ ଆଉ ଗୋଟାଏ ଦେଶ, ସାମ୍ରାଜ୍ୟ ଓ ସଭ୍ୟତା ଏପରି ଫୁଲମାଳ ଦେଇ ସ୍ୱାଗତ କରୁଛନ୍ତି ?''

ମୂଲ୍ୟ: ୧୫୦/-